# ଗୃହଦାହ

ମୂଳରଚନା : **ଶରତ୍‌ଚନ୍ଦ୍ର**

ଅନୁବାଦ : **ଯମେଶ୍ୱର ତ୍ରିପାଠୀ**
ତ୍ରିପାଠୀ ଭବନ, ହସପିଟାଲ ରୋଡ୍, ଆଠଗଡ଼

ପ୍ରଥମ ସଂସ୍କରଣ : ୧୯୮୦

ପ୍ରକାଶକ :
**ଶ୍ରୀ ଗୋବିନ୍ଦଚରଣ ପାତ୍ର**
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦବିହାରୀ, କଟକ-୭୫୩୦୦୨

ମୁଦ୍ରଣ :
**ଗୀତାଞ୍ଜଳି ପ୍ରେସ**
ଅଲିଶା ବଜାର, କଟକ-୭୫୩୦୦୨

ମୂଲ୍ୟ :
ସାଧାରଣ—ଟ ୨୨-୦୦
ଶୋଭନ ଟ ୨୫-୦୦

**Saratchandra's**
**GRUHADAHA**
*Translated by*
**Sri Jameswar Tripathy**
*Published by*
Sri Govind Charan Patra
ORISSA BOOK STORE
Cuttack-753002
*Printed at :*
**Gitanjali Press**
*Price :*
Rs. 25-00

If you would not be forgotten as soon as you are dead and rotten, either write things worth reading and do things worth writing.

*Benjamin Franklin*

# ମୋର ମାତ୍ର ଦୁଇପଦ......

ପ୍ରାଦେଶିକତାର ସଙ୍କୀର୍ଣ୍ଣ ପରିବେଶରୁ ମୁକ୍ତ ହୋଇ ଯେଉଁ ମହାନ ପ୍ରତିଭାଧର ଆଜି ସମଗ୍ର ଭାରତୀୟ କଥା-ସାହିତ୍ୟରେ ସମ୍ରାଟର ଆସନ ଅଧିକାର କରିପାରିଛନ୍ତି, ସେ ହେଉଛନ୍ତି ଶରତ୍‌ଚନ୍ଦ୍ର ଚଟ୍ଟୋପାଧ୍ୟାୟ—ଯାହାଙ୍କୁ କି କେବଳ ଶରତ୍‌ଚନ୍ଦ୍ର କହିଲେ ପ୍ରତ୍ୟେକ ଶିକ୍ଷିତ ଭାରତୀୟ ବୁଝିପାରନ୍ତି । ତାଙ୍କ ରଚିତ ଉପନ୍ୟାସ ପାଠକ ମନରେ ଯୁଗପତ୍ ପୁଲକ, ରୋମାଞ୍ଚ ଓ ଭାବାନ୍ତର ସୃଷ୍ଟିକରେ । ଆମ ସମାଜକୁ ସୁସ୍ଥ, ସୁନ୍ଦର ଏବଂ ଆଦର୍ଶ କରି ତୋଳିବା ତାଙ୍କର ରଚନାର ମୂଳ ଲକ୍ଷ୍ୟ । ସେଥିପାଇଁ ତାଙ୍କ ରଚନାବଳୀ ଆଜି ବିଭିନ୍ନ ପ୍ରାନ୍ତୀୟ ଭାଷାରେ ଭାଷାନ୍ତରିତ ହୋଇ ପାଠକ ମହଲରେ ଆଦୃତ ହୋଇ ପାରିଛି ।

ଗୃହଦାହ ଉପନ୍ୟାସ ତାଙ୍କର ଏକ ଅମଳିନ ସାହିତ୍ୟ କୃତି । ଶ୍ରୀ ଓ ହ୍ରୀ ର ସଂମିଶ୍ରଣରେ ଯେଉଁ ନାରୀ ଆକର୍ଷଣୀୟା ହୋଇ ଉଠେ, ସେ ଯଦି ଗୃହବଧୂ ହେବା ପରେ ତ୍ୟାଗ ଓ କର୍ତ୍ତବ୍ୟପରାୟଣତାର ପରାକାଷ୍ଠା ପ୍ରଦର୍ଶନ କରିବାରେ ହେଳା କରିଥାଏ, ତେବେ ସେ ସମାଜରେ ଘୃଣ୍ୟା ହୋଇ ଉଠେ । ଠିକ୍ ଏଇ ଉକ୍ତିକୁ ନେଇ ସେ ରୂପ ଦେଇଛନ୍ତି ଗୃହଦାହର ନାୟିକା ଅଚଳାକୁ ।

ପ୍ରେମିକା ପାଇଁ ପାଗଳ ହୋଇ ଉଠି ପ୍ରେମିକ କିପରି ନିଜର ପଦମର୍ଯ୍ୟାଦା, ପ୍ରିୟପରିଜନଙ୍କ ଇଜ୍ଜତ ଏବଂ ସବୁ କିଛି ଜାଗତିକ ମାନସମ୍ମାନକୁ ପାଦରେ ଏଡ଼ାଇ ଦେଇପାରେ ତହିଁର ଏକ ମୂର୍ତ୍ତିମନ୍ତ ପ୍ରତୀକ ହେଉଛି ସୁରେଶ, ଯିଏ କି ଏହି ଉପନ୍ୟାସର ପାର୍ଶ୍ୱନାୟକ ।

ସର୍ବୋପରି ଏ ଉପନ୍ୟାସର ନାୟକ ଯିଏକି ପୁସ୍ତକଟିକୁ ମହିମାମଣ୍ଡିତ କରିପାରିଛି—ସେ ହେଉଛି ମହିମ । ସେ ବନ୍ଧୁପ୍ରତି ଯେପରି ସହନଶୀଳତା ଦେଖାଇ ପାରିଛି, ଠିକ୍ ସେହିପରି ଗୃହସ୍ଥ

ସ୍ୱଭାବରେ ପରିବାର ପ୍ରତି ତାର କର୍ତ୍ତବ୍ୟ, ସ୍ୱାମୀରୂପରେ ତାର ପ୍ରଣୟଲୁବ୍ଧତା, ପରିଣୀତା ମନସ୍ୱିନୀ ପତ୍ନୀ ପ୍ରତି ମଧ୍ୟ ଅସଂଭବ ସହିଷ୍ଣୁତା ପ୍ରଦର୍ଶନ କରି କବି ମାନସିଂଙ୍କ ଭାଷାରେ କହି ଉଠିଛି···

ପ୍ରେମ ନୁହେଁ, ଦେହୁ-ଦେହୁଁ
ଭୋଗ ଅନ୍ୱେଷଣ
ପ୍ରେମ ଏକ ଆତ୍ମା ପ୍ରତି
ଅନ୍ୟର ବନ୍ଦନ-

କେବଳ ଏଇଥି ପାଇଁ ସମସ୍ତ ଶରତ୍ ରଚନାବଳୀ ଭିତରେ ଗୃହଦାହର ସ୍ଥାନ ସ୍ୱତନ୍ତ୍ର ।

ଶରତ୍‌ଚନ୍ଦ୍ରଙ୍କର ଅଧିକାଂଶ ରଚନା ଯଦିଓ ଓଡ଼ିଆ ଭାଷାରେ ଭାଷାନ୍ତରିତ ହୋଇ ସାରିଛି ତଥାପି 'ଗୃହଦାହ' ଅଦ୍ୟାବଧି ଅନୁଦିତ ହୋଇ ପାରି ନ ଥିଲା । ତାଙ୍କର ଏହି ସମ୍ମାନନୀୟ କୃତିକୁ ମୋର ପାଠକପାଠିକାମାନଙ୍କ ଆଗରେ ପରିବେଷଣ ଅବସରରେ କେବଳ ଏତିକି ମାତ୍ର ବିନମ୍ର ସହିତ କ୍ଷମା ମାଗି କହିବି ଯେ, ଅନୁବାଦ ଏକ ଆୟାସ ସାଧ୍ୟ କାର୍ଯ୍ୟ ହୋଇଥିବାରୁ ଏଥିରେ ଯଦି କିଛି ତ୍ରୁଟି ପରିଲକ୍ଷିତ ହୁଏ, ସେଥିପାଇଁ ମୋତେ ଉଦାର ହୃଦୟରେ କ୍ଷମା ଦେବା ପାଇଁ ଏକାନ୍ତ ଅନୁରୋଧ ।

ଅଲିଶାବଜାର
(କଟକ)
୨୨।୪।୮୦

ଇତି
ନିରଞ୍ଜନ ଶତପଥୀ

ମହମର ପରମ ବନ୍ଧୁ ଥିଲା ସୁରେଶ । ଏକ ସଙ୍ଗେ ଏଫ୍. ଏ. ପାସ୍ କରିବା ପରେ ସୁରେଶ ମେଡ଼ିକାଲ୍ କଲେଜରେ ନାମ ଲେଖାଇଲା । କିନ୍ତୁ ମହମ ତାହାର ପୁରାତନ ସିଟି କଲେଜରେ ଅଟକି ରହିଗଲା ।

ସୁରେଶ ଅଭିମାନ ଭରା ସ୍ୱରରେ କହିଲା—ମହମ, ମୁଁ ବାରମ୍ବାର କହୁଛି ବି. ଏ. ଏମ୍. ଏ. ପାସ୍ କରି ଆଜିକାଲି କୌଣସି ଲାଭ ହେବନାହିଁ । ବର୍ତ୍ତମାନ ମଧ୍ୟ ସମୟ ଅଛି ତୋର ମେଡ଼ିକାଲ କଲେଜରେ ଭର୍ତ୍ତି ହେବା ଉଚିତ୍ ।

ମହମ ହସି ହସି କହିଲା—ହବା ତ ଉଚିତ୍ । କିନ୍ତୁ ଖର୍ଚ୍ଚର କଥା ମଧ୍ୟ ବିବେଚନା ଉଚିତ୍ ।

: ଏପରି କେତେ ଖର୍ଚ୍ଚ ହେବ ଯେ ତୁ ଦେଇ ପାରିବୁ ନାହିଁ ? ତା ଛଡ଼ା ତୋର ସ୍କଲରସିପ୍ ମଧ୍ୟ ଅଛି ।

ମହମ ହସ ହସ ମୁହଁରେ ନୀରବ ରହିଲା ।

ସୁରେଶ ଅଧୀର ହୋଇ କହିଲା—ନା, ନା, ହସ ନୁହେଁ ମହମ, ଆଉ ଡେରି କଲେ ଚଳିବ ନାହିଁ । ତୋତେ ଏ ଭିତରେ ଆଡ଼ମିସନ୍ ନେବାକୁ ହେବ । ଖର୍ଚ୍ଚର କଥା ପରେ ବିବେଚନା କରାଯିବ ।

ମହମ କହିଲା—ଆଚ୍ଛା ।

: ଦେଖ ମହମ, କେଉଁଟା ଯେ ତୋର ପ୍ରକୃତ ଆଚ୍ଛା ଏବଂ କେଉଁଟା ନୁହେଁ ତାହା ମୁଁ ଆଜି ପର୍ଯ୍ୟନ୍ତ ବୁଝିପାରିଲି ନାହିଁ । ଯେହେତୁ ମୋର କଲେଜ ସମୟ ହୋଇ ଯାଉଛି ତେଣୁ ବର୍ତ୍ତମାନ ବାଟ ମଝିରେ ତୋତେ ଶପଥ ମଧ୍ୟ କରାଇ ପାରୁ ନାହିଁ । କିନ୍ତୁ କାଲି ପଅରଦିନ ଭିତରେ ଏ କଥାର କିଛି ଗୋଟିଏ ନିଷ୍ପତ୍ତି ନକରି ମୁଁ ତୋତେ ଛାଡ଼ୁ ନାହିଁ । କାଲି ସକାଳେ ବସାରେ ଥିବୁ । ମୁ ଯିବି । ସୁରେଶ ଏକଥା କହି ତା'ର କଲେଜକୁ ତରତର ହୋଇ ବାହାରିଗଲା ।

ପନ୍ଦର ଦିନ ବିତି ଯାଇଛି । ମହମ କେଉଁଠି ଆଉ ତାର ମେଡ଼ିକାଲ କଲେଜରେ ଆଡ଼ମିସନ୍ ଅବା ନେବା କେଉଁଠି ?

ଦିନକର ରବିବାର ଦ୍ୱିପହରବେଳେ ସୁରେଶ ବହୁତ ଖୋଜାଖୋଜି କରି ଗୋଟିଏ ଘିନଘିନ ଗ୍ଳାନିବାସରେ ଆସି ପହଞ୍ଚିଲା । ଘର ଭିତରକୁ ସିଧା ପଶିଯାଇ ସେ ଦେଖିବାକୁ ପାଇଲା—ଗୋଟିଏ ଅନ୍ଧକାରାଚ୍ଛନ୍ନ ସନ୍ତସନ୍ତିଆ କୋଠରୀ ମଝିରେ ଚ୍ଛିଣ୍ଡା ଆସନ ପକାଇ ଛଅ ସାତଜଣ ବ୍ୟକ୍ତି ଖାଇ ବସିଛନ୍ତି ।

ମହିମ ତାର ବନ୍ଧୁକୁ ଅକସ୍ମାତ୍ ଦେଖିପକାଇ କହି ଉଠିଲା—ହଠାତ୍ ବସା ବଦଳାଇବାକୁ ପଡ଼ିଲା । ତେଣୁ ତୋତେ ଖବର ଦେଇ ପାରିଲି ନାହିଁ । କିପରି ଖୋଜିକରି ପାଇଲୁ ?

ସୁରେଶ ପ୍ରଶ୍ନର କୌଣସି ଉତ୍ତର ନ ଦେଇ ଖପ କରି ଏରୁଣ୍ଡି ବନ୍ଧ ଉପରେ ବସି ପଡ଼ିଲା ଏବଂ ସେମାନଙ୍କର ଖାଦ୍ୟ ପ୍ରତି ଏକ ଦୃଷ୍ଟିରେ ଚାହିଁରହିଲା । ଅତ୍ୟନ୍ତ ମୋଟା ଚାଉଳ ଭାତ, ପାଣି ପରି ଏକରକମ ଡାଲି, ଶାଗ, କଖାରୁ ଡଙ୍କ ଏବଂ ସାରୁ ମିଶା ଗୋଟିଏ ତରକାରୀ ଏବଂ ତାହାରି ପାଖେ ପାଖେ ଖଣ୍ଡେ କି ଦୁଇ ଖଣ୍ଡ ପୋଡ଼ା ପୋଡ଼ା କଖାରୁ ଭଜା । ଦହି ନାହିଁ, ଦୁଧ ନାହିଁ, କୌଣସି ପ୍ରକାର ମିଠା ନାହିଁ, ଏପରିକି ଟିକିଏ ମାତ୍ର ମାଛ ମଧ୍ୟ କାହାରି ପତ୍ରରେ ପଡ଼ିବାର ଦେଖିଲା ନାହିଁ ।

ସମସ୍ତଙ୍କ ସହିତ ମହିମ ଅମ୍ଳାନ ମୁହଁରେ ସନ୍ତୋଷରେ ଏହିଗୁଡ଼ିକ ଭୋଜନ କରିବାରେ ଲାଗିଥାଏ । କିନ୍ତୁ ଏ ଦୃଶ୍ୟ ଦେଖି ସୁରେଶର ଦୁଇ ଆଖିରେ ଲୁହ ଭରି ଉଠିଲା । ସେ କୌଣସିମତେ ଲୁହ ପୋଛି ଠିଆ ହେଲା । (ସାମାନ୍ୟ କାରଣରେ ସୁରେଶ ଆଖିରେ ଏପରି ଲୁହ ମଧ୍ୟ ଆସିଥାଏ )

ଖାଇ ସାରିବା ପରେ ମହିମ ତାହାର ଭ୍ରେଷ୍ଟ ଶଯ୍ୟାଟି ଉପରେ ଯେତେବେଳେ ବନ୍ଧୁକୁ ଆଣି ବସାଇଲା, ସେତେବେଳେ ରୁଦ୍ଧ କଣ୍ଠରେ ସୁରେଶ କହିଲା—ଥରକୁ ଥର ତୋର ଅତ୍ୟାଚାର ଆଉ ସହି ପାରିବି ନାହିଁ, ମହିମ ।

ମହିମ ନିର୍ବାହ ଭାବରେ ପ୍ରଶ୍ନ କଲା—ତା'ର ମାନେ ?

ସୁରେଶ କହିଲା—ଏପରି କଦର୍ଯ୍ୟ ଘର ଯେ ସହର ଭିତରେ ଥାଇ ପାରେ, ଏପରି ଭୟଙ୍କର ଖରାପ ଖାଦ୍ୟ ଯେ କୌଣସି ମନୁଷ୍ୟ ମୁହଁରେ ଦେଇପାରେ, ଆଖିରେ ନ ଦେଖିଥିଲେ ହୁଏତ ମୁଁ ବିଶ୍ୱାସ କରି ନ ଥାନ୍ତି । ସେ ଯାହା ହେଉ, ତୁ ଏଭଳି ଯାଗାର ସନ୍ଧାନ ପାଇଲୁ ଅବା କିପରି ଏବଂ ତୋର ପୁରୁଣା ବସା, ସେ ଯେତେ ମନ୍ଦ ହେଉ ପଛେ ଏହାଠାରୁ ଯଥେଷ୍ଟ ଭଲ ଥିଲା, ତାକୁ ଅବା ପରିତ୍ୟାଗ କଲୁ କାହିଁକି ?

ବନ୍ଧୁର ସ୍ନେହ, ବନ୍ଧୁ ବୁକୁରେ ଆଘାତ କଲା । ମଦନ ଆଉ ତାର ନିର୍ବିକାର ଗାମ୍ଭୀର୍ଯ୍ୟ ବଜାୟ ରଖି ପାରିଲା ନାହିଁ, କମ୍ପିତ କଣ୍ଠରେ କହିଲା—ସୁରେଶ, ତୁ ମୋର ଗାଆଁର ଘର ଦେଖି ଥିଲେ, ବୁଝି ପାରନ୍ତୁ ମୋର ଏ ବସାରେ କିଛି ମାତ୍ର କଷ୍ଟ ହେଉନାହିଁ । ଆଉ ଖାଇବା ? ଆଉ ପାଞ୍ଚଜଣ ଭଦ୍ର ସନ୍ତାନ ଯାହା ସ୍ୱଚ୍ଛନ୍ଦରେ ଖାଇ ପାରନ୍ତି ମୁଁ ଅବା ନପାରିବ କାହିଁକି ?

ସୁରେଶ ଉତ୍ତେଜିତ ହୋଇ କହି ଉଠିଲା—ଏଠାରେ କାହିଁକର ପ୍ରଶ୍ନ ଉଠୁ ନାହିଁ । ଭଲ ମନ୍ଦ ସଂସାରରେ ଅବଶ୍ୟ ଅଛି । ଭଲ, ଭଲ ହିଁ ଲାଗେ । ମନ୍ଦ ଯେ ମନ୍ଦ ଲାଗେ ଏଥିରେ କୌଣସି ସନ୍ଦେହ ନାହିଁ । ମୁଁ କେବଳ ଜାଣିବାକୁ ଚାହୁଁଛି ତୋର ଏଭଳି ଦୁଃଖ ସହିବାର କ'ଣ ନିହାତି ଦରକାର ?

ମଦନ ଚୁପି ଚୁପି ହସିବାକୁ ଲାଗିଲା । କୌଣସି ଉତ୍ତର ଦେଲା ନାହିଁ ।

ସୁରେଶ କହିଲା—ତୋର ଦରକାର କଥା ତୋ ପାଖରେ ଥାଉ । ମୁଁ ଜାଣିବାକୁ ମଧ୍ୟ ଇଚ୍ଛା କରୁନାହିଁ । କିନ୍ତୁ ତୋତେ ଏଠାରୁ ଉଦ୍ଧାର କରି ନେଇଯିବା ମୋର ନିହାତି ଦରକାର । ମୁଁ ଗାଡ଼ି ଡାକି ତୋର ଜିନିଷପତ୍ର ସବୁ ଏହିକ୍ଷଣି ଆମ ଘରକୁ ନେଇଯିବି । ତୋତେ ଯଦି ଏହିଠାରେ ଏହିପରି ଛାଡ଼ିଯିବି ତେବେ ମୋ-ଆଖିକୁ ନିଦ ଆସିବ ନାହିଁ କି ତୁଣ୍ଡକୁ ଅନ୍ନ ରୁଚିବ ନାହିଁ । ତୋର ବସାର ଚାକରକୁ ଡାକ । ସେ ଗୋଟାଏ ଗାଡ଼ି ନେଇ ଆସୁ । ଏତିକି କହି ସୁରେଶ ମଦନକୁ ଉଠାଇ ଦେଇ ନିଜ ହାତରେ ତାର ବିଛଣାକୁ ଗୋଟାଇ ଲାଗିଲା ।

ମଦନ ଟିକେ ଓଟରି କରି ବାଧା ନ ଦେଇ ଶାନ୍ତ ଏବଂ ଗମ୍ଭୀର ସ୍ୱରରେ କହିଲା ପାଗଳାମି କରନା ସୁରେଶ ।

ସୁରେଶ ମୁହଁ ଟେକି କହିଲା—ପାଗଳାମି କ'ଣ ? ତୁ କ'ଣ ଯିବୁ ନାହିଁ ?

: ନା.

: ଯିବୁ ନାହିଁ କାହିଁକି ? ମୁଁ କ'ଣ ତୋର କେହି ନୁହେଁ ? ଆମ ଘରକୁ ଗଲେ ତୋର ମାନ ସମ୍ମାନରେ କ'ଣ ଆଞ୍ଚ ଆସିବ ?

: ନା !

: ତେବେ ?

ମଦନ କହିଲା—ସୁରେଶ, ତୁ ମୋର ବନ୍ଧୁ । ତୋପରି ବନ୍ଧୁ ମୋର ଅନ୍ୟ କେହି ଥିବାର ମୁଁ ଜାଣେ ନାହିଁ । ଏତେ କାଳ ପରେ ସାମାନ୍ୟ ଶରୀରର ଆରାମ

ପାଇଁ ଏତେ ବଡ଼ ବନ୍ଧୁକୁ ହରାଇ ବସିବ ? ତୁ କ’ଣ ମୋତେ ଅବୋଧ ବୋଲି ଭାବୁଛୁ ?

ସୁରେଶ କହିଲା—ବନ୍ଧୁତ୍ୱ ଜିନଷଟି କେବଳ ଏକା ତୋର ନୁହେଁ, ମଧୁମ । ମୋର ମଧ୍ୟ ତହିଁରେ ଗୋଟିଏ ଭାଗ ଅଛି । ହରାଇବାକୁ ଯଦି ପଡ଼େ, ସେ କ୍ଷତି ଯେ କେତେ ବଡ଼, ସେ କଥା ବୁଝିବାର ଶକ୍ତି କଣ ମୋର ନାହିଁ ? ମୁଁ କ’ଣ ସତେ ଏତେ ବୋକା ? ଆଉ ଏତେ ସତର୍କ-ସାବଧାନ, ଏତେ ହିସାବ ପତ୍ର କରି ନଚଳିଲେ, ଏ ବନ୍ଧୁତ୍ୱ ଯଦି ନଷ୍ଟ ହୋଇଯାଏ ତ ଯାଉ ମଧୁମ । ଏପରି କି ଅବା ତାର ମୂଲ୍ୟ ଯେ, ସେଥିପାଇଁ ଶରୀରର ଆରାମଟିକୁ ଉପେକ୍ଷା କରିବାକୁ ପଡ଼ିବ ?

ମଧୁମ ହସି କରି କହିଲା—ତୁ କ’ଣ ଭାବୁଛୁ; ସଉକ କରି ଦୁଃଖ ସହିବା ପାଇଁ ମୁଁ ଏଠାକୁ ଆସିଛି ? ତାହା ଆଦୌ ସତ୍ୟ ନୁହେଁ ।

ସୁରେଶ କହିଲା—ବେଶ୍ ତ ସତ୍ୟ ନ ହେଲେ ନ ହେଉ । ମୁଁ ମଧ୍ୟ କାରଣ ଜାଣିବାକୁ ଚାହୁଁ ନାହିଁ । କିନ୍ତୁ ଯଦି ଟଙ୍କା ସଞ୍ଚୟ କରିବା ତୋର ଉଦ୍ଦେଶ୍ୟ ହୁଏ ତେବେ ଆମ ବସାରେ ଆସି ରହ । ସେଥିରେ ତୋର ଉଦ୍ଦେଶ୍ୟ ତ ମାଟି ହୋଇଯିବ ନାହିଁ ?

ମଧୁମ ମୁଣ୍ଡ ହଲାଇ ସଂକ୍ଷେପରେ କହିଲା; ବର୍ତ୍ତମାନ ଥାଉ । ଯଦି ଦରକାର ହୁଏ, ତୋତେ ଜଣାଇବ ।

ସୁରେଶ ଜାଣେ, ମଧୁମକୁ ତାର ସଂକଳ୍ପରୁ ଟଳାଇବା ବଡ଼ ଅସାଧ୍ୟ । ସେ ଆଉ ଜିଦ୍ ନ କରି ଏକ ପ୍ରକାର ରାଗିକରି ଚାଲିଗଲା ସିନା କିନ୍ତୁ ବନ୍ଧୁର ଏହିପରି ରହିବା ଏବଂ ଖାଇବାର ବ୍ୟବସ୍ଥାକୁ ଆଖିରେ ଦେଖି ଆସିଲା ପରଠାରୁ ତାର ମନରେ ସତେ ଯେପରି କିଏ ଛୁଞ୍ଚି ଫୋଡ଼ିବାକୁ ଲାଗିଲା ।

ସୁରେଶ ଧନୀର ସନ୍ତାନ ଏବଂ ମଧୁମକୁ ଅକପଟ ଭାବରେ ଭଲପାଏ । ତାର ଅନ୍ତରର ଆକାଙ୍କ୍ଷା ସେ କୌଣସି ମତେ ବନ୍ଧୁକୁ ସାହାଯ୍ୟ କରୁ । କିନ୍ତୁ ଅଦ୍ୟାବଧି ମଧୁମକୁ କୌଣସି ଦିନ ସାହାଯ୍ୟ ନେବା ପାଇଁ ସେ ପ୍ରବର୍ତ୍ତାଇ ପାରି ନାହିଁ । ଆଜି ମଧ୍ୟ ପ୍ରବର୍ତ୍ତାଇ ପାରିଲା ନାହିଁ ।

ପାଞ୍ଚ ବର୍ଷ ପରେ ଦୁଇ ବନ୍ଧୁଙ୍କ ଭିତରେ ଏହିପରି କଥାବାର୍ତ୍ତା ହେଉଥିଲା—

: ତୋ ଉପରେ ଯେ ମୋର କେତେ ଶ୍ରଦ୍ଧା ଥିଲା ମହିମ, ତାହା କ'ଣ କୁହାଯାଇ ପାରେ ?

: କହିବା ପାଇଁ ମୁଁ ତୋତେ ତ ବାଧ କରୁନାହିଁ, ସୁରେଶ ।

: ସେ ଶ୍ରଦ୍ଧା ବୋଧ ହୁଏ ଆଉ ନାହିଁ ?

: ନ ଥିଲେ ତୋତେ ଯେ ଦଣ୍ଡ ଦେବ, ଏଭଳି ଭୟ ତ କେତେବେଳେ ଦେଖାଇ ନାହିଁ ।

: ତୋତେ କପଟତା ଦୋଷରେ ଦୋଷୀ କରିବାକୁ ତୋ ଶତ୍ରୁ ମଧ୍ୟ ସାହାସ କରି ପାରିବ ନାହିଁ ।

: ଶତ୍ରୁ ପାରିବେ ନାହିଁ ବୋଲି ମିତ୍ର ଯେ କରି ପାରିବେ ନାହିଁ, ଦର୍ଶନ ଶାସ୍ତ୍ରରେ ଏପରି ଅନୁଶାସନ ତ ନାହିଁ ।

: ଛିଃ, ଛିଃ, ଶେଷ କାଳରେ ତୁ ଗୋଟାଏ ବ୍ରାହ୍ମ ଝିଅ ହାତରେ ଧରା ଦେଲୁ ? କ'ଣ ଅଛି ତା'ର ? ଏଇ ଶୁଖିଲା କାଠ ଭଳି ଚେହେରା, ବନ୍ଧ ମୁଖସ୍ଥ କରି କରି ଦେହରେ ଟୋପାଏ ରକ୍ତ କେଉଁଠି ନାହିଁ । ଠେଲି ଦେଲେ ଦେହରୁ ଅଧେ ଖସି ପଡ଼ିବ ବୋଲି ମନରେ ଭୟ ହୁଏ । କଣ୍ଠର ସ୍ୱରଟା ଏପରି ଚିଁ ଚିଁ ଯେ ଶୁଣିଲେ ଘୃଣା ଆସେ ।

: ତାହା ହୁଏତ ସତ୍ୟ ।

: ଦେଖ ମହିମ, ତୁମ ପଲ୍ଲୀ ଗ୍ରାମର ଲୋକ, ଯେଉଁମାନେ ବ୍ରାହ୍ମ ଝିଅ କେବେ ଦେଖିନାହାନ୍ତି, ଝିଅ ପିଲା ଇଂରାଜୀରେ ଚିଠିରେ ଠିକଣା ଲେଖି ପାରନ୍ତି ଦେଖି ଯେଉଁମାନେ ଆଶ୍ଚର୍ଯ୍ୟ ହୋଇ ଯାଆନ୍ତି; ସେମାନେ ଗୃହଯାଉଥିଲେ ଯେଉଁମାନେ ସମ୍ଭ୍ରମରେ ଆଡ଼େଇ ହୋଇ ଯାଇ ଠିଆ ହୁଅନ୍ତି, ସେମାନଙ୍କ ଥଟ୍ଟା କଲେ ସାଜିବ । ସେମାନଙ୍କୁ ବସ୍ତୁମ୍ବରେ ଅଭିଭୂତ କରିଦେଲେ ସେମାନେ ଏମାନଙ୍କୁ ଦେବୀ ମନେ କରି ପାଦତଳେ ମୁଣ୍ଡ ଲଗାଇ ଦେବେ । କିନ୍ତୁ ଆମର ଘର ତ ଏଇ ପଡ଼ା ଗାଆଁରେ ନୁହେଁ । ଆମକୁ ତେଣୁ ଏତେ ସହଜରେ ଭୁଲାଇ ହେବନାହିଁ ।

: ମୁଁ ତୋତେ ଶପଥ କରି କହୁଛି ସୁରେଶ, ତୁମମାନଙ୍କ ସହରର ଲୋକ ମାନଙ୍କୁ ଭୁଲାଇ ଦେବା ପାଇଁ ମୋ ମନରେ କୌଣସି ଦୁରଭିସନ୍ଧି ନାହିଁ । ମୁଁ ତାକୁ

ନେଇ ଆମ ପଲ୍ଲୀ ଗ୍ରାମରେ ରଖିବ । ସେଥିରେ ତୋର ତ ଆଉ କିଛି ଆପତ୍ତି କରିବାର ନାହିଁ ?

: ସୁରେଶ ରାଗି ଉଠି କହିବାକୁ ଲାଗିଲା—ଆପତ୍ତି ନାହିଁ ? ଶତ, ସହସ୍ର, ଲକ୍ଷ, କୋଟି ଥର ଆପତ୍ତି ଅଛି । ତୁ ସମସ୍ତ ଜଗତର ବରେଣ୍ୟ, ପୂଜନୀୟ ହିନ୍ଦୁ ସନ୍ତାନ ହୋଇ, ଗୋଟାଏ ରମଣୀର ମୋହରେ ଜାତି ହରାଇବୁ ? ମୋହ ! ଥରଟିଏ ତା'ର ଜୋତା, ମୋଜା, ସୌଖୀନ ପୋଷାକ ବଦଳାଇ ଆମ ମାନଙ୍କ ଗୃହଲକ୍ଷ୍ମୀଙ୍କ ଭଳି ରଙ୍ଗ ଶାଢ଼ୀ ପିନ୍ଧାଇ ଦେଇ ଦେଖ ତୋର ମୋହ କଟୁଛି କି ନାହିଁ ? କ'ଣ ଅଛି ତା'ର ? ବେଶ୍ ତ ତୋର ଯଦି ପଶମ ଆଉ ସିଲ୍‌କ ପୋଷାକ ଏତେ ଦରକାର, କଲିକତା ସହରରେ ଦରଜୀର ତ ଅଭାବ ନାହିଁ । ଖଣ୍ଡିଏ ଚିଠିରେ ଠିକଣା ଲେଖିବାକୁ ତୋତେ ତ ଆଉ ବ୍ରାହ୍ମ-ଝିଅର ଦ୍ୱାରସ୍ଥ ହେବାକୁ ହେବନାହିଁ, ତୋର ଅସମୟରେ ସେ କ'ଣ ମସଲା ବାଟି, ହଳଦୀ କୁଟି ତୋତେ ମୁଠାଏ ଭାତ ରାନ୍ଧି ଦେଇ ପାରିବ ? ଦେହ ଅସୁସ୍ଥ ହେଲେ ତୋର କ'ଣ ସେବା କରି ପାରିବ ? ସେହିଭଳି ଶିକ୍ଷା କ'ଣ ତା'ର ଅଛି ? ଭଗବାନ ନ କରନ୍ତୁ ସେ ଯେପରି ତୋର ଦୁଃସମୟରେ ତୋତେ ଛାଡ଼ି ଚାଲି ନଯାଏ ।

ମହିମ ଚୁପ୍ ହୋଇ ରହିଲା ।

ସୁରେଶ ପୁନରାୟ କହିବାକୁ ଲାଗିଲା—ମହିମ ତୁ ଜାଣୁ । ମୁଁ ତୋର ମଙ୍ଗଳ ବ୍ୟତୀତ ଭୁଲରେ କେବେ କ୍ଷଣକ ପାଇଁ ତୋର ଅମଙ୍ଗଳ ଚିନ୍ତା କରି ପାରେ ନାହିଁ । ମୁଁ ଅନେକ ବ୍ରାହ୍ମ ମହିଳା ଦେଖିଛି । ସେମାନଙ୍କ ଭିତରେ ଗୋଟିଏ କିମ୍ବା ଦୁଇଟି ଯେ ଭଲ ନ ଦେଖିଛି ତାହା ନୁହେଁ । କିନ୍ତୁ ଆମମାନଙ୍କ ହିନ୍ଦୁ ମହିଳାମାନଙ୍କ ସହିତ ସେମାନଙ୍କର ତୁଳନା କରାଯାଇ ପାରେ ନା । ବିବାହ କରିବା ପାଇଁ ତୋର ଯଦି ପ୍ରବୃତ୍ତି ହୋଇଥିଲା; ତେବେ ମୋତେ କହିଲୁ ନାହିଁ କାହିଁକି ? ଆଚ୍ଛା, ଯାହା ହେବାର ତ ଏଣିକି ହୋଇଗଲାଣି । ତୋର ଆଉ ସେଠାକୁ ଯିବା ପ୍ରୟୋଜନ ନାହିଁ । ମୁଁ କଥା ଦେଉଛି, ମାସକ ଭିତରେ ତୋ ପାଇଁ ଏପରି ଗୋଟିଏ କନ୍ୟା ବାଛି ଦେବି ଯେ ଜୀବନରେ କେତେବେଳେ ହେଲେ ଦୁଃଖ ପାଇବୁ ନାହିଁ । ଯଦି ଯୋଗାଡ଼ କରି ନ ପାରେ ତେଣିକି ପଛେ ତୁ ତୋର ମନଇଚ୍ଛା ବିବାହ କର କିମ୍ବା ଏହି ବ୍ରାହ୍ମ-ଝିଅଟିର ପାଦତଳେ ମୁଣ୍ଡିଆ ମାର ସେଥିପାଇଁ ମୋର ଆପତ୍ତି ନାହିଁ । କିନ୍ତୁ ଏଇ ଗୋଟିଏ ମାସ ଧୈର୍ଯ୍ୟ ଧରି ଆମର ଆଶୈଶବ ବନ୍ଧୁତ୍ୱର ମର୍ଯ୍ୟାଦା ରଖିବାକୁ ହେବ । କହ; ରଖିବୁ ତ ?

ମଧୁସ ପୂର୍ବପର ମୌନ ହୋଇ ରହିଲା । ହିଁ କି ନାହିଁ କିଛି ପଦେ ହେଲେ କହିଲା ନାହିଁ । କିନ୍ତୁ ବନ୍ଧୁକୁ ଶୁଭକାମନା ପାଇଁ ବନ୍ଧୁ କିପରି ଭାବରେ ମର୍ମାନ୍ତିକ ବିଚଳିତ ହୋଇ ପାରେ, ତାହା ସମ୍ପୂର୍ଣ୍ଣ ଭାବେ ଅନୁଭବ କରି ପାରିଲା ।

ସୁରେଶ କହିଲା—ମନେ ପକାଇଲୁ ମଧୁସ, ତୁ ଯେତେବେଳେ ବ୍ରାହ୍ମ ନ ହୋଇ ପ୍ରଥମେ ପ୍ରଥମେ ବ୍ରାହ୍ମ ମନ୍ଦିରକୁ ଯିବା ଆସିବା ଆରମ୍ଭ କଲୁ, ସେତେବେଳେ ମୁଁ ତୋତେ ନିଷେଧ କରି ନ ଥିଲି ? ଏତେ ବଡ଼ କଲିକତା ସହରରେ କ'ଣ ଗୋଟିଏ ବୋଲି ହିନ୍ଦୁ ମନ୍ଦିର ନ ଥିଲା ଯେ ଯାହା ଫଳରେ ଏପରି କପଟତା ତୋ ପକ୍ଷରେ ଆବଶ୍ୟକ ଥିଲା ? ଏପରି ଭାବରେ ଗୋଟାଏ କିଛି ନା କିଛି ବିଡ଼ମ୍ବନା ଭିତରେ ଯେ ଅବଶେଷରେ ଜଡ଼ିତ ହୋଇ ପଡ଼ିବୁ, ଏକଥା ମୁଁ ସେତେବେଳରୁ ସଂଦେହ କରିଥିଲି ।

ମଧୁସ ଏଥର ସାମାନ୍ୟ ହସି କହିଲା—ମୋର ବ୍ରାହ୍ମ ମନ୍ଦିରକୁ ଯିବା ଆସିବାରେ ଆଦୌ କପଟତା ନ ଥିଲା । କିନ୍ତୁ ଗୋଟିଏ ପ୍ରଶ୍ନ ତୋତେ କହିବି ସୁରେଶ, ତୁ ନିଜେ ତ ଭଗବାନଙ୍କୁ ମାନୁନୁ ଆଉ ହିନ୍ଦୁ ଠାକୁର ଦେବତାଙ୍କ ଭକ୍ତ କିପରି ସାଜି ବସିଲୁ ? ମୁଁ ବ୍ରାହ୍ମ ମନ୍ଦିରକୁ ଯାଏ ଏଥିରେ ତୋର ଯାଏ ଆସେ କେତେ ?

ସୁରେଶ ଦୃପ୍ତ ସ୍ୱରରେ କହିଲା—ଯାହା ନାହିଁ, ତାହାକୁ ମାନିବାକୁ ମୁଁ ପ୍ରସ୍ତୁତ ନୁହେଁ । ଭଗବାନ ନାହାଁନ୍ତି । ଠାକୁର ଦେବତା ମିଛ. କିନ୍ତୁ ଯାହା ଅଛି ତାହାକୁ ମୁଁ ଅସ୍ୱୀକାର କରି ନାହିଁ । ସମାଜକୁ ଶ୍ରଦ୍ଧା କରେ । ମନୁଷ୍ୟକୁ ପୂଜା କରେ । ମୁଁ ଜାଣେ ମନୁଷ୍ୟର ସେବା କରିବା ହିଁ ମନୁଷ୍ୟ ଜନ୍ମର ଚରମ ସାର୍ଥକତା । ଯେତେବେଳେ ହିନ୍ଦୁ ବଂଶରେ ଜନ୍ମ ଗ୍ରହଣ କରିଛି ସେତେବେଳେ ହିନ୍ଦୁ ସମାଜକୁ ରକ୍ଷା କରିବା ମୋର କର୍ତ୍ତବ୍ୟ । ମୁଁ ପ୍ରାଣପଣେ ଚେଷ୍ଟା କରି ତୋତେ ବ୍ରାହ୍ମ ଘରେ ବିବାହ କରି, ବ୍ରାହ୍ମଦଳ ବୃଦ୍ଧି କରିବାକୁ ଦେବି ନାହିଁ । କେଦାର ମୁଖାର୍ଜିଙ୍କର ଝିଅକୁ ବିବାହ କରିବୁ ବୋଲି କ'ଣ କଥା ଦେଇ ସାରିଛୁ ?

: ନା, କଥା ଯାହାକୁ କହନ୍ତି ତାହା ଏପର୍ଯ୍ୟନ୍ତ ଦେଇ ନାହିଁ ।

: ଦେଇ ନାହୁଁ ତ ? ବେଶ ! ତେବେ ଚୁପ୍ କରି ବସି ରହ । ମୁଁ ଏଇ ମାସ ଭିତରେ ତୋର ବିବାହ କରି ଦେବି ।

: ମୁଁ ଯେ ବିବାହ ପାଇଁ ପାଗଳ ହୋଇ ଉଠିଛି, ଏକଥା ତୋତେ କିଏ କହିଲା ? ତୁ ଚୁପ କରି ବସିଥା, ଆଉ କେଉଁଠି ବିବାହ କରିବା ମୋ ପକ୍ଷରେ ଅସଂଭବ ।

: ଅସଂଭବ କାହିଁକି ? କ'ଣ କରିବସିଛୁ ? ଏଇ ସ୍ତ୍ରୀ ଲୋକଟାକୁ ଭଲ ପାଇ ବସିଛୁ ତ ?

: ସୁରେଶ ତୁ କିନ୍ତୁ ଏଇ ଭଦ୍ର ମହିଳାଙ୍କ ସଂପର୍କରେ କଥାବାର୍ତ୍ତା କଲାବେଳେ ତାହାଙ୍କୁ ଉଚିତ୍ ସମ୍ମାନ ଦେବା ଆବଶ୍ୟକ ।

: ସମ୍ମାନର ସହିତ କଥା କହିବା ଅବଶ୍ୟ ମୋତେ ଜଣା । ମୋତେ ସେ କଥା ଶିଖାଇବାକୁ ପଡ଼ିବ ନାହିଁ । ମୁଁ ସେହି ସଂଭ୍ରାନ୍ତ ମହିଳାଟିର ବୟସ କେତେ ଜାଣିପାରେ କି ?

: ଜାଣେ ନାହିଁ ।

: ଜାଣୁ ନାହିଁ ? କୋଡ଼ିଏ, ପଚିଶ, ତିରିଶ, କିମ୍ବା ଆଉ ଅଧିକ କିଛି ହେବ ବି ଜାଣୁନା ?

: ନା ।

: ତୋ ଠାରୁ ଶ୍ରେଷ୍ଠ କି ବଡ଼—ତା ମଧ୍ୟ ଜାଣୁ ନା ?

: ନା ।

: ଯେତେବେଳେ ତୋତେ ଫାନ୍ଦରେ ପକାଇ ଦେଇଛି ସେତେବେଳେ ନିତାନ୍ତ ପିଲା ହେବ ନାହିଁ—ଏକଥା ଅନୁମାନ କରିବା ବୋଧହୁଏ ଅସଙ୍ଗତ ହେବ ନାହିଁ ? କ'ଣ କହୁଛୁ ?

: ନା, ତୋ ପକ୍ଷରେ କିଛି ଅସଙ୍ଗତ ନୁହେଁ । କିନ୍ତୁ ମୋର ବର୍ତ୍ତିମାନ ଟିକିଏ କାମ ଅଛି ସୁରେଶ । ବାହାରକୁ କିଛି ସମୟ ପାଇଁ ଯିବାକୁ ଚାହେଁ ।

ସୁରେଶ କହିଲା—ଦେଖ ମହିମ, ମୋର ମଧ୍ୟ ବର୍ତ୍ତିମାନ କିଛି କାମ ନାହିଁ । ଚାଲ୍, ତୋ ସଙ୍ଗରେ ଟିକିଏ ବୁଲି ଆସିବି ।

ଦୁଇ ବନ୍ଧୁ ରାସ୍ତାକୁ ବାହାରି ପଡ଼ିଲେ । କିଛିକ୍ଷଣ ଚୁପ କରି ଚାଲିବା ପରେ ସୁରେଶ ଧୀରେ ଧୀରେ କହିଲା—ତୋତେ ଆଜି ଯେପରି ଭାବରେ ବ୍ୟଥା ଦେଲି ନା, ଏକଥା ବୋଧହୁଏ ବୁଝାଇ କହିବାର ପ୍ରୟୋଜନ ନାହିଁ ।

ମହିମ କହିଲା—ନା ।

ସୁରେଶ ସେହିପରି ମୃଦୁ ସ୍ୱରରେ ପ୍ରଶ୍ନ କଲା—କାହିଁକି କଷ୍ଟ ଦେଲି ଜାଣୁ ମହିମ ?

ମହିମ ହସିଲା, କହିଲା ପୂର୍ବାପର ସମ୍ପର୍କ ଜାଣିଥିଲେ ବୁଝିବାକୁ ଅସୁବିଧା ହୋଇ ନ ଥାନ୍ତା ।

ମନ୍ମଥର ଗୋଟିଏ ହାତ ସୁରେଶ ହାତ ମୁଠାରେ ଥିଲା । ସୁରେଶ ନରମ ଚଉରେ ସେହି ହାତମୁଠାରେ ସାମାନ୍ୟ ଚାପ ଦେଇ କହିଲା—ନା, ମନ୍ମଥ ତୋତେ ବୁଝାଇବାକୁ ମୁଁ ଚାହେଁ ନାହିଁ । ସଂସାରରେ ସମସ୍ତେ ଭୁଲ ବୁଝି ପାରନ୍ତି କିନ୍ତୁ ତୁ ମୋତେ କଦାପି ଭୁଲ ବୁଝି ପାରିବୁ ନାହିଁ । ତଥାପି ମୁଁ ଆଜି ତୋ ସାମ୍ନାରେ କହୁଛି ତତେ ମୁଁ ଯେତିକି ଭଲ ପାଏ ତୁ ତାର ଅଧେ ସୁଦ୍ଧା ମୋତେ ଭଲ ପାଉନା । ତୁ ମାନ କି ନ ମାନ କିନ୍ତୁ ତୋର ଏତେ ଟିକିଏ କଷ୍ଟ ମୁଁ ଆଦୌ ସହ୍ୟ କରି ପାରେ ନାହିଁ । ପିଲାଦିନରୁ ଏଇଥିପାଇଁ କେତେ କଳିକଜିଆ ହୋଇ ନଯାଇଛି, ଟିକିଏ ମନେ ପକାଇଲେ ଜାଣିପାରିବୁ । ବର୍ତ୍ତମାନ ଏତେ କାଳ ପରେ ଯାହା ପାଇଁ ମୋତେ ପରିତ୍ୟାଗ କରୁଛୁ ମନ୍ମଥ, ତାକୁ ଯେବେ ଜୀବନରେ ସୁଖୀ ହେବୁ ବୋଲି ଯଦି ନିଶ୍ଚିନ୍ତ ଜାଣୁଥାନ୍ତି, ମୋର ସମସ୍ତ ଦୁଃଖ ହସ ହସ ମୁହଁରେ ମୁଁ ସହ୍ୟ କରିଥାନ୍ତି ଏବଂ ବର୍ତ୍ତମାନ ପଦଟିଏ ଏପରି କଥା କହୁ ନ ଥାନ୍ତି ।

ମନ୍ମଥ କହିଲା—ତାକୁ ନେଇ ସୁଖୀ ନ ହୋଇ ପାରେ, କିନ୍ତୁ ତୋତେ ଯେ ତ୍ୟାଗ କରିବ ତାହା ତୁ କିପରି ଜାଣିଲୁ ?

: ତୁ କର କି ନକର । କିନ୍ତୁ ମୁଁ ତୋତେ ତ୍ୟାଗ କରିବ ।

: କାହିଁକି ମୁଁ ତୋର ଗୋଟିଏ ବ୍ରାହ୍ମ ବନ୍ଧୁ ହୋଇ ପାରିବ ତ ?

: ନା, କୌଣସି ପ୍ରକାରରେ ନୁହେଁ । ବ୍ରାହ୍ମମାନଙ୍କୁ ମୁଁ ଘୃଣା କରେ । ମୋର ଗୋଟିଏ ହେଲେ ବ୍ରାହ୍ମ ବନ୍ଧୁ ନାହାନ୍ତି ।

: ସେମାନଙ୍କୁ ଘୃଣା କରୁ କାହିଁକି ?

: ତାହାର ଅନେକ କାରଣ ଅଛି । ସେଥିରୁ ଗୋଟିଏ ହେଲା—ଯେଉଁମାନେ ଆମ ସମାଜକୁ ମନ୍ଦ କହି ଛାଡ଼ି ଯାଇଛନ୍ତି, ସେମାନଙ୍କୁ ସ୍ନେହ କରି ମୁଁ କଦାପି ପାଖକୁ ଟାଣି ଆଣିବାକୁ ଚାହେଁ ନାହିଁ । ତୁ ତ ଜାଣୁ ଆମ ସମାଜ ପ୍ରତି ମୋର କେତେ ମମତା । ସେହି ସମାଜକୁ ଯେଉଁମାନେ ଦେଶ ନିକଟରେ, ବିଦେଶ ନିକଟରେ ସମସ୍ତଙ୍କ ସମ୍ମୁଖରେ ଘୃଣ୍ୟ ବୋଲି ପ୍ରତିପାଦିତ କରିବାକୁ ଚାହାନ୍ତି, ସେମାନଙ୍କର ଭଲ ପଣିଆଁ ସେମାନଙ୍କ ନିକଟରେ ରହୁ । ସେମାନେ ଆମର ଶତ୍ରୁ ।

ମନ୍ମଥ ମନେ ମନେ ଅସନ୍ତୁଷ୍ଟ ହୋଇ ଉଠୁଥିଲା । କହିଲା—ବର୍ତ୍ତମାନ କ'ଣ କରାଯିବ ତୁ କହ ।

ସୁରେଶ କହିଲା—ସେଇକଥା ତ କ୍ରମାଗତ ଏତେ ସମୟ ଧରି କହି ଚାଲିଛି ।

: ଆଚ୍ଛା, ଆଉ ଥରେ କହ ।

୨

: ଏଇ ଯୁବତୀ ପ୍ରତି ମୋହ ତୋତେ ଯେକୌଣସି ମତେ ଛାଡ଼ିବାକୁ ହେବ । ଅନ୍ତତଃ ଗୋଟିଏ ମାସ ରୁ ତାହା ସହିତ ଦେଖା ସାକ୍ଷାତ୍ କରିପାରିବୁ ନାହିଁ ।

: କିନ୍ତୁ ସେଥିରେ ଯଦି ମୋହ ନ କଟେ ? ଯଦି ମୋହଠାରୁ ଅଧିକ ବଡ଼ କିଛି ଜିନିଷ ଥାଏ ?

ସୁରେଶ କ୍ଷଣକାଳ ଚିନ୍ତା କରି କହିଲା, ଏସବୁ ମୁଁ ବୁଝେ ନାହିଁ ମହିମ । ମୁଁ କେବଳ ଏତିକି ଜାଣେ, ମୁଁ ତୋତେ ଭଲ ପାଏ ଏବଂ ବେଶୀ ଭଲ ପାଏ ମୋର ସମାଜକୁ । ତେବେ ଥରଟିଏ ମାତ୍ର ଭାବିଦେଖ, ତୋର ପିଲାବେଳର ସେହି ବସନ୍ତ କଥା ଏବଂ ଡଙ୍ଗାରେ ବସି ନଦୀରେ ବୁଡ଼ିଯିବା ବେଳର କଥା । ବିସ୍ମୃତ କାହାଣୀଟା ସ୍ମରଣ କରାଇ ଦେଲି ବୋଲି ମୋତେ ମାଫ୍ କରିବୁ ମହିମ; ମୋର ଆଉ କିଛି କହିବାର ନାହିଁ । ମୁଁ ଯାଉଛି କହି ସୁରେଶ ଦ୍ରୁତପଦରେ ପଛକୁ ଲେଉଟି ଚାଲିଗଲା ।

ସୁରେଶର ଏକ ଦିଗରେ ଶରୀରର ଶକ୍ତି ଯେପରି ଅସାଧାରଣ ଥିଲା, ଅନ୍ୟ ଦିଗରେ ଅନ୍ତରଟା ଥିଲା ସେହିପରି କୋମଳ ଏବଂ ସ୍ନେହଶୀଳ । ପରିଚିତ, ଅପରିଚିତ କାହାର କୌଣସି ଦୁଃଖ କଷ୍ଟ କଥା ଶୁଣିଲେ ସେ କାନ୍ଦି ପକାଏ । ସେ ପିଲାଦିନରୁ ମାଛକୁ ମ' ବୋଲି କହିନାହିଁ । ଜୈନ, ମାରୁଆଡ଼ିଙ୍କ ଦେଖାଦେଖି କେତେଦିନ ଧରି ସେ ସ୍କୁଲ ନଯାଇ ରୁମାଲରେ ସୁଜି ଚିନି ନେଇ ଗଛ ତଳମାନଙ୍କରେ ପିମ୍ପୁଡ଼ି ବସାରେ ସେମାନଙ୍କୁ ଆହାର ଯୋଗାଉଥିଲା । ଜୀବନରେ କେତେଥର ଯେ ମାଛ ମାଂସ ଛାଡ଼ିଛି ଏବଂ ଖାଇବା ପୁଣି ଆରମ୍ଭ କରିଛି ତାର ଇୟତ୍ତା ନାହିଁ । ଯାହାକୁ ଭଲପାଏ, ତା' ପ୍ରତି କ'ଣ କଲେ ସେ ଖୁସି ହେବ, ଏକଥା ସେ ଭାବି ସ୍ଥିରକରି ପାରେନାହିଁ । ସ୍କୁଲରେ ମହିମ ଥିଲା କ୍ଲାସ ମଧ୍ୟରେ ସମସ୍ତ ପିଲାଙ୍କ ମଧ୍ୟରେ ଭଲ ଛାତ୍ର; ଅଥଚ ତାହାର ଜାମା କୁରୁତା ଚିରା ଫଟା, ପାଦର ଚପଲ ଜୀର୍ଣ୍ଣ ପୁରାତନ, ଦେହଟି ଶୀର୍ଣ୍ଣ, ମୁହଁଟି ମ୍ଲାନ—ଏସବୁ ଦେଖି ହିଁ ସେ ତାହା ପ୍ରତି ପ୍ରଥମ ସାକ୍ଷାତରୁ ଆକୃଷ୍ଟ ହୋଇଥିଲା ଏବଂ ଅତି ଅଳ୍ପ ସମୟ ଭିତରେ ଉଭୟଙ୍କର ଏହି ଆକର୍ଷଣ ବନ୍ୟାର ଜଳପରି ଏପରି ବଢ଼ି ଉଠିଲା ଯେ, ସମଗ୍ର ବିଦ୍ୟାଳୟର ପିଲାମାନଙ୍କ ଭିତରେ ଏହା ଏକ ଆଲୋଚନାର ବିଷୟ ହୋଇ ଉଠିଲା । ମହିମ ପରୀକ୍ଷାରେ ବୃତ୍ତିଟି ମାତ୍ର

ଟଙ୍କା ଗ୍ରନ୍ଥବୃତ୍ତିକୁ ସମ୍ବଳ କରି କଲିକତାକୁ ଆସେ ଏବଂ ନିଜ ଗାଁ ର ଜଣେ ଡାଲି ଗୁଡ଼ଲ ଦୋକାନୀ ଘରେ ଆଶ୍ରୟ ନେଇ ସ୍କୁଲରେ ଭର୍ତ୍ତି ହୁଏ । ଏହି ସମୟ-ଠାରୁ ସୁରେଶ ବନ୍ଧୁକୁ ନିଜ ଘରେ ଆଣି ରଖିବାପାଇଁ ବହୁ ପ୍ରକାରର ଚେଷ୍ଟା କରିଛି କିନ୍ତୁ ତାହାକୁ ରାଜି କରାଇ ପାରିଲନାହିଁ । ଏହିଠାରେ ରହି ମହିମ କେଉଁଦିନ ଅଧାପେଟ ଖାଇ, କୌଣସି ଦିନ ଉପାସ ରହି ଏଣ୍ଟ୍ରାନ୍‌ସ ପାଶ୍ କଲା । ଏହା ପରର ଘଟଣା ମୂଳ ପରିଚ୍ଛେଦରେ ବର୍ଣ୍ଣିତ ହୋଇଅଛି ।

ସେହିଦିନଠାରୁ ସପ୍ତାହ ମଧ୍ୟରେ ସୁରେଶ ମହିମର ଦେଖା ନ ପାଇ, ତାହାର ବସାରେ ଆସି ଉପସ୍ଥିତ ହେଲା । ଆଜି କ'ଣ ଗୋଟାଏ ପର୍ବ ଉପଲକ୍ଷେ ସ୍କୁଲ, କଲେଜ ବନ୍ଦ ଥିଲା । ବସାରେ ପହଞ୍ଚି ଶୁଣିଲା ଯେ ସେଇ ସକାଳୁ ମହିମ ଯାଇଛି ଯେ ଏପର୍ଯ୍ୟନ୍ତ ଫେରିନାହିଁ । ସେ ଯେ ପଟଲଡଙ୍ଗାର କେଦାର ମୁଖାର୍ଜିର ଘରେ ଛୁଟି ଦିନଟା କଟାଇବାକୁ ଯାଇଛି ଏଥିରେ ତାର ତିଳେ ମାତ୍ର ସନ୍ଦେହ ରହିଲା ନାହିଁ ।

ଯେଉଁ ନିର୍ଲ୍ଲଜ ବନ୍ଧୁ ତାହାର ଆଶୈଶବ ବନ୍ଧୁତ୍ୱର ମର୍ଯ୍ୟାଦାକୁ ସାମାନ୍ୟ ଗୋଟାଏ ସ୍ତ୍ରୀ ଲୋକର ମୋହରେ ବିସର୍ଜ୍ଜନ ଦେଇ, ସାତଟା ଦିନ ମାତ୍ର ଧୈର୍ଯ୍ୟ ଧରି ରହି ନ ପାରି ଚାଲିଗଲା, ମୁହୂର୍ତ୍ତକ ଭିତରେ ତାହାରି ବିରୁଦ୍ଧରେ ସୁରେଶ ମନଭିତରେ ଅଗ୍ନ୍ୟୁତ୍ପାତ ଭଳି ବହ୍ନି ପ୍ରଜ୍ୱଳିତ ହୋଇ ଉଠିଲା । ସେ ଦଣ୍ଡେ ବିଳମ୍ବ ନ କରି ଗାଡ଼ିରେ ବସି ସିଧା ପଟଲଡଙ୍ଗା ଅଭିମୁଖେ ଗାଡ଼ି ଚଳାଇବାକୁ କୋଚ-ମ୍ୟାନକୁ ହୁକୁମ କରିଦେଲା ଏବଂ ମନେ ମନେ କହିବାକୁ ଲାଗିଲା, ଆରେ ବେହିୟା ! ଆରେ ଅକୃତଜ୍ଞ ! ତୋର ଯେଉଁ ପ୍ରାଣଟିକୁ ଆଜି ଏଇ ସ୍ତ୍ରୀ ଲୋକଟାକୁ ଦେଇ ଧନ୍ୟ ମନେ କରୁଛୁ, ସେ ପ୍ରାଣଟା ତୋର ଥିଲା କେଉଁଠାରେ ? ନିଜର ପ୍ରାଣକୁ ତୁଚ୍ଛ କରି ଦୁଇଥର କିଏ ତୋତେ ତୋ ପ୍ରାଣକୁ ଫେରାଇ ଦେଇ ପାରିଛି ? ତାହାର ଏତେ ଟିକିଏ ସମ୍ମାନ ବି ରଖି ପାରିଲୁ ନାହିଁ ?

କେଦାର ମୁଖାର୍ଜି ଘର ଗଲିଟା ସୁରେଶକୁ ଜଣାଥିଲା । ସାମାନ୍ୟ ଜଣେ ଦୁଇଜଣଙ୍କୁ ପଚାରିବା ପରେ ଗାଡ଼ି ଆସି ଠିକ୍ ସ୍ଥାନରେ ପହଞ୍ଚିଗଲା । ଗାଡ଼ିରୁ ଅବ-ତରଣ କରି ସୁରେଶ ବେହେରାକୁ ପଚାରି ସିଧା ଉପର ବୈଠକ ଘରେ ଆସି ପ୍ରବେଶ କଲା । ଦେଖିଲା ତଳେ ଶେଯ ଉପରେ ତକିଆ ଉପରେ ଠେସ ଦେଇ ଜଣେ ବୃଦ୍ଧଲୋକ ଖବର କାଗଜ ପଢ଼ିବାରେ ବ୍ୟସ୍ତ ଥିଲେ । ହଠାତ୍ କାହାକୁ ଆସିବାର ଦେଖିପାରି ସେ ମୁହଁ ଟେକି ଚାହିଁବା ମାତ୍ରେ, ସୁରେଶ ନମସ୍କାର କରି ନିଜର ପରିଚୟ

ଦେଇ କହିଲା—ମୋର ନାମ ଶ୍ରୀମାନ ସୁରେଶଚନ୍ଦ୍ର ବନ୍ଦୋପାଧ୍ୟାୟ । ମୁଁ ମଧୁମର ବାଲ୍ୟବନ୍ଧୁ ।

ବୃଦ୍ଧ ପ୍ରତିନମସ୍କାର ଜଣାଇ, ଚଷମାଟି ଆଖିରୁ ଖୋଲି କହିଲେ—ବସନ୍ତୁ ।

ସୁରେଶ ଆସନ ଗ୍ରହଣ କରି କହିଲା— ମଧୁମର ବସାରେ ପହଞ୍ଚି ଶୁଣିଲି ଯେ ସେ ଏଠାରେ ଅଛି । ତେଣୁ ଏଇ ସୁଯୋଗରେ ଆପଣଙ୍କ ସହିତ ବି ସାମାନ୍ୟ ପରିଚୟ ହୋଇପାରିବ ବୋଲି ମନେ କଲି ।

ବୃଦ୍ଧ କହିଲେ—ଆପଣ ଆସିଛନ୍ତି ସେ ମୋର ପରମ ସୌଭାଗ୍ୟ । କିନ୍ତୁ ମଧୁମ ଏଠାକୁ ଦଶ ବାର ଦିନ ହେବ ଆସିନାହାନ୍ତି । ଆଜି ସକାଳେ କେଜାଣି କାହିଁକି ମୋର ତାଙ୍କ କଥା ବେଶୀ ମନେ ପଡୁଥିଲା ।

ସୁରେଶ ମନେ ମନେ ସାମାନ୍ୟ ଆଶ୍ଚର୍ଯ୍ୟ ହୋଇ କହିଲା—କିନ୍ତୁ ତାର ବସାର ଲୋକମାନେ ଯେ କହିଲେ······

ବୃଦ୍ଧ କହିଲେ—ହୁଏତ ଆଉ କେଉଁଠାରେ ଥିଲେ ଥାଇ ପାରନ୍ତି । ଯାହା-ହେଉ ଭଲ ଅଛନ୍ତି ଶୁଣି ଆନନ୍ଦିତ ହେଲି ।

ଏଠାକୁ ଆସିଲାବେଳେ ମନେ ମନେ ଯେଉଁ ଉଦ୍ଧତ ସଙ୍କଳ୍ପ ସୁରେଶ ରଖି ଆସିଥିଲା, ବୃଦ୍ଧଙ୍କ ସମ୍ମୁଖରେ ତାହାକୁ ଠିକ୍ ରଖି ପାରିଲା ନାହିଁ । ତାହାଙ୍କର ଶାନ୍ତ ମୁହଁର ଧୀର ମୃଦୁ କଥାଗୁଡ଼ିକ ତାର ଭିତରର ଉତ୍ତାପ ଅନେକ ପରିମାଣରେ ଶୀତଳ କରିଦେଲା । ତଥାପି ସେ ନିଜର କର୍ତ୍ତବ୍ୟକୁ ଭୁଲି ପାରିଲା ନାହିଁ । ସେ ମନେ ମନେ ଏହା କହି ନିଜକୁ ଉତ୍ତେଜିତ କରିବାକୁ ଚେଷ୍ଟା କରୁଥିଲା ଯେ ଯେତେ ଭଲ ହୁଅନ୍ତୁ ନା କାହିଁକି; କିନ୍ତୁ ବ୍ରାହ୍ମ ଅଟନ୍ତି । ତେଣୁ ଏମାନଙ୍କର ସମସ୍ତ ଶିଷ୍ଟାଚାର କୃତ୍ରିମ । ଏମାନେ ଏହିପରି ବ୍ୟବହାର ଦ୍ୱାରା ଅନ୍ୟମାନଙ୍କୁ ନିର୍ବୋଧ ବନାଇ କାମ ହାସଲ କରି ନିଅନ୍ତି । ଅତଏବ ଏହିଭଳି ଶିକାରୀ ପ୍ରାଣୀମାନଙ୍କ ସମ୍ମୁଖରେ କୌଣସିମତେ ଆତ୍ମ ବିସ୍ମୃତ ହୋଇ କର୍ତ୍ତବ୍ୟ ଭୁଲିଗଲେ ଚଳିବ ନାହିଁ । ଯେପରି ପ୍ରକାରେ ହେଉନା ଏମାନଙ୍କୁ ଶିକାର କରିବା ପାଇଁ ସଦା ସର୍ବଦା ବନ୍ଧୁକକୁ ଉନ୍ମୁକ୍ତ ରଖିବାକୁ ହେବ । ସେ ତାର ଅସଲ କଥା କହିବା ଆରମ୍ଭ କଲା । କହିଲା —ମଧୁମ, ମୋର ବାଲ୍ୟ ବନ୍ଧୁ, ତାହାପରି ବନ୍ଧୁ ହୁଏତ ମୋର ଆଉ ଅନ୍ୟ କେହି ନାହିଁ । ଯଦି ଅନୁମତି ଦିଅନ୍ତି, ତାହାହେଲେ ତାର ସମ୍ବନ୍ଧରେ କିଛି କଥା ଆପଣଙ୍କ ସହିତ ଆଲୋଚନା କରନ୍ତି ।

ବୃଦ୍ଧ ସାମାନ୍ୟ ହସି କରି କହିଲେ—ସ୍ୱଚ୍ଛନ୍ଦରେ କହିପାରନ୍ତି । ଆପଣଙ୍କ ନାମ ତାଙ୍କ ମୁହଁରୁ ମୁଁ ପୂର୍ବରୁ ଶୁଣିଛି ।

ସୁରେଶ କହିଲା—ମହିମ ସହିତ ଆପଣଙ୍କ କନ୍ୟାର ବିବାହ କଣ ସ୍ଥିର ହୋଇ ଯାଇଛି ?

ବୃଦ୍ଧ ଉତ୍ତର ଦେଲେ—ହଁ; ସେହିପରି ଏକରକମର ସ୍ଥିର ହୋଇଛି ।

ସୁରେଶ କହିଲା—ମହିମ କିନ୍ତୁ ଆପଣଙ୍କର ବ୍ରାହ୍ମ ସମାଜଭୁକ୍ତ ନୁହେଁତ ? ତଥାପି ଆପଣ ତାହା ସହିତ କନ୍ୟାର ବିବାହ ଦେବେ ?

ବୃଦ୍ଧ ନୀରବ ରହିଲେ ।

ସୁରେଶ କହିଲା—ଆଚ୍ଛା, ସେ କଥା ବର୍ତ୍ତମାନ ଥାଉ । କିନ୍ତୁ ତାର କିଭଳି ସଙ୍ଗତି, ସ୍ତ୍ରୀ, ପୁତ୍ର, କନ୍ୟା, ପ୍ରତିପାଳନ କରିବାର ଯୋଗ୍ୟତା ଅଛି କି ନାହିଁ, ପଡ଼ା ଗାଆଁରେ ବିରୁଦ୍ଧ ହିନ୍ଦୁ ସମାଜ ମଧ୍ୟରେ ଭଙ୍ଗା ମାଟିକାନ୍ଥ ଘରେ, ଆପଣଙ୍କର କନ୍ୟା ବାସ କରିପାରିବ କି ନାହିଁ, ଯଦି ସେ ମଫସଲରେ ରହି ନ ପାରନ୍ତି ସେତେବେଳେ ମହିମ କି ଉପାୟ କରିବ; ଏ ସବୁ ଚିନ୍ତାକରି ଦେଖିଛନ୍ତି ତ ?

ବୃଦ୍ଧ କେଦାର ମୁଖାର୍ଜି ସିଧା ହୋଇ ବସି ପଡ଼ି କହିଲେ—କାହିଁ ଏସବୁ ବ୍ୟାପାର ତ ମୁଁ ଶୁଣି ନାହିଁ । ମହିମ ମଧ୍ୟ କୌଣସି ଦିନ ଏକଥା ତ କହିନାହିଁ ।

ସୁରେଶ କହିଲା—ମୁଁ କିନ୍ତୁ ଏ ସବୁ ବିଷୟ ଚିନ୍ତା କରି ଦେଖିଛି; ମହିମକୁ କହିଛି, ଏବଂ ଆଜି ଏହି ସବୁ ଅପ୍ରିୟ ପ୍ରସଙ୍ଗ ଉତ୍ଥାପନ କରିବା ପାଇଁ ଆପଣଙ୍କ ନିକଟକୁ ମଧ୍ୟ ଆସିଛି । ଆପଣଙ୍କ କନ୍ୟାର ବିଷୟ ଆପଣ ଚିନ୍ତା କରିବେ, କିନ୍ତୁ ମୋର ଯେ ପରମବନ୍ଧୁ ଏହି ଦାୟିତ୍ୱ କାନ୍ଧ ଉପରକୁ ନେଇ ସାରାଜୀବନ ଜୀବନ୍ମୃତ ହୋଇ ବଞ୍ଚି ରହିବ ସେ ଭଳି ଘଟଣାକୁ ମୁଁ ତ କୌଣସି ମତେ ପ୍ରଶ୍ରୟ ଦେଇ ନ ପାରେ ।

କେଦାର ବାବୁ ମଳିନ ମୁଖରେ କହିଲେ—ଆପଣ ଏସବୁ କ'ଣ କହୁଛନ୍ତି ସୁରେଶ ବାବୁ !

"ବାବା ! ଏତିକି କହି ଘରଭିତରୁ ଜଣେ ସତର ଅଠର ବର୍ଷର ଝିଅ ହଠାତ୍ ବାହାରି ଆସି, ନିଜର ପିତାଙ୍କ ପାଖରେ ଜଣେ ଅପରିଚିତ ଯୁବକଙ୍କୁ ଦେଖି ସ୍ତବ୍ଧ ହୋଇ ଅଟକି ଗଲା ।

କଏ ଅଚଳା ? ଆ—ମା, ବସ । ଲଜ୍ଜ୍ୟା କରୁଛୁ କାହାକୁ ମା ? ଏ ହେଉଛନ୍ତି ଆମ ମଦ୍ଧମର ପରମ ବନ୍ଧୁ ।

ଝିଅଟି ସାମାନ୍ୟ ଆଗକୁ ଆସି ହାତ ଯୋଡ଼ି ସୁରେଶଙ୍କୁ ନମସ୍କାର କଲା । ସୁରେଶ ଚାହିଁ ଦେଖିଲ ଝିଅଟିର ରଙ୍ଗ ଉଜ୍ଜ୍ୱଳ ଶ୍ୟାମଳବର୍ଣ୍ଣ ଏବଂ ଦେହର ଗଠନ ଖୁବ୍ ସୁନ୍ଦର । କପାଳ, ଚିବୁକ, ଲଲାଟ ଏବଂ ମୁହଁର ପ୍ରତ୍ୟେକ ଅଂଶଟି ଅତ୍ୟନ୍ତ ସୁଶ୍ରୀ ଓ ସୁକୁମାର । ଆଖି ଦୁଇଟିରେ ସ୍ଥିର ବୁଦ୍ଧିର ଆଭା । ନମସ୍କାର କରି ସାରି ଝିଅଟି ଅଳ୍ପ ଦୂରରେ ବସିପଡ଼ିଲା । ସୁରେଶ ତାହାର ମୁହଁକୁ ଚାହିଁ ପଲକ ମାତ୍ରେ ମୁଗ୍ଧ ହୋଇ ପଡ଼ିଲା ।

କେଦାର ମୁଖାର୍ଜ୍ଜୀ କହି ଉଠିଲେ—ମଦ୍ଧମର କଥା ଶୁଣିଛୁ ମା ? ସେ କାହିଁକି ଏଠାକୁ ଆସୁନାହିଁ ସେଥିପାଇଁ ମୁଁ ଚିନ୍ତା କରି ମରୁଛି ଆଉ ତୁ ଏଣେ ଶୁଣ୍ । ଏ ଭଦ୍ରଲୋକ ତାହାର ପରମ ବନ୍ଧୁ ବୋଲି ତ କଷ୍ଟ କରି ସବୁ ବିଷୟ ଜଣାଇବାକୁ ଆସିଛନ୍ତି, ନ ହେଲେ କ'ଣ ହୋଇଥାନ୍ତା କହିଲୁ ମା ? କିଏ ଜାଣିଥିଲା ଯେ ସେ ଏପରି ବିଶ୍ୱାସଘାତକ ଏବଂ ମିଥ୍ୟାବାଦୀ । ତାର ପଲ୍ଲୀଗାଁରେ ଗୋଟିଏ ଭଙ୍ଗା ମାଟି ଘର ଅଛି । ତତେ ଖାଇବାକୁ ଦେବ କ'ଣ ? ନିଜର ତ ମୋଟା ଭାତ ଆଉ ଲୁଗାର ସଂସ୍ଥାନ ନାହିଁ । ଓହୋ ! ଏଭଳି ଲୋକ ମନରେ ପୁଣି ଏତେ ବିଷ ଥିଲା ?

କଥା ଶୁଣିସାରି ଅଚଳାର ମୁହଁଟି ପାଣ୍ଡୁର ବର୍ଣ୍ଣ ହୋଇଗଲା ।

ସୁରେଶ ମୁହଁରେ କିଏ ଯେପରି କିଏ କାଳି ବୋଳିଦେଲାପରି ତାକୁ ମନେ ହେଲା । ସେ କାଠ କଣ୍ଢେଇ ଭଳି ନିର୍ବାକ ଝିଅଟିର ମୁହଁକୁ ଚାହିଁ ସ୍ଥିର ହୋଇ ବସି ରହିଲା ମାତ୍ର ।

ସୁରେଶ ଯେପରି ମନେକଲା ତାର ନିଷ୍ଠୁର ସତ୍ୟ ଭାଷଣ ଅଚଳା ମନ ଭିତରେ ଗଭୀର ଭାବରେ କ୍ଷତ ସୃଷ୍ଟି କରିଛି । ନିଜର ପିତା କିନ୍ତୁ ସେ ଦିଗକୁ ଦୃଷ୍ଟିପାତ ନକରି ବରଂଚ କନ୍ୟାକୁ ଇଙ୍ଗିତ କରି କହିବାକୁ ଲଗିଲେ—ସୁରେଶବାବୁ ଆପଣ ଯେ ପ୍ରକୃତ ବନ୍ଧୁର କର୍ତ୍ତବ୍ୟ କରିବାକୁ ଆସିଛନ୍ତି, ଏ କଥା ଆମେମାନେ

କେହି ଭୁଲରେ ମଧ୍ୟ ଅବିଶ୍ୱାସ କରି ନପାରୁ । ହେଉ ପଛେ ଅପ୍ରିୟ, ହେଉ ପଛେ କଠୋର, ତଥାପି ଏହାକୁ କୁହାଯିବ ବନ୍ଧୁ ସ୍ନେହ । ମାଆ ଯେତେବେଳେ ତାର ପୀଡ଼ିତ ଶିଶୁକୁ ଭାତ ଖାଇବାକୁ ବାରଣ କରେ ସେତେବେଳେ ସେ କ'ଣ କଠୋର ହୁଏ ନାହିଁ ? କିନ୍ତୁ ସେ କାର୍ଯ୍ୟ ତାହାକୁ କରିବାକୁ ହୁଏ । ସତ କହୁଛି ସୁରେଶବାବୁ, ମହିମ ଯେ ଆମ ମାନଙ୍କ ପ୍ରତି ଏତେ ବଡ଼ ଅନ୍ୟାୟ କରିପାରେ ସେ କଥା ସ୍ୱପ୍ନରେ ସୁଦ୍ଧା ମୁଁ ଭାବି ନଥିଲି । ଦୁଇ ବର୍ଷ ପୂର୍ବେ ସମାଜରେ ତାହାର କଥାରେ ଏବଂ ବ୍ୟବହାରରେ ମୁଗ୍ଧ ହୋଇ ମୁଁ ନିଜେ ତାହାକୁ ଆଦରରେ ମୋ ଘରକୁ ଡାକି ଆଣି, ଅଚଳା ସହିତ ଆଳାପ ପରିଚୟ କରାଇ ଦେଇଥିଲି । ସେ ଏପରି ଭାବରେ ତାହାର ପ୍ରତିଫଳ ଦେଲା ! ଓହୋ ! ଏତେବଡ଼ ପ୍ରବଞ୍ଚନା ମୋ ଜୀବନରେ ଦେଖି ନଥିଲି ।

ଏତିକି କହି କେଦାର ବାବୁ ଭିତର ଘରକୁ ଉଠିଯାଇ ପଦ ଚାରଣା କରିବାକୁ ଲାଗିଲେ ।

ସୁରେଶ ଏବଂ ଅଚଳା ଉଭୟେ ନୀରବରେ ଅଧୋମୁଖ ହୋଇ ବସି ରହିଲେ ।

ହଠାତ୍ କେଦାର ବାବୁ ଠିଆ ହୋଇ କହିଲେ—ନା, ମା ଅଚଳା, ଏସବୁ ଚଳିବ ନାହିଁ । କୌଣସି ମତେ ନୁହେଁ । ସୁରେଶବାବୁ, ଆପଣ ଯେପରି କର୍ତ୍ତବ୍ୟ ଖାତିରରେ ବନ୍ଧୁ ପାଇଁ ଆସିଛନ୍ତି । ମୁଁ ମଧ୍ୟ ସେହିପରି କର୍ତ୍ତବ୍ୟ ଦୃଷ୍ଟିରୁ ପିତାର କାର୍ଯ୍ୟ କରି ବସିବି । ଅଚଳା ସହିତ ମହିମର ସମ୍ପର୍କଟା ଯେତେଦୂର ଅଗ୍ରସର ହୋଇଛି. ବିନା ପ୍ରମାଣରେ ତାହା ସମ୍ମୁଖରେ ମୋ ଘରର ଦରଜା ବନ୍ଦ କରି ଦେବାଟା ଠିକ୍ ହେବ ନାହିଁ । ସେଥିପାଇଁ କିଛି ପ୍ରମାଣ ଦରକାର । ଆପଣ ମନେ କରିବେ ନାହିଁ ସୁରେଶବାବୁ, ଏହା ବୋଲି ଆପଣଙ୍କ କଥାରେ ମୁଁ ବିଶ୍ୱାସ କରିପାରୁ ନାହିଁ କିନ୍ତୁ ଏଇଟା ମଧ୍ୟ ମୋର କର୍ତ୍ତବ୍ୟ । କ'ଣ କହୁଛୁ ମା ଅଚଳା ? ଗୋଟିଏ ହେଲେ ପ୍ରମାଣ ଦେଖିବା ଆମର ଉଚିତ କି ନାହିଁ ?

ଉଭୟେ ସେହିପରି ନୀରବରେ ବସି ରହିଲେ । ଉଚିତ୍ ଅନୁଚିତ କୌଣସି ମନ୍ତବ୍ୟ କେହି ପ୍ରକାଶ କଲେ ନାହିଁ । କେଦାର ବାବୁ କ୍ଷଣ କାଳ ଅପେକ୍ଷା କରିସାରି କହିଲେ—କିନ୍ତୁ ଏ ପ୍ରମାଣର ଭାର ଆପଣଙ୍କ ଉପରେ ସୁରେଶବାବୁ । ମହିମର ସାଂସାରିକ ଅବସ୍ଥା ଜାଣିବା ତ ଦୂରର କଥା, କେଉଁ ଗାଆଁରେ ତା'ର ଘର ତାହା ମଧ୍ୟ ମୋତେ ଜଣା ନାହିଁ ।

ସ୍ତକର ଆସି ଖବର ଦେଲା—ତଳେ ବିକାଶ ବାବୁ ଅପେକ୍ଷା କରିଛନ୍ତି ।

ସମ୍ବାଦ ଶୁଣି କେଦାର ବାବୁ ବିରସ ହୋଇ ଉଠିଲେ । କହିଲେ ଆଜି ତ ତାର ଆସିବାର କଥା ନଥିଲା । ଆଚ୍ଛା କହ; ମୁଁ ଯାଉଛି । ଫେରି ପଡ଼ି ଠିଆହୋଇ କହିଲେ—ସୁରେଶ ବାବୁ, ମୋତେ ପାଞ୍ଚ ମିନଟ୍ ପାଇଁ ଯିବାକୁ ଅନୁମତି ଦିଅନ୍ତୁ । ଲୋକଟାକୁ ବିଦାୟ କରିଦେଇ ମୁଁ ଫେରି ଆସିବି । ଯେତେବେଳେ ଆସି ପହଞ୍ଚିଛି ସେତେବେଳେ ଦେଖା ନକରି ସେ ଆଦୌ ଫେରିବ ନାହିଁ । ମା, ଅଚଳା, ସୁରେଶ ବାବୁଙ୍କୁ ଆମର ପରମ ବନ୍ଧୁ ବୋଲି ମନେ କରିବୁ । ଯାହା ତୋର ଜାଣିବାର ପ୍ରୟୋଜନ ଏହାଙ୍କ ଠାରୁ ଜାଣି ନେ । ମୁଁ ଏଇ ଆସିଲି ବୋଲି ଜାଣ—କହି ସେ ତଳକୁ ଓହ୍ଲାଇ ଗଲେ ।

ସେତେବେଳେ ମୁହୂର୍ତ୍ତିକ ପାଇଁ ପରସ୍ପର ମୁହଁକୁ ଚାହିଁ ଉଭୟେ ତଳୁ ମୁହଁକୁ ଉପରକୁ ଉଠାଇଲେ । ସୁରେଶ କିଛିକ୍ଷଣ ଚୁପ କରି ରହିବା ପରେ ଧୀରେ ଧୀରେ କହିଲା—ଆମେ ଦୁହେଁ ହେଉଛୁ ଆଶୈଶବ ବନ୍ଧୁ । କିନ୍ତୁ ତାର ଏପରି ବ୍ୟବହାର ହେତୁ ଆପଣଙ୍କ ପାଖରେ ଲଜ୍ୟାରେ ମୁଣ୍ଡ ନଇଁ ଯାଉଛି ।

ଅଚଳା ମୃଦୁ କଣ୍ଠରେ କହିଲା—ସେଥିପାଇଁ ଆପଣଙ୍କର ଲଜ୍ଜ୍ୟା କରିବାର **କୌଣସି କାରଣ ନାହିଁ** ।

ସୁରେଶ କହିଲା—ଆପଣ ଏ କ'ଣ କହୁଚନ୍ତି ! ତାର କପଟ ଆଚରଣ; ଏଇ ପାଷାଣ୍ଡ ଭଳି ବ୍ୟବହାର ପାଇଁ ମୁଁ ବନ୍ଧୁ ହୋଇ ଯଦି ଲଜ୍ଜ୍ୟା ନ ପାଇବି ତ ଆଉ କିଏ ପାଇବ କହନ୍ତୁ ଦେଖି ? କିନ୍ତୁ ସେତେବେଳେ ମୋର ବୁଝିବା ଉଚିତ୍ ଥିଲା ଯେ ସେ ଯେତେବେଳେ ମୂଳରୁ ଶେଷଯାଏ ସବୁ ବିଷୟ ଗୋପନ କରିଯାଇଛି, ଭିତରେ ନିଶ୍ଚୟ କେଉଁଠି ଗଳଦ ଅଛି ।

ଅଚଳା କହିଲା—ମୁଁ ବ୍ରାହ୍ମ ସମାଜର ଝିଅ । ଆପଣ କିନ୍ତୁ ଏ ସମାଜର କୌଣସି ଲୋକ ସହିତ ସମ୍ପର୍କ ରଖନ୍ତୁ ବୋଲି ଚାହୁଁ ନଥିବା ହେତୁ ସେ ବୋଧହୁଏ ଆମ କଥା ଆପଣଙ୍କୁ ଜଣାଇ ନାହାନ୍ତି ।

କଥାଟା ସୁରେଶକୁ ଭଲ ଲାଗିଲା ନାହିଁ । ଅଚଳା ଯେ ତାହାର ସମ୍ମୁଖରେ ମହିମର ଦୋଷ କ୍ଷାଳନ କରିବ—ଏ କଥା ସେ ଭାବି ନଥିଲା । ଶୁଷ୍କ ସ୍ୱରରେ ସେ ପ୍ରଶ୍ନ କଲା—ଆଶାକରେ ଏ ଖବର ବୋଧହୁଏ ଆପଣ ମହିମଠାରୁ ପାଇଛନ୍ତି ?

ଅଚଳା ମୁଣ୍ଡ ହଲାଇ କହିଲା—ହଁ, ସେ ଦିନେ ଏକଥା କହୁଥିଲେ ।

ସୁରେଶ କହିଲା—ଦେଖୁଛି ମୋ ଦୋଷ କଥା ମଧ୍ୟ ସେ କହିବାକୁ ଭୁଲିନାହିଁ ।

ଅଚଳା ସାମାନ୍ୟ ହସି କହିଲା—ଏ ଆଉ ଦୋଷର କଥା କ'ଣ ? ପ୍ରତ୍ୟେକ ମନୁଷ୍ୟର ପ୍ରବୃତ୍ତି ଏକ ପ୍ରକାରର ନୁହେଁ । ଯେଉଁମାନେ ଆପଣମାନଙ୍କୁ ଗ୍ରାହ୍ୟ ଗ୍ରାହ୍ୟଗଲେ, ସେମାନଙ୍କୁ ଯେତେବେଳେ ଆପଣମାନେ ଭଲ ଲାଗିଲେ ନାହିଁ ସେତେବେଳେ ଆପଣଙ୍କର ଦୋଷ କଥା ମୁଁ ଭାବିବ କପରି ?

ଏହି ଉତ୍ତରଟା ଯଦିଓ ସୁରେଶର ମନକୁ ପାଇଲାଭଳି କିନ୍ତୁ ସଙ୍କେତ-ବାଦନା, ତରୁଣୀ ବ୍ରାହ୍ମ ମହିଳାର ମୁହଁରୁ ବ୍ରାହ୍ମ ସମାଜ ପ୍ରତି ଏକାନ୍ତ ବିତୃଷ୍ଣା କଥା ଶୁଣି ଆଜି ତାହାର ତଳେମାତ୍ର ଆନନ୍ଦ ମନରେ ଦେଖାଦେଲା ନାହିଁ । ବରଂ ପ୍ରତ୍ୟୁତ୍ତରରେ ନିଜ ପକ୍ଷରୁ ଏହା ମଧ୍ୟ ଜାଣିବାକୁ ଚାହିଁଥିଲା ଯେ ମହିମ ମୁହଁରୁ ତାହାର ଆଉ କୌଣସି ସଦ୍‌ଗୁଣ ତାଙ୍କ କାନକୁ ଯାଇଛି କି ନାହିଁ ?

ଅଚଳା ବୋଧହୁଏ ଏଇ ପ୍ରଚ୍ଛନ୍ନ ଅଭିମାନକୁ ଅନୁମାନ କରିପାରିଲା ନାହିଁ । ତେଣୁ ପ୍ରଶ୍ନଟିର ସରଳ ଉତ୍ତର ଦେଇ ନୀରବ ରହିଲା ।

ସୁରେଶ କ୍ଷୁଣ୍ଣ ହୋଇ କହିଲା—ଆପଣମାନଙ୍କ ପ୍ରତି ମୋର ସାମାଜିକ ବିଦ୍ୱେଷ ଅଛି କି ନାହିଁ ସେ ଆଲୋଚନା ମହିମ କରୁ କିନ୍ତୁ ତା ଉପରେ ଯେ ମୋର ଲେଶ ମାତ୍ର ବିଦ୍ୱେଷ ନାହିଁ ଏକଥା ଆପଣ ମୋ ମୁହଁରୁ ଶୁଣି ଅବିଶ୍ୱାସ କରିବେ ନାହିଁ । ନଚେତ୍ ମୁଁ ହୁଏତ ତାର ସାଧାରଣ ପ୍ରସଙ୍ଗ ଏଠାରେ ଉତ୍ଥାପନ କରିବାକୁ ଆସି ନଥାନ୍ତି; ଯଦିଓ ସେ ସେଦିନ ମୋ ଆଗରେ ସତ୍ୟ ଘଟଣାକୁ ଅସ୍ୱୀକାର କରିଥିଲା ।

ଅଚଳା ସୁରେଶ ମୁହଁକୁ ଅପଲକ ନେତ୍ରରେ ଚାହିଁ ଅବିଚଳିତ ସ୍ୱରରେ କହିଲା, ସେ ତ କେତେବେଳେହେଲେ ମିଥ୍ୟା କହନ୍ତି ନାହିଁ ।

ଏଇଥର ବାସ୍ତବିକ ସୁରେଶ ବିସ୍ମୟରେ ହତବୁଦ୍ଧି ହୋଇଗଲା । ଜଣେ ଝିଅପିଲା ମୁହଁରୁ ଏପରି ଶାନ୍ତ ଅଥଚ ଦୃଢ଼ ପ୍ରତିବାଦ ଯେ ବାହାରିପାରେ ସେ କଥା ସେ କ୍ଷଣକାଳ ପାଇଁ ଭାବିପାରିଲା ନାହିଁ । ଜୀବନରେ ସେ ସଂଯମ ଶିକ୍ଷା କରିନାହିଁ, ସେଥିପାଇଁ ପରକ୍ଷଣରେ ଆତ୍ମବିସ୍ମୃତ ହୋଇ ରୂକ୍ଷ ସ୍ୱରରେ କହିଉଠିଲା—ମୋତେ ମାଫ କରିବେ । ସେ ମୋର ବାଲ୍ୟବନ୍ଧୁ । ଆପଣଙ୍କ ଅପେକ୍ଷା ମୁଁ ତାକୁ କମ୍ ଜାଣିନାହିଁ । ଏଠାରେ ନିଜକୁ ଆବଦ୍ଧ ରଖି ସ୍ପଷ୍ଟ ଅସ୍ୱୀକାର କରିବାଟାକୁ ମୁଁ ସତ୍ୟବାଦୀତା କହିପାରେ ନାହିଁ ।

ଅଚଳା ସେହିପରି ଶାନ୍ତ ଓ ମୃଦୁ କଣ୍ଠରେ କହିଲା—ସେ'ତ ଏଠାରେ ନିଜକୁ ଆବଦ୍ଧ କରି ରଖି ନାହାନ୍ତି ।

ସୁରେଶ କହିଲା—ଆପଣଙ୍କ ବାପା ତ ସେହି କଥା କହିଲେ । ଏହା ବ୍ୟତୀତ ନିଜର ହୀନ ଅବସ୍ଥାକୁ ଆପଣଙ୍କଠାରୁ ଗୋପନ କରି ରଖିବାଟାକୁ ସତ୍ୟ-ପ୍ରିୟତା କୁହାଯାଏ ନାହିଁ । ସ୍ତ୍ରୀ, ପୁତ୍ର ପ୍ରତିପାଳନ କରିବାର ଅକ୍ଷମତା ଅନ୍ୟ କାହା ନିକଟରେ ନହେଉ; କିନ୍ତୁ ଆପଣଙ୍କ ପାଖରେ ଅକପଟ ଭାବରେ ପ୍ରକାଶ କରିବା ତା ପକ୍ଷରେ ଉଚିତ୍ ତ ଥିଲା ।

ଅଚଳା ନୀରବ ହୋଇ ବସି ରହିଲା ।

ସୁରେଶ କହିବାକୁ ଲାଗିଲା—ଆପଣ ଯେ କେତେକରି ତାର ଦୋଷ ଢାଙ୍କି ଚାଲିଛନ୍ତି ତଥାପି ଆପଣ କହନ୍ତୁ ତ, ସମସ୍ତ କଥାଟା ଆଗରୁ ଜାଣି ପାରିଥିଲେ ତାକୁ କ'ଣ ଏତେଟା ପ୍ରଶ୍ରୟ ଦେଇ ପାରିଥାନ୍ତେ ?

ଅଚଳା ସେହିପରି ନୀରବରେ ବସିରହିଲା । ତାହା ନିକଟରୁ କୌଣସି ପ୍ରକାର ଜବାବ୍ ନପାଇ ସୁରେଶ ଅଧିକତର ଉତ୍ତେଜିତ ହୋଇ କହିବାକୁ ଲାଗିଲା—ମୋ ନିକଟରେ ସେ ନିଜ ମୁହଁରେ ସ୍ୱୀକାର କରିଛି ଯେ ଏଇ କଲିକତା ସହରରେ ଆପଣଙ୍କୁ ପ୍ରତିପାଳନ କରିବାର କ୍ଷମତା ଏବଂ ସଙ୍କଳ୍ପ ମଧ୍ୟ ତାର ନାହିଁ । ତାର ସେଇ ସଙ୍କୀର୍ଣ୍ଣ ଗ୍ରାମରେ ଏକାକୀ; ଅତ୍ୟନ୍ତ ବିରୁଦ୍ଧ ହିନ୍ଦୁ ସମାଜ ମଧ୍ୟରେ ସେ ଆପଣଙ୍କୁ ଖଣ୍ଡିଏ ଅସ୍ୱଚ୍ଛଳ ଭଙ୍ଗା ମାଟିଘର ଭିତରକୁ ଟାଣି ନେବାକୁ ଚାହେଁ, ସେଇ କଥା କ'ଣ ଆପଣଙ୍କୁ କହିବା ତାର କର୍ତ୍ତବ୍ୟ ନୁହେଁ ? ଏତେ ଦୁଃଖ ସହ୍ୟ କରିବା ପାଇଁ ଆପଣ ପ୍ରସ୍ତୁତ କି ନାହିଁ, ଏକଥା ପଚାରିବାଟା ଉଚିତ୍ ବୋଲି ସେ ମନେ କରିଛି ? ଏତିକି କହି ଉତ୍ତର ପାଇବା ପାଇଁ ସେ ଅଚଳା ମୁହଁକୁ ଚାହିଁ ଦେଖିଲା —ଅଚଳା ଚକିତା ଏବଂ ଅଧୋମୁଖରେ ସ୍ଥିର ହୋଇ ବସି ରହିଛି ।

ପ୍ରଶ୍ନର ଜବାବ ନ ପାଇଲେ ସୁଦ୍ଧା ସୁରେଶ ବୁଝିପାରିଲା ତାହାର ଆସିବାଟା ସାର୍ଥକ ହୋଇପାରିଛି । କହିଲା, ଦେଖନ୍ତୁ ଏଣିକି ଆପଣଙ୍କ ନିକଟରେ ସତ୍ୟକଥା ହିଁ କହିବି । ଆଜି ମୋର ବନ୍ଧୁକୁ କେବଳ ରକ୍ଷା କରିବାର ସଙ୍କଳ୍ପ ନେଇ ମୁଁ ଆସିଥିଲି । ସେ ବିପଦରେ ନ ପଡୁ, ଏତିକି ମାତ୍ର ମୋର ଉଦ୍ଦେଶ୍ୟ ଥିଲା । କିନ୍ତୁ ବର୍ତ୍ତମାନ ଦେଖିପାରୁଛି ତାକୁ ରକ୍ଷା କରିବା ଅପେକ୍ଷା ଆପଣଙ୍କୁ ରକ୍ଷା କରିବା ମୋର ପରମ କର୍ତ୍ତବ୍ୟ । କାରଣ ତାହାର ବିପଦ ଇଚ୍ଛାକୃତ କିନ୍ତୁ ଆପଣ ଅନ୍ଧକାରକୁ ଡେଇଁ ପଡ଼ିଛନ୍ତି । ଏଇ ମାତ୍ର ଆପଣଙ୍କ ବାପା ମୋତେ ଯେଉଁ ପ୍ରମାଣ କରିବାର ଭାର ଦେଇଗଲେ, ସେତେବେଳେ ମନେ ମନେ ଭାବିଥିଲି ବନ୍ଧୁର ବିରୁଦ୍ଧରେ ଏ ଦାୟିତ୍ୱ ମୁଁ ଗ୍ରହଣ କରିବି ନାହିଁ । କିନ୍ତୁ ବର୍ତ୍ତମାନ ଦେଖୁଛି ଏ କାମ ମୋତେ କରିବାକୁ ହିଁ ହେବ । ନ କରିଲେ ବଡ଼ ଅନ୍ୟାୟ ହେବ ।

ଅଚଳା କହିଲା—କିନ୍ତୁ ସେ ଶୁଣିପାରିଲେ କ'ଣ ଦୁଃଖିତ ହେବେ ନାହିଁ ?

ସୁରେଶ କହିଲା—ଉପାୟ ନାହିଁ । ଯିଏ ଦେହଲୋଭୀ ହୋଇ ପାଷାଣ୍ଡ ଭଳି ଆପଣଙ୍କୁ ଏତେଦୂର ଠକାଇ ପାରିଛି, ବନ୍ଧୁ ହେଲେ ମଧ୍ୟ ତାର ସୁଖ ଦୁଃଖ ଚିନ୍ତା କରିବାଟା ଉଚିତ୍ ମନେ କରୁନାହିଁ । କିନ୍ତୁ ଅସଲ ବିପଦ ହେଉଛି ମୁଁ ତାର ଗାଆଁର ନାମଟା ଜାଣିନାହିଁ । ନଚେତ୍ ଯଦି କୌଣସି ଉପାୟରେ ଆଜି ମଧ୍ୟ ତାର ସେହି ଠିକଣା ଜାଣି ପାରନ୍ତି, କାଲି ସକାଳୁ ଜଣେ ଯାଇ ସେଠାରେ ଉପସ୍ଥିତ ହୋଇ, ସମସ୍ତ ପ୍ରମାଣ ସଂଗ୍ରହ କରି, ଆପଣଙ୍କ ବାପାଙ୍କ ସମ୍ମୁଖରେ ଉପସ୍ଥାପିତ କରି ବନ୍ଧୁ ପାପର ପ୍ରାୟଶ୍ଚିତ୍ତ କରନ୍ତି ।

ଅଚଳା କହିଲା—କିନ୍ତୁ ଆପଣ କାହିଁକି ଏତେ କଷ୍ଟ କରି ବସିବେ ? ବାପାଙ୍କୁ କହନ୍ତୁନା, ସେ ତାଙ୍କର କୌଣସି ବିଶ୍ୱାସୀ ଲୋକ ପଠାଇ ସମସ୍ତ ଖବର ସଂଗ୍ରହ କରି ଆଣିବେ । ଚବିଶ ପ୍ରଗଣାର ରାଜପୁର ଗ୍ରାମ ତ ବେଶୀ ଦୂର ନୁହେଁ ?

ସୁରେଶ ଆଶ୍ଚର୍ଯ୍ୟ ହୋଇ କହି ଉଠିଲା—ରାଜପୁର ! ତାହାହେଲେ ଗ୍ରାମର ନାମଟା ଆପଣ ସେ ଜାଣିଛନ୍ତି ଦେଖୁଛି । ଆଉ କିଛି ଜାଣନ୍ତି କି ?

ଅଚଳା ସହଜ ଭାବରେ କହିଲା—ଆପଣ ଯାହା କହିଲେ, ମୁଁ ମଧ୍ୟ ସେତକି ମାତ୍ର ଜାଣେ । ରାଜପୁରରେ ଉତ୍ତରପଡ଼ାରେ ଖଣ୍ଡିଏ ମାଟିଘର ଅଛି, ତାହା ଭିତରେ ତିନ ଗୁର ବଖରା ରହିବା ଘର । ବାହାରେ ଚଣ୍ଡୀ ମଣ୍ଡପ, ତାହା ଗ୍ରାମର ପାଠଶାଳା ରୂପେ ବ୍ୟବହୃତ ହୁଏ ।

ସୁରେଶ ପ୍ରଶ୍ନ କଲା—ମହିମର ସାଂସାରିକ ଅବସ୍ଥା କିପରି ?

ଅଚଳା କହିଲା—ସେ ସଂପର୍କରେ ଆପଣ ଯାହା କହିଲେ; ତାହାହିଁ ସତ୍ୟ । ସାମାନ୍ୟ କିଛି ସଂପତ୍ତି ଅଛି । ସେଥିରେ କୌଣସିମତେ ଗ୍ରାସାଚ୍ଛାଦନ ଚଳିଯାଏ ମାତ୍ର ।

ସୁରେଶ କହିଲା—ଆପଣ ତାହାହେଲେ ସମସ୍ତ କିଛି ଜାଣନ୍ତି ଦେଖୁଛି ।

ଅଚଳା କହିଲା—ଏତିକି ମାତ୍ର ଜାଣେ, କାରଣ ଦିନେ ମୁଁ ତାଙ୍କୁ ଏତିକି ପଚାରିଥିଲି । ଆଉ ଆପଣ ତ ଜାଣନ୍ତି ସେ କଦାପି ମିଛ କଥା କହନ୍ତି ନାହିଁ ।

ସୁରେଶ ମୁହଁ ଲାଜରେ କଳା ପଡ଼ିଗଲା । ସେ କହିଲା—ଆପଣ ଯେତେବେଳେ ସବୁ କଥା ଜାଣିଛନ୍ତି, ସେତେବେଳେ ଆପଣମାନଙ୍କୁ ସତର୍କ କରିବାକୁ

ଆସିବାଟା ମୋ ପକ୍ଷରେ ବାତୁଳ ମାତ୍ର ହୋଇଛି । ଦେଖୁଛ ସେ ଅପଣଙ୍କୁ ଠକାଇ-ବାକୁ ଚେଷ୍ଟା କରନାହାଁ ।

ଅଚଳା କହିଲା- ମୁଁ ସିନା କିଛି କିଛି ଜାଣିଛି କିନ୍ତୁ ଆପଣ ଯାହାକୁ ଜଣାଇବାକୁ ଧାଇଁଆସିଥିଲେ ସେ ତ କିଛି ଜାଣି ନାହାନ୍ତି । ତଥାପି ଆପଣ ଯଦ ଅନୁମତ ଦେବେ, ମୁ ଯେତକି ଜାଣିଛି, ସେତକି ବାପାଙ୍କୁ ଜଣାଇ ଦେଇ ପାରେ ।

ସୁରେଶ ଉଦାସ କଣ୍ଠରେ କହିଲା—ସେ ଆପଣଙ୍କର ଇଚ୍ଛା । କିନ୍ତୁ ମୁଁ ଯାଇ ମହିମକୁ ସମସ୍ତ କଥା ଜଣାଇ ତାହାଠାରୁ କ୍ଷମା ମାଗିବାକୁ ପଡ଼ିବ । ତାହା ହେଲେ ମୁଁ ନିଶ୍ଚିନ୍ତ ହୋଇ ପାରିବି ।

ଅଚଳା ପ୍ରଶ୍ନକଲା—ସେଇଟା କଣ ନିହାତ ଆବଶ୍ୟକ ?

ସୁରେଶ ପୁନଶ୍ଚ ଉତ୍ତେଜିତ ହୋଇ ଉଠିଲା । କହିଲା—ଆବଶ୍ୟକ ନାହିଁ ? ନ ଜାଣି ତାହା ଉପରେ ମୁଁ ଆଜି ଯେଉଁ ଦୋଷାରୋପ କରିବସିଛି ସେ ଅପରାଧ ଯେ ମୋର କେତେବଡ଼; ଆପଣ କଣ ଭାବୁଛନ୍ତି ମୁଁ ତାହା ଜାଣିପାରୁ-ନାହିଁ ? ତାକୁ ତ ମୁଁ ଜୁଆଚ୍ଚୋର ଠାରୁ ମିଥ୍ୟାବାଦୀ ପର୍ଯ୍ୟନ୍ତ କହିବାର କିଛି ବାକି ରଖି ନାହିଁ । ଏସବୁ କଥା ତାହା ଆଗରେ ସ୍ୱୀକାର ନ କଲା ପର୍ଯ୍ୟନ୍ତ କ'ଣ ମୋର ପରିତ୍ରାଣ ଅଛି ?

ଅଚଳା କିଛି କ୍ଷଣ ଚୁପ୍ ରହି, ଧୀରେ ଧୀରେ କହିଲା ଏ ସବୁର କିଛି ଦରକାର ନାହିଁ , ସୁରେଶବାବୁ । ମନେ ମନେ କ୍ଷମା ଗୃହିଁବା ଠାରୁ ପ୍ରକାଶ୍ୟରେ ମାଗିବସିବା ସଦାବେଳେ ସବୁଠାରୁ ବଡ଼ କଥା, ଏ ବିଷୟ ମୁଁ ଅସ୍ୱୀକାର କରୁନାହିଁ । ସେ ଶୁଣିପାରିଲେ ଯେତେବେଳେ କଷ୍ଟ ପାଇବେ ବୋଲି କହୁଛନ୍ତି ସେତେବେଳେ ତାଙ୍କୁ ଆଉ ଜଣାଇ ଲାଭ କ'ଣ ? ବରଂ ମୁଁ ବାପାଙ୍କୁ ବାରଣ କରିଦେବି ସେ ଯେପରି ତାଙ୍କୁ ଏ ସବୁ କଥା ନ କହନ୍ତି ।

ଆଚ୍ଛା । ତାହାପରେ ନିଃଶଙ୍କରେ ଅଚଳା ମୁହଁକୁ ଗୃହିଁ ରହି ସୁରେଶ କହିଲା—ମୁଁ ବରାବର ଲକ୍ଷ୍ୟ କରି ଆସିଛି ଯେ ମହିମ ମନରେ କୌଣସି ପ୍ରକାର ବ୍ୟଥା କିପରି ନ ହେଉ ସେଥିପାଇଁ ଆପଣ ଆପ୍ରାଣ ଚେଷ୍ଟିତ । ବେଶ, ତାହାହିଁ ହେଉ । ମୁଁ ତାକୁ କୌଣସି କଥା କହିବି ନାହିଁ । ଆଜି ତା ବିଷୟରେ ମୋ ମନରେ ଯେତେ ଗୁଡ଼ିଏ ବିଷୟ ଉଙ୍କି ମାରୁଛି ସେ ସବୁ କହିବାକୁ ଇଚ୍ଛା ନାହିଁ, କିନ୍ତୁ ଆପଣଙ୍କୁ ଗୋଟିଏ ମାତ୍ର କଥା ନ କହି କୌଣସିମତେ ବିଦାୟ ନେଇ ପାରୁ ନାହିଁ ।

ଚପଳା ନରମ ଭାବରେ ଗୃହିଁ କହିଲା—ବେଶ୍ କହନ୍ତୁ ।

ସୁରେଶ କହିଲା—ତା ପାଖରେ କ୍ଷମା ମାଗି ପାରିଲିନାହିଁ କିନ୍ତୁ ଆପଣଙ୍କ ନିକଟରେ ମାଗୁଛି । ମୋତେ ମାଫ୍ କରନ୍ତୁ କହି ସେ ଦୁଇହାତ ଯୋଡ଼ିଦେଲା ।

: ଛି, ଛି, ଏ କ'ଣ କରୁଛନ୍ତି ? ଅଚଳା ଆଖି ପିଛୁଳା ମାତ୍ରକେ ସୁରେଶର ହାତ ଦୁଇଟି ଧରି ପକାଇ ଏବଂ ସଙ୍ଗେ ସଙ୍ଗେ ଛାଡ଼ିଦେଇ କହିଲା—ଏ କି ବିଷମ ଅନ୍ୟାୟ କହୁଛନ୍ତି···କହୁ କହୁ ଲାଜରେ ତାର ମୁହଁ ଲାଲ ହୋଇଉଠିଲା ।

ସୁରେଶର ସର୍ବାଙ୍ଗ ରୋମାଞ୍ଚିତ ହୋଇ ଉଠିଲା । ଏହି ନୂତନ ସ୍ପର୍ଶ, ସଲଜ୍ଜ ମୁଖର ଅପରୂପ ଦୀପ୍ତି, ଚକ୍ଷୁର ପଲକ ମାତ୍ରେ ତାହାକୁ ଅବଶ କରିପକାଇଲା । ସେ ଅଚଳାର ଅବନତ ମୁହଁକୁ କିଛି ସମୟ ସ୍ତବ୍ଧ ଭାବରେ ଚାହିଁ ରହି ଶେଷରେ ଧୀରେ ଧୀରେ କହିଲା—ନା, ମୁଁ କୌଣସି ଅନ୍ୟାୟ କରିନାହିଁ । ବରଂ ମୋର ସହସ୍ର କୋଟି ଅନ୍ୟାୟ ମଧ୍ୟରେ ଯଦି କୌଣସି ଠିକ୍ କାର୍ଯ୍ୟ କରି ବସିଥାଏ ତେବେ ତାହା ହେଉଛି ଏତିକି" ଆପଣ କ୍ଷମା କରି ବସିଲେ ଯାଇ ମୋର ମନ ସଫା ହୋଇଯିବ ।

ଅଚଳା କାତର ସ୍ୱରରେ କହିଲା—ଆପଣ ଏପରି କଥା କିଛି ତୁଣ୍ଡରେ ଧରିବେ ନାହିଁ । ଯାହାଙ୍କୁ ଦୁଇଥର ମୃତ୍ୟୁ ମୁଖରୁ ଫେରାଇ ଆଣିଛନ୍ତି....···

: ତାହା ମଧ୍ୟ ଶୁଣିଛନ୍ତି ।

: ଶୁଣିଛି । ଆପଣଙ୍କ ଭଳି ବନ୍ଧୁ ତାଙ୍କର ଆଉ କେହି ନାହାନ୍ତି ।

: ନା, ବୋଧହୁଏ ଆପଣଙ୍କ ବ୍ୟତୀତ ଆଉ କେହି ନାହିଁ । ଆଉ ସେଇ ସମ୍ପର୍କରେ ଭାବି ବସିଲେ ଆମେ ଦୁଇଜଣ....

ଅଚଳା ମୁହଁରେ ପୁଣି ଥରେ ରଙ୍ଗ-ଆଭା ଉକୁଟି ଉଠିଲା । ସେ କହିଲା—ହଁ ବନ୍ଧୁ । ଆପଣ ତାଙ୍କୁ ମରଣ ମୁହଁରୁ ଫେରାଇ ଆଣିଛନ୍ତି । ତେଣୁ ତାଙ୍କ ବିଷୟରେ ଆପଣଙ୍କର କୌଣସି କାର୍ଯ୍ୟକୁ ମୁଁ ଅନ୍ୟାୟ ବୋଲି ମନେ କରି ପାରିବି ନାହିଁ । ମନ ଭିତରେ କୌଣସି କ୍ଷୋଭ, କୌଣସି ଲଜ୍ଜ୍ୟା ଆପଣ ରଖିବେ ନାହିଁ । କ୍ଷମା କଥାଟା ଉଚ୍ଚାରଣ କଲେ ଯଦି ଆପଣଙ୍କର ମନ ତୃପ୍ତ ହୁଏ; ମୁଁ ତାହା କହିବାକୁ ରାଜି ଥିଲି ଯେହେତୁ ସେଇ ଶବ୍ଦଟା ମୋ ତୁଣ୍ଡକୁ ସାଜିବ ନାହିଁ ।

: ଆଚ୍ଛା । ଆଉ, ଆଉ ଦରକାର ନାହିଁ । ସୁରେଶ ଉଠି ଠିଆ ହୋଇ ପଡ଼ିଲା ଏବଂ କହିଲା ଆପଣଙ୍କ ବାପାଙ୍କ ସଙ୍ଗେ ଦେଖା ହୋଇ ପାରିଲା ନାହିଁ । ସେ ବୋଧହୁଏ ବ୍ୟସ୍ତ ଅଛନ୍ତି । ମହିମ ସଙ୍ଗରେ ହୁଏତ ମୁଁ ଅନ୍ୟ କେଉଁଦିନ ଆସିପାରେ; ନମସ୍କାର ।

ଅଚଳା ସାମାନ୍ୟ ହସି କହିଲା—ନମସ୍କାର । କିନ୍ତୁ ତାଙ୍କ ସହିତ ସେ କେବଳ ଆସିବେ ଏହାର କୌଣସି ମାନେ ନାହିଁ ।

: ସତ କହୁଛନ୍ତି ?

: ସତ କହୁଛି ।

: ମୋର ପରମ ସୌଭାଗ୍ୟ । କହି ସୁରେଶ ଆଉ ଥରେ ନମସ୍କାର କରି ବାହାରି ଗଲା ।

ବାହାରକୁ ଆସିବା ପରେ ନିଶା ଖାଇଲା ପରି ତାହାର ସମସ୍ତ ଦେହ-ମନ ଟଳିବାକୁ ଲାଗିଲା । ଆକାଶର ପ୍ରଚଣ୍ଡ ସୂର୍ଯ୍ୟ ତେଜ ସେତେବେଳକୁ ନିସ୍ତେଜ ହୋଇ ପଡ଼ିଥିଲା । ସେ ଗାଡ଼ି ଫେରାଇ ଦେଇ ଏକାକୀ ପଦବ୍ରଜରେ ବାହାରି ପଡ଼ିଲା । ତାର ଇଚ୍ଛା କଲିକତାର ଜନାକୀର୍ଣ୍ଣ କୋଳାହଳମୟ ରାଜପଥ ମଧ୍ୟରେ ଆପଣାକୁ ସମ୍ପୂର୍ଣ୍ଣ ହଜାଇ ଦେଇ ଅବସ୍ଥାକୁ ଥରେ ମାତ୍ର ମନ ପୂରାଇ ଭାବିନେବ ।

ଅଚଳାର ମୁଖ, ଅବୟବ, ଭାଷା ସମସ୍ତ ହିଁ ତାର ଆରମ୍ଭଠାରୁ ଶେଷ ପର୍ଯ୍ୟନ୍ତ ବାରମ୍ବାର ମନେ ପଡ଼ିବାରୁ ନିଜକୁ ଯେପରି ଶ୍ରେଷ୍ଠ ବୋଲି ସୁରେଶ ମନେ କରିବାକୁ ଲାଗିଲା ।

ସେହି ମୁହଁରେ ସୌନ୍ଦର୍ଯ୍ୟର ଅଲୌକିକତ୍ୱ ନଥିଲା, ଆଳାପ ଆଲୋଚନା ସମୟରେ, ବ୍ୟବହାରରେ, ଜ୍ଞାନ, ବିଦ୍ୟା ବୁଦ୍ଧିର ଅପରିପକ୍ୱ କୌଣସିଠାରେ ଏତେ ଟିକିଏ ମାତ୍ର ପ୍ରକାଶ ପାଇ ନାହିଁ । ତଥାପି କିପରି କାହିଁକି ଯେପରି କେବଳ ମନେ ହେଲା, ଏପରି ଏକ ବିସ୍ମୟ କର ବସ୍ତୁ ଏହିକ୍ଷଣି ସେ ଦେଖି ଆସିଛି ଯାହା କି ଏହା ପୂର୍ବରୁ କେବେ ତାର ଦୃଷ୍ଟିଗୋଚର ହୋଇ ନ ଥିଲା । ରାସ୍ତାରେ ଚାଲୁଥିବା ବେଳେ ନିଜେ ନିଜକୁ ସେ ପ୍ରଶ୍ନ କରୁଥିଲା—ଏ ବିସ୍ମୟ କାହା ପାଇଁ ? କିଏ ତାହାକୁ ଆଜି ଏପରି ଅଭିଭୂତ କରି ପକାଇଛି ?

ଏହି ତରୁଣୀ ଭିତରେ ଏପରି କୌଣସି ଜିନିଷ ସେ ଆଜି ଦେଖିବାକୁ ପାଇଛି ଯାହାଦ୍ୱାରା ସେ ନିଜେ ନିଜକୁ ହୀନ ମନେ କଲେ ସୁଦ୍ଧା ତାହାର ସମସ୍ତ ଅନ୍ତରଟା କିପରି ଏକ ଅପରିଜ୍ଞାତ ସାର୍ଥକତାରେ ଭରି ଉଠିଛି । ଏ ସ୍ଥିତିର ଅସଲ

ପରିଚୟ୍ସ ସେ ବର୍ତ୍ତମାନ ସୁଦ୍ଧା ପାଇ ନ ଥିଲେ ମଧ୍ୟ ସେ ଯେ ବଡ଼, ଅନେକ ବଡ଼, ତାହାଙ୍କୁ ପାଇବା ଯେ କୌଣସି ପୁରୁଷ ପକ୍ଷରେ ଯେ ଦୁର୍ଭାଗ୍ୟ ନୁହେଁ, ଥରେ ମାତ୍ର ଏହିଭଳି ସନ୍ଦେହ ତା ମନରେ ଦେଖା ଦେଉ ନାହିଁ କାହିଁକି ? ଏହିପରି ଏଣ୍ଡ ତେଣ୍ଡୁ ଭାବୁ ଭାବୁ ହଠାତ୍ ତାର ଚନ୍ତାର ଧାରା ଠିକ୍ ସ୍ଥାନରେ ଆଘାତ କରି ବସିଲା । ତାହାର ମନେହେଲା—ଏଇଯେ ଝିଅଟି, ଶିକ୍ଷାରେ, ଜ୍ଞାନରେ ବୟସରେ ହୁଏତ ସମସ୍ତ ବିଷୟରେ ତାହା ତୁଳନାରେ ଶ୍ରେଷ୍ଠ ହେଲେ ସୁଦ୍ଧା କେତୋଟି ମୁହୂର୍ତ୍ତ ଆଳାପ ଦ୍ୱାରା ତାହାଙ୍କୁ ଏପରି ପରାଜିତ କରି ପାରିଲା—ତାହା କେବଳ ତାର ଅସାଧାରଣ ସଂଯମର ଫଳ କହିଲେ ଅଯୁକ୍ତ ହେବନାହିଁ । ସେଥିପାଇଁ ସେ ଏତେ ଶାନ୍ତ ହୋଇ ଏତେ ଦୃଢ଼ ହୋଇ, ସମସ୍ତ ବିଷୟ ଜାଣି ସୁଦ୍ଧା ନିର୍ବାକ ହୋଇ ବସି ରହିଥିଲା । ମହିମ ସମ୍ବନ୍ଧରେ ସେ ନିଜେ ଯେତେବେଳେ ପ୍ରଗଲ୍‌ଭ ଭାବରେ ଅବିଶ୍ରାନ୍ତ ଗପି ଚାଲିଛି ସେତେବେଳେ ଝିଅଟି ଅଧୋମୁଖରେ ଶୁଣିଛି, ସହିଛି, କିନ୍ତୁ ମୁହୂର୍ତ୍ତିକ ପାଇଁ ଉତ୍ତକ୍ଷିପ୍ତ ହୋଇ ତର୍କ କରି କିମ୍ବା କଳହ କରି ନିଜକୁ ଲଘୁ ପ୍ରତିପାଦିତ କରାଇ ଦେଇନାହିଁ । ସଦାବେଳେ ନିଜକୁ ଦମନ କରି ଆସିଛି ଏବଂ ଗୋପନ କରି ଆସିଛି ଯଦିଓ କୌଣସି ବିଷୟ ତାଙ୍କୁ ଅବିଦିତ ନ ଥିଲା । ମହିମକୁ ସେ ଯେ କେତେଦୂର ଭଲପାଏ ଯଦିଓ ତାହା ଜାଣିବା ପାଇଁ ସୁଯୋଗ ଦେଲା ନାହିଁ, ତାହା ସତ୍ୟ ହେଲେ ମଧ୍ୟ ତାହାର ଅବିଚଳିତ ଶ୍ରଦ୍ଧା ଯେ ତଳେ ମାତ୍ର ଚୂର୍ଣ୍ଣ ହୋଇ ନାହିଁ, ସେହି କଥା ସେ କେତେ ସହଜ ଏବଂ ସଂକ୍ଷେପରେ ପ୍ରକାଶ କରି ନଦେଲା ?

ଏହି ବିଦ୍ୟା, ମହିମ ନିକଟରୁ ଶିଖିଛି ଏବଂ ଭଲ କରି ଶିଖିଛି ଏ କଥା ସେ ନିଜେ ନିଜକୁ କହିବାକୁ ଲାଗିଲା । ତାହାର ନିଜ ମଧ୍ୟରେ ପିଲାଦିନରୁ ଯେଉଁ ସଂଯମ ଜିନିଷଟାର ଏକାନ୍ତ ଅଭାବ ଥିଲା ତାହାଙ୍କୁ ଏତେଦୂର ପରିପୂର୍ଣ୍ଣ ଭାବରେ ଅନ୍ୟଜଣକଠାରେ ଦେଖିପାରି ତାହାର ଶିକ୍ଷିତ ଭଦ୍ର ଅନ୍ତଃକରଣ ଆପଣା ଛାଏଁ ଏହି ଗୌରବମୟୀର ପାଦତଳେ ମଥାନତ କରି ଧନ୍ୟ ମନେ କଲା ।

ଅନେକ ରାସ୍ତା, ଗଳି, ଉପଗଳି ବୁଲି କ୍ଳାନ୍ତ ହୋଇ ସୁରେଶ ସଂଧ୍ୟା ବେଳକୁ ଘରକୁ ଫେରିଲା । ବୈଠକ ଘରେ ପଶିଯାଇ ଆଶ୍ଚର୍ଯ୍ୟ ହୋଇ ଦେଖିଲା, ମହିମ ଆଖି ଦୁଇଟି ହାତରେ ଚାପି ଧରି କୋଚ ଉପରେ ବସି ରହିଛି ।

ସୁରେଶକୁ ଆସିବାର ଦେଖି ସେ ଉଠି କହି ଉଠିଲା—ଆ, ସୁରେଶ ଆ ।

: ଆରେ ତୁ କେତେବେଳୁ ! କହି ସୁରେଶ ଚୌକିଟାଏ ଟାଣିଆଣି ବସିଲା ।

ମନ୍ମଥ ଖୁବ୍ କ୍ୱଚିତ୍ ଆସେ । କିନ୍ତୁ ସେ ଯେତେବେଳେ ଆସେ ସେତେବେଳେ ସୁରେଶ ତାକୁ ଅଭ୍ୟର୍ଥନା କରିବା ପାଇଁ ପାଗଳ ହୋଇଉଠେ । ଆଜି କିନ୍ତୁ ତାହାଠାରୁ ସଂକ୍ଷିପ୍ତ ଉତ୍ତର ଶୁଣି ସେ ଆଶ୍ଚର୍ଯ୍ୟ ହୋଇ କହିଲା—ବସାକୁ ଫେରି ଆସି ଶୁଣିଲି ତୁ ଯାଇଥିଲୁ । ସେଥିପାଇଁ ଭାବିଲି........

: ଦସ୍ତାକର ଥରେ ଦେଖାକରି ଆସେ, ଏସ୍ତା ନା ? କେତେଦିନ ପରେ ଆସିଲୁ ଥରେ ମନେ ପକାଇଲୁ ? ମନ୍ମଥ ହସି ପକାଇ କହିଲା; ମନେ ପକାଇ ପାରେ । କିନ୍ତୁ ଆସିବାକୁ ବେଳ ପାଇନାହିଁ । ଗ୍ୟାସ ଆଲୋକରେ ସୁରେଶ ମୁହଁର ଚେହେରା ମ୍ଳାନ ଦିଶୁଥିଲା । ତାହାକୁ ପ୍ରସନ୍ନ କରିବା ଅଭିଳାଷ ରଖି ମଳୀନ କୋମଳ ସ୍ୱରରେ ପୁନରାୟ କହିଲା—ତୁ ବିରକ୍ତ ହୋଇ ପାରୁ, ଏହା ମୁଁ ଥରେ ନୁହେଁ ହଜାର ଥର ସ୍ୱୀକାର କରିବ କିନ୍ତୁ ପ୍ରକୃତରେ ମୁଁ ଆଦୌ ସମୟ ପାଉନାହିଁ । ଆଜିକାଲି ପଢ଼ାପଢ଼ିର ଗୁରୁତ୍ୱ ଟିକିଏ ତ ବଢ଼ି ଯାଇଛି ତା ସଙ୍ଗେ ସଙ୍ଗେ ସକାଳେ ଓ ଉପରଓଳି ଗୋଟା-ଦୁଇଟା ଟିଉସନ........

: ପୁଣି ଟିଉସନ କରିବା ଆରମ୍ଭ ହେଲାଣି ?

ମନ୍ମଥ ତାର ପ୍ରଶ୍ନର ଠିକ୍ ଜବାବଟା ଏଡ଼ାଇ ଦେଇ ପଚାରିଲା—ମୋତେ ଖୋଜୁଥିଲୁ ? ବିଶେଷ କିଛି ଦରକାର ଥିଲା କି ? ସୁରେଶ କହିଲା; ହୁଁ । ତୁ ଆଜି ନ ଆସିଥିଲେ ହୁଏତ କାଲି ମୋତେ ଯିବାକୁ ପଡ଼ିଥାନ୍ତା ।

ମନ୍ମଥ କାରଣ ଜାଣିବା ପାଇଁ ଜିଜ୍ଞାସୁ ଆଖିରେ ଚାହିଁ ରହିଲା । ସୁରେଶ ଅନେକକ୍ଷଣ ପର୍ଯ୍ୟନ୍ତ ନିଃଶବ୍ଦରେ ତାହାର ପାଦର ଯୋତା ଦୁଇଟା ଉପରେ ଦୃଷ୍ଟି ନିବଦ୍ଧ ରଖି କହିଲା—ତୁ ବୋଧହୁଏ ଏହା ଭିତରେ ଆଉ କେଦାରବାବୁଙ୍କ ଘରଆଡ଼େ ଯାଇନାହୁଁ ?

ମନ୍ମଥ କହିଲା—ନାଁ ।

: କାହିଁକି ଯାଇନୁ ? ମୋ ପାଇଁ ତ ? ଆଚ୍ଛା, ତୋର ସେହି ପ୍ରତିଶ୍ରୁତି ନିକଟରୁ ତୋତେ ମୁଁ ଆଜି ମୁକ୍ତ ଦେଲି । ତୁ ତୋର ଇଚ୍ଛା ଅନୁସାରେ ସେଠାକୁ ଯାଇପାରୁ ।

ମନ୍ମଥ ହସିଲା, କହିଲା—ଯିବିନାହିଁ ଏପରି କୌଣସି ପ୍ରତିଜ୍ଞା କେତେବେଳେ କରିଥିଲି ମୋର ମନେ ହେଉନି ତ ।

ସୁରେଶ କହିଲା—ମନେ ନପଡୁଥିଲେ ଭଲକଥା, ତଥାପି ମୋ ତରଫରୁ ଯେଉଁ ବାଧା ଥିଲା ତାହାକୁ ମୁଁ ଉଠାଇ ନେଲି ।

: ଏଇଟା ଅନୁଗ୍ରହ ନା ନିଗ୍ରହ ସୁରେଶ ?

: ତୋର କ'ଣ ମନେ ହେଉଛି ମହିମ ?

: ଚିରକାଳ ଯାହା ମନେ ହୁଏ ସେଇଆ ।

ସୁରେଶ କହିଲା—ତାର ମାନେ ମୋର ଖାମଖିଆଲ୍ ଭାବ । ଏଇଆ ନା ? ବେଶ୍ । ତୋର ଯାହା ଇଚ୍ଛା ତାହା ମନେ କରିପାରୁ, ମୋର ସେଥିରେ ଆପତ୍ତି ନାହିଁ । କେବଳ ଯେ ବାଧାଟା ମୁଁ ଦେଇଥିଲି ସେଥିପାଇଁ ଆଜି ତାକୁ ଉଠାଇ ନେଲି ।

: କିନ୍ତୁ ତାର କାରଣ ପଚାରି ପାରେ କି ?

: ଖିଆଲର କି କାରଣ ଥାଏ ଯେ ତୁ ପଚାରିଲେ ମୋତେ କହିବାକୁ ପଡ଼ିବ ।

ମହିମ କ୍ଷଣକାଳ ନୀରବ ରହି ଗମ୍ଭୀର ହୋଇ କହିଲା—କିନ୍ତୁ ସୁରେଶ, ତୋର ଖିଆଲ୍ ହେତୁ ଯେ ସାରା ସଂସାରରେ ଦୁଃଖ ଉପୁଜିବ, ଆଉ ଦୁଃଖ ଭୋଗିବି, ହୁଏତ ଏହା ଭଲ ହୋଇପାରେ; କିନ୍ତୁ ବାସ୍ତବ ବ୍ୟାପାରରେ ତାହା ହୁଏନାହିଁ । ତୋର ଯେଉଁଠାରେ ଆପତ୍ତି ନାହିଁ—ମୋର ସେଠାରେ ଥାଇପାରେ ।

: ତାର ମାନେ ?

: ତାର ମାନେ, ତୁ ସେଦିନ ବ୍ରାହ୍ମ ମହିଳାଟି ସମ୍ବନ୍ଧରେ ଯେତେ କଥା କହିଥିଲୁ, ମୁଁ ତାହା ଭାବି ଦେଖିଛି । ଭଲ କଥା, ସେଦିନ କହିଥିଲୁ ମାସକ ଭିତରେ ମୋ ପାଇଁ ଗୋଟିଏ ପାତ୍ରୀ ସ୍ଥିର କରିଦେବୁ । କ'ଣ ହେଲା ସେ କଥା ?

ସୁରେଶ ଦେଖିଲା, ମହିମ ଗାମ୍ଭୀର୍ଯ୍ୟର ଅନ୍ତରାଳରେ ତାହାକୁ ତୀବ୍ର ଉପହାସ କରୁଛି । ସେ ମଧ୍ୟ ଗମ୍ଭୀର ହୋଇ ଜବାବ ଦେଲା ମୁଁ ତ ଭାବି ଦେଖିଲି ମହିମ, ମଧ୍ୟସ୍ଥି ହେବା ମୋର ବ୍ୟବସାୟ ନୁହେଁ । ତାହାପରେ ହସିକରି କହିଲା— କିନ୍ତୁ ଅଟା କରିବା ସେଠିକରେ ଥାଉ । ଏତେଦିନ ମୋର ଇଜ୍ଜତ ରଖିଛୁ ବୋଲି ତୋତେ ସହସ୍ର ଧନ୍ୟବାଦ, କିନ୍ତୁ ଆଜି ଯେତେବେଳେ ମୋର ହୁକୁମ ପାଇଲୁ, ସେତେବେଳେ କାଲି ସକାଳୁ ସେଠାକୁ ଯାଉଛୁ ତ ?

: ନା, କାଲି ସକାଳେ ମୁଁ ଘରକୁ ଯାଉଛି ।

: କେବେ ଫେରିବୁ ?

: ଦଶ, ପନ୍ଦର ଦିନ ହୋଇପାରେ । ଦରକାର ପଡ଼ିଲେ ମାସେଖଣ୍ଡେ ଡେରି ମଧ୍ୟ ହୋଇପାରେ ।

: ମାସେ ଖଣ୍ଡେ ? ନା, ସେକଥା ହୋଇପାରିବ ନାହିଁ, କହି ଅକସ୍ମାତ୍ ସୁରେଶ ଝୁଙ୍କି ପଡ଼ି ମଧୁମର ଡାହାଣ ହାତକୁ ନିଜ ହାତ ମଧ୍ୟକୁ ଟାଣି-ନେଇ କହିଲା—ଆଉ ମୋର ଅପରାଧ ବଢ଼ାଅନା ମଧୁମ, କାଲି ସକାଳେ ଥରକ ପାଇଁ ଯାଆ । ସେ ହୁଏତ ତୋର ବାଟ ଚାହିଁ ବସିଥିବେ । ଏତକ କହିବା ସମୟରେ ତାର କଣ୍ଠ ସ୍ୱର କମ୍ପି ଉଠିଲା ।

ମଧୁମର ବିସ୍ମୟର ସୀମା ରହିଲା ନାହିଁ । ସୁରେଶର ଆକସ୍ମିକ କମ୍ପିତ କଣ୍ଠସ୍ୱର, ଏଇ ସ୍ୱଜନଙ୍କ ଅନୁରୋଧ, ବିଶେଷ କରି ବ୍ରାହ୍ମ ମହିଳାଙ୍କ ସମ୍ପର୍କରେ ଏଇ ସମ୍ମାନବୋଧ ଦେଖି ସେ ଯେପରି ବିହ୍ୱଳ ହୋଇ ଉଠିଲା । କିଛିକ୍ଷଣ ବନ୍ଧୁ ମୁହଁକୁ ଏକ ଦୃଷ୍ଟିରେ ଚାହିଁ ରହି ପ୍ରଶ୍ନକଲା—କିଏ ମୋର ବାଟ ଚାହିଁ ବସିଛି ସୁରେଶ ? କେଦାର ବାବୁଙ୍କ ଝିଅ ?

ସୁରେଶ ହଠାତ୍ ନିଜକୁ ସମ୍ଭାଳି ନେଇ କହିଲା, ରହି ଥାଇ ପାରନ୍ତି....

ମଧୁମ ଆଉ କିଛିକ୍ଷଣ ପାଇଁ ସୁରେଶ ମୁହଁକୁ ଚାହିଁ ରହିଲା । ସେ ଯେ ଇତି ମଧ୍ୟରେ ବ୍ରାହ୍ମ ଘରକୁ ଯାଇ ଅନାହୂତ ପରିଚୟ କରି ଆସିପାରେ, ଏ ସମ୍ଭାବନା ତାର କୌଣସିମତେ ମନରେ ଉଦୟ ହୋଇ ପାରିଲା ନାହିଁ । କିଛିକ୍ଷଣ ଚୁପ ରହି କହିଲା—ନା, ସୁରେଶ ମୁଁ ହାର ମାନୁଛି । ତୋର ଆଜିର ମନର ଅବସ୍ଥା ମୋ ବୁଦ୍ଧିର ଅଗମ୍ୟ । ବ୍ରାହ୍ମ ଝିଅ ମୋ ବାଟ ଚାହିଁ ବସିଛି, ଏକଥା ତୋ ମୁହଁରୁ ବୁଝି ପାରିବା ମୋ ପକ୍ଷରେ ଅସମ୍ଭବ ।

ସୁରେଶ କହିଲା—ଆଚ୍ଛା, ସେ କଥା ତୋତେ ଦିନେ ବୁଝାଇ ଦେବି । ତୁ କହ କାଲି ସକାଳୁ ସେଠାକୁ ଯିବୁ କି ?

: ନା, କାଲି ଯିବା ଏକବାର ଅସମ୍ଭବ । ମୋତେ ସକାଳ ଗାଡ଼ିରେ ଯିବାକୁ ହେବ ।

: କେତେ ମିନିଟ ପାଇଁ ବି ତୋତେ ଫୁରସତ ହେବନାହିଁ ?

: ନା, ତା ମଧ୍ୟ ହେବନାହିଁ । କିନ୍ତୁ ତୋର କ'ଣ ହୋଇଛି କହିଲୁ ଦେଖି ?

: ସେ କଥା ଆଉ ଦିନେ କହିବି । ଆଜି ନୁହେଁ । ଆଚ୍ଛା ମୁଁ ନିଜେ ଯାଇ ତୋ କଥା କହି ଦେଇ ଆସି ପାରିବି କି ?

ମହିମ ଅଧିକ ଆଶ୍ଚର୍ଯ୍ୟ ହୋଇ କହିଲା—ଯାଇ ପାରୁ । କିନ୍ତୁ ତୋ ଯିବାର ତ କୌଣସି ଦରକାର ନାହିଁ ।

ସୁରେଶ କହିଲା – ଦରକାର ନ ଥାଉ । ମୋର ପରିଚୟ ଦେଲେ ସେମାନେ ମୋତେ ଚିହ୍ନି ପାରିବେ ତ ?

: ଜଣେ ନିଶ୍ଚୟ ଚିହ୍ନି ପାରିବେ ।

ସୁରେଶ କହିଲା—ତାହା ହେଲେ ସେଇ ଯଥେଷ୍ଟ । ତୋର ବନ୍ଧୁ ବୋଲି ଚିହ୍ନିବେ ତ ।

ମହିମ କହିଲା—ହଁ ।

ସୁରେଶ ଏଥର ସାମାନ୍ୟ ହସିବାକୁ ଚେଷ୍ଟା କରି କହିଲା—ଆଉ ଚିହ୍ନିବେ ତୋର ଜଣେ ଘୋରତର ବ୍ରାହ୍ମ ବିରୋଧୀ ହିନ୍ଦୁ ବନ୍ଧୁ ବୋଲି ? ଏଇଆ ନା ?

ମହିମ କହିଲା—ତୋର ତାହା ପ୍ରଧାନ ଗର୍ବ ତ ?

: ଅବଶ୍ୟ ତା ସତ; କହି ସୁରେଶ ତଳକୁ ଚାହିଁ କହିଲା—ଆଜି ମୋତେ ବଡ଼ ନିଦ ଲାଗୁଛି ମହିମ; ମୁଁ ଶୋଇବାକୁ ଯାଉଛି । ଏହା କହି ଅନ୍ୟ-ମନସ୍କ ଭାବରେ ଧୀରେ ଧୀରେ ଚାଲିଗଲା ।

ସୁରେଶ ମନେ ମନେ ନିଃସନ୍ଦେହରେ ଅନୁଭବ କରୁଥିଲା ଯେ ମହିମ ଯେପରି ଭାବରେ କଥାଟା ଉଡ଼ାଇ ଦେଲେ ମଧ୍ୟ ତାହାର ଏକାନ୍ତ ଅନୁରୋଧକୁ ଉପେକ୍ଷା କରି ନପାରି ଅଚଳାକୁ ଏତେ ଦିନ ଧରି ସାକ୍ଷାତ କରିପାରି ନାହିଁ । ସେ ଯେତେ ଭଲ ପାଉ, ଏପର୍ଯ୍ୟନ୍ତ ଗୋଟିଏ ବ୍ରାହ୍ମ ଝିଅ ନିକଟରେ ପିଲାଦିନର ବଂଧୁକୁ ହୀନ ପ୍ରତିପାଦିତ କରି ପାରି ନାହିଁ । ଏହିକଥା ଭାବି କାଲି ସୁରେଶର ଗୂଢ଼ ଗର୍ବରେ ଦଶହାତ ଫୁଲି ଉଠିଥିଲା । କିନ୍ତୁ ଆଜି ନିର୍ଜନ ଶଯ୍ୟାରେ ଶୋଇଥିଲା ବେଳେ ଏ ପ୍ରକାର ଭାବନା ତାକୁ ଲେଶମାତ୍ର ଆନନ୍ଦ ଦେଇ ପାରିଲା ନାହିଁ । ସେ କେବଳ ଭାବିବାକୁ ଲାଗିଲା—ଦିନେ ନା ଦିନେ ହସ ଖୁସି ଉପହାସ, ପରିହାସରେ ଗପୁ ଗପୁ ସମସ୍ତ କଥା ଅଚଳାର କାନରେ ପଡ଼ିବ । ସେହିଦିନ ସ୍ୱାମୀ କୋଳରେ ଆନନ୍ଦରେ

ଥାଇ ଏହି ଅପଦାର୍ଥ ବନ୍ଧୁଟାର ନିଷ୍ଫଳ ଈର୍ଷାର କୌଣସି ତାତ୍ପର୍ଯ୍ୟ ହିଁ ଖୋଜି ପାଇବ ନାହିଁ, ଅଥଚ ହସ ଛଳରେ ସେ ସ୍ୱଳ୍ପ ଭଷିଣୀ ଝିଅଟି କୌଣସି ଦିନ କିଛି ପ୍ରଶ୍ନ ତାହାକୁ କରିବ ନାହିଁ । ହୁଏତ ମନେ ମନେ ଅଳ୍ପ ଟିକିଏ ହସି ଭାବି ବସିବ— ଏହି ଲୋକଟା ବନ୍ଧୁତ୍ୱର ଅନ୍ଧ ଅଭିମାନରେ କେତେ ପଣ୍ଡ ପରିଶ୍ରମ କରି ନ ବସିଲା ! ବ୍ୟର୍ଥ ଆକ୍ରୋଶ ଓ ଅନ୍ତର୍ଦାହରେ ବିଗୃତି ସିନା ଜଳି ପୋଡ଼ି ମରୁଛି !

ରାତରେ ତାହାର ସୁନିଦ୍ରା ହେଲା ନାହିଁ । ଯେତେଥର ନିଦ ଭାଙ୍ଗିଗଲା, ସେତେଥର ଏହି ଉକ୍ତ ଚିନ୍ତା ତାହାକୁ ଧିକ୍‌କାର ଦେଇ କହିବାକୁ ଲାଗିଲେ— ପରପାଇଁ ଏପରି ଉତ୍କଟ ମୁଣ୍ଡବ୍ୟଥା ରୋଗ ତୋର କେବେ ଯିବ ସୁରେଶ ?

ସକାଳବେଳେ ଉଠି ସେ ନିଜର କୌଣସି କାମରେ ମନ ଦେଇ ପାରିଲା ନାହିଁ ଏବଂ ବେଳ ଥାଉଥାଉ କେଦାର ବାବୁଙ୍କ ବସାରେ ଯାଇ ପହଞ୍ଚିଲା । ଚାକର ଆସି କହିଲା—ବାବୁ, ଆଲିପୁରର ଅଦାଲତକୁ ଯାଇଛନ୍ତି । ଫେରିବାକୁ ଦିନ, ଚାରି ଘଣ୍ଟା ବିଳମ୍ବ ହୋଇପାରେ ।

ସୁରେଶ ଫେରିବାକୁ ଉଦ୍ୟତ ହେଉ ହେଉ କହିଲା—କ'ଣ ଦୁଇଜଣ ଯାକ ଯାଇଛନ୍ତି ?

ପ୍ରଶ୍ନଟା ଚାକର ବୁଝିପାରିଲା ନାହିଁ । ସେ ମୁଣ୍ଡ ହଲାଇ କହିଲା—ସେକଥା ମୁଁ ଜାଣିନି ବାବୁ ।

ସୁରେଶ ଏଥର ବଡ଼ ଅସୁବିଧାରେ ପଡ଼ିଲା । ଗୃହ ମାଲିକଙ୍କର ଅନୁପସ୍ଥିତିରେ ତାଙ୍କର ଯୁବତୀ କନ୍ୟା ସମ୍ବନ୍ଧରେ କୌଣସି ପ୍ରକାର ପ୍ରଶ୍ନ ପଚାରିବାଟା ବ୍ରହ୍ମପରିବାରରେ ଶିଷ୍ଟତା ବିରୁଦ୍ଧରେ ଯାଏ କି ନାହିଁ, ତାହା ସେ ସ୍ଥିର କରି ପାରିଲା ନାହିଁ । ତଥାପି ସେହି ଝିଅଟା ସହିତ ସାକ୍ଷାତ ତାର ନିହାତି ପ୍ରୟୋଜନ । କିଛି ସମୟ ଚିନ୍ତା କରି କହିଲା; ତୁମ ବାବୁଙ୍କର ଫେରିବାକୁ ହୁଏତ ଏତେ ବିଳମ୍ବ ବି ନ ହୋଇପାରେ । ତେଣୁ ମୁଁ ଘଣ୍ଟାଏ ଅଧଘଣ୍ଟା ଅପେକ୍ଷା କଲେ···

ସୁରେଶକୁ ବୈଠକ ଘରକୁ ଡାକିନେଇ ବସିବାକୁ କହି ଚାକର କହିଲା—ଅପା ଘରେ ଅଛନ୍ତି ତାଙ୍କୁ ଖବର ଦେବିକି ?

ସୁରେଶ ଅନ୍ତରର ଆଗ୍ରହାତିଶଯ୍ୟକୁ ନିବାରଣ କରି ନିସ୍ପୃହ ଭାବରେ କହିଲା—ତାଙ୍କୁ ପୁଣି ଖବର ଦେବୁ ? ଆଚ୍ଛା ଦେ । ବାବୁ ନ ଫେରିବା ପର୍ଯ୍ୟନ୍ତ ତାଙ୍କ ସଙ୍ଗରେ ଦୁଇପଦ ହେଲେ କଥାହୁଏ ।

ଚାକର ଚାଲିଗଲା ।

ଅଳ୍ପ ସମୟ ପରେ ଅଚଳା ପାଖ କବାଟର ପର୍ଦ୍ଦା ଟେକି ପ୍ରବେଶ କଲା । ସୁରେଶ ଉଠିପଡ଼ି ଠିଆହୋଇ କହିଲା—ମହିମ ସେ ଘରକୁ ଚାଲିଗଲା । ଏତେ କରି କହିଲି ଆପଣଙ୍କ ସଙ୍ଗେ ଦେଖାକରି ଯିବାପାଇଁ, କୌଣସିମତେ ଶୁଣିଲା ନାହିଁ । ଏପରି ଗୋଟାଏ........

ଅଚଳାର ମୁହଁ ମୁହୂର୍ତ୍ତିକ ପାଇଁ ସାଦା ହୋଇଗଲା । କିନ୍ତୁ ନମସ୍କାର କରି ଗୋଟିଏ ଚୌକିରେ ବସିପଡ଼ି କହିଲା—ଯିବାଟା ବୋଧହୁଏ ବେଶୀ ଦରକାର କାରଣ ଘରେ କାହାର ଦେହ ହୁଏତ ଖରାପ ଥାଇପାରେ ।

ଅଚଳା ନମସ୍କାର କରିବାର ଦେଖି ସୁରେଶ ଅପ୍ରତିଭ ହୋଇ ପ୍ରତି ନମସ୍କାର ଜଣାଇ ଏବଂ ନିଜର ଅନାବଶ୍ୟକ ଉତ୍ତେଜନା ସହିତ ଅଚଳାର ଶାନ୍ତ ଓ ଧୀର କଥାକୁ ଓଜନ କରି ଶତଗୁଣ ଲଜ୍ଜିତ ହୋଇ ଉଠିଲା । କଣ୍ଠସ୍ୱରକୁ ଯଥାସାଧ୍ୟ ସହଜ ଓ ସ୍ୱାଭାବିକ କରି କହିଲା—ଯେତେ ଦରକାର ଥିଲେ ସୁଦ୍ଧା ସେ ଏମିତି କ'ଣ ଦୁଇ ମିନିଟ୍ ପାଇଁ ଆସି ଆପଣଙ୍କୁ କହି କରି ଯାଇପାରି ନଥାନ୍ତା ? ଆଉ କେବେ ଫେରିବ ତାହାର କୌଣସି ଠିକଣା ନାହିଁ । ଆପଣ କହନ୍ତୁ ନା ଘରେ ତାର ଏପରି କିଏ ଅଛି ଯେ ଯାହାପାଇଁ ତାକୁ ଏପରିଭାବରେ ଯିବାକୁ ପଡ଼ିଲା ? ମୁଁ ମରିଗଲେ ସୁଦ୍ଧା ଏପରି କେବେ ଯାଇ ପାରିବ ନାହିଁ ।

ଅଚଳା ମୁହଁ ଉପରେ ସାମାନ୍ୟ ହସର ଗୋଟିଏ ସରଳ ସ୍ନିଗ୍ଧ ରେଖା ଦେଖାଦେଇ ମିଳାଇଗଲା । ସେ କହିଲା, ଆପଣଙ୍କର ବର୍ତ୍ତମାନ ସେପରି ନିଜର ହୋଇ କେହି ନାହାନ୍ତି, ବୋଲି ଏକଥା କହୁଛନ୍ତି । ଭବିଷ୍ୟତରେ ଆପଣଙ୍କର ଯିଏ ଆପଣାର ଲୋକ ହେବ ସେତେବେଳେ ଠିକ୍ ତାଙ୍କରପରି ଅବହେଳା କରି ଚାଲିଯାଇ ପାରିବେ । କ'ଣ ମୁଁ ଯାହା କହିଲି ଠିକ୍ ତ ?

ସୁରେଶ ବସିଥିବା ଚୌକିର ହାତ ଉପରେ ଜୋରରେ ଗୋଟାଏ ଚାପୁଡ଼ା ମାରି କହିଲା କଦାପି ନୁହେଁ । ମୋତେ ଆପଣ ଚିହ୍ନି ନାହାନ୍ତି । ତେଣୁ ଏପରି କଥା କହୁଛନ୍ତି । କିନ୍ତୁ ଚିହ୍ନିଥିଲେ ଏପରି କହନ୍ତେ ନାହିଁ ।

ଅଚଳା କହିଲା—ବେଶ୍ ତ । ବର୍ତ୍ତମାନ ଠାରୁ ତ ଚିହ୍ନି ପାରିଲି । ଆଉ କିଏ ଆପଣାର ଲୋକ ହେଲେ ଜାଣିବ ପାରିବ । କ'ଣ କହୁଛନ୍ତି ?

ସୁରେଶ କହିଲା—ନିଶ୍ଚୟ । ଅରେ ନୁହେଁ, ଶହେଥର ଠିକ୍ । ଏହା ବ୍ୟତୀତ ମହିମ ଭଳି ମୁଁ ବନ୍ଧୁ ଠାରୁ କୌଣସି କଥା ଗୋପନ କରି ରଖି ପାରେ ନାହିଁ ଏବଂ ରଖିବାକୁ ମଧ୍ୟ ଭଲ ମନେକରେ ନାହିଁ, ହଠାତ୍ ଉତ୍ତେଜିତ ହୋଇ ଉଠି ପୁଣି କହିବାକୁ ଆରମ୍ଭ କଲି—ଆପଣ କହୁଛନ୍ତି କେହି ଆପଣାର ଲୋକ ହେଲେ ଜାଣି

ପାରବେ । ମୁଁ କନ୍ତୁ କନ୍ଧ ରଖୁଛୁ ଆପଣଙ୍କୁ ନଜଣାଇ; ଆପଣଙ୍କ ମତ ନ ନେଇ ଏହା କେତେବେଳେ ହେଲେ ହୋଇ ପାରବ ନାହିଁ । କାରଣ ଆପଣଙ୍କୁ ମହମ ଠାରୁ ପୃଥକ୍ ରୂପେ ଦେଖିବାକୁ ମୋର ଆଉ ଇଚ୍ଛା ନାହିଁ । ଆପଣ ତୁହେଁ ମୋ ପାଖରେ ଆଜ ଅଭିନ୍ନ ।

ଅଚଳା ହସ ହସ ମୁହଁରେ ମୁଣ୍ଡ ହଲାଇ କହିଲା—ଆଚ୍ଛା ସେ କଥା ସେତେବେଳେ ଦେଖାଯିବ । କନ୍ତୁ ଆପଣ; ଆପଣାର ଲୋକ ବାଛୁବା ପର୍ଯ୍ୟନ୍ତ ମୁଁ ଆପଣଙ୍କ ବନ୍ଧୁଙ୍କୁ ଦୋଷୀ ସାବ୍ୟସ୍ତ କର ପାରବ ନାହିଁ; ସୁରେଶବାବୁ ।

ସୁରେଶ ହଠାତ୍ ଗମ୍ଭୀର ହୋଇ କହିଲା; ସେଇଟା ଆପଣଙ୍କର ଇଚ୍ଛା । କନ୍ତୁ ମୋର ଜୀବନ ସାଥୀ ନର୍ବାଚନ କରବାର ଶୁଭଦନ ଏ ଜନ୍ମରେ ଘଟିବ କ ନାହିଁ ସନ୍ଦେହ । ସେ ଯାହା ହେଉ; କନ୍ତୁ ଆଜ ସକାଳୁ କାହିଁକ ଆପଣଙ୍କ ପାଖକୁ ଆସିଛୁ, ଜାଣନ୍ତ ? କାଲ ରାତରେ ମୁଁ ଆଦୌ ଶୋଇ ପାର ନାହିଁ । ଆସିଥିଲେ ହୁଏତ ଆଜ ବ ଅନନ୍ଦ୍ରା ହୋଇ ନଥାନ୍ତ ତାର କେଉଁ ସତ୍ୟତା ଅବା ଅଛୁ ? ମୁଁ ଅନେକ ଅପରାଧ କରଛୁ । ତାହା ସବୁ ଗୋଟି ଗୋଟି କର ଆଜ ତୁମ ନକଟରେ ସ୍ୱୀକାର କରଯିବ । କେବଳ ସେଥିପାଇଁ ହିଁ ଆସିଛୁ ।

ସୁରେଶର ପ୍ରବଳ ବରୋଧତା ଅଚଳାକୁ ଅବଦତ ନଥିଲା । ସେଥିପାଇଁ ସେ ଶଙ୍କିତ ଚତ୍ତରେ ଚୁପ୍ ରହିଲା । ସୁରେଶ କହିବାକୁ ଲାଗିଲା—କାଲ ସନ୍ଧ୍ୟାରେ ଏଠାରୁ ଫେରଯାଇ ଦେଖେ ତ ମହମ ଆସି ବସିଛୁ । ଭଲ କଥା, ଆପଣ ନଶ୍ଚୟ ଜାଣନ୍ତ ମୁଁ ବ୍ରାହ୍ମ ମାନଙ୍କୁ ଦୁଇ ଆଖିରେ—ଅର୍ଥାତ୍ ବ୍ରାହ୍ମ ସମାଜଟାକୁ ମୁଁ ସେପର ଭଲ ମନେକରେ ନାହିଁ ।

ଅଚଳା ମୁଣ୍ଡ ଝୁଙ୍ଗାଇ କହିଲା—ହଁ, ମୁଁ ଜାଣେ ।

ସୁରେଶ କହିଲା—ଜାଣିବେ ନାହିଁ କପର ? କନ୍ତୁ ଏ କଥାଟା ଭୁଲବେ ନାହିଁ ଯେ ମୁଁ ସେ ପର୍ଯ୍ୟନ୍ତ ଆପଣଙ୍କୁ ଚହ୍ନି ନଥିଲ । ସେଥିପାଇଁ ମହମକୁ ଅନୁରୋଧ କରଥିଲ ସେ ଯେପର ଏଠାକୁ ଗୋଟିଏ ମାସ ପାଇଁ ହେଲେ ନ ଆସେ, କାହିଁକ ଏପର କହିଥିଲ ଜାଣନ୍ତ ?

ଅଚଳା ପୁଣିଥରେ ମୁଣ୍ଡ ହଲାଇ କହିଲା—ନା, ତେବେ ବୋଧହୁଏ ଆପଣ ଭାବଥିଲେ ପୁରୁଷ ପିଲ ପକ୍ଷରେ ଭୁଲଯିବା ପାଇଁ ଗୋଟିଏ ମାସ ଯଥେଷ୍ଟ ସମୟ । ତେଣୁ ବେଶୀ ସମୟ ସୀମା ଦେଇ ନ ଥିଲେ ?

ଆଘାତଟା ସୁରେଶ ବିନୀତ ଭାବରେ ଗ୍ରହଣ କରି କହିଲା— ମୁଁ ସଦାବେଳେ ନିର୍ବୋଧ । ସେଥିପାଇଁ ଏପରି କିଛୁ ଭାବିନେଇଥିଲି । ଏତଦ୍‌ବ୍ୟତୀତ ଆହୁରି ଗୋଟିଏ ସାଙ୍ଘାତିକ ଷଡ଼ଯନ୍ତ୍ର ମୋର ଆପଣଙ୍କ ବିରୁଦ୍ଧରେ ଥିଲା । ମୁଁ ଶପଥ କରି ଏହି ମାସକ ସମୟ ଭିତରେ ଆଉ କୌଣସି ଠାରେ ପାତ୍ରୀ ଠିକ୍ କରି ମହିମର ବାହାଘର କରାଇ ଦେଇଥାନ୍ତି । ଯେକୌଣସି ମତେ ହେଉ ତାକୁ ବ୍ରାହ୍ମ ହେବାରୁ ଅଟକାଇବାକୁ ପଡ଼ିଥାନ୍ତା । ମୋର ବନ୍ଧୁ ହୋଇ ସେ ଯଦି ଗୋଟାଏ ନାରୀର ମୋହରେ ପଡ଼ି ନିଜର ସମାଜ ଛାଡ଼ି ଚାଲିଯିବ, ଏହାଠାରୁ ବଳି ଲଜ୍ଜାର କଥା ମୋ ପକ୍ଷରେ କ'ଣ ଥାଇପାରେ ?

ଅଚଳା ରୁଦ୍ଧ ନିଃଶ୍ୱାସ ତ୍ୟାଗ କରି କହିଲା—ତା ପରେ ?

ତାହାର ପାଂଶୁଳ ମୁହଁକୁ ଚାହିଁ ସୁରେଶ ଟିକିଏ ହସି କହିଲା—ତାପରେ ଆଉ ଭୟ ନାହିଁ । ଏହି ପାପ ସଙ୍କଳ୍ପ ତ୍ୟାଗ କରିଛି, ଆଜି ସେହି କଥା ମୁଁ ସ୍ୱୀକାର କରିବାକୁ ଆସିଛି । ଆପଣଙ୍କୁ ଦେଖା କରିଯିବା ପାଇଁ କାଲି ସନ୍ଧ୍ୟାରେ ତାକୁ ମୁଁ ବହୁତ ଅନୁରୋଧ କରିଥିଲି । ସବୁବେଳେ ମୋର ଅନୁରୋଧଟା ରଖିଥିଲା କିନ୍ତୁ କାଲି ମୋର ଅନୁରୋଧଟା ରଖିଲା ନାହିଁ । ଆପଣଙ୍କୁ ଦେଖା ନକରି ସେ କଲିକତା ଛାଡ଼ି ଚାଲିଗଲା ।

ଅଚଳା ପ୍ରଶ୍ନ କଲା—ଯିବାର କୌଣସି କାରଣ ସେ କହିଥିଲେ ?

ସୁରେଶ କହିଲା—ନା, ଦରକାର ଅଛି—ଏତିକିମାତ୍ର ।

ଅଚଳା ଗୋଟାଏ ଦୀର୍ଘ ନିଃଶ୍ୱାସ ଛାଡ଼ି ମନେ ମନେ ଗୁଣୁ ଗୁଣୁ ହୋଇ କହିବାକୁ ଲାଗିଲା—ଦରକାର, ଦରକାର, ଚିରକାଳ ତାଙ୍କରି ମୁହଁରୁ ଏଇ କଥାଟି ହିଁ ଶୁଣି ଆସିଛି । ସତେ ଯେପରି ପ୍ରୟୋଜନଟା ହିଁ ତାଙ୍କର ସଦାବେଳ ପାଇଁ ସର୍ବସ୍ୱ ।

ସୁରେଶ କହିଲା—ଖଣ୍ଡିଏ ଚିଠିରେ ଦୁଇଧାଡ଼ି ଲେଖି ସେ ତ ଆପଣଙ୍କୁ ଜଣାଇ ପାରିଥାନ୍ତା ?

ଅଚଳା ଧୀରେ ଧୀରେ ମୁଣ୍ଡ ହଲାଇ କହିଲା —ନା, ଚିଠି ସେ ଲେଖନ୍ତି ନାହିଁ ।

ସୁରେଶ କିଛିକ୍ଷଣ ନୀରବ ରହି ମୁହଁ ଟେକି ଚାହିଁଲା । କହିଲା—କ'ଣ ଦରକାର, ତା'ମଧ୍ୟ କୌଣସି ସମୟରେ କହେ ନାହିଁ ?

ତାର ସୁଖ, ଦୁଃଖ, ଭଲମନ୍ଦ, ସବୁ ହିଁ ତାର ନିଜର । ସ୍ୱାର୍ଥପର ! କେତେବେଳେ କାହାକୁ ହେଲେ ତହିଁରେ ଭାଗ ନେବାକୁ ସୁଯୋଗ ଦେଇନାହିଁ । ଏଥିପାଇଁ ପିଲାବେଳୁ ସେ ଯେ କେତେ ଦୁଃଖ ମୋତେ ଦେଇ ଆସିଛୁ, ବୋଧହୁଏ ତାର ସୀମା ନାହିଁ । ନିଷ୍ଠୁର । ଦିନ ପରେ ଦିନ ନିଜେ ଉପବାସ ରହି ମୋର ଖାଇବା ପିଇବାକୁ ଠକ୍-ବନ୍ଦୋବସ୍ତ କରିଛୁ, କିନ୍ତୁ କୌଣସି ଦିନ ମୋ ମୁହଁକୁ ଗୃହିଁ, ହାତପାତି କେବେ କିଛି ମାଗି ନାହିଁ । ମୋର ଭସ୍ତ ହୁଏ, ଯେଉଁ ପଥରକୁ ନେଇ ମୁଁ କେବେ ସୁଖ ପାଇନାହିଁ, ତାହାକୁ ଧରି ଘର ସଂସାର କରି ଆପଣ କ'ଣ ସୁଖୀ ହୋଇ ପାରିବେ ? କହୁ କହୁ ହଠାତ୍ ତାର ଆଖି ଛଳଛଳ ହୋଇ ଉଠିଲା । ଖୁବ୍ ଶୀଘ୍ର ଲୁହ ପୋଛି ପକାଇ ମୁହଁରେ ଜବରଦସ୍ତି ହସର ରେଖା ଟାଣି କହିଲା—ଦେଖନ୍ତୁ ମୋର ବାହାରଟା ଯେପରି ଖୁସି ଶକ୍ତ ଭିତରଟା ସେପରି ଦୁର୍ବଳ । ମହିମର ଠିକ୍ ଏହାର ଓଲଟା । ତଥାପି ଆମ ଦୁହିଁଙ୍କ ପରି ବନ୍ଧୁତ୍ୱ ସଂସାରରେ ଖୁବ୍ କମ୍ ଲୋକଙ୍କର ଥିଲା ।

ଅଚଳା ନତ ମୁଖରେ ମୃଦୁ କଣ୍ଠରେ କହିଲା—ସେ କଥା ମୁଁ ଜାଣେ ସୁରେଶବାବୁ । ଏବଂ ଆହୁରି ମଧ୍ୟ ଜାଣେ ଯେ ସେ ବନ୍ଧୁତ୍ୱ ଆଜି ମଧ୍ୟ ସେହିପରି ଅକ୍ଷୟ ହୋଇ ରହିଛି ।

ଶୈଶବର ସମସ୍ତ ପୂର୍ବ ସ୍ମୃତି ସୁରେଶର ବୁକୁ ଭିତରେ ଆଲୋଡ଼ିତ ହୋଇ ଉଠିଲା । ସେ ଅଶ୍ରୁ-ରୁଦ୍ଧ କଣ୍ଠରେ କହି ଉଠିଲା; ଯେତେବେଳେ ଜାଣନ୍ତି, ସେତେବେଳେ ମୋତେ ଏଇ ଭିକ୍ଷା ଦିଅନ୍ତୁ ଯେ ଅଜ୍ଞାନବଶତଃ ଯେଉଁ ଶତ୍ରୁତା ଆପଣଙ୍କ ନିକଟରେ କରି ବସିଛି ସେ ଅପରାଧ ଯେପରି ଆଉ ଆପଣଙ୍କ ମନକୁ ବ୍ୟଥା ନଦିଏ ।

ତାହାର କଣ୍ଠସ୍ୱର ଆବେଗରେ ଆହୁରି ରୁଦ୍ଧ ହୋଇ ଉଠିଲା; ଏବଂ ଏହି ବ୍ୟାକୁଳତା ହେତୁ ଅଚଳାର ହୃଦୟ ଯେପରି ସମବେଦନାରେ ଥରି ଉଠିଲା । ଉଦ୍‌ଗତ ଅଶ୍ରୁକୁ ଗୋପନ କରିବାକୁ ଯାଇ ମୁହଁ ଫେରାଇ ସେ ଦେଖିଲା, ତାର ବାପା ଦ୍ୱାର ନିକଟରେ ଆସି ଠିଆ ହୋଇଛନ୍ତି ।

କେଦାରବାବୁ ସୁରେଶକୁ ଦେଖି ଖୁସି ହୋଇ କହି ଉଠିଲେ—ଆରେ ସୁରେଶବାବୁ ଯେ....

ସୁରେଶ ଠିଆହୋଇ ପଡ଼ି—ଭକ୍ତିରେ ନମସ୍କାର କଲା ।

କେଦାରବାବୁ ଆସନ ଗ୍ରହଣ ନ କରି ପ୍ରଶ୍ନ କଲେ—ମହିମର ଖବର କ'ଣ ? ତାକୁ ତ ଆଉ କାହିଁ କେତେଦିନ ହେବ ଦେଖୁନି ?

ସୁରେଶ କହିଲା— କହାଡ ଜରୁରୀ କାମ ଥିବାରୁ ସକାଳ ଗାଡ଼ିରେ ମହିମ ଘରକୁ ଚାଲିଗଲା । ଏହି ଖବର ଜଣାଇବା ପାଇଁ ମୁଁ ଆସିଲି ।

କେଦାରବାବୁ ବିସ୍ମିତ ହୋଇ କହିଲେ—ଘରକୁ ଚାଲିଗଲା ! ଏତିକ କହି ସେ ହଠାତ୍ କ୍ରୋଧରେ ଜଳି ଉଠି କହିବାକୁ ଲାଗିଲେ—ସେ ଘରକୁ ଯାଉ, ଅବା ଥାଉ, ଆମର ତାହା ସହିତ ଆଉ କୌଣସି ସମ୍ପର୍କ ନାହିଁ । କିନ୍ତୁ ତୁମେ ସୁରେଶ, ଯେତେବେଳେ ସମୟ ପାଇବ ଘରର ପୁଅ ଭଳି ଏଠାକୁ ଯିବା ଆସିବା କର । ଆମକୁ ବଡ଼ ଆନନ୍ଦ ଲାଗିବ । କିନ୍ତୁ ଆଜି ରହିବ ସେଇ ମିଥ୍ୟାବାଦୀ ବନ୍ଧୁ ବରଂ ଯେପରି ଏ ଘରେ କେତେବେଳେ ତା ପାଦ ନ ପକାଏ । ଦେଖା-ହେଲେ କହିଦେବ ତାର ଆଉ କୌଣସି ଲଜ୍ୟା ନଥାଉ ପଛକେ କିନ୍ତୁ ଅପମାନକୁ ଯେପରି ଭୟ ଥାଏ ।

ସୁରେଶ ହାଁ କରି ଚାହିଁରହିଲା । ତାର ମନର ଅବସ୍ଥା ବୁଝିପାରି କେଦାରବାବୁ ଉତ୍ସାହିତ ହୋଇ ପୁଣି କହିବାକୁ ଲାଗିଲେ—ନା, ନା, ସୁରେଶ ତୁମର ଏଥିରେ ଲଜ୍ୟା କରିବାର କିଛି ନାହିଁ । ବରଞ୍ଚ କର୍ତ୍ତବ୍ୟ କରିବାର ଗୌରବ ଅଛି । ତୁମେ ବୁଝିପାରୁ ନାହଁ ଯେ ତୁମେ କେତେବଡ଼ ବିପଦରୁ ଆମକୁ ରକ୍ଷା କଲ ଏବଂ କେତେଦୂର ପର୍ଯ୍ୟନ୍ତ ଆମମାନଙ୍କୁ ତୁମ ନିକଟରେ କୃତଜ୍ଞ କରି ପକାଇଲ ।

ଝିଅ ଆଡ଼କୁ ଚାହିଁ କହିଲେ—ମୁଁ ଗତ କାଲିଠାରୁ ବଡ଼ ଆଶ୍ଚର୍ଯ୍ୟ ହେଉଛି କିପରି ସେ ଲୋକଟା ସୁରେଶ ଭଳି ପିଲା ସହିତ ବନ୍ଧୁତ୍ୱ କରିଥିଲା ଏବଂ କିପରି ଏତେଦିନ ଧରି ସେହି ସମ୍ପର୍କଟାକୁ ଅବା ବଜାୟ ରଖି ପାରିଥିଲା ? କିଛି ସମୟ ନୀରବ ରହି ପୁଣି କହିଲେ—ଦିଏ ଏକଥା କରିପାରେ; ଆମ ଭଳି ଦୁଇଟି ନିରୀହ ପ୍ରାଣୀଙ୍କୁ ଭୁଲାଇ ଦେବାଟା ତା ପକ୍ଷରେ ବେଶୀ ବଡ଼ କଥା ନୁହେଁ ମାମି । କିନ୍ତୁ ଏହା ମଧ୍ୟ ବଡ଼ ଆଶ୍ଚର୍ଯ୍ୟର କଥା ଯେ ଏହି ଲୋକଟା ବାସ୍ତବିକ୍ କିଏ, କିପରି ଧରଣର, ଏସବୁ ଅନୁସନ୍ଧାନ କରିବା ମୋ ଭଳି ପ୍ରବୀଣ ବୟସର ଲୋକ ମନରେ କିପରି ଥରକ ପାଇଁ ଉଠି ନ ପାରିଲା ?

ସୁରେଶ ତୁଣ୍ଡରୁ ବାକ୍ୟ ସ୍ଫୁରିଲା ନାହିଁ । ସେ କେଦାରବାବୁଙ୍କ ମୁହଁଟେକ ସୁଦ୍ଧା ଚାହିଁପାରିଲା ନାହିଁ ।

କେଦାରବାବୁ କିଛି ସମୟ ନୀରବ ରହି ନିଜର ପୋଷାକପତ୍ର ପ୍ରତି ଦୃଷ୍ଟି ପକାଇ କହିଲେ—ମୋର କହିବା ବିଷୟ ତୁମକୁ ପଚାରିବାର ଅଛି ବାପା; ଟିକିଏ ବସ । ମୁଁ ଏଗୁଡ଼ାକ ବଦଳାଇ ଦେଇ ଆସେ କହି ଯିବାକୁ ଉଦ୍ୟତ ହେଲାବେଳେ ସୁରେଶ କହିଲା—ମୋର ବିଳମ୍ବ ହୋଇ

ାଲଣି । ମୁଁ ଆଜ ଯାଉଛୁ । ଆଉ ଦିନେ ଆସିବ । କହି ବଡ଼ ବ୍ୟସ୍ତ ହୋଇ କୌଣସି ମତେ ଗୋଟିଏ ନମସ୍କାର କରି ସେ ସଙ୍ଗେ ସଙ୍ଗେ ବାହାରି ପଡ଼ିଲା ।

ତାପରଦିନ ସକାଳବେଳେ ପୁଣି ସୁରେଶଙ୍କୁ ଆଉ ଥରେ ଦେଖିବାକୁ ମିଳିଲା ।

ଏହା ପରଦିନ କିନ୍ତୁ ଆଉଥରେ ଯେତେବେଳେ ତାହାର ଗାଡ଼ିର ଶବ୍ଦ ଶୁଣାଗଲା ସେତେବେଳକୁ ଅନେକ ବେଳ ହୋଇ ଯାଇଥାଏ । ବାପାଙ୍କୁ ଗାଧୋଇବା ଓ ଖାଇବା ପାଇଁ ତାଗିଦା କରି ଅଚଳା ଉଠିବାକୁ ଚେଷ୍ଟା କରୁଥିଲା । କିନ୍ତୁ ତାହାର ଆଉ ଉଠିବା ଦରକାର ପଡ଼ିଲା ନାହିଁ । ସେ ସେହି କୋଚରେ ବସି ଆନନ୍ଦରେ ସୁରେଶବାବୁ ତାଙ୍କ କଥାବାର୍ତ୍ତା ଆରମ୍ଭ କରିଦେଲା ।

ଅଚଳା ସହିତ ଏଣୁ ତେଣୁ ଦୁଇପଦ କଥାବାର୍ତ୍ତା ହୋଇ ସୁରେଶ ଯେତେବେଳେ ଉଠିବାକୁ ଚେଷ୍ଟା କଲା, ସେତେବେଳେ ତା ମୁଣ୍ଡର ଅଳିଆ ଓ ଶୁଖିଲା କେଶ ପ୍ରତି ଦୃଷ୍ଟି ପକାଇ କେଦାରବାବୁ ଅତ୍ୟନ୍ତ ବ୍ୟସ୍ତ ହୋଇ ପଡ଼ି କହିଲେ: ବର୍ତ୍ତମାନ ସୁଦ୍ଧା ସୁରେଶବାବୁ ତୁମର ବୋଧହୁଏ ଗାଧୁଆ ଓ ଖାଇବା ହୋଇନାହିଁ ?

ସୁରେଶ ଅଳ୍ପ ହସି କରି କହିଲା—ମୋର ଗାଧୋଇବା ଓ ଖାଇବା ଟିକିଏ ବିଳମ୍ବରେ ହୁଏ ।

କେଦାରବାବୁ ତାହା ଯେପରି ଶୁଣିବାକୁ ପ୍ରସ୍ତୁତ ନଥିଲେ । କହିବାକୁ ଲାଗିଲେ—କ'ଣ ଏତେବେଳ ଯାଏ ଗାଧୁଆ ସରିନାହିଁ ? ନା, ଆଉ ଏକ ମିନିଟ୍ ସୁଦ୍ଧା ଡେରି ହେବା ଉଚିତ୍ ନୁହେଁ । ଏହିଠାରେ ଗାଧୋଇ ଯାଅ, ଯାହା ଅଛି ତୁମକୁ ଖାଇ ନେବାକୁ ହେବ । ମା ଅଚଳା ତୁ ଟିକିଏ ଶୀଘ୍ର ଗାଧୋଇବାର ବ୍ୟବସ୍ଥା କରି କହି ବେହେରା, ବେହେରା, ଡାକି କେଦାରବାବୁ ବାହାରି ଗଲେ ।

ଅଚଳା ବର୍ତ୍ତମାନ ପର୍ଯ୍ୟନ୍ତ ସ୍ଥିର ହୋଇ ଠିଆ ହୋଇଥିଲା । ତାହାଠାରେ କୌଣସି ଚଞ୍ଚଳତା ପ୍ରକାଶ ପାଇ ନଥିଲା । ବାପା ଚାଲିଯିବା ପରେ ଆସ୍ତେ ଆସ୍ତେ ସେ କହିଲା—ଆପଣ ଆମ ଏଠାରେ କିଛି ଖାଇ ପାରିବେ କି ?

ସୁରେଶ ଅଚଳା ମୁହଁକୁ ଚାହିଁ କହି ଉଠିଲା—ଆପଣ ଏ କ'ଣ କହୁଛନ୍ତି ?

: ଆପଣ ତ ବ୍ରାହ୍ମମାନଙ୍କ ଘରେ ଖାଆନ୍ତି ନାହିଁ ।

: ନା, ଖାଏନାହିଁ । କିନ୍ତୁ ଆପଣ ଦେଲେ ଖାଇବ । ଟିକିଏ ନୀରବ ରହି ପୁଣି କହିଲା—ଆପଣ ବୋଧହୁଏ ଭାବୁଛନ୍ତି ମୁଁ ଥଟ୍ଟା କରୁଛି । କିନ୍ତୁ ତାହା ଆଦୌ ନୁହେଁ । ଆପଣ ହାତରେ ବେଢ଼ାଇ କରି ଦେଲେ ମୁଁ ପ୍ରକୃତରେ ଖାଇବ ।

ଏଥର ଅଚଳା ମୁହଁ ତଳକୁ କରି; ହସକୁ ଲୁଚାଇ କରି କହିଲା—ଯଥାର୍ଥରେ ମୁଁ ଭାବୁଥିଲି ଆପଣ ଥଟ୍ଟା କରୁଛନ୍ତି । ଗତ କାଲି ପର୍ଯ୍ୟନ୍ତ ଯେଉଁ ଘରେ ଖାଇବା ପାଇଁ ଆପଣଙ୍କର ଘୃଣାର ଅନ୍ତ ନଥିଲା, ଆଜି ସେହି ଘରେ, ସେମାନଙ୍କର ହାତ ଛୁଆଁ ଖାଦ୍ୟ ଖାଇବାକୁ କିପରି ପ୍ରବୃତ୍ତି ହେବ, ତାହା ତ ମୁଁ ଭାବି ପାରୁନାହିଁ ସୁରେଶବାବୁ ।

ସୁରେଶ ମୁହଁ ଲାଜରେ ଝାଉଁଳି ପଡ଼ିଲା । ସେ ବ୍ୟଥିତ କଣ୍ଠରେ କହିଲା—ତେବେ ଏତେ ସମସ୍ତ ପରେ କ'ଣ ଭାବି ପାରିଲେ ଯେ ଆପଣଙ୍କ ହାତରୁ ଖାଇବାକୁ ମୋର ଘୃଣା ଆସିପାରେ ?

ଅଚଳା କହିଲା—କିନ୍ତୁ ଏପରି ଭାବନା ହେବା ତ ସ୍ୱାଭାବିକ ସୁରେଶବାବୁ । ଆପଣଙ୍କ ପରି ଜଣେ ଉଚ୍ଚ ଶିକ୍ଷିତ ଭଦ୍ରଲୋକଙ୍କର ବହୁଦିନର ବଦ୍ଧମୂଳ ସାମାଜିକ ସଂସ୍କାର ଯେ ଦିନେ ହଠାତ୍ ପାଣି ଫାଟିଯିବ, ଏ କଥା କି ସହଜରେ ଚିନ୍ତା କରାଯାଇପାରେ ?

ସୁରେଶ କହିଲା—ନା, ସହଜ ନୁହେଁ । କିନ୍ତୁ ଅକାରଣରେ ଯେ ପାଣି ଫାଟି ଯାଉଛି, ସେପରି ଅବା ଭାବୁଛନ୍ତି କାହିଁକି ? କାରଣ ମଧ୍ୟ ଥାଇପାରେ; କହି ଏପରି ଦୃଷ୍ଟିରେ ଚାହିଁ ରହିଲା ଯେ, ଉତ୍ତର ଦେବାକୁ ଯାଇ ଅଚଳା ବିସ୍ମିତ ହୋଇ ଉଠିଲା । ନିଜର କହିବା କଥାରେ ସେ ଯେ ବେଦନା ଅନୁଭବ କରି ପାରିଛି, ତାହା ତାର ମୁହଁର ଭାବଭଙ୍ଗୀକୁ ଦେଖିଲେ ହିଁ ସ୍ପଷ୍ଟ ଜଣା ପଡ଼ୁଥିଲା ।

କଥାକୁ ସାମାନ୍ୟ ହାଲ୍‌କା କରିବାକୁ ଯାଇ ଅଚଳା ହସିଦେଇ କହିଲା—ଭାବି ଦେଖନ୍ତୁ, ଆପଣଙ୍କ ପରି କଠୋର ପ୍ରତିଜ୍ଞ ଲୋକ ମଧ୍ୟ···

ସୁରେଶ କହିଲା—ହଁ, ପ୍ରତିଜ୍ଞା ଭାଙ୍ଗି ବସନ୍ତି । ତାର ଗଳାର ସ୍ୱର କମ୍ପିବାକୁ ଲାଗିଲା । କହିଲା—ଆପଣ ଗୋଟିଏ ଦିନର କଥା କହୁଛନ୍ତି ତ ? କିନ୍ତୁ ଆପଣ ଜାଣନ୍ତି ? ଗୋଟିଏ ଦିନର ଭୂମିକମ୍ପ ଫଳରେ ସମଗ୍ର ଦୁନିଆଁର ଅଧା ପାତାଳ ଭିତରେ ବୁଡ଼ି ଯାଇପାରେ ? ଗୋଟିଏ ଦିନ କମ୍ ସମୟ ନୁହେଁ କହି ପୁଣି ନିର୍ନିମେଷ ଦୃଷ୍ଟିରେ ଚାହିଁ ରହିଲା ।

ଅଚଳା ମନେ ମନେ ଭୟ କରି ଉଠିଲା ।

ଏକରେ ପ୍ରବଳ ଗରମ, ତାହାପରେ ପୁଣି ଏତେବେଳ ପର୍ଯ୍ୟନ୍ତ ଗାଧୁଆ ଓ ଖିଆପିଆ ହୋଇନାହିଁ । ଗତ ରାତ୍ରିରେ ଦଣ୍ଡକ ପାଇଁ ଆଖିକୁ ନିଦ ଆସି ନାହିଁ । ସୁରେଶର ମନେ ହେଲା ସତେଯେପରି ତା ପାଦ ତଳର ମାଟି କମ୍ପିବାକୁ ଲାଗିଛି । ସେ ଆରକ୍ତ ଆଖି ଦୁଇଟାକୁ ବିସ୍ଫାରିତ କରି କହି ଉଠିଲା—ବ୍ରାହ୍ମ-ମାନଙ୍କୁ ଘୃଣା କରେ କି ନାହିଁ, ସେ ଜବାବ୍ ମୁଁ ବ୍ରାହ୍ମମାନଙ୍କୁ ଦେବି କିନ୍ତୁ ଆପଣ ମୋ ନିକଟରେ ସେମାନଙ୍କଠାରୁ ଅନେକ ଅନେକ ଉପରେ । ତାର ଉନ୍ମାଦ ଭଙ୍ଗି ଦେଖି ଭୟରେ ଅଚଳା କାଠ ହୋଇଗଲା । କୌଣସି ମତେ କଥାଟାକୁ ଏଡ଼ାଇ ଦେବା ପାଇଁ ଭୟରେ ତା ପାଟିରୁ ବାହାରି ପଡ଼ିଲା—ବେହେରା···

କିନ୍ତୁ ସେହି ଅସ୍ପଷ୍ଟ ମୃଦୁ ସ୍ୱରଟି ସୁରେଶର ଉତ୍ତପ୍ତ ଉଚ୍ଚ କଣ୍ଠରେ ଚାପା ପଡ଼ିଗଲା । ସେ ସେହିଭଳି ତୀବ୍ର କଣ୍ଠରେ କହିବାକୁ ଲାଗିଲା—ମାତ୍ର ଦୁଇଟା ଦିନର ପରିଚୟ । କିନ୍ତୁ ମନେରଖିନ୍ତୁ ଅଚଳାଦେବୀ, ଦିନ, ଘଣ୍ଟା, ମିନଟ୍ ନେଇ ମହତ୍ତ୍ୱକୁ ମପାଯାଇପାରେ, କିନ୍ତୁ ସୁରେଶକୁ ନୁହେଁ । ସେ ସ୍ଥାନ କାଳର ଊର୍ଦ୍ଧ୍ୱରେ, ତୁମେ ଭୂମିକମ୍ପ ଦେଖିଛ ? ଯାହା ପୃଥିବୀକୁ ଗ୍ରାସ କରିଦିଏ ?

ଅଚଳା ବ୍ୟାଧ ଭୀତ ହରିଣୀ ଭଳି ପଲକ ମାତ୍ରେ ଠିଆ ହୋଇପଡ଼ି, ଆପଣଙ୍କର ଗାଧୋଇବା ବ୍ୟବସ୍ଥା....କହି ଯିବାକୁ ପାଦ ବଢ଼ାଇବା ସମୟରେ ହଠାତ୍ ସୁରେଶ ଆଗକୁ ଝୁଙ୍କି ପଡ଼ି ଅଚଳାର ତାହାଣହାତ ଧରି ଟାଣିଦେଲା । ସେହି ଉନ୍ମତ୍ତ ଓ ଆକସ୍ମିକ ଆକର୍ଷଣକୁ ସହ୍ୟ କରିବା କୌଣସି ସ୍ତ୍ରୀ ଲୋକ ପକ୍ଷରେ ସମ୍ଭବ ନୁହେଁ । ସେ ଛୁଆଡ଼ି ହୋଇ ସୁରେଶ ଉପରେ ପଡ଼ିଗଲା । ଭୟ ଓ ବିସ୍ମୟ ଅତିକ୍ରମ କରି ତାର ଆର୍ତ୍ତିକଣ୍ଠରୁ ଅସ୍ପଷ୍ଟ ସ୍ୱରରେ "ମା—ଗୋ" ଆହ୍ୱାନ ନ ବାହାରୁଣୁ ସୁରେଶ ତାର ଦୁଇ ହାତକୁ ନିଜ ଛାତି ଉପରକୁ ଜୋର କରି ଟାଣିନେଇ ଡାକି ଉଠିଲା—ଅଚଳା ।

ଅଚଳା ଆଖି ଖୋଲି ମୂର୍ଚ୍ଛିତ ମାୟାମୁଗ୍ଧ ପରି ଚାହିଁ ରହିଲା ଏବଂ କିଛିକ୍ଷଣ ପାଇଁ ସୁରେଶକୁ କଥା କହି ପାରିଲା ନାହିଁ ।

କିଛି ସମୟ ଏହି ଭାବରେ କଟିବା ପରେ ସୁରେଶ ଆଉ ଥରେ ଅଚଳାର ଦୁଇ ହାତକୁ ଛାତି ଉପରେ ଚାପି ରଖି ଉଚ୍ଛ୍ୱସିତ ହୋଇ କହିବାକୁ ଲାଗିଲା—ଅଚଳା, ଥରକ ପାଇଁ, ଭୂମିକମ୍ପର ପ୍ରଚଣ୍ଡ ହୃଦସ୍ପନ୍ଦନକୁ ନିଜର ଦୁଇଟି ହାତରେ ଅନୁଭବ କରି ଦେଖ, କି ପ୍ରକାର ଭୀଷଣ ତାଣ୍ଡବଲୀଳା ଏଇ ବୁକୁ ଭିତରେ ଅନବରତ ଚାଲିଛି । ଏହା କ'ଣ ପୃଥିବୀର ଯେ କୌଣସି ଭୂମିକମ୍ପଠାରୁ ଶ୍ରେଷ୍ଠ ? କହିପାରିବ ଅଚଳା, ପୃଥିବୀରେ କୌଣସି ଜାତି,

କୌଣସି ଧର୍ମ, କୌଣସି ମତାମତ ଅଛି ଯାହା କି ଏହି ବିପ୍ଳବ ମଧ୍ୟରେ ପଡ଼ି ରସାତଳକୁ ଗୁଲ୍ଲି ନ ଯିବ ?

: ଗୁଡ଼ନ୍ତୁ ନା, ବାବା ଆସିଯିବେ । କହି ଜୋରକରି ନିଜକୁ ସୁରେଶଠାରୁ ମୁକ୍ତ କରି ଅଚଳା ତାର ଚୌକିରେ ଶାନ୍ତ ହୋଇ ବସି ପଡ଼ିଲା । ପରକ୍ଷଣରେ କେଦାରବାବୁ ବ୍ୟସ୍ତ ହୋଇ ଘର ଭିତରେ ପ୍ରବେଶ କରି କହି ଉଠିଲେ—ମୋର ଟିକିଏ ବିଳମ୍ବ ହୋଇଗଲା । ଆଉ ଏ ବେହେରାଟା କାମବେଳେ କୁଆଡ଼େ ଯେ ଯାଏ, ତାର ଠିକ ଠିକଣା ଜଣା ପଡ଼େ ନାହିଁ । ମା ଅଚଳା; ଏ କ'ଣ ? ତୋର କ'ଣ ଦେହ କିଛି ଖରାପ ହେଲାକି, ନଚେତ୍ ଏପରି ମୁହଁ ଶୁଖାଇ ବସିଛୁ କାହିଁକି ?

ଅଚଳା କୌଣସିମତେ ହସିବାକୁ ଚେଷ୍ଟା କରି କହିଲା—ନା, ବାବା, ଦେହ ଖରାପ ହେବ କାହିଁକି ?

: ତେବେ ମୁଣ୍ଡ ବ୍ୟଥା ହେଉଛିକି ? ଯେଉଁ ପ୍ରକାର ଗରମ ହେଉଛି ନା ସେଥିରେ........

ନା, ମୁଁ ଭଲ ଅଛି ବାପା, ମୋର କିଛି ହୋଇନାହିଁ ।

କେଦାରବାବୁ ନିଶ୍ଚିନ୍ତ ହୋଇ କହିଲେ—ତାହାହେଲେ ଭଲ କଥା । ତୋ ମୁହଁ ଦେଖି ମୋ ମନରେ ଭୟ ଆସିଯାଇଥିଲା । ତେବେ ତୁ ଟିକିଏ ଦେଖ୍, ଯଦି ମା···

ଅଚଳା କହିଲା—ବେଶ୍ ବାବା, ମୁଁ ମିନିଟ୍‌କ ଭିତରେ ସମସ୍ତ ବନ୍ଦୋବସ୍ତ କରିଦେଉଛି । କିନ୍ତୁ ମୁଁ ଏଇମାତ୍ର ସୁରେଶବାବୁଙ୍କୁ ପ୍ରଶ୍ନ କରୁଥିଲି ଯେ —ଆମର ଏଠାରେ ଗାଧୋଇବା ଓ ଖାଇବାରେ ତାଙ୍କର ଆପତ୍ତି ନାହିଁ ତ ?

କେଦାରବାବୁ ଆଶ୍ଚର୍ଯ୍ୟ ହୋଇ କହି ଉଠିଲେ ଆପତ୍ତି କାହିଁକି ହେବ ! ନା, ନା, ସୁରେଶ ମୁଁ ତ ତୁମକୁ କହୁଛି ଯେ ତୁମକୁ ମୁଁ ଘରର ପୁଅ ଭଳି ମନେ କରେ । ଏଘର ତୁମର ନିଜର ଘର ପରି । ଝିଅ ଆଡ଼କୁ ଗୁହିଁ ସଗର୍ବରେ କହିଲେ ତା ଯଦି ନ ହୋଇଥାନ୍ତା ତେବେ ଭଗବାନ୍ ଆମକୁ ଉଦ୍ଧାର କରିବା ପାଇଁ ତାଙ୍କୁ ପଠାଇ ଥାନ୍ତେ କାହିଁକି ମା ? ଆଉ ବେଶୀ ଡେରି କରିବା ଭଲ ହେବନି ବାପା । ଆସ ମୋ ସଙ୍ଗରେ; ତୁମକୁ ମୁଁ ଗାଧୁଆ ଘରଟା ଦେଖାଇ ଦିଏ । କିନ୍ତୁ କେଦାରବାବୁ ପ୍ରବେଶ କରିବା ପୂର୍ବରୁ ସୁରେଶ ସେଇ ଯେ ମୁହଁ ତଳକୁ ପୋତି ବସିଥିଲା; ତାହାକୁ ଆଉ କୌଣସିମତେ ଉପରକୁ କରିପାରିଲା ନାହିଁ ।

ଅଚଳା କହିଲା—ଏତେ ବାଧବାଧକତାର ଦରକାର କ'ଣ ବାପା ? ଆମ ବ୍ରାହ୍ମ ଘରେ ଖାଇବାକୁ ତାଙ୍କର ବିଶେଷ ଆପତ୍ତି ଅଛି ! ତାହାଛଡ଼ା ଆଗ୍ରହ ନ ଥାଇ ଖାଇଲେ ଦେହ ଅସୁସ୍ଥ ହୋଇପାରେ....

କେଦାରବାବୁ ଏକ ପ୍ରକାର ଋର୍ଙ୍ଗି ପଡ଼ିଲେ । ସୁରେଶ ବଡ଼ଲୋକର ପୁଅ । ସ୍ୱାଧୀନ । ନଜର ଗାଡ଼ିରେ ଚଢ଼ି ଯାତାୟତ କରେ । ତାହାକୁ ଖୁଆଇ ପିଆଇ, ଯତ୍ନ କରି ଯେ କୌଣସି ପ୍ରକାରେ ନଜର କରିପାରିବା ହିଁ ତାଙ୍କର କର୍ତ୍ତବ୍ୟ । ହଠାତ୍ ତାର ଆନତ ମୁଖର ଏକ ଅଂଶରେ ନଜର ପଡ଼ିବା ମାତ୍ରେ କେଦାର ବାବୁ ବିସ୍ମୟରେ ଚମକି ପଡ଼ି କହିଲେ—ଏଁ ! ଏ କ'ଣ ହୋଇଛି ତୁମର ସୁରେଶ ? ଶୁଖି କରି ସାରା ମୁହଁଟା କାହିଁକି କଳା କାଠ ପଡ଼ିଯାଇଛି ? ଉଠ ଉଠ, ମୁଣ୍ଡରେ ଆଉ ମୁହଁରେ ପାଣି ଟୋପାଏ ଦେବାପାଇଁ ମିନିଟିଏ ସୁଦ୍ଧା ବିଳମ୍ବ ହୋଇ ପାରିବ ନାହିଁ—କହି ହାତଧରି ଏକପ୍ରକାର ଜୋର କରି ଟାଣି ନେଇଗଲେ ।

ଖାଇସାରିବା ପରେ ଏତେ ବଡ଼ ଝଗଡ଼ାରେ କେଦାରବାବୁ କୌଣସିମତେ ସୁରେଶକୁ ଛାଡ଼ିଦେଲେ ନାହିଁ । ବିଶ୍ରାମ ନାମରେ ସମସ୍ତ ଦ୍ୱିପହର ଗୋଟାଏ ଘରେ କଏଦୀ ଭଳି ଅଟକାଇ ରଖିଲେ । ସେ ଆଖି ବନ୍ଦ କରି କୋଚ ଉପରେ କୌଣସି ମତେ ପଡ଼ି ରହିଲା ସିନା କିନ୍ତୁ କୌଣସିମତେ ଶୋଇ ପାରିଲା ନାହିଁ । ଘର ବାହାରେ ଆକାଶରେ ମଧ୍ୟାହ୍ନର ସୂର୍ଯ୍ୟ ଜଳିବାକୁ ଲାଗିଥିଲା ବେଳେ, ଭିତରେ ଅସଂଯମର ଆତ୍ମଗ୍ଲାନିରେ ତତୋଧିକ ଭୀଷଣ ତେଜରେ ସୁରେଶର ବୁକୁ ଭିତରଟା ଜଳିବାକୁ ଲାଗିଥାଏ । ଏହିପରି ବାହାରେ ଓ ଭିତରେ ପୋଡ଼ି ହୋଇ ଅଧାମରା ହୋଇ ଯେତେବେଳେ ସେ ଉଠିବସି ଆଗର ଝରକାଟା ଖୋଲି ଦେଲା ସେତେ-ବେଳକୁ ବେଳ ଗଡ଼ି ଯାଇଥାଏ ।

କେଦାରବାବୁ ପ୍ରସନ୍ନ ମୁଖରେ ଘର ଭିତରେ ପ୍ରବେଶ କରି ଗୋଟାଏ ଦୀର୍ଘଶ୍ୱାସ ଟାଣି କହିଲେ—ବୁଝିଲ ସୁରେଶ, ବେଶ ଗରମ ଏ ବର୍ଷ ପଡ଼ୁଛି । ମୋର ଏତେ ବୟସ ଭିତରେ କଲିକତାରେ ଏହା ଆଗରୁ ଏପରି ଗରମ ପଡ଼ୁଥିବାର କେବେ ଦେଖି ନଥିଲି । କ'ଣ ଟିକିଏ ନିଦଫିଦ ହୋଇଥିଲା ତ ?

ସୁରେଶ ମୁଣ୍ଡ ହଲାଇ କହିଲା—ନା, ଦିନ ବେଳରେ ମୁଁ ଆଦୌ ଶୋଇ ପାରେନାହିଁ ।

କେଦାରବାବୁ ତତ୍‌କ୍ଷଣାତ୍ କହିଲେ ଆଉ ଏଣିକି ଶୋଇବା ମଧ୍ୟ ଉଚିତ୍ ନୁହେଁ । ଏଥିରେ ଭୟଙ୍କର ସ୍ୱାସ୍ଥ୍ୟହାନି ହୁଏ । ତଥାପି ମୁଁ ମଧ୍ୟ ଦିନ ଗୃହଥର ଆସି ତୁମ ଘରର ପଙ୍ଖା ଟଣା ଲୋକଟାକୁ ଦେଖି ଯାଉଥିଲି । ସେ ଶୋଇଛି ନା ପଙ୍ଖା ଟାଣୁଛି ? ଏମାନେ ଏତେବଡ଼ ସୟତାନ ଯେ, ତୁମେ ଦଣ୍ଡେ ଆଖି ବୁଜିକି ନ ଥିବ ସେମାନେ ଘୁଙ୍ଗୁଡ଼ି ମାରିବସିବେ । ଯାହାହେଉ, ଭଲ ଲାଗୁଛି ତ ? ମୁଁ ଭଲ କରି ଜାଣିଥିଲି—ତୁମେ ଯଦି ଏହିଭଳି ଗରମରେ ବାହାରକୁ ବାହାରିଥାନ୍ତ ନା କଦାପି ବଞ୍ଚି ନଥାନ୍ତ ।

ସୁରେଶ ଚୁପ୍‌କରି ବସି ରହିଲା । କେଦାରବାବୁ ଘରର ଅନ୍ୟ ଝରକାଗୁଡ଼ିକ ଗୋଟିକ ପରେ ଗୋଟିଏ ଖୋଲି ଦେଇ ଚୌକିଟିଏ ଟାଣିନେଇ ବସି ପଡ଼ି କହିଲେ —ମୁଁ ଭାବୁଛି, କୌଣସି କଥା ଆଉ ଗୋପନ ନ ରଖି ସବୁ ବିଷୟ ସ୍ପଷ୍ଟ କରି ମହିମକୁ ଲେଖି ଜଣାଇ ଦେବି । ଏଥିରେ ତୁମର ମତ କ'ଣ ?

ପ୍ରଶ୍ନଟା ଯେପରି ସୁରେଶ ପିଠିରେ ନିର୍ଘାତ ଗୃହୁକ ମାଡ଼ ପରି ଲାଗିଲା । ସେ ଚମକି ଉଠିଲା । ତାହା କେଦାରବାବୁ ଦେଖିପାରି କହିଲେ—କର୍ତ୍ତବ୍ୟପାଇଁ କିପରି ନିଷ୍ଠୁର ହେବାକୁ ହୁଏ ତାହା ତୁମେ ତ ସୁରେଶ ଏତେକାଳ ପରେ ମୋତେ ଜଣାଇ ଦେଲ । ଏଣିକି ତୁମେ ପଛାଇଲେ ଚଳିବ ନାହିଁ ।

: ଅବଶ୍ୟ ଠିକ୍ କଥା । ସୁରେଶ କିଛିକ୍ଷଣ ମୌନ ରହି କହିଲା– କିନ୍ତୁ ଆପଣଙ୍କର କନ୍ୟାଠାରୁ ଏ ସମ୍ବନ୍ଧରେ ମତାମତ ନେବା ଦରକାର···

କେଦାରବାବୁ ଅଳ୍ପ ହସି କହିଲେ- ମତାମତ ଯେ ନ ନିଆଯାଇଛି ତାହା ନୁହେଁ ।

: ସେ କ'ଣ ଚିଠି ଲେଖି ଦେବାକୁ କହିଲେ ?

କେଦାରବାବୁ ଏହାର ସିଧାସଳଖ ଉତ୍ତର ନ ଦେଇ କହିଲେ— ଅବଶ୍ୟ ଏକରକମ ସେହିପରି । ଏ ସବୁ ବିଷୟରେ ମୁହାଁ ମୁହିଁ ପ୍ରଶ୍ନୋତ୍ତର କରିବାଟା ସମସ୍ତଙ୍କ ପକ୍ଷରେ କଷ୍ଟକର । କିନ୍ତୁ ସେ ତ ବଡ଼ ହୋଇଛି । ଉଚ୍ଚ ଶିକ୍ଷା ମଧ୍ୟ ପାଇଛି । ଏ ସମସ୍ତ ଘଟଣାକୁ ବେଳ ଥାଉ ଥାଉ ପରିଷ୍କାର କରି ନ ଦେଲେ, ଏହାର ପରିଣାମ ଯେ କେଉଁଠି ଯାଇ ପହଞ୍ଚିବ; ଏକଥା ସେ ନିଶ୍ଚୟ ବୁଝେ । ସେଥିପାଇଁ ଭାବୁଛି ଆଜି ରାତ୍ରିରେ କାମଟା ସାରିଦେବି ।

ସୁରେଶ ହସି ଦେଇ କହିଲା—ଏତେ ତରବର କାହିଁକି ? ଦୁଇ ଦିନ ଚିନ୍ତା କରିବା ଉଚିତ୍ ।

କେଦାର ବାବୁ କହିଲେ—ଏଥିରେ ଆଉ ଚିନ୍ତା କରିବାର କ'ଣ ଅଛି ? ତା ହାତରେ ଝିଅର ହାତ ଛନ୍ଦି ଦେଇ ପାରିବ ନାହିଁ; ଯଦି ଏହା ନିହାତି ସତ୍ୟ କଥା; ସେତେବେଳେ ଏଇ ଅସୁନ୍ଦର ଘଟଣାଟା ଯେତେଶୀଘ୍ର ଶେଷ ହୁଏ ସେତେ ମଙ୍ଗଳ ।

ସୁରେଶ ପ୍ରଶ୍ନ କଲା—ମୋ ନାମ ଉଲ୍ଲେଖ କରିବା କ'ଣ ନିହାତି ପ୍ରୟୋଜନ ?

କେଦାରବାବୁ ହସି କରି କହିଲେ, ବୁଢ଼ା ହେଲିଣି, ମୋର କ'ଣ ଏଇ ଟିକକ ଅକ୍‌କଲ ନାହିଁ ? ତୁମ ନାମ କୌଣସି ଦିନ କେହି ହେଲେ ଉଠାଇବେ ନାହିଁ ।

ସୁରେଶ ସ୍ୱସ୍ତିର ନିଃଶ୍ୱାସ ମାରିଲା । ସେ କିନ୍ତୁ ଆଉ କୌଣସି କଥା କହିଲା ନାହିଁ । ଚୁପ୍ କରି ବସିରହିଲା । ଏହି ନିଃଶ୍ୱାସଟି 'କେଦାରବାବୁଙ୍କ ଆଖିରୁ ବାଦ୍ ଗଲାନାହିଁ । ସେ ସୁରେଶର ଏହା ମଧ୍ୟରେ ଦୁଇ, ତିନିଟା ଆଚରଣ ଲକ୍ଷ୍ୟ କରି ମନେ ମନେ କିଛି ସ୍ଥିରକରି ସାରିଥିଲେ । ସେହି ଅନୁମାନଟା ସତ୍ୟ କି ମିଥ୍ୟା ଜାଣିବା ପାଇଁ ଅନ୍ଧକାରକୁ ଢେଳା ଫିଙ୍ଗିଲା ପରି କହିଲେ—ତୁମେ ଆମର ଏତେ ବଡ଼ ଉପକାର କରିଛ କିନ୍ତୁ ଏହାଠାରୁ ଆହୁରି କିଛି ବଡ଼ ଉପକାର ଆମେ ତୁମ୍ଭେ ତୁମ-ଠାରୁ ଆଶାକରୁ । ଆମେ ବ୍ରାହ୍ମ କିନ୍ତୁ ବ୍ରାହ୍ମ କହିଲେ ଯାହା ବୁଝାଏ ଆମେ ମାନେ ତାହା ନୋହୁ । ମୋ ଝିଅ ଠିକ୍ ତାର ମାଆ ପରି ହିନ୍ଦୁ ହୋଇ ରହି-ଯାଇଛି ; ସେ ଆମର ବ୍ରାହ୍ମ ଧର୍ମର ଆଗ୍ରହ ବଗ୍ରହକୁ ଆଦୌ ପସନ୍ଦ କରେ ନାହିଁ ।

ସୁରେଶ ବିସ୍ମୟାଭିଭୂତ ହୋଇ କେଦାରବାବୁଙ୍କ ମୁହଁକୁ ଚାହିଁ ରହିଲା । ତାହାର ଏହି ନୀରବ ଆଗ୍ରହକୁ ବିଶେଷ ଭାବରେ ଲକ୍ଷ୍ୟ କରି କେଦାରବାବୁ କହିଲେ —ଏହା ବୋଲି କୌଣସିମତେ ମୁଁ ମୋର ଝିଅକୁ ତ ଆଉ ବାହା ନ କରାଇ ବୁଢ଼ୀ କରି ରଖି ପାରିବି ନାହିଁ । ଏ ବିଷୟରେ ମୁଁ ତୁମ ସହିତ ସମ୍ପୂର୍ଣ୍ଣ ହିନ୍ଦୁ ମତାବଲମ୍ବୀ । ଗୋଟିଏ ସମ୍ବନ୍ଧ ଯେପରି ତୁମେ ଭାଙ୍ଗି ଦେଲ, ସେପରି ଆଉ ଗୋଟିଏ ତୁମକୁ ଗଢି ତୋଳିଦେବାକୁ ହେବ ବାବା ।

ସୁରେଶ କହିଲା—ଆଜ୍ଞା ମୁଁ ପ୍ରାଣପଣେ ଚେଷ୍ଟା କରିବି ।

ସୁରେଶ ମୁହଁର ଭାବଭଙ୍ଗୀକୁ ଅନୁଧ୍ୟାନ କରି ସନ୍ଦିଗ୍ଧ ସ୍ୱରରେ କେଦାର ବାବୁ କହିଲେ—ଅବଶ୍ୟ ସମାଜରେ ଏଥିପାଇଁ ଯଥେଷ୍ଟ ଗୋଳମାଳ ଦେଖା ଦେବ। କିନ୍ତୁ ଯେତେ ଶୀଘ୍ର ହେଉ ଅଚଳାକୁ ବିବାହ ଦେଇ ଏ ସବୁ ଆଲୋଚନାକୁ ବନ୍ଦ କରି ଦେବାକୁ ହେବ। ଗୋଟାଏ ଗୁରୁତର କଥା ଅଛି ସୁରେଶ; କହି ଦରଜା ବାହାରକୁ ଚାହିଁ କଣ୍ଠ ସ୍ୱରରେ ସାମାନ୍ୟ କରୁ ତା ଭରି ପୁଣି କହିଲେ ଗୁରୁତର ହେଉଛି ଏଇଥିପାଇଁ ଯେ ପାଣିଟି ରୂପ ଓ ଗୁଣରେ ଭଲ ହେଲେ ବୁଢ଼ା ହିନ୍ଦୁ ସମାଜ ଭଳି ତାକୁ ଧରିଆଣି ବାହା ଦେଇ ପାରିବ ନାହିଁ, ଯେହେତୁ ସେ ଚିରକାଳ ଯେଉଁ ଶିକ୍ଷା ଏବଂ ସଂସ୍କାର ମଧ୍ୟରେ ବଢ଼ି ଆସିଛି ସେଥିରେ ତାର ମତ ବିରୁଦ୍ଧରେ କିଛି କରିଯାଇ ପାରିବ ନାହିଁ। ମତ ଅବଶ୍ୟ ସେ କୌଣସି ଦିନ ଦେବ ନାହିଁ; ଯେପର୍ଯ୍ୟନ୍ତ ଦୁଇଜଣଙ୍କ ଭିତରେ ଏପରି ଗୋଟାଏ କିଛି....ବୁଝିଲ ନା ସୁରେଶ ?

କଥାବାର୍ତ୍ତା ମଝିରେ ସୁରେଶ ଅନ୍ୟମନସ୍କ ହୋଇ ପଡ଼ିଥିଲା। ଏହି ପ୍ରଶ୍ନର ଇଙ୍ଗିତଟା ଯେପରି ଆହୁରି ଥରେ ନୂଆ କରି ତାହାକୁ ଅଚେତନ କରିଦେଲା। ଦିପହର ବେଳେ ନିଜର ସେହି ଉଚ୍ଛୃଙ୍ଖଳ ପ୍ରଣୟ ନିବେଦନର ବିଭତ୍ସ ଉତ୍କଟ ଆଚରଣ ମନେ ପଡ଼ିଯିବାରୁ ନିଦାରୁଣ ଲଜ୍ଜାରେ ତାର ମୁହଁଟା କଳା ପଡ଼ିଗଲା। ସକାଳର ଯେଉଁ କାଗଜ ଖଣ୍ଡିକ ମେଜ ଉପରେ ପଡ଼ିଥିଲା, ତାକୁ ଟାଣି ନେଇ ସେଥିରେ ଥିବା ବିଜ୍ଞାପନ ଗୁଡ଼ାକ ଦେଖୁ ଦେଖୁ ପୃଷ୍ଠା ଓଲଟାଇବାକୁ ଲାଗିଲା।

କେଦାର ବାବୁ ଏହା ଦେଖି ପାରିଲେ ଏବଂ ମନେ ମନେ ଆକସ୍ମିକ ଭାବ ପରିବର୍ତ୍ତନର ବିପରୀତ ଅର୍ଥ କରି ପୁଲକିତ ହୋଇ ଉଠିଲେ। ସୁଯୋଗ ଦେଖି ଗୋଟାଏ ବଡ଼ ରକମ ଗୁଲି ସେ ଚଳାଇ ଦେଲେ। କହିଲେ—ମୁଁ ବରାବର ଗୋଟାଏ ଆଶ୍ଚର୍ଯ୍ୟ ଜିନିଷ ଲକ୍ଷ୍ୟ କରି ଆସୁଛି ସୁରେଶ, କାହିଁକି କେଜାଣି ଜଣକୁ ଜନ୍ମରୁ ପାଖରେ ପାଇ ସୁଦ୍ଧା ଟିକେ ମାତ୍ର ବିଶ୍ୱାସ କରି ହୁଏନା; ଅଥଚ ଆଉ ଜଣକୁ ମାତ୍ର ଦୁଇଘଣ୍ଟା ପାଇଁ ପାଖରେ ପାଇଲା ମାତ୍ରେ ତାହାର ହାତରେ ନିଜର ପ୍ରାଣଟା ପର୍ଯ୍ୟନ୍ତ ସମର୍ପି ଦେବାକୁ ଇଚ୍ଛା ହୁଏ। ମନେହୁଏ କେବଳ ଦୁଇ ଘଣ୍ଟା ପାଇଁ ନୁହେଁ, ସତେ ଯେପରି ଜନ୍ମ ଜନ୍ମାନ୍ତର ଧରି ତାହା ସହିତ ସମ୍ପର୍କ ଅଛି। ଏଇ ମନେକର ଯେପରି ତୁମେ। କେତେକ୍ଷଣ ଅବା ତୁମ ସହିତ ପରିଚୟ କୁହତ ଦେଖି ?

ଠିକ୍ ଏହି ସମୟରେ ଅଚଳା ଘର ଭିତରକୁ ପ୍ରବେଶ କଲା। ସୁରେଶ ମୁହୂର୍ତ୍ତକ ପାଇଁ ଆଖି ଟେକି ଚାହିଁଦେଇ ପୁଣି ଖବର କାଗଜ ଉପରେ ଆଖି ବୁଲାଇବାକୁ ଲାଗିଲା।

: ଅଚଳା ପଗ୍ଭରଲ୍ ବାବା, ତୁମେ ବର୍ତ୍ତମାନ ଗ୍ଭ ନା, କୋକୋ ଖାଇବ ?

: ମୁଁ କୋକୋ ହିଁ ଖାଇବ ମା ।

: ସୁରେଶ ବାବୁ—ଆପଣ ଗ୍ଭହା ଖାଇବେ ତ ?

: ସୁରେଶ କାଗଜ ଉପରେ ଆଖିରଖି କହିଲା—ମୋ ପାଇଁ ଗ୍ଭହା ଦେବେ ।

: ଆପଣଙ୍କ ଗ୍ଭହାରେ କମ ଚନି ଦେବାକୁ ହେବନି ତ ?

: ନା; ଆଉ ପାଞ୍ଚଜଣ ଯେପରି ଖାଆନ୍ତି, ମୁଁ ସେହିପରି ଖାଏ ।

ଅଚଳା ଗ୍ଭଲିଗଲା । କେଦାର ବାବୁ ତାଙ୍କର ଛିନ୍ନ ପ୍ରସଙ୍ଗର ସୂତ୍ର ଯୋଡ଼ି ଧୀରେ ଧୀରେ କହିଲେ, ଏଇ ଦେଖନା ସୁରେଶ ! ମୋର ଏଇ ମାଆଟି ପାଇଁ ମୁଁ କେବଳ ବୁଢ଼ା ବୟସରେ ବିପଦଗ୍ରସ୍ତ ହୋଇ ପଡ଼ିଛି, ଏକଥା କ'ଣ ତୁମ ପାଖରେ ଗୋପନ କରି ରଖି ପାରିଲି ? ନ ହେଲେ ନିଜର ଦୁର୍ଦ୍ଦଶା, ଦୂରବସ୍ଥାର କାହାଣୀ ସହଜରେ କେହି କ'ଣ ଅପର ଲୋକକୁ କହିପାରେ ? ଏତେ ବନ୍ଧୁ ବାନ୍ଧବ ଥାଉ ଥାଉ କାହା ନିକଟରେ ଯେତେବେଳେ ପ୍ରକାଶ କରିପାରି ନାହିଁ ସେତେବେଳେ କିନ୍ତୁ ତୁମ ନିକଟରେ କହିବାକୁ ମୋତେ ଆଦୌ ସଙ୍କୋଚ ବୋଧ ହେଲି ନାହିଁ । ଏଥିରେ କ'ଣ କୌଣସି ଗୂଢ଼ କାରଣ ନାହିଁ ବୋଲି ତୁମେ ମନେ କରି ପାରୁଛ ?

ସୁରେଶ ବିସ୍ମିତ ହୋଇ ମୁହଁ ଫେରାଇ ଗ୍ଭହିଁ ରହିଲା । କେଦାରବାବୁ କହିବାକୁ ଲାଗିଲେ—ଏହା ହେଉଛି ଭଗବାନଙ୍କର ନିର୍ଦ୍ଦେଶ । ଗୋପନ କରିବାକୁ ମୋର ସାଧ ନାହିଁ । ମୋତେ କହିବାକୁ ହିଁ ହେବ କହି ଚୌକିର ହାତ ଉପରେ ଜୋର କରି ଗୋଟାଏ ଗ୍ଭପୁଡ଼ା ମାରିଲେ ।

କେଦାର ବାବୁଙ୍କର ଏହି ବିସ୍ତୃତ ଭୂମିକା ସତ୍ତ୍ୱେ ତାଙ୍କର ଦୁର୍ଦ୍ଦଶା ଓ ଦୂରବସ୍ଥା କଥା ସୁରେଶ ଅନ୍ଦାଜ କରିପାରିଲା ନାହିଁ । ଯେତେବେଳେ ସେ ବିଶଦ ଭାବରେ ବର୍ଣ୍ଣନା କରିବାକୁ ଲାଗିଲେ ଯେ ତାଙ୍କର ଏଇ ଅର୍ଡ଼ର ସପ୍ଲାଇ ବ୍ୟବସାୟଟା ନିଛକ ପ୍ରବଞ୍ଚନା ଏବଂ କୃତଘ୍ନତାର ନିଆଁରେ ପୋଡ଼ି ଯାଉଥିଲେ ମଧ୍ୟ ସେ ଅବିଚଳିତ ଭାବରେ ଦମ୍ଭର ସହିତ ଠିଆ ହୋଇଛନ୍ତି ଏବଂ ଋଣର ପରିମାଣ ଉତ୍ତୋରତ୍ତର ବଢିବାକୁ ଲାଗିଥିଲେ ମଧ୍ୟ ଏକମାତ୍ର କନ୍ୟାର ଶିକ୍ଷା ସମ୍ବନ୍ଧରେ ସେ ଟିକିଏ ମାତ୍ର ବ୍ୟୟ ସଙ୍କୋଚ କରି ନାହାନ୍ତି । ଗୋଟିଏ ଲୁହେଁ, ପାଞ୍ଚଟି, ଛଅଟି ଡିଗ୍ରୀ ଜାରି ଭୟରେ ତାଙ୍କର ଆହାର ବିହାର ବିଷମୟ ଏବଂ ଖୁଚୁରା ଋଣ ତାଗିଦାରେ ଜୀବନ ଦୁର୍ବହ ହୋଇ ଉଠିଲେ ମଧ୍ୟ ସେ କାହାକୁ

ମୁହଁ ଫିଟାଇ କିଛି କେବେ କହି ପାରି ନାହାଁନ୍ତି ଯଦିଓ ଏଇ କଲିକତା ସହରରେ ତାଙ୍କର ଏପରି ଅନେକ ବନ୍ଧୁ ଅଛନ୍ତି ଯେଉଁମାନେ କି ଇଚ୍ଛାକଲେ ଅନାୟାସରେ ତାଙ୍କୁ ଟଙ୍କା ଦେଇ ପାରନ୍ତେ ।

କିଛିକ୍ଷଣ ଅଟକି ଯାଇ କ'ଣ ଚିନ୍ତା କରି ପୁଣି କହି ଉଠିଲେ—କିନ୍ତୁ ତୁମକୁ ଯେ ଜଣାଇଲି, ଏଡେ ଟିକିଏ ସୁଦ୍ଧା ଦ୍ୱିଧା କିମ୍ବା ସଂକୋଚ ହେଲି ନାହିଁ ଏହା କ'ଣ ଭଗବାନଙ୍କର ଆଦେଶ ନୁହେଁ ? ଏତିକି କହି ପରମ ଭକ୍ତିରେ ଦୁଇ ହାତ କପାଳରେ ଛୁଆଁଇ ନମସ୍କାର କଲେ ।

ସୁରେଶର ଭଗବାନଙ୍କଠାରେ ଆସ୍ଥା ନ ଥିଲା । ତେଣୁ ସେ ବୃଦ୍ଧଙ୍କର ବିଶ୍ୱାସ ସହିତ ଯୋଗ ଦେଇ ପାରିଲା ନାହିଁ । ବରଂଚ ତାର ମନଟା କିପରି ଖ୍ରେଟ ହୋଇଗଲା । ଧୀର ସ୍ୱରରେ ସେ ପ୍ରଶ୍ନ କଲା—ଆପଣ ଋଣ କରିଛନ୍ତି କେତେ ?

କେଦାରବାବୁ କହିଲେ—ଋଣ ? ମୋର ବ୍ୟବସାୟଟା ବଞ୍ଚି ରହିଥିଲେ ଏହି ଋଣକୁ ମୁଁ କଣ ଖାତିର କରିଥାନ୍ତି ? ବେଶୀ ହେଲେ ତିନି-ଚାରି ହଜାର ହେବ । ସେ ଆଉ କିଛି କହିବାକୁ ଯାଉଥିଲେ; କିନ୍ତୁ ଏପରି ସମୟରେ ଅଚଳା ବେହେରା ହାତରେ ଚାହାର ସରଞ୍ଜାମ ଏବଂ ନଳେ ଜଳଖିଆ ଧରି ପ୍ରବେଶ କଲା ।

କେଦାରବାବୁ ଗରମ କୋକୋରେ ଏକ ଚୁମୁକ ଦେଇ ଆନନ୍ଦରେ ଚିତ୍କାର କରି କହି ଉଠିଲେ ଦେଖ ସୁରେଶ, ମୋ ଉପରେ ଭଗବାନଙ୍କର ଏହି ଅପାର କୃପାକୁ ମୁଁ ବରାବର ଲକ୍ଷ୍ୟ କରି ଆସୁଛି ଯେ, ସେ କେତେବେଳେ ମୋତେ ଅପ୍ରସ୍ତୁତ କରାଇ ଦେଇ ନାହାନ୍ତି । ମହିମକୁ କଥାଟା କହିବ, କହିବ ଭାବି କେବେ କହି ପାରିଲି ନାହିଁ । ଏତେ ଦିନ ପରେ ବୁଝି ପାରିଲି ସତେ ଯେପରି ସେ ବରାବର ମୋର ମୁହଁ ଚାପି ଧରିଥିଲେ । ଏତିକି କହି ପୁଣି ଆଉଥରେ ହାତଯୋଡ଼ି ମୁଣ୍ଡରେ ଛୁଆଁଇ ଭଗବାନଙ୍କୁ ତାଙ୍କର ଅସୀମ ଦୟାପାଇଁ ନମସ୍କାର କଲେ ।

ସୁରେଶ ଚାହା ପିଆଲଟା ପ୍ରତି ଦୃଷ୍ଟି ରଖି କହିଲା—ଟଙ୍କାଟା ଆପଣଙ୍କର କେବେ ଦରକାର ?

କେଦାରବାବୁ ମୁହଁକୁ ନେଇଥିବା କୋକୋ ପିଆଲଟା ପୁଣି ଟେବୁଲ ଉପରେ ଥୋଇଦେଇ କହିଲେ, ଦରକାର ତ ମୋର ନୁହେଁ, ଦରକାର ତୁମର । ଏହା କହି ଆନନ୍ଦରେ ହସି ଉଠିଲେ ।

ହସର କାରଣଟା ବୁଝି ନ ପାଶ ସୁରେଶ ଦେଖିଲା ଅଚଳା ମଧ ପ୍ରଶ୍ନିଳ ଦୃଷ୍ଟିରେ ବାପାଙ୍କ ମୁହଁକୁ ଗୃହିଁ ରହିଛୁ ।

କେଦାରବାବୁ ଥରକ ପାଇଁ ଝିଅ ମୁହଁକୁ ଏବଂ ସୁରେଶ ମୁହଁକୁ ଗୃହିଁ କହିଲେ—ଏହାର ଅର୍ଥ ବୁଝିବାଟା ସେପରି କିଛି କଷ୍ଟ ନୁହେଁ । ଘରଟା ମୁଁ ତ ଆଉ ସଙ୍ଗରେ ନେଇଯିବ ନାହିଁ, ଗଲେ ତୁମମାନଙ୍କର ଯିବ ଆଉ ଯଦ ରହେ ତେବେ ତୁମେ ଦୁଇଜଣ ଭୋଗ କରିବ; କହି ମୃଦୁ ମୃଦୁ ହସିବାକୁ ଲାଗିଲେ ।

ଦୁଇଜଣ ପରସ୍ପରକୁ ଗୃହିଁଲେ । ଆଖି ସଙ୍ଗେ ଆଖି ମିଶିଯିବା କ୍ଷଣି ଦୁହେଁ ଯାକ ଲଜେଇ ଯାଇ ମୁହଁ ତଳକୁ କଲେ ।

ଦୁଇ ପିଆଲା କୋକୋ ଶେଷ କରିବା ପରେ କେଦାରବାବୁଙ୍କର ଖଣ୍ଡିଏ ଜରୁରୀ ଚିଠି ଲେଖିବା କଥା ମନେ ପଡ଼ିଲା । ସଙ୍ଗେ ସଙ୍ଗେ ସେ ଉଠି ପଡ଼ି କହିଲେ, ଆଜି ତୁମର ଖାଇବାରେ ବହୁତ ଅସୁବିଧା ହୋଇଥିବ ସୁରେଶ । କାଲି ଦିପହର ବେଳେ ଏଠାରେ ଖାଇବ ବୋଲି ନିମନ୍ତ୍ରଣ ଜଣାଇ ସେ ପଶ୍ଚିମ ପାଖର ଦରଜା ଖୋଲି ନିଜ ଶୋଇବା ଘରକୁ ଗୃଲିଗଲେ ।

ଖୋଲା ଦରଜା ଦେଇ ଅସ୍ତ ସୂର୍ଯ୍ୟଙ୍କ କିରଣରୁ ଏକ ଝଲକ ଆସି ସୁରେଶ ମୁହଁ ଉପରେ ପଡ଼ିଲା । ସେ ମୁହଁ ବୁଲାଇ ଦେଖିଲା—ଅଚଳା ଏକ ଦୃଷ୍ଟିରେ ତାହା ଆଡ଼କୁ ଗୃହିଁ ରହିଛୁ । ସେ ମଧ ଦୃଷ୍ଟି ଅବନତ କଲା ।

ଦୁଇମିନିଟ ପର୍ଯ୍ୟନ୍ତ କାନ୍ଥଘଣ୍ଟାର ଟିକ ଟିକ ଶବ୍ଦ ବ୍ୟତୀତ ଘରଟା ଭିତରେ କୌଣସି ଶବ୍ଦ ନ ଥିଲା ।

ଘରର ନିସ୍ତବ୍ଧତା ଭଙ୍ଗ କରି ସୁରେଶ କହିଲା—ହଠାତ୍ ଆପ୍ଣ କାଣ୍ଡଟାଏ କରି ବସିଲି ।

ଅଚଳା କିଛି କହିଲା ନାହିଁ ।

ସୁରେଶ ପୁଣି କହିଲା—ଆପଣ ନିଶ୍ଚୟ ମୋତେ ଗୋଟାଏ ଗୃକ୍ଷସ ବୋଲି ମନେ କରିଥିବେ । ଏକୁଟିଆ ବସିବାକୁ ଆଉ ବୋଧହୁଏ ଆପଣଙ୍କର ସାହାସ ହେଉ ନ ଥିବ ଏମ୍ଚା ନା ? କହି ସୁରେଶ ବାଧ ହୋଇ ହସିବାକୁ ଚେଷ୍ଟା କଲା ।

ଅଚଳା ତଥାପି ସୁଦ୍ଧା ତାଙ୍କୁ ମୁହଁ ଉପରକୁ ଉଠାଇଲା ନାହିଁ । କିନ୍ତୁ ସେ ଯଦି ସୁରେଶ ମୁହଁକୁ ଚାହିଁ ଥାନ୍ତା ତେବେ ନିଶ୍ଚୟ ଦେଖି ପାରିଥାନ୍ତା ଯେ ଶୁଖିଲା ହସଟା କପରି ତାର ମୁହଁଟାକୁ ବାରମ୍ବାର ଅପମାନିତ କରି ବିକୃତ କରି ପକାଇଛି ।

ପୁଣି ସମଗ୍ର ଘରଟାରେ ନୀରବତା ରାଜୁତି କଲା ଏବଂ ସେହି କାନ୍ଥଘଡ଼ିଟା ହିଁ ଟିକ୍ ଟିକ୍ ହୋଇ ନିସ୍ତବ୍ଧତାର ପରିମାଣ ମାପିବାକୁ ବସିଲା । କିଛି ସମୟ ପରେ ଯେତେବେଳେ ଏହି ଅଖଣ୍ଡ ନୀରବତା ଅସହ୍ୟ ହୋଇ ଉଠିଲା; ସେତେବେଳେ ସୁରେଶ ଶକ୍ତ ହୋଇ କହିଲା—ଦେଖନ୍ତୁ, ଯାହା ଘଟିଯାଇଛି, ସେଥିପାଇଁ ଆମ ଭିତରେ ଲଜ୍ୟା କରିବାର କିଛି ନାହିଁ । ବେଳ ହେଲଣି । ଏଣିକି ମୋତେ ଯିବାକୁ ହେବ । କିନ୍ତୁ ଯିବା ଆଗରୁ ଦୁଇ ଚାରିଟା କଥାର ଉତ୍ତର ଶୁଣିଯିବାକୁ ଚାହେଁ । ଉତ୍ତର ଦେଇ ପାରିବେ କି ?

ଅଚଳା ତାଙ୍କୁ ମୁହଁ ଉପରକୁ ଉଠାଇଲା । ଆଖି ଦୁଇଟି ତାର ବେଦନାରେ ସଜଳ ହୋଇ ଉଠିଥିଲା, କହିଲା—କହନ୍ତୁ ।

ସୁରେଶ କିଛି ସମୟ ନୀରବ ରହି କହିଲା—ବାପାଙ୍କର ଋଣ ପରିଶୋଧ କରିବା ପାଇଁ ଟଙ୍କା ଧରି ମୁଁ କାଲି କି ପଅରି ଦିନ ଆସିପାରେ । ହୁଏତ ଆପଣଙ୍କ ସଙ୍ଗେ ଦେଖା ନ ହୋଇପାରେ । ମୁଁ ଜାଣିବାକୁ ଚାହେଁ—ଆମ ଦୁହିଁଙ୍କ ବିଷୟରେ ତାଙ୍କର ଅଭିପ୍ରାୟ କ'ଣ ଆପଣ ଜାଣନ୍ତି ?

ଅଚଳା କହିଲା—ମୋତେ ସେ କିଛି କହି ନାହାନ୍ତି ।

ସୁରେଶ କହିଲା—ମୋତେ ମଧ୍ୟ କହି ନାହାଁନ୍ତି । ତଥାପି ମୋର ବିଶ୍ୱାସ ସେ ମୋତେ······କିନ୍ତୁ ଆପଣ ବୋଧହୁଏ ରାଜି ହେବେ ।

ଅଚଳା କହିଲା—ନା ।

ପ୍ରକୃତରେ ରାଜି ନୁହନ୍ତି ?

ଅଚଳା ତଳକୁ ଚାହିଁକରି କହିଲା—ଆଦୌ ନୁହେଁ ।

: କିନ୍ତୁ ମହିମକୁ ପାଇବାର ଆଶା ଯଦି ନ ରହେ ?

ଅଚଳା ଅବିଚଳିତ ସ୍ୱରରେ କହିଲା—ସେ ଆଶା ତ ଆଦୌ ନାହିଁ ।

ସୁରେଶ ପ୍ରଶ୍ନ କଲା—ତଥାପି ମଧ୍ୟ ନୁହେଁ ?

ଅଚଳା ମୁହଁ ଉପରକୁ ଉଠାଇଲା ନାହିଁ । କିନ୍ତୁ ସେହିପରି ଶାନ୍ତ ଏବଂ ଦୃଢ଼ ସ୍ୱରରେ କହିଲା—ନା, ତଥାପି ମଧ୍ୟ ନୁହେଁ ।

ସୁରେଶ ଗୋଟାଏ ଦୀର୍ଘଶ୍ୱାସ ଟାଣି କହିଲା—ଯାହା ହେଉ କଥାଟା ତ ପରିଷ୍କାର ହୋଇଗଲା । ମଣିଷ ଏଣିକି ବଞ୍ଚିଗଲା । କିଛିକ୍ଷଣ ଚୁପ୍ ରହି ପୁଣି କହିଲା—ମୁଁ କିନ୍ତୁ ଆଉ ଗୋଟାଏ କଥା ଚିନ୍ତା କରୁଛି ଯେ, ଆପଣଙ୍କ ବାପାଙ୍କ ଦେଣାଟା ପରିଶୋଧ ହେବ କିପରି ?

ଅଚଳା ଭୟଭୀତା ହୋଇ ଟିକିଏ ଅଳ୍ପ ମୁହଁ ଉଠାଇ ଅତ୍ୟନ୍ତ ସଙ୍କୋଚର ସହିତ କହିଲା—ଆଉ ତ ଆପଣ ଦେଇ ପାରିବେ ନାହିଁ ?

: ପାରିବି ନାହିଁ ? କାହିଁକି ? ପ୍ରଶ୍ନ କରି ସୁରେଶ ବ୍ୟଗ୍ର ଦୃଷ୍ଟିରେ ଚାହିଁ ରହିଲା ।

ଅଚଳା ପୁନର୍ବାର ମୁହଁ ତଳକୁ କଲା ।

କିଛି ସମୟ ଉତ୍ତର ପ୍ରତୀକ୍ଷା କରି ସୁରେଶ ହସି ଉଠିଲା । ଏଥର ତାର ହସରେ ଆନନ୍ଦ ନ ଥାଉ ପଛକେ କିନ୍ତୁ କୃତ୍ରିମତା ଆଦୌ ନ ଥିଲା । କହିଲା—ଦେଖନ୍ତୁ । ମୋ ସହିତ ପରିଚୟ ହେବା ପର୍ଯ୍ୟନ୍ତ ମୋର କୌଣସି ଆଚରଣକୁ ଯେ ଭଦ୍ର ବୋଲି କୁହାଯାଇ ପାରିବ ନାହିଁ ତାହା ମୁଁ ବେଶ୍ ଜାଣେ । କିନ୍ତୁ ପ୍ରକୃତରେ ମୁଁ ଏତେ ଗ୍ରେଟ ନୁହେଁ । ଆପଣଙ୍କ ବାପାଙ୍କୁ ମୁଁ ଏଇ ଟଙ୍କାଗୁଡ଼ାକ ଘୁଷ୍ ଦେବାକୁ ଇଚ୍ଛା କରିନାହିଁ ବରଂ ତାଙ୍କର ବିପଦ ସମୟରେ ସାହାଯ୍ୟ କରିବାକୁ ଚାହିଁଥିଲି । ସୁତରାଂ ଆପଣଙ୍କର ମତାମତ ଉପରେ ମୋର ଦେବାଟା ନିର୍ଭର କରୁ ନାହିଁ ବରଂ ନିର୍ଭର କରୁଛି ତାଙ୍କର ନେବାଟା । ବର୍ତ୍ତମାନ କିପରି ସେ ଯେ ନେବେ ମୁଁ ସେହି କଥାହିଁ ଭାବୁଛି । ବରଂ ଆସନ୍ତୁ ଏ ସମ୍ବନ୍ଧରେ ଆମେ କିଛି ହେଲେ ଆଲୋଚନା କରିବା ।

ଅଚଳା ମୁହଁ ଟିକିଏ ଉଠାଇ କହିଲା—କହନ୍ତୁ ।

ସୁରେଶ କହିବାକୁ ଲାଗିଲା—ଦୈବାତ୍ ଅନେକ ଟଙ୍କାର ମାଲିକ ମୁଁ । ଅଥଚ ଟଙ୍କା କଉଡ଼ି ଉପରେ କୌଣସି ଦିନ ମୋର ମାୟା ମମତା ନାହିଁ । କୋଡ଼ିଏ ହଜାର ଟଙ୍କା ମୁଁ ସ୍ୱଚ୍ଛନ୍ଦରେ ଦେଇପାରେ । ଆଉ ଆପଣଙ୍କ ଆନନ୍ଦ ପାଇଁ ଦରକାର ହେଲେ ଆହୁରି ଢେର ବେଶୀ ବି ଦେଇପାରେ । ସେ ଯାହା ହେଉ । ବର୍ତ୍ତମାନ କଥା ହେଉଛି ଯେ ଆପଣଙ୍କ ବାପାଙ୍କର ଧାରଣା ଏ ଟଙ୍କା ସୁଝିବା ବୋଧହୁଏ ଆଉ ହେବ ନାହିଁ; ଅଥଚ ଧାର ଟଙ୍କା ଯେ ଏକରକମ ଶୁଝିବାକୁ ହୁଏ ଏକଥା ସେ ବୁଝି ପାରିଲେ ନାହିଁ ।

ଅଚଳା ମୁଣ୍ଡ ହଲାଇ ଅସ୍ପଷ୍ଟ ସ୍ୱରରେ କହିଲା—ହଁ ।

ସୁରେଶ କହିବାକୁ ଲାଗିଲା—କଥାଟା ସ୍ପଷ୍ଟ କରି କହୁଛି ବୋଲି କିଛି ମନେ କରିବେ ନାହିଁ । ମୁଁ ବୁଝି ପାରୁଛି ଟଙ୍କା ତାଙ୍କର ନିହାତି ଦରକାର ଏବଂ ଏତେ ଟଙ୍କା ଧାର କରି ଶୁଝିବାର ଅବସ୍ଥା ମଧ୍ୟ ତାଙ୍କର ନାହିଁ; ଯଦିଓ ମୋ ନିଜ ପକ୍ଷରେ ଏ ସବୁର ଆବଶ୍ୟକତା କିଛି ନାହିଁ । ଆଉ ଏ କଥା ମଧ୍ୟ ସହଜରେ ଫଇସଲା ହୋଇପାରେ । ପଅରଦିନ ପର୍ଯ୍ୟନ୍ତ ଆପଣଙ୍କ ମନର ଭାବ ତାଙ୍କୁ ନ ଜଣାଇଲେ କୌଣସି ଗଣ୍ଡଗୋଳ ଆଉ ରହିବ ନାହିଁ । କ'ଣ ପାରିବେ ତ ?

ଅଚଳା ତଳକୁ ମୁହଁ କରି ସେହିପରି ବସି ରହିଲା ।

ଟଙ୍କା ଲୋଭରେ ଆପଣ ଯେଉଁ ସମ୍ମତି ନଦେଲେ ଏହାଦ୍ୱାରା ମୋର ଆପଣଙ୍କ ପ୍ରତି ଢେର ଶ୍ରଦ୍ଧା ବଢିଗଲା । ବରଞ୍ଚ ମତ ଦେଇଥିଲେ ହୁଏତ ମୁଁ ଭୟରେ ପଛୁଇ ଯାଇଥାନ୍ତି । ମୋଦ୍ୱାରା କିଛି ଅସମ୍ଭବ ନୁହେଁ । ଆଚ୍ଛା, ଯାଉଛି—କହି ସୁରେଶ ଠିଆ ହୋଇ ସାମାନ୍ୟ ହସି କହିଲା -ଯିବା ସମୟରେ ଗୋଟିଏ ଭିକ୍ଷା ମାଗି ଯାଉଛି ଯେ, ମୋର ଦୋଷ ଅପରାଧଗୁଡ଼ିକ ମନେ ରଖିବେ ନାହିଁ । ସାମାନ୍ୟ ଇତସ୍ତତଃ ହୋଇ କହିଲା--ନମସ୍କାର । ବାସ୍ତବିକ୍ ପିଶାଚ କିନ୍ତୁ ମୁଁ ନୁହେଁ । ଯେତେବେଳେ ବିଶ୍ୱାସ କରିବା ପାଇଁ ଏତେ ଟିକିଏ ବାଟ ରଖି ନାହିଁ ସେତେବେଳେ କହିବା ବୃଥା; କହି ଯୁକ୍ତହସ୍ତ ମୁଣ୍ଡ ଉପରକୁ ଉଠାଇ ନମସ୍କାର କରି ସୁରେଶ ଚାଲିଗଲା ।

ଧୀରେ ଧୀରେ ତାର ପାଦଶବ୍ଦ ସିଡ଼ି ଦେଇ ମିଳାଇ ଯାଉଥିବାର ଅଚଳା ଶୁଣି ପାରିଲା । ତାପରେ ତା ଆଖିରୁ ଟପ୍ ଟପ୍ ହୋଇ ଲୁହ ବହିବାକୁ ଲାଗିଲା ।

କେଦାରବାବୁ ଘରେ ପଶୁ ପଶୁ ପ୍ରଶ୍ନ କଲେ - ସୁରେଶ ?

ଅଚଳା ଶୀଘ୍ର ଆଖିର ଲୁହ ପୋଛି ଦେଇ କହିଲା—ଏଇମାତ୍ର ଚାଲିଗଲେ ।

କେଦାରବାବୁ ଆଶ୍ଚର୍ଯ୍ୟ ହୋଇ କହିଲେ—କ'ଣ ! ମୋ ସହିତ ଦେଖା ନକରି ଚାଲିଗଲା ? ଯିବା ସମୟରେ କାଲି ଏଠାରେ ଖାଇବା କଥା ତାକୁ ମନେ ପକାଇ ଦେଇଥିଲୁ ତ ?

ଅଚଳା ଅପ୍ରତିଭ ହୋଇ କହି ଉଠିଲା—ମୋର ମନେ ନାହିଁ ବାବା ।

: ମନେ ନାହିଁ । ବେଶ୍ । କହି କେଦାରବାବୁ ନିକଟସ୍ଥ ଚୌକି ଉପରେ ନିଶ୍ଚେଷ୍ଟ ହୋଇ ବସି ପଡ଼ିଲେ । ଝିଅର ରୁଖା ସ୍ୱର ଦ୍ୱାରା ତାଙ୍କ ମନରେ ଟିକିଏ ଖଟ୍‌କା ଲାଗିଲା ସତ କିନ୍ତୁ ସନ୍ଧ୍ୟାର ଅନ୍ଧକାରରେ ମୁହଁର ଚେହେରାଟା ଦେଖି ନପାରିବାରୁ ତାହା ସ୍ଥାୟୀ ହୋଇ ରହି ପାରିଲା ନାହିଁ । କହିଲେ—ଏ ବୁଢ଼ା ବୟସରେ ନିଜେ ଯାହା ନକରିବ, ଯେଉଁ ଦିଗକୁ ନିଜେ ନ ଚାହିଁବ, ସେଥିରେ

କିଛୁ ନା କିଛୁ ଗଲତ ରହିଯିବ । ଆଉ ଏଣିକି ପାରହେବ ନାହିଁ । ଯାଏ, ବେହେରାଟା ହାତରେ ଖଣ୍ଡେ ଚିଠି ଲେଖି ପଠାଏ । ସୁରେଶ ଘରର ଠିକଣା କ'ଣ ? ଉଠୁ ଉଠୁ ଏତକ କହିଲେ ।

: ମୁଁ ତ ଜାଣିନି ବାବା ।

: ସେତକ ମଧ୍ୟ ଜାଣି ନାହୁଁ ?

ତୁ ଏ କ'ଣ କହୁଚୁ ? କହି ବୃଦ୍ଧ କେଦାରବାବୁ ଚଉକି ଉପରେ ଆଉଜି ପଡ଼ିଲେ । ତତ୍‌କ୍ଷଣାତ୍ କିନ୍ତୁ ପୁଣି ଉଠିବସି ରୁକ୍ଷ ଭାବରେ କହିବାକୁ ଲାଗିଲେ— ତୁ ଯଦି ନିଜର ହାତ ଗୋଡ଼ ନିଜେ କାଟି ବସିବୁ ମା, ସେଥିରେ ମୋର ଅବା କ'ଣ କରିବା ଅଛି ? ୯ଥରି ତ ଭାବିବା ଉଚିତ୍ ଥିଲା ଯେ ଯେଉଁ ଲୋକ ପଦେ କଥାରେ ଏତେ ଗୁଡ଼ାଏ ଟଙ୍କା ଦେବାକୁ ରାଜି, ସେ ଲୋକଟା କେଉଁ ପ୍ରକାରର ? ତାର ଘରର ଠିକଣା ପର୍ଯ୍ୟନ୍ତ ବୁଝି ପାରିଲୁ ନାହିଁ । ତୁ ଯେତେ ଯେତେ ବଡ଼ ହେଉଚୁ ସେତେ ପିଲା ହୋଇଯାଉଚୁ ମା ଅଚଳା, କହି ଦୀର୍ଘ ନିଃଶ୍ୱାସ ଛାଡ଼ିଲେ ।

ଋଣଜାଲ ବିଜଡ଼ିତ ବିପନ୍ନ ପିତା ତାଙ୍କର ସକଳ ଅସତ୍ୟ ଓ ହୀନତା-ମଧ୍ୟରେ ନିଜର ଆତ୍ମରକ୍ଷା କରିବାକୁ ଚେଷ୍ଟା କରୁଛନ୍ତି, ସେ ସମସ୍ତ ହିଁ ଅଚଳା ଦେଖି ପାରିଲା । ଏ ସବୁ ତାର ମର୍ମକୁ ଭେଦ କରୁଥିଲା; କିନ୍ତୁ ସେ ନୀରବ ରହିବାକୁ ବାଧ୍ୟ ହେଉଥିଲା । ବର୍ତ୍ତମାନ ସେ କଥା କହି ଅକାରଣ ବିରକ୍ତିଭାଜନ ହେବାକୁ ଚାହୁଁ ନଥିଲା । କିନ୍ତୁ ସେ ଯେ ମନେ ମନେ ଅତ୍ୟନ୍ତ ଲଜ୍ଜିତ ଏବଂ ଅନୁତପ୍ତ ହୋଇ ଉଠିଛି କେଦାରବାବୁ ଏହା ଅନୁମାନ କରି ପ୍ରୀତ ହୋଇ ଉଠିଲେ ।

ବେହେରା ଆଲୁଅ ଜଳାଇ ଆଣି ଥୋଇଦେଇ ଗଲା । କେଦାରବାବୁ ସ୍ନେହ ସହିତ ତିରସ୍କାର କରିବା କଣ୍ଠରେ କହିଲେ—ମହିମର ଖୋଜ ଖବର କୌଣସି ଦିନ ତୁ ନେଲୁନାହିଁ । ଆଚ୍ଛା ନ ନେଇଚୁ ଏକ ପ୍ରକାର ଭଲ ହୋଇଚୁ । ଭଗବାନ ଯାହା କରନ୍ତି ମଙ୍ଗଳ ପାଇଁ ଯଦିଓ ସତ୍ୟ କିନ୍ତୁ ସୁରେଶ ପାଇଁ ଏହା ପ୍ରଯୁଜ୍ୟ ନୁହେଁ । ଦେଖିଲୁ ନାହିଁ ମା—ଈଶ୍ୱର କିପରି ହାତଧରି ତାକୁ ଆଣି ଆମକୁ ଧରାଇ ଦେଇଗଲେ ।

ଅଚଳା ମୁହଁ ଟେକି କହିଲା—ସୁରେଶବାବୁଙ୍କଠାରୁ ତୁମେ କ'ଣ ଟଙ୍କା ଧାର ନେବ, ବାବା ?

କେଦାରବାବୁଙ୍କ ଭଗବତ୍ ଭକ୍ତି ହଠାତ୍ ବାଧା ପାଇବାରୁ ସେ ବିଚଳିତ ହୋଇ ଉଠିଲେ । ଝିଅ ଆଡ଼କୁ ଚାହିଁ କହିଲେ—ହଁ—ନା—ଠିକ୍ ଧାର ନୁହେଁ । ତୁ ଜାଣିନୁ ମା, ସୁରେଶଟି ବଡ଼ ଭଲ ପିଲା । ତାପରି ଗୋଟିଏ

ସତ୍ ପିଲା କୋଟିକରେ ଗୋଟିଏ ମିଳିବେ । ତା ମନର ଇଚ୍ଛାଧାର ପାଇଁ ଏତେବଡ଼ ଘରଟା ନଷ୍ଟ ହୋଇ ନଯାଉ । ବୁଝିଲୁ ନା ମା—ରହିଲେ ତୁମେମାନେ ରହିବ । ମୋର ଆଉ କେତେ ଦିନ ଅବା ?

ଅଚଳା ଚୁପ୍ ରହିଲା । କେଦାରବାବୁ ଉତ୍ସାହିତ ହୋଇ କହିବାକୁ ଲାଗିଲେ—ତୁ ଜାଣୁ; ମୁଁ ସଦାବେଳେ ସ୍ପଷ୍ଟ କଥା କହିବାକୁ ଭଲପାଏ । ବାହାରେ ପ୍ରକାରେ ଆଉ ଭିତରେ ଆଉ ପ୍ରକାର ମୋ ଦ୍ୱାରା ହେବ ନାହିଁ । ସେଥିପାଇଁ ଖୋଲି ଖୋଲି କହିଦେଲି ଯେ ବର୍ତ୍ତମାନ ସବୁ ଜାଣିଶୁଣି ମହିମ ହାତରେ କନ୍ୟାଦାନ କରିବା ଅପେକ୍ଷା ପାଣିକି ଠେଲିଦେବା ଭଲ । ସୁରେଶର ମଧ୍ୟ ସେହିମତ । ସେଥିପାଇଁ କହୁଛି; ଯେହେତୁ ହେଲଯେ ତାର ବନ୍ଧୁ ସହିତ ବିବାହ ବିଷୟଟା ଅନେକ ଲୋକ ଜାଣିଯାଇଛନ୍ତି ତେଣୁ ଆଉ ପ୍ରସ୍ତାବଟାକୁ ସଂପୂର୍ଣ୍ଣ ବନ୍ଦକରି ଦେଲେ ଚଳିବ ନାହିଁ । ସେଥିପାଇଁ ଆଉ ଗୋଟିଏ ପ୍ରସ୍ତାବ ଗଢ଼ି ନ ତୋଳିଲେ ସମାଜରେ ଆମେ ମୁହଁ ଦେଖାଇ ପାରିବା ନାହିଁ । କିନ୍ତୁ ତୁ ଯାହା କହ—ପିଲା ଭଲ ପିଲାଟେ ସୁରେଶ । ସେଥିପାଇଁ ମୁଁ ମଙ୍ଗଳମୟୀଙ୍କୁ ବାରମ୍ବାର ପ୍ରଣାମ ଜଣାଉଛି ।

ପିତାଙ୍କର ପ୍ରଣାମ ଜଣାଇବା କାର୍ଯ୍ୟ ନିର୍ବିଘ୍ନରେ ସାମାହିତ ହେବା ପରେ ଅଚଳା ଧୀରେ ଧୀରେ କହିଲା—ତାଙ୍କ ପାଖରୁ ଏତେ ଟଙ୍କା ନନେଲେ କ'ଣ ଚଳନ୍ତା ନାହିଁ ବାବା ?

କେଦାରବାବୁ ଶଙ୍କାରେ ଚକିତ ହୋଇ ଉଠିଲେ । କହିଲେ; ନ ନେଲେ ଯେ ନ ଚଳେ ।

: ବେଶ୍ । କିନ୍ତୁ ଆମେ ତ ଟଙ୍କା ଶୁଝି ପାରିବା ନାହିଁ ।

: ଶୁଝିବା କଥା କ'ଣ ସୁରେଶ···କଥାଟା ସଂଶୟରେ ପଡ଼ି ଉଦ୍‌ବିଗ୍ନ—ତାର ସହିତ ବୃଦ୍ଧ ଶେଷକରି ପାରିଲେ ନାହିଁ । ତାଙ୍କର ମୁହଁଟା ସାଦା ହୋଇ ଉଠିଲା । ଅଚଳା ସେ ଚେହେରା ଦେଖି ମନେ ମନେ ବ୍ୟଥା ଅନୁଭବ କଲା । ଶୀଘ୍ର କହିଲା ସେ କହୁଥିଲେ ପଅରଦିନ ଆଣି ଟଙ୍କା ଦେଇଯିବେ ।

: ଶୁଝିବାର କଥା

: ନା, ସେ କଥା କିଛି କହି ନାହାନ୍ତି ।

ତାହାହେଲେ ଠିକ୍ ଅଛି, କହି ପରିତୃପ୍ତିରେ ବୃଦ୍ଧ ଗୋଟିଏ ଦୀର୍ଘ ନିଃଶ୍ୱାସ ଛାଡ଼ିଲେ ଏବଂ ଚୌକିରେ ଆଉଜି ପଡ଼ି ଗୋଡ଼ ଦୁଇଟାକୁ ମେଳ

ଉପରକୁ ଟେକି ଦେଇ ଆଖି ବୁଜି ପଡ଼ି ରହିଲେ । ଆନନ୍ଦ ଏବଂ ଆରାମରେ ତାଙ୍କର ସର୍ବାଙ୍ଗ ଯେପରି କ୍ଷଣକାଳ ପାଇଁ ଶିଥିଳ ହୋଇ ଉଠିଲା । କିଛିକ୍ଷଣ ଏହିପରି ରହି ପାଦ ଦୁଇଟି ତଳକୁ ଖସାଇ ଉଦ୍ଦୀପ୍ତ ସ୍ୱରରେ କହିଲେ—ଏଥର ଭାବି ଦେଖ ତ ମା, କେଉଁଠି ଆସି କ'ଣ ଘଟିଲା ? ଏଥିରେ ସେହି ସର୍ବଶକ୍ତିମାନଙ୍କର ହାତ ଥିବାର ତୁ କ'ଣ ପରିଷ୍କାର ଭାବରେ ଦେଖିପାରୁ ନାହୁଁ ?

ଅଚଳା ନୀରବରେ ବାବାଙ୍କ ମୁହଁକୁ ଚାହିଁ ରହିଲା ।

କେଦାରବାବୁ ଉତ୍ତରକୁ ଅପେକ୍ଷା ନକରି କହିବାକୁ ଲାଗିଲେ ମୁଁ ଆଖି ଆଗରେ ଦେଖି ପାରୁଛି ଏସବୁ ତାଙ୍କରି ଦୟା । ତତେ କ'ଣ କହିବି ମା' ଗତ ଦୁଇବର୍ଷ ଧରି ରାତିରେ ମୁଁ ଭଲକରି ଶୋଇ ପାରି ନାହିଁ କେବଳ ତାଙ୍କୁ ହିଁ ଡାକି ଆସିଛି । ଆଉ ସୁରେଶକୁ ଦେଖିବା ମାତ୍ରେ ମୋର ଏପରି ମନେ ହେଲା ଯେ ପୂର୍ବ ଜନ୍ମରେ ସେ ମୋର ପୁଅ ଥିଲା ।

ଅଚଳା ଚୁପ୍ କରି ବସି ରହିଲା । ବାବାଙ୍କର ସାଂସାରିକ ଦୁରବସ୍ଥା କଥା ତାକୁ ବେଶ୍ ଜଣାଥିଲା । କିନ୍ତୁ ତାହା ଯେ ଭିତରେ ଭିତରେ ଏତେ ଦୂର ଖରାପ ହୋଇ ଯାଇଛି ତାହା ତାକୁ ଜଣା ନଥିଲା । ଅବଶ୍ୟ ଦୁଇବର୍ଷ ଧରି ଆରାଧନା ଫଳରେ ମଙ୍ଗଳମୟଙ୍କ ଇଚ୍ଛାରୁ ତାଙ୍କର ଦୁଃଖର ସମସ୍ୟାଟା ଅକସ୍ମାତ୍ ଆଜି ଲଘୁ ହୋଇଗଲା ସିନା; କିନ୍ତୁ ତା ନିଜର ସମସ୍ୟାଟା ଏକବାରେ ଭୀଷଣ ଜଟିଳ ହୋଇ ଦେଖାଦେଲା । ସୁରେଶଠାରୁ ଟଙ୍କା ନ ନେବାପାଇଁ ଯେଉଁ ସଂକଳ୍ପ ସେ ମନେ ମନେ କରିଥିଲା ତାହାକୁ ପୁଣି ପରିତ୍ୟାଗ କରିବାକୁ ହେଲା । ଲେଶ ମାତ୍ର ବାଧାଦେବା ପାଇଁ ସେ ଉଚିତ୍ ମନେକଲା ନାହିଁ ଯେହେତୁ ଟଙ୍କା ବାପାଙ୍କର ନିହାତି ପ୍ରୟୋଜନ ।

ସଂଧ୍ୟା ସମୟର ପ୍ରାର୍ଥନା ପାଇଁ କେଦାରବାବୁ ଉଠି ଚାଲିଗଲେ । ଅଚଳା ସମସ୍ତ ଘଟଣାକୁ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ମନ ମଧ୍ୟରେ ସ୍ପଷ୍ଟ ଭାବରେ ଉପଲବ୍ଧି କରିବା ପାଇଁ ସେହିଠାରେ ସ୍ତବ୍ଧ ହୋଇ ବସି ରହିଲା ।

ଯେଉଁ ଦୁଇବନ୍ଧୁ ଆଜି ଅକସ୍ମାତ ତାହା ଜୀବନର ଏହି ସନ୍ଧି କ୍ଷଣରେ ଏପରି ପାଖାପାଖି ଆସି ଠିଆ ହୋଇଛନ୍ତି, ସେମାନଙ୍କ ଭିତରୁ ଜଣକୁ ତାହାକୁ "ଯାଅ" ବୋଲି କହି ବିଦାୟ ଦେବାକୁ ହେବ ଏଥିରେ ବିନ୍ଦୁମାତ୍ର ସନ୍ଦେହ ନାହିଁ । କିନ୍ତୁ କାହାକୁ କହିବ ? କିଏ ସେହି ଜଣକ ? ଯେଉଁ ମହିମ ତାର ଅଖଣ୍ଡ ବିଶ୍ୱାସ ଧରି ନିରୁଦ୍‌ବେଗ ସହିତ ନିଶ୍ଚିନ୍ତ ହୋଇ ବସିଛି, ତାର ଶାନ୍ତ ସ୍ନିଗ୍ଧ

ମୁହଁଟିମନେ ପଡ଼ିବା ମାତ୍ରେ ଅଚଳା ଆଖି ଲୁହରେ ଭରି ଉଠିଲା । କୌଣସି ଦିନ ସିଏ କୌଣସି ଅପରାଧ କେବେ କରିନାହାନ୍ତି ଅଥଚ 'ଯାଅ' କହିବା ମାତ୍ରେ ସେ ଚୁପ୍ ହୋଇ ଚାଲିଯିବେ । କୌଣସି ସ୍ୱପ୍ନ ଧରି କିମ୍ବା ଛଳନାର ଖିଅ ଧରି ତାର ଜୀବନ ପଥରେ ସେ କୌଣସି ଦିନ ଆସି ଆଉ ପହଁଞ୍ଚିବେ ନାହିଁ । ଅଚଳା ସ୍ପଷ୍ଟ ଦେଖି ପାରିଲା ସେହି ଅଭାବନୀୟ, ଚରମବିଦାୟ ମୁହୂର୍ତ୍ତରେ; ତାଙ୍କର ଅଟଳ ଗାମ୍ଭୀର୍ଯ୍ୟ ତିଳେମାତ୍ର ବିଚଳିତ ହେବନାହିଁ । କାହାକୁ ଦୋଷ ଦେବା ପ୍ରଶ୍ନ ତ ଉଠୁନାହିଁ । ହୁଏତ କାରଣ ପର୍ଯ୍ୟନ୍ତ ମଧ୍ୟ ଜାଣିବାକୁ ଚାହିଁବେ ନାହିଁ । ନିଗୂଢ଼ ବିସ୍ମୟ ଓ ତୀବ୍ର ବେଦନାର ଗୋଟିଏ ଅସ୍ପଷ୍ଟ ରେଖା ହୁଏତ ତାଙ୍କ ମୁଖ ମଣ୍ଡଳରେ ଦେଖାଦେଇପାରେ ଏବଂ ତାହାର ଅର୍ଥ କେବଳ ତା ବ୍ୟତୀତ ଆଉ କେହି ବୋଧହୁଏ ବୁଝିପାରିବେ ନାହିଁ ।

ତାପରେ ଦିନେ ସୁରେଶର ବିବାହ କଥା ତାଙ୍କ କାନରେ ପଡ଼ିବ । ଏହି ଖବର ପାଇବା କ୍ଷଣି ଅସତର୍କ ଅବସର ସମୟରେ ହୁଏତ ଗୋଟାଏ ଦୀର୍ଘଶ୍ୱାସ ଛାଡ଼ିବେ ନଚେତ୍ ସାମାନ୍ୟ ମୁରୁକି ହସି ଦେଇ ନିଜ କାମରେ ମନ ଦେବେ । ସେତେବେଳକାର ଅବସ୍ଥାକୁ କଳ୍ପନା କରି ଏହି ନିର୍ଜ୍ଜନ ଘର ଭିତରେ ଅଚଳାର ମୁହଁ ଲଜ୍ଜ୍ୟା ଓ ଘୃଣାରେ ନାଲି ହୋଇ ଉଠିଲା ।

ଏହା ଭିତରେ ଦଶ ବାର ଦିନ ବିତି ଯାଇଛି । କେଦାରବାବୁଙ୍କ ହାବଭାବ ଦେଖିଲେ ମନେହୁଏ ଏତେ ସ୍ଫୁର୍ତ୍ତି ହୁଏତ ତାଙ୍କର ଯୌବନ କାଳରେ ନଥିବ । ଆଜି ସନ୍ଧ୍ୟାରେ ବାଇସ୍କୋପ ଦେଖି ଫେରିବା ବାଟରେ ଗୋଲେଇ ଛକ ନିକଟରେ ପହଁଞ୍ଚି ସେ ହଠାତ୍ ଗାଡ଼ିରୁ ଓହ୍ଲାଇ ପଡ଼ିବାକୁ ଉଦ୍ୟତ ହୋଇ କହିଲେ—ସୁରେଶ; ମୁଁ ଏଇଠାରୁ ଓହ୍ଲାଇ ବ୍ରାହ୍ମସମାଜକୁ ଚାଲି ଚାଲି ଯିବି, ତୁମେ ବାବା; ଗାଡ଼ି ନେଇ ଘରକୁ ଯାଅ ।

ସୁରେଶ ଗାଡ଼ି ରଖିଲା ।

ଗାଡ଼ିରୁ ଓହ୍ଲାଇ ପଡ଼ି ହାତରେ ଧରିଥିବା ବାଡ଼ିଟିକୁ ବୁଲାଇ ବୁଲାଇ କେଦାରବାବୁ ଯିବାକୁ ଲାଗିଲେ ।

ସୁରେଶ କହିଲା—ତୁମ ବାପାଙ୍କର ସ୍ୱାସ୍ଥ୍ୟ ଆଜିକାଲି ଭଲଥିଲା ପରି ମନେହେଉଛି ।

ଅଚଳା ସେହି ଦିଗକୁ ଚାହିଁଥିଲା । କହିଲା ହଁ ସେଇଟା ହେଉଛି ଆପଣଙ୍କର ଦୟା ।

ଗାଡ଼ି ମୋଡ଼ ଘୂରିବା ପରେ ଆଉ କେଦାରବାବୁ ଦେଖାଗଲେ ନାହିଁ । ସୁରେଶ ଅଚଳାର ଡାହାଣ ହାତଟା ଧରି ପକାଇ କହିଲା—ତୁମେ ଜାଣ, ଏପରି କଥାରେ ମୁଁ କେତେ କଷ୍ଟ ପାଏ ?

ଅଚଳା ସାମାନ୍ୟ ହସିଦେଇ କହିଲା—ଏତେ ଦୟା କାଳେ ଭୁଲିଯିବି, ତେଣୁ ମଝିରେ ମଝିରେ ମନେ ପକାଇ ଦେଉଛି, କିନ୍ତୁ ଆପଣଙ୍କୁ ଆଘାତ ଦେବାପାଇଁ କେବେ କହି ନାହିଁ ।

ସୁରେଶ ଅଚଳା ହାତରେ ସାମାନ୍ୟ ଚାପ ଦେଇ କହିଲା—ସେଥିପାଇଁ ମୁଁ କିନ୍ତୁ ବେଶି ଆଘାତ ପାଏ ।

; କାହିଁକି ?

ମୁଁ ବେଶ୍ ବୁଝିପାରୁଛି ତୁମେ ଏଇ ଦୟାକୁ ସ୍ମରଣ କରି ମନରେ ବହୁତ ଦମ୍ଭ ପାଅ । ଏହାଛଡ଼ା ତୁମର ଆଉ ଏତେ ଟିକିଏ ସମ୍ବଳ ନାହିଁ । କ'ଣ ଏକଥା ସତ ତ ?

: ଯଦି ନ କହେ ।

: ଇଚ୍ଛା ଯଦି ନ ହେଉଛି—କହି ନପାର । କିନ୍ତୁ ଦିନକ ପାଇଁ କ'ଣ ମୋତେ 'ତୁମେ' ବୋଲି ସମ୍ବୋଧନ କରିପାରିବ ନାହିଁ ?

ଅଚଳାର ମୁହଁ ବିବର୍ଣ୍ଣ ହୋଇ ଉଠିଲା । ଆନତ ମୁଖରେ ଧୀରେ ଧୀରେ କହିଲା— ଦିନେ ତ ନିଶ୍ଚୟ କହିବାକୁ ହେବ । ସେ କଥା ଆପଣ ଭଲକରି ଜାଣନ୍ତି ।

: ତା ଯଦି ହୁଏ ତେବେ ଦୁଇଦିନ ଆଗରୁ କହିଲେ କ୍ଷତି କ'ଣ ?

ଅଚଳା କୌଣସି ଉତ୍ତର ଦେଲାନାହିଁ ।

କେତେ ମିନିଟ୍ ନୀରବ ରହିବା ପରେ ସୁରେଶ ହଠାତ୍ କହି ଉଠିଲା— ମୋର ମନେ ହୁଏ ମହିମ ବୋଧହୁଏ ସବୁ ଜାଣି ପାରିଛି ।

ଅଚଳା ଚମକ ପଡ଼ି ମୁହଁ ଅନ୍ୟ ଦିଗକୁ ଫେରାଇ ନେଲା । ତାହାର ଯେଉଁ ହାତଟା ଏତେ ସମୟ ଧରି ସୁରେଶ ହାତ ଭିତରେ ରହିଥିଲା, ସେଇଟାକୁ ଟାଣି ନେଇ ସେ ପ୍ରଶ୍ନ କଲା—ଆପଣ କିପରି ଜାଣିଲେ ?

ଅଚଳାର କଣ୍ଠସ୍ୱରର ବ୍ୟଗ୍ରତା ଠିକ୍ କରି ସୁରେଶ କାନରେ ବାଜିଲା । ସେ କହିଲା ନହେଲେ ଏତେଦିନ ଭିତରେ ମହିମ ନିଶ୍ଚୟ ଆସିଥାନ୍ତା । ପନ୍ଦର ଷୋଳ ଦିନ କଟିଗଲାଣି ତ ।

ଅଚଳା ମୁଣ୍ଡ ହଲାଇ କହିଲା— ଆଜିକୁ ମିଶାଇ ଉଣେଇଶ ଦିନ ହେବ । ଆଚ୍ଛା, ବାପା କ'ଣ ତାଙ୍କ ନିକଟକୁ କୌଣସି ଚିଠିପତ୍ର ଲେଖିଥିବାର ଆପଣ ଜାଣନ୍ତି କି !

: ନା ଜାଣି ନାହିଁ ।

: ସେ ଫେରି ଆସିଲେଣି କି ?

: ନା, ତା ମଧ୍ୟ ଜାଣିନାହିଁ ।

: ଅଚଳା ଗାଡ଼ି ବାହାରକୁ ଚାହିଁ ପୁଣି ମୃଦୁ ସ୍ୱରରେ କହିଲା— ତା ହେଲେ ବାପା ତାଙ୍କର ଖୋଜ ଖବର ନେଇ ତାଙ୍କ ପାଖକୁ ଖଣ୍ଡିଏ ଚିଠିରେ ସବୁ ବିଷୟ ଲେଖି ଜଣାଇଦେବା ଉଚିତ ଥିଲା । ଯେପରି ସେ ଆଉ କେବେ ଆସି ଆମ ଘରେ ଉପସ୍ଥିତ ନ ହୁଅନ୍ତି ।

ପୁଣି କିଛି ସମୟ ପାଇଁ ଉଭୟେ ନୀରବ ରହିଲେ । ସୁରେଶ ପୁଣି ଅଚଳାର ଶିଥିଳ ହୋଇଥିବା ହାତଟିକୁ ନିଜ ହାତ ମୁଠାରେ ରଖି ଧୀରେ ଧୀରେ କହିବାକୁ ଲାଗିଲା—ମୋତେ ସବୁଠାରୁ କଷ୍ଟ ଲାଗୁଛି ଅଚଳା, ଯେତେବେଳେ ଭାବିବସେ ଯେ ତୁମେ କୌଣସି ଦିନ ମୋତେ ଭଲ ପାଇ ପାରିବ ନାହିଁ । ତାର କାରଣ ଯେହେତୁ ତୁମେ ସବୁଦିନ ମନେ ମନେ ଭାବିବ ଯେ, ସତେ ଯେପରି କେବଳ ଟଙ୍କା ଲୋଭ ଦେଖାଇ ମୁଁ ତୁମକୁ ଛଡ଼ାଇ ଆଣିଛି । ସେଥିପାଇଁ ବାସ୍ତବିକ୍ ମୁଁ ଦୋଷୀ........

ଅଚଳା ସଙ୍ଗେ ସଙ୍ଗେ ମୁହଁ ଫେରାଇ ବାଧାଦେଇ କହିଲା - ଏପରି କଥା ଆପଣ କହିବେ ନାହିଁ । ଆପଣଙ୍କୁ କୌଣସି ଦୋଷ ମୁଁ ଦେଇ ପାରିବି ନାହିଁ । ଟିକିଏ ଅଟକି ଯାଇ ପୁଣି କହିଲା; ସଂସାରରେ ସବୁଠାରେ ଟଙ୍କାର ପ୍ରାଧାନ୍ୟ ରହିଆସିଛି—ଏତ ଜଣାଶୁଣା କଥା । କିନ୍ତୁ ଆପଣ ତ ସେପରି ଶକ୍ତି ଖଟାଇ ନାହାନ୍ତି ।

ବାପା ହୁଏତ ଜାଣି ନଥାଇ ପାରନ୍ତି, କିନ୍ତୁ ମୁଁ ଯଦି ସବୁ ଜାଣିଶୁଣି ଆପଣଙ୍କୁ ଭଲ ନ ପାଏ ତେବେ ମୋ ପାଇଁ ନର୍କରେ ସୁଦ୍ଧା ସ୍ଥାନ ନାହିଁ ।

ସାମାନ୍ୟ ଟିକିଏ କଥାରେ ସୁରେଶ ହୃଦୟ ତରଳି ଯାଏ । ଅଚଳାର ଏଇତକ ସ୍ନେହବୋଳା କଥା ଶୁଣି ଆଖିରେ ଲୁହ ଆସିଗଲା । ସେ ଅଚଳାର ଦୁଇ ହାତଦ୍ୱାରା ସେହି ଲୁହକୁ ପୋଛିଦେଇ କହିଲା—ଭୟ ନାହିଁ ଯେ, ଏ ଅପରାଧ ଏବଂ ଏ ଅନ୍ୟାୟର ପରିଣାମ ମୁଁ ବୁଝି ପାରୁନାହିଁ । କିନ୍ତୁ ମୁଁ ବଡ଼ ଦୁର୍ବଳ !! ଏ ଆଘାତ ହୁଏତ ମହିମ ସହିପାରେ କିନ୍ତୁ ମୋର ଛାତି ଫାଟିଯିବ । ଗୋଟାଏ କଠିନ ଧକା ସମ୍ଭାଳି ନେଲାପରି ରୁଦ୍ଧ ସ୍ୱରରେ ସୁରେଶ ପୁଣି କହିବାକୁ ଲାଗିଲା—ତୁମେ ଯେ ମୋର ନୁହଁ 'ଏବଂ ଆଉ ଜଣଙ୍କର, ଏକଥା ଆଜି ମୁଁ ଚିନ୍ତା କରି ପାରୁ ନାହିଁ । ତୁମକୁ ପାଇବି ନାହିଁ; ଏ କଥା ମନରେ ଆସିଲେ ମନେ ହେଉଛି ସତେ ଯେପରି ମୋ ପାଦତଳର ମାଟି ରସାତଳକୁ ଦବି ଯାଉଛି....

ଅଳ୍ପ ସମୟ ହେବ ରାସ୍ତା କଡ଼ର ଗ୍ୟାସ ଲାଇଟ ଗୁଡ଼ାକ ଜଳି ଉଠିଛି । ଗାଡ଼ି କେଦାରବାବୁଙ୍କ ଗଳିକୁ ମୁହାଁଇବା ସମୟରେ ସମ୍ମୁଖର ଆଲୁଅ ଗାଡ଼ିଉପରେ ପଡ଼ିବା କ୍ଷଣି ଅଚଳା ସୁରେଶ ଆଖିରେ ଲୁହ ଚକ୍ ଚକ୍ କରୁଥିବାର ଦେଖିପାରିଲା । ସେ କୌଣସି ଦିନ ଜୀବନରେ ଯେଉଁ କାର୍ଯ୍ୟ କରି ନଥିଲା ସେହି କାର୍ଯ୍ୟକୁ ମୁହୂର୍ତ୍ତି-କର କରୁଣା ହେତୁ କରିବସିଲା । ଆଗକୁ ଝୁଙ୍କିପଡ଼ି ତାହାର ଆଖିରୁ ଲୁହ ପୋଛି ଦେଇ କହିଲା—ବାବାଙ୍କର ଅବାଧ୍ୟ ମୁଁ ଦିନକ ପାଇଁ ସୁଦ୍ଧା ହୋଇନାହିଁ । ସେ ତ ମୋତେ ତୁମହାତରେ ଦେଇଛନ୍ତି ।

ସୁରେଶ ଅଚଳାର ସେହି ହାତଟିକୁ ମୁହଁ ପାଖକୁ ନେଇ ବାରମ୍ବାର ଚୁମ୍ବନ କରୁ କରୁ କହିଲା—ଏହା ହିଁ ମୋର ସବୁଠାରୁ ଶ୍ରେଷ୍ଠ ପୁରସ୍କାର ଅଚଳା । ମୁଁ ଅଧିକା ଆଉ କିଛି ଚାହେଁ ନାହିଁ । କିନ୍ତୁ ଏଇ ଟିକକରୁ ମୋ ତେ ଯେପରି ଆଉ ବଞ୍ଚିତ ନ କର......

ଗାଡ଼ି ଆସି ଘର ଆଗରେ ଠିଆ ହେଲା । ବେହେରା ଗେଟ୍ ଖୋଲିଦେଇ ଗଲା । ସୁରେଶ ନିଜେ ଗାଡ଼ିରୁ ଓହ୍ଲାଇ ପ୍ରଥମ ଅଚଳାର ହାତ ଧରି ତାହାକୁ ତଳକୁ ଓହ୍ଲାଇ ଦେଉ ଦେଉ ଚାହିଁ ଦେଖିଲା ଯେ ଆଗରେ ମହିମ ଠିଆ ହୋଇଛି । ସେହି ନିମିଷକର ଚାହାଣୀରେ ଏଇ ଦୁଇଟି ନର ନାରୀ ସତେ ଯେପରି ଏକ ପ୍ରକାର ପଥରରେ ରୂପାନ୍ତରିତ ହୋଇଗଲେ ।

ପରକ୍ଷଣରେ ଅଚଳା ଅବ୍ୟକ୍ତ ଆର୍ତ୍ତସ୍ୱରରେ ଚତ୍କାର କରି ସୁରେଶ ହାତରୁ ନିଜ ହାତକୁ ଛଡ଼ାଇ ନେଇ ପଛକୁ ଘୁଞ୍ଚିଗଲା ।

ମହମ ଆଶ୍ଚର୍ଯ୍ୟ ହୋଇ କହିଲା—ସୁରେଶ ତୁ ଏଠାରେ ?

ସୁରେଶ ପାଟିରୁ ହଠାତ୍ ପଦେ କଥା ସୁଦ୍ଧା ବାହାରିଲା ନାହିଁ । ତାହା-ପରେ ସେ ଢୋକ ଗିଳି ମଳିନ ମୁହଁରେ ଶୁଖିଲା ହସଟିଏ ହସିଦେଇ କହିଲା—ଆରେ ମହମ ଯେ ! ଆଉ ତ ଦେଖା ନାହିଁ । ଘଟଣା କ'ଣ ? କେବେ ଆସିଲୁ ? ଚାଲ, ଚାଲ, ଉପରକୁ ଚାଲ । କହି ନିକଟକୁ ଆସି ତାହାର ହାତକୁ ମୁଠାଇ ଧରି ହସି ହସି କହିଲା—ଆଚ୍ଛା କାମ କରି ବସିଲେ କେଦାରବାବୁ । ସେ ଗଲେ ବ୍ରାହ୍ମ ସମାଜରେ ଯୋଗ ଦେବାପାଇଁ ଆଉ ତାଙ୍କ ଝିଅକୁ ଘରେ ପହଞ୍ଚାଇ ଦେବାର ଭାର ପଡ଼ିଲା ବିଚାରା ମୋ ପରି ଗରିବ ଉପରେ । ତାହା ଏକପ୍ରକାର ଭଲ ବି ହୋଇଛି । ନ ହେଲେ ତୋ ସହିତ ଦେଖା ମଧ୍ୟ ହୋଇ ପାରି ନ ଥାନ୍ତା । ଘରେ ବସି ଏତେଦିନ କ'ଣ କରୁଥିଲୁ କହିଲୁ ?

ମହମ କହିଲା—କାମ ଥିଲା । ବିସ୍ମୟାଭିଭୂତ ହେବାରୁ ସେ ଅଚଳାକୁ ନମସ୍କାର କରିବାକୁ ସୁଦ୍ଧା ଭୁଲି ଯାଇଥିଲା ।

ସୁରେଶ ଅଟ୍ଟାରେ ତାହାକୁ ସାମାନ୍ୟ ଠେଲି ଦେଇ କହିଲା—ସେ ଯାହା ହେଉ । ଆମେ ଏଣ୍ଟାଡ଼େ ଭାବି ମରୁଛୁ ଆଉ ତୋତେ କ'ଣ ଚିଠି ଖଣ୍ଡିଏ ଲେଖି-ବାକୁ ବେଳ ମିଳିଲା ନାହିଁ ? ଠିଆ ହୋଇ ରହିଲୁ କାହିଁକି ? ଉପରକୁ ଚାଲ, କହି ଏକପ୍ରକାର ଜୋର କରି ତାହାକୁ ଉପରକୁ ନେଇ ଚାଲିଗଲା । କିନ୍ତୁ ବୈଠକ ଘରେ ଆସି ସମସ୍ତେ ଯେତେବେଳେ ବସିଲେ, ସେତେବେଳେ ଅକସ୍ମାତ ତାର ପ୍ରଗଲ୍‌ଭତା, ସମ୍ପୂର୍ଣ୍ଣ ଭାବରେ କମିଗଲା । ଗ୍ୟାସ ଆଲୋକର ତୀବ୍ର ତେଜରେ ତାର ମୁହଁଟି ନୀଳବର୍ଣ୍ଣ ହୋଇଉଠିଲା । ଦୁଇ, ତିନି ମିନିଟ୍ ପର୍ଯ୍ୟନ୍ତ କେହି କିଛି କଥା କହିବାକୁ ସକ୍ଷମ ହେଲେ ନାହିଁ । ମହମ ଥରକ ପାଇଁ ବନ୍ଧୁ ଆଡ଼େ ଏବଂ ଥରକ ପାଇଁ ଅଚଳା ଆଡ଼େ ଚାହିଁ ଦେଇ ଶୁଷ୍କ କଣ୍ଠରେ ପ୍ରଶ୍ନ କଲା—ଆଉ ଖବର ସବୁ ଭଲ ତ ?

ଅଚଳା ମୁଣ୍ଡ ହଲାଇ ଉତ୍ତର ଦେଲା ସିନା, କିନ୍ତୁ ମୁହଁ ଟେକି ଚାହିଁ ପାରିଲା ନାହିଁ ।

ମହମ କହିଲା—ମୁଁ ଭାବି ପାରୁନାହିଁ ଯେ ସୁରେଶ ସହିତ ତୁମର ଆଳାପ ପରିଚୟ ହେଲା କପରି ?

ଅଚଳା ଲଜ୍ଜାରେ ମରିଗଲା ପରି ହୋଇ ମୁହଁ ତଳକୁ କରି କହିଲା—ସେ ବାପାଙ୍କର ଚାରିହଜାର ଟଙ୍କା ଋଣ ପରିଶୋଧ କରିଦେଇଛନ୍ତି ।

ଅଚଳା ମୁହଁକୁ ଏକ ଦୃଷ୍ଟିରେ ଚାହିଁ ରହିଥିବା ବେଳେ ମହିମ ତୁଣ୍ଡରୁ ବାହାରି ପଡ଼ିଲା; ତା ପରେ ?

: ତେଣିକି ତୁମେ ବାବାଙ୍କୁ ପଚାରିପାର; ଏତିକି କହି ଅଚଳା ସେଠାରୁ ଉଠି ଚାଲିଗଲା ।

ମହିମ ସ୍ତବଧ ହୋଇ କିଛିକ୍ଷଣ ବସିରହି ଶେଷରେ ସୁରେଶକୁ ଚାହିଁ ପ୍ରଶ୍ନ କଲା—କଥା, କ'ଣ କରେ ସୁରେଶ ?

ସୁରେଶ ଉଦ୍ଧତ ସ୍ୱରରେ ଜବାବ ଦେଲା—ତୋ ଭଳି ଟଙ୍କା ମୋର ପ୍ରାଣ ନୁହେଁ । ଭଦ୍ରଲୋକ ବିପଦରେ ପଡ଼ି ସାହାଯ୍ୟ ମାଗିଲେ; ମୁଁ ଦେଇଛି । ବାସ, କଥା ଏତିକି । ସେ ଯଦି ପରିଶୋଧ ନ କରନ୍ତି ତେବେ ମୁଁ ଭାବିବି ସେ ଦୋଷ ମୋର ନୁହେଁ । ଏଥିପାଇଁ ଯଦି ମୋତେ ଦୋଷୀ ବୋଲି ଭାବୁଥାଉ, ତହିଁରେ ମୋର ଆପତ୍ତି ନାହିଁ ।

ବନ୍ଧୁର ଏହି ଅପ୍ରାସଙ୍ଗିକ କୈଫିୟତ ଏବଂ ତାହାକୁ ପ୍ରକାଶ କରିବାର ଅପରୂପ ଭଙ୍ଗୀ ଦେଖି ମହିମ ଯଥାର୍ଥରେ ମୂଢ଼ଭଳି ଚାହିଁ ରହି ଶେଷରେ କହିଲା—ହଠାତ୍ ତୋତେ ଅବା ଦୋଷୀ ବୋଲି ଭାବିବି କାହିଁକି ? ଦୟାକରି ଆଉ ଟିକିଏ ଖୋଲି କରି ନ କହିଲେ ବୁଝି ପାରିବି ନାହିଁ ତ······

ସୁରେଶ ସେହିପରି ରୁକ୍ଷ ସ୍ୱରରେ କହିଲା— ଖୋଲି କରି କ'ଣ କହିବି ? ଆଉ ଏଥିରେ ଅବୁଝା କ'ଣ ଅବା ରହୁଛି ?

ମହିମ କହିଲା— ହଁ ଅବୁଝା ରହୁଛି । ମୁଁ ଯେଉଁଦିନ ଗାଁକୁ ଗଲି ସେପର୍ଯ୍ୟନ୍ତ ତୁ ଏମାନଙ୍କୁ ଚିହ୍ନି ନ ଥିଲୁ । ଏହା ଭିତରେ ତୋର ଏତେ ଘନିଷ୍ଠ ପରିଚୟ ହେଲା କିପରି ? ଏବଂ ଗୋଟାଏ ବ୍ରାହ୍ମ ପରିବାରର ବିପଦରେ ଚାରି ହଜାର ଟଙ୍କା ଦେବାଭଳି ଉଦାରତା ତୋ ମନ ଭିତରେ ଦେଖାଗଲା କିପରି ? ଆପାତତଃ ଏଇତକ ବୁଝାଇଦେଲେ ମୁଁ କୃତାର୍ଥ ହୋଇଯିବି ସୁରେଶ ।

ସୁରେଶ କହିଲା—ମୋର କିନ୍ତୁ ଗପ କହିବା ପାଇଁ ସମୟ ନାହିଁ । ବର୍ତ୍ତମାନ ମୋତେ ଯିବାକୁ ହେବ । ଏହା ଛଡ଼ା କେଦାରବାବୁଙ୍କୁ ପଚାରିଲେ ସେ ତ ଏ ସବୁ ଉତ୍ତର ଦେବା ପାଇଁ ଅପେକ୍ଷାରେ ବସିଛନ୍ତି ।

ବେଶ୍ ଭଲ କଥା କହି ମହିମ ଯିବାପାଇଁ ଠିଆ ହେଲା । କହିଲା, ଶୁଣିବାର ଭାରି କୌତୂହଳ ଥିଲା କିନ୍ତୁ ବର୍ତ୍ତମାନ ଅପେକ୍ଷା କରିବା ପାଇଁ ମୋର ମଧ୍ୟ ସମୟ ନାହିଁ । ମୁଁ ମଧ୍ୟ ଯାଉଛି ।

ସୁରେଶ ସ୍ଥିର ହୋଇ ବସି ରହିଲା । ପଦୁଟିଏ କଥା ସୁଦ୍ଧା କହିଲା ନାହିଁ ।

ମଦ୍ଦମ ବାହାରକୁ ଆସି ଦେଖିଲା—ଅଚଳା ଅନ୍ଧାରରେ ରେଲିଂଧର ଝରକା ବାଟେ ବାହାରକୁ ଏକ ଲୟରେ ଚାହିଁ ରହିଛି । ସେ ଚାଲି ଯାଉଥିଲେ ସୁଦ୍ଧା ପାଖକୁ ଆସିବା ତ ଦୂରର କଥା ପଦେ କଥା ମଧ୍ୟ ତାକୁ ନ କହୁଥିବାର ଦେଖି ମଦ୍ଦମ ନୀରବରେ ତଳମହଲକୁ ଧୀରେ ଧୀରେ ଓହ୍ଲାଇ ଗଲା ।

କେତେକ ଜରୁରୀ ଔଷଧ କିଣିବା ପାଇଁ ମଦ୍ଦମ କଲିକତା ଆସିଥିଲା, ସୁତରାଂ ରାତି ଗାଡ଼ିରେ ସେ ଫେରିଗଲା । ସୁରେଶ ସନ୍ଧାନ ନେଇ ଜାଣିପାରିଲା ମଦ୍ଦମ ତାଙ୍କ ଘରକୁ ଆସିନାହିଁ । ସ୍ନାନ ଭୋଜନ ପରେ ଉପରଓଳି କେଦାରବାବୁଙ୍କ ଘରେ ବସି ସମସ୍ତଙ୍କ ଭିତରେ ଏହି ଆଲୋଚନା ଚାଲିଥିଲା । କେଦାରବାବୁ ଆଜିକାଲି ବାଇସ୍କୋପ ଦେଖିବା ପାଇଁ ପାଗଳ ହୋଇ ଉଠିଛନ୍ତି । କଥା ଥିଲା ଚାହା ଖାଇବା ମାତ୍ରେ ସେ ଆଜି ମଧ୍ୟ ବାଇସ୍କୋପ ଦେଖିବାକୁ ଯିବେ । ତଳେ ସୁରେଶର ଗାଡ଼ି ଠିଆ ହୋଇ ରହିଥିଲା । ଏହି ସମୟରେ ମନ୍ଦ ଗ୍ରହ ଭଳି ମଦ୍ଦମ ଆସି ହଠାତ୍ ସେଠାରେ ପହଞ୍ଚିଲା ।

ସମସ୍ତେ ମୁହଁଟେକି ଚାହିଁଲେ ଏବଂ ତାକୁ ଦେଖିବାକ୍ଷଣି ସଙ୍ଗେ ସଙ୍ଗେ ସମସ୍ତଙ୍କର ମୁହଁ ରଙ୍ଗ ବଦଳିଗଲା ।

କେଦାରବାବୁ ବିରସ ବଦନରେ ଜୋର କରି ଟିକିଏ ହସି ଅଭ୍ୟର୍ଥନା ଜଣାଇ କହିଲେ— ଆସ ମଦ୍ଦମ । କ'ଣ ଖବର ସବୁ ଭଲ ତ ?

ମଦ୍ଦମ ନମସ୍କାର କରି ଭିତରେ ଆସି ବସିଲା । ବଳମ୍ପୁରେ ଗାଆଁରୁ ଆସିବାର କାରଣ ଜଣାଇବାକୁ ଯାଇ ସେ କେବଳ ଏତିକି କହିଲା ଯେ, ତାର ବହୁତ କାମ ଥିଲା ।

ସୁରେଶ ଟେବୁଲ ଉପରେ ପଡ଼ିଥିବା ସେଦିନର ଖବର କାଗଜଟା ଟାଣି-ନେଇ ପଢ଼ିବାକୁ ଲାଗିଲା ଏବଂ ଅଚଳା ପାଖ ଚୌକିରେ ବସି ରୁମାଲ ବୁଣିବାରେ

ମନ ଦେଲା । ସୁତରାଂ କଥାବାର୍ତ୍ତା ଯାହା ହେବା କଥା ତାହା କେବଳ କେଦାର ବାବୁଙ୍କ ସଙ୍ଗେ ହିଁ ହେଲା ।

ହଠାତ୍ ଅଚଳା ବାହାରକୁ ଯାଇ ମିନିଟ୍କ ଭିତରେ ଫେରି ଆସି ବସିଲା ଏବଂ ସଙ୍ଗେ ସଙ୍ଗେ ମୁଣ୍ଡ ଉପରର ଟଣା ପଙ୍ଖାଟା ହଲିବାକୁ ଲାଗିଲା । ପବନ ପାଇବା ମାତ୍ରେ କେଦାରବାବୁ ଖୁସି ହୋଇ କହି ଉଠିଲେ, ଯାହା ହେଉ ପଙ୍ଖାଟଣା ବାବୁଙ୍କର ଏତେ ବେଳକୁ ଟିକିଏ ଦୟା ହେଲା ।

ସୁରେଶ ବକ୍ର ଚାହାଣୀରେ ଦେଖି ପାରିଲା ମହିମ କପାଳରେ ବିନ୍ଦୁ ବିନ୍ଦୁ ଝାଳ ଜମି ଯାଇଛି । କାହିଁକି ଅଚଳା ବାହାରକୁ ଉଠିଯାଇଥିଲା, ଏବଂ କାହିଁକି ପଙ୍ଖା ଟାଣିବା ବାଲା ପଙ୍ଖା ଟାଣିଲା, ଏ ସମସ୍ତ ରହସ୍ୟ ତାହା ମନରେ ବିଦ୍ୟୁତ୍ ବେଗରେ ଖେଳିଗଲା । ଯେଉଁ ପବନ ହେତୁ କେଦାରବାବୁ ଖୁସି ହେଲେ ସେହି ପବନରେ ତାହାର ସର୍ବାଙ୍ଗ ପୋଡ଼ି ଗଲାପରି ତାକୁ ଜଣା ପଡ଼ିଲା । ସେ ହଠାତ୍ ବିରକ୍ତ ହୋଇ କହି ଉଠିଲା—ବର୍ତ୍ତମାନ ପାଞ୍ଚଟା ବାଜିଲାଣି, ଆଉ ଡେରି କଲେ ଚଳିବ ନାହିଁ ।

କେଦାରବାବୁ ଗପ ବନ୍ଦକରି ଚାହା ପାଇଁ ଡକାଡକି କରିବାରୁ ବେହେରା ଚାହା ସରଞ୍ଜାମ ଆଣି ହାଜର କରିଦେଲା । ପିଲାଇ ରଖି ଦେଇ ଅଚଳା ଦୁଇ କପ୍ ଚାହା ତିଆରି କରି ସୁରେଶ ଓ ତାହାର ବାପାଙ୍କ ଆଡ଼କୁ ବଢାଇ ଦେବାରୁ କେଦାରବାବୁ ପଚାରିଲେ—ତୁ କ'ଣ ଖାଇବୁ ନାହିଁ କି ମା ?

ଅଚଳା ମୁଣ୍ଡ ହଲାଇ କହିଲା—ନା, ବଡ଼ ଗରମ ହେଉଛି ବାପା ।

ହଠାତ୍ ତାଙ୍କର ମହିମ ପ୍ରତି ଦୃଷ୍ଟି ପଡ଼ିବା ମାତ୍ରେ ସେ ବ୍ୟସ୍ତ ହୋଇ କହିଉଠିଲେ—ଏ କ'ଣ ? ମହିମକୁ ଦେଲୁନି ଯେ ? ତୁମେ କ'ଣ ଚାହା ପିଇବ ନାହିଁ ମହିମ ?

ମହିମ ଉତ୍ତର ଦେବା ପୂର୍ବରୁ ଅଚଳା ସ୍ୱାଭାବିକ କଣ୍ଠରେ କହି ଉଠିଲା; ନା, ଏତେ ଗରମରେ ଚାହା ପିଇ ଲାଭ ନାହିଁ । ତା'ପରେ ଏ ବେଳା ତ ସେ ଚାହା ପିଅନ୍ତି ନାହିଁ ।

ମହିମ ଗ୍ଲାସ ଉପରରୁ ହଠାତ କିଏ ଯେପରି ମାନ୍ତ୍ରମନ୍ତ୍ର ଦ୍ୱାରା ଅସହ୍ୟ ଗୁରୁଭାରକୁ ଓହ୍ଲାଇଦେଲା । ସେ କିଛି କହିଲା ନାହିଁ; କେବଳ ଅବ୍ୟକ୍ତ ବିସ୍ମୟରେ ନିର୍ନିମେଷ ନୟନରେ ଚାହିଁ ରହିଲା ।

ଅଚଳା କହିଲା···ଟିକଏ ଅପେକ୍ଷା କରନ୍ତୁ, ମୁଁ ଲେମ୍ବୁ ରସ ଦେଇ ସରବତ କରି ଆଣୁଛି । ଏତିକି କହି କାହାରି ସମ୍ମତିକୁ ଅପେକ୍ଷା ନ କରି ଘର ଭିତରକୁ ଚାଲିଗଲା ।

ସୁରେଶ ଅନ୍ୟ ଦିଗକୁ ମୁହଁ ବୁଲାଇ କଲ କଣ୍ଢେଇ ଭଳି ଚାହା ପିଇବାକୁ ଆରମ୍ଭ କଲା । କିନ୍ତୁ ଚାହାର ପ୍ରତି ବିନ୍ଦୁରୁ ସେ ମଧୁରତା ପାଇ ପାରୁ ନ ଥିଲା ।

ଚାହା ପିଇ ସାରି କେଦାରବାବୁ ଶୀଘ୍ର ଲୁଗା ପିନ୍ଧି ପ୍ରସ୍ତୁତ ହୋଇ ଆସି ଦେଖିଲେ, ଅଚଳା ସିଲାଇ କରିବାରେ ଲାଗିଛି । ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ ବ୍ୟସ୍ତ ହୋଇ ପଡ଼ି ସେ କହିଲେ, ଏ ପର୍ଯ୍ୟନ୍ତ କ'ଣ ସିଲାଇ କରି ଚାଲିଛୁ, ଶାଢ଼ୀ ପ୍ରଭୃତି ପିନ୍ଧି ନାହୁଁ ଯେ.......

ଅଚଳା ମୁହଁ ଟେକି ଶାନ୍ତ ଗଳାରେ କହିଲା—ମୁଁ ଯିବି ନାହିଁ ବାବା,

: ଯିବୁ ନାହିଁ ? ସେ କିପରି କଥା ?

: ଆଜି ଆପଣମାନେ ଯାଆନ୍ତୁ । ମୋତେ ଭଲ ଲାଗୁନାହିଁ । କହି ଅଚଳା ଟିକଏ ହସିଦେଲା ।

ସୁରେଶ ନିଜର ଅଭିମାନ ଓ ମନଭିତରର କ୍ରୋଧକୁ ଚାପିରଖି କହିଲା; ଚାଲନ୍ତୁ କେଦାରବାବୁ ଆଜି ଆମେ ଦୁହେଁ ଯିବା, ତାଙ୍କର ବୋଧ ହୁଏ ଦେହ ଭଲ ନାହିଁ । ତେଣୁ ବାଧ କରି କିଛି ଲାଭ ନାହିଁ ।

କେଦାରବାବୁ ସୁରେଶ ଆଡ଼କୁ ଚାହିଁ ତାହା ଭିତରେ ଥିବା କ୍ରୋଧର ସନ୍ଧାନ ପାଇ ପାରିଲେ । ଝିଅକୁ ଲକ୍ଷ୍ୟ କରି କହିଲେ—ତୋର ଦେହ ଏମିତି କ'ଣ ଖରାପ ହୋଇଛି ଯେ........

ଅଚଳା କହିଲା—ନାହିଁ ବାବା, ଦେହ ଖରାପ ହେବ କାହିଁକି ? ମୁଁ ବେଶ ଭଲ ଅଛି ।

ସୁରେଶ ମହିମ ଆଡ଼କୁ ପଛକରି ଠିଆ ହୋଇଥିଲା । ତେଣୁ ତାର ମୁଖର ଭାବ ଲକ୍ଷ୍ୟ କରିବାର ସୁଯୋଗ ନଥିଲା । କହିଲା—ଚାଲନ୍ତୁ ଯିବା କେଦାରବାବୁ । ହୁଏତ ଘରେ ତାଙ୍କର କିଛି କାମ ଥାଇ ପାରେ । ତେଣୁ ଜୋର କରି ସଙ୍ଗରେ ନେଇ ଲାଭ କ'ଣ ?

କେଦାରବାବୁ କଠୋର ସ୍ୱରରେ ପ୍ରଶ୍ନ କଲେ—ଘରେ ତୋର କାମଅଛି ?

ଅଚଳା ମୁଣ୍ଡ ହଲାଇ କହିଲା—ନା ।

କେଦାରବାବୁ ହଠାତ୍ ଚିତ୍କାର କରି କହି ଉଠିଲେ—କହୁଛି ଚାଲ । ଦେଖୁଛି ଦିନକୁ ଦିନ ତୁ ଅବାଧ୍ୟ ଏବଂ ଜିଦଖୋର ହୋଇ ପଡୁଛୁ······

ଅଚଳା ହାତରୁ ସିଲଇ କରୁଥିବା ରୁମାଲଟା ତଳେ ପଡ଼ିଗଲା । ସେ ଆଶ୍ଚର୍ଯ୍ୟ ହୋଇ ପ୍ରଥମେ ସୁରେଶ ଏବଂ ପରେ ନିଜ ବାବାଙ୍କୁ ଗୁହିଁ ଝିଅ ଭଳି ସେ ସ୍ଥାନ ଛାଡ଼ି ଚାଲି ଗଲା ।

ସୁରେଶ ମୁହଁ କଳାପଡ଼ିଗଲା । ସେ କହିଲା, ଜବରଦସ୍ତି କରି ଲାଭ କ'ଣ ? ମୁଁ ଆଉ ଡେ଼ରି କରି ପାରିବ ନାହିଁ । ଅନୁମତି ଦେଲେ ମୁଁ ଯିବ.......

କେଦାରବାବୁ ନିଜ ଝିଅର ଏହିଭଳି ଆଚରଣରେ ମନେ ମନେ ଲଜ୍ଜିତ ହୋଇ ଉଠିଲେ । ସୁରେଶ କଥା ଶୁଣି ସେ ବିରକ୍ତ ହୋଇ ଉଠିଲେ ଏବଂ ସେ ରାଗଟା କାଳୁ ଶୁଝିଲା ମହିମ ଉପରେ । ସେ ଅତିଶୟ ବ୍ୟଥିତ ଓ କ୍ଷୁବ୍ଧ ହୋଇ କହିଲେ—ତୁମର କ'ଣ କିଛି କାମ ଅଛି ମହିମ ?

ମହିମ ସଙ୍କିତ ଭାବରେ ଉଠିପଡ଼ି କହିଲା—ନା ।

କେଦାରବାବୁ ଯିବାକୁ ଉଦ୍ୟତ ହେଉ ହେଉ କହିଲେ—ଆଜି ମୁଁ ବ୍ୟସ୍ତ ଅଛି । ତୁମେ ଆଉ କେବେ ଆସ........

ମହିମ କହିଲା —ଆଜ୍ଞା, ଆସିବ । ହେଲେ ଆସିବାର କଣ ଦରକାର ଅଛି ?

କେଦାରବାବୁ ସୁରେଶକୁ ଶୁଣାଇ କରି କହିଲେ ଅବଶ୍ୟ କିଛି ଦରକାର ନାହିଁ । ତେବେ ଯଦି ମନେକର ଆସିପାର । ଆସିଲେ କୌଣସି ବିଷୟରେ ଆଲୋଚନା କରନ୍ତେ ।

ତିନିଜଣ ଯିବା ପାଇଁ ବାହାରିପଡ଼ିଲେ । ତଳକୁ ଆସିବାକ୍ଷଣି ସୁରେଶ ମହିମକୁ ତଳେ ମାତ୍ର ଭୃକ୍ଷେପ ନକରି କେଦାରବାବୁଙ୍କୁ ଧରି ନିଜ ଗାଡ଼ିରେ ବସି କୋଚମ୍ୟାନକୁ ଗାଡ଼ି ଚଳାଇବାକୁ ଆଦେଶ ଦେଲା ।

ମହିମ କିଛିବାଟ ଚାଲି ଆସୁ ଆସୁ ପଛରୁ ତା ନାମ ଧରି କିଏ ଡ଼ାକୁଥିବାର ଶୁଣି, ଫେରି ଗୁହିଁ ଦେଖିଲା ସେ ହେଉଛି କେଦାରବାବୁଙ୍କ ବେହେରା । ସେ ବିଚରା ଧଇଁ ସଇଁ ହୋଇ ଦୌଡ଼ି ଆସି ତାର ହାତରେ ଖଣ୍ଡିଏ କାଗଜ ଗୁଞ୍ଜି ଦେଲା । ସେଥିରେ ପେନସିଲରେ କେବଳ ଲେଖାଥିଲା—"ଅଚଳା ।"

ବେହେରା କହିଲା—ଆପଣଙ୍କୁ ଫେରିଯିବା ପାଇଁ କହିଛନ୍ତି ।

ମହିମ ଫେରି ଆସି ସିଡ଼ିରେ ଚଢିବା ପାଇଁ ପାଦ ଦେଉ ଦେଉ ଦେଖିଲା ଅଚଳା ଆଗରେ ଠିଆ ହୋଇ ରହିଛି । ତାହାର ଆରକ୍ତ ଚକ୍ଷୁର ପତା ତଥାପି ଆର୍ଦ୍ର ହୋଇ ରହିଛି । ନିକଟକୁ ଆସି କହିଲା—ତୁମେ ତୁମର କଂସାଇ ବନ୍ଧୁ ହାତରେ ମୋତେ ଜବେ କରିବା ପାଇଁ କ'ଣ ଛାଡ଼ି ଦେଇ ଗଲ ? ଯିଏ ତୁମ

ନିକଟରେ ଏତେ କୃତଘ୍ନ ହୋଇପାରେ ମୋତେ ତାହା ନିକଟରେ ଗ୍ରୁଡ଼ି ଯାଉଛ କପଶ ?

ଏତିକ କହି କହିଁ କହିଁ ହୋଇ କାନ୍ଦିବାକୁ ଲଗିଲା ।

ମହିମ ସ୍ତବ୍ଧ ହୋଇ ଠିଆ ହୋଇ ରହିଲା ।

କିଛି ସମୟ ପରେ ଅଚଲା ଆଖିର ଲୁହପୋଛି କହିଲା; ଆଉ ଲଜକରିବାକୁ ମୋର ସମୟ ନାହିଁ । ଏହା ପରେ ମହିମର ଡ଼ାହାଣ ହାତଟା ଟାଣିନେଇ ନିଜ ଅଙ୍ଗୁଳିରୁ ମୁଦିଟି କାଢି ତାର ଅଙ୍ଗୁଳିରେ ପିନ୍ଧାଇ ଦେଇ କହିଲା, ମୁଁ ଆଉ ଭାବି ପାରୁନାହିଁ । ଏଣିକି ତୁମେ ଯାହା କରିବାର କଥା, କର । ଏତିକି କହି ମହିମ ପାଦତଳେ ପ୍ରଣତି ଢ଼ାଳି ଘର ଭିତରକୁ ବିଜୁଳି ବେଗରେ ଗ୍ଲଲିଗଲା ।

ମହିମ ଭଲମନ୍ଦ କିଛି ମନ୍ତବ୍ୟ ଦେଲା ନାହିଁ । ଅନେକ ସମୟ ପର୍ଯ୍ୟନ୍ତ ନୀରବରେ ରେଲିଂ କୁ ଆଉଜି ରହି ଠିଆହୋଇ ରହିବା ପରେ ଧୀରେ ଧୀରେ ତଳକୁ ଓହ୍ଲାଇ ଗେଟ୍ ପାରହୋଇ ଗ୍ଲଲିଗଲା ।

ସନ୍ଧ୍ୟା ପରେ ଯେତେବେଳେ ମହିମ ତଳକୁ ମୁହଁ ପୋତି ନିଜ ବସାକୁ ଫେରୁଥିଲା ସେତେବେଳେ ତାହାକୁ ଦେଖିଲେ କାହାର କହିବାକୁ ଶକ୍ତି ଥିଲା ଯେ, ଠିକ୍ ସେହି ସମୟରେ ତାର ପ୍ରାଣଟା ଯନ୍ତ୍ରଣାରେ ଛଟପଟ ହୋଇ ବାହାରିଯିବା ପାଇଁ କପରି ଚେଷ୍ଟା କରୁଥିଲା । ସୁରେଶ କପରି ଏଠାକୁ ଆସିଲା, କପରି ଏତେ ଘନିଷ୍ଟ ହୋଇ ଉଠିଲା; ଏଇସବୁ ଗୁପ୍ତ ଇତିହାସ ବର୍ତ୍ତମାନ ସେ ଯଦିଓ ଜାଣିପାରି ନାହିଁ କିନ୍ତୁ ଅସଲ ଜିନିଷଟା ତାହାକୁ ଆଉ ଅଜଣା ନ ଥିଲା । କେଦାର ବାବୁଙ୍କୁ ସେ ଚିହ୍ନେ । ଯେଉଁଠାରେ ଟଙ୍କାର ଗନ୍ଧ ସେ ପାଇଥିବେ ସେଠାରୁ କୌଣସିମତେ ସେ ମୁହଁ ଫେରାଇ ପାରିବେ ନାହିଁ । ଏ ବିଷୟରେ ମହିମର ଅଣୁମାତ୍ର ସନ୍ଦେହ ନ ଥିଲା । ସୁରେଶକୁ ସେ ପିଲା ଦିନରୁ ଅନେକ ରୂପରେ ଦେଖି ଆସିଛି । ଯାହାକୁ ସେ ଭଲ ପାଏ ତାହାକୁ ପାଇବା ପାଇଁ ସେ କ'ଣ ନ ଦେଇ ପାରେ ତାହା କଳ୍ପନା କରିବା କଠିନ । ଟଙ୍କା ସବୁଦିନ ତାହା ନିକଟରେ ତୁଚ୍ଛ ବସ୍ତୁ ଥିଲା । ଦିନେ ମୁଙ୍ଗେରରେ ଯିଏ ଗଙ୍ଗା ନଦୀକୁ ଡେଇଁ ପଡ଼ି ନିଜ ପ୍ରାଣ ପ୍ରତି ମମତା ରଖି ନଥିଲା, ସେ ଯଦି ଆଜି ଭଲ ପାଇବା ମୋହରେ ପଡ଼ି ତାକୁ ଭ୍ରୁକ୍ଷେପ

ନ କରେ ସେଥିପାଇଁ ସେ ଦୋଷ ଦେବ କାହାକୁ ? ତେଣୁ ସମସ୍ତ ବିଷୟକୁ ଏକ ମର୍ମାନ୍ତିକ ଦୁର୍ଘଟଣା ମନେ କରିବା ବ୍ୟତୀତ ସେ କାହା ଉପରେ ଦୋଷ ଲଦି ଦେଇ ପାରିଲା ନାହିଁ । କିନ୍ତୁ ହଠାତ୍ ଏଇ ଯେଉଁଗୁଡ଼ିଏ ପ୍ରଚଣ୍ଡ ଏବଂ ବିରୁଦ୍ଧ ଶକ୍ତି ତା ବିରୁଦ୍ଧରେ ମାଡ଼ି ଉଠିଛନ୍ତି । ସେ ସବୁକୁ ପ୍ରତିହତ କରି ଅଚଳା ପୁଣି ଯେ ତା ନିକଟକୁ ଫେରି ଆସିବ, ଏ ବିଶ୍ୱାସ ତାର ଆଦୌ ନଥିଲା । ସେଥିପାଇଁ ତାର ଶେଷ କଥା ଦୁଇପଦ ମହିମ ମନରେ ପ୍ରକୃତରେ କ୍ଷଣିକ ଚଞ୍ଚଳତା ଆଣିବା ବ୍ୟତୀତ କୌଣସି ପ୍ରତ୍ୟୟ ସୃଷ୍ଟି କରି ପାରି ନଥିଲା । ସେ ଆଙ୍ଗୁଠିରେ ପିନ୍ଧିଥିବା ମୁଦିଟାକୁ ଚାହିଁ କୌଣସି ପ୍ରକାରରେ ସାନ୍ତ୍ୱନା ପାଇ ପାରୁ ନଥିଲା । ଅଥଚ ଏ ସବୁର ଶେଷ ନିଷ୍ପତ୍ତି ହେବା ନିହାତି ଦରକାର । ଏହିପରି ଗୋଟାଏ ମୁହୂର୍ତ୍ତିରେ ନିଜକୁ ବୁଝାଇ, ପୁଣି ପରକ୍ଷଣରେ ସନ୍ଦେହ ସୃଷ୍ଟି କରି କେତେଦିନ ଚଳିବ ? ଯାହା ହେବାର କଥା ତାହା ହୋଇଯାଉ । ବର୍ତ୍ତମାନ ତାହାପକ୍ଷରେ ଚରମ ନିଷ୍ପତ୍ତି ନେବା ଆବଶ୍ୟକ ପଡ଼ିଛୁ । ଏହି ସଙ୍କଳ୍ପ କରି ସେ ତାର ସାନ ଦରିଦ୍ର ଗୁହାବାସରେ ରାତି ଆଠଟା ପରେ ପହଞ୍ଚିଲା ।

ପରଦିନ ଉପରଓଳି କେଦାରବାବୁଙ୍କ ଘରକୁ ଯାଇ ମହିମ ଖବର ପାଇଲା ଯେ ସମସ୍ତେ ଏଇମାତ୍ର ନିମନ୍ତ୍ରଣ ରକ୍ଷା କରିବାକୁ ବାହାରକୁ ଚାଲିଗଲେ । ତାହା ପରଦିନ ଯାଇ ମଧ୍ୟ ଦେଖା ହେଲା ନାହିଁ । ବେହେରା କହିଲା—ସମସ୍ତେ ବାଇସ୍କୋପ ଦେଖିବାକୁ ଯାଇଛନ୍ତି । ଫେରୁ ଫେରୁ ରାତି ହେବ । ସମସ୍ତେ ଯେ କେଉଁମାନେ ତାହା ପ୍ରଶ୍ନ ନ କରି ସେ ଆନୁମାନ କରି ପାରିଲା । ଅପମାନ ଏବଂ ଅଭିମାନ ଯେତେ ହେଉ କିନ୍ତୁ ଦୁଇଦିନ ଧରି ଫେରି ଆସିବାଟା ତାହା ପକ୍ଷରେ ଯଦିଓ ଯଥେଷ୍ଟ ହୋଇଥିଲା କିନ୍ତୁ ହାତର ମୁଦିଟା ତାହାକୁ ବସାରେ ରଖାଇ ଦେଉ ନଥିଲା । ପରଦିନ ପୁଣି ତାହାକୁ ଠେଲି ପଠାଇ ଦେଲା । ଆଜି ଶୁଣିବାକୁ ପାଇଲା, ବାବୁ ଘରେ ଅଛନ୍ତି ଏବଂ ଉପର ଘରେ ବସି ଚାହା ପାନ କରୁଛନ୍ତି ।

ମହିମକୁ ଦ୍ୱାର ନିକଟରେ ଦେଖି କେଦାରବାବୁ ଗମ୍ଭୀର ସ୍ୱରରେ ଏତିକି ମାତ୍ର କହିଲେ—ଆସ ମହିମ ।

ମହିମ ନୀରବ ରହି ହାତ ଯୋଡ଼ି ନମସ୍କାର କଲା ।

ଅଳ୍ପ ଦୂରରେ ଖୋଲା ଝରକା ନିକଟରେ ଗୋଟିଏ ସୋଫା ଉପରେ ପାଖାପାଖି ବସିଥିଲେ ଅଚଳା ଏବଂ ସୁରେଶ । ଅଚଳା ଗୋଟିଏ ବଡ଼ ଛବି ବହି କୋଳରେ ଧରିଥିଲା । ଦୁଇଜଣ ମିଶି ଛବି ବହି ଦେଖୁଥିଲେ । ସୁରେଶ ପଲକ ମାତ୍ରକ

'ପାଇଁ ଆଖି ଟେକି ପୁଣି ଛବି ଦେଖାରେ ମନଦେଲା । କିନ୍ତୁ ଅଚଳା ଆଦୌ ଆଖି ଫେରାଇ ମୁହଁ ବୁଲାଇ ଚାହିଁଲା ନାହିଁ । ତାହାର ଅବନତ ମୁହଁଟି ସିନା ଦେଖାଗଲା ନାହିଁ କିନ୍ତୁ ସେ ଯେପରି ଏକାନ୍ତ ଆଗ୍ରହର ସହିତ ଛବି ଦେଖିବାରେ ନିମଗ୍ନ ରହିଲା, ସେଥିରୁ ଏ ଧାରଣା ହେବା ଏକବାର ଅସଙ୍ଗତ ନୁହେଁ ଯେ ସେ ବାବାଙ୍କର କର୍କଶ କଣ୍ଠସ୍ୱର ଏବଂ ଆଗନ୍ତୁକଙ୍କର ପଦ ଶବ୍ଦ କିଛି ହେଲେ ବି ଶୁଣି ପାରିନାହିଁ ।

ମହିମ ଘର ଭିତରକୁ ପ୍ରବେଶ କରି ଚୌକିଟିଏ ଟାଣିନେଇ ବସି ପଡ଼ିଲା । କେଦାରବାବୁ ଅନେକକ୍ଷଣ ପର୍ଯ୍ୟନ୍ତ କୌଣସି କଥା କହିଲେ ନାହିଁ । ଟିକିଏ ଟିକିଏ କରି ହୁକା ଟାଣିବାକୁ ଲାଗିଲେ । କଲିକାଟା ଯେତେବେଳେ ନିଃଶେଷ ହୋଇଗଲା ଏବଂ ଚୁପ ହୋଇ ବସି ରହିବା ଅସମ୍ଭବ ହୋଇ ଉଠିଲା ସେତେବେଳେ କଲିକାଟାକୁ ଟି ପୟ ଉପରେ ଥୋଇ ଦେଇ ପଚାରିଲେ—ବର୍ତ୍ତମାନ କ'ଣ କରୁଛ ? ତୁମର ଆଇନ ପରୀକ୍ଷାର ଫଳ ପ୍ରକାଶ ପାଇବାକୁ ତ ମାସେ ବିଳମ୍ବ ଅଛି ବୋଲି ମନେ ହେଉଛି ।

ମହିମ କେବଳ କହିଲା—ଆଜ୍ଞା ହଁ ।

କେଦାରବାବୁ କହିଲେ—ଧର ତୁମେ ପାଶ କଲ । ପାଶ କଲ କ'ଣ ? ନିଶ୍ଚୟ ତ ପାଶ କରିବ । ଏଥିରେ ମୋର ସନ୍ଦେହ ନାହିଁ । କିନ୍ତୁ କିଛି ଦିନ ପ୍ରାକ୍‌ଟିସ କରି ହାତରେ କିଛି ଟଙ୍କା ନ ଧରିଲେ ଆଉ ତ ଅନ୍ୟ କୌଣସି ଦିଗକୁ ମନ ବଳାଇ ହେବ ନାହିଁ । କ'ଣ କହୁଛ ସୁରେଶ ? ମହିମର ଘରର ଅବସ୍ଥାତ ସେତେ ଭଲ ନୁହେଁ ।

ସୁରେଶ କିଛି କହିଲା ନାହିଁ ।

ମହିମ ସାମାନ୍ୟ ହସି କହିଲା—ପ୍ରାକ୍‌ଟିସ କରିଲେ ଯେ ପାଖରେ ଟଙ୍କା ଜମିବ; ଏଥିରେ କୌଣସି ନିଶ୍ଚୟତା ନାହିଁ ।

କେଦାରବାବୁ ମୁଣ୍ଡ ହଲାଇ କହିଲେ ଅବଶ୍ୟ ମାନୁଛି । ସବୁ ଈଶ୍ୱରଙ୍କ ହାତରେ । କିନ୍ତୁ ଚେଷ୍ଟା କଲେ ଅସାଧ୍ୟ ହୋଇ କିଛି ନାହିଁ । ଆମମାନଙ୍କର ଶାସ୍ତ୍ରକାରମାନେ ଲେଖିଛନ୍ତି ପୁରୁଷ "ସିଂହ" । ତୁମକୁ ସେହି ପୁରୁଷ ସିଂହ ହେବାକୁ ହେବ । ଆଉ କୌଣସି ଦିଗକୁ ଲକ୍ଷ୍ୟ ରହିବ ନାହିଁ । କେବଳ ଉନ୍ନତି ଏବଂ ଉନ୍ନତି ହିଁ ଲକ୍ଷ୍ୟ ହୋଇ ରହିବ । ତାହାପରେ ଘର ସଂସାର କର, ଯାହାଇଚ୍ଛା ତାହା କର । କୌଣସି ଦୋଷ ନାହିଁ । ତାହା ନହେଲେ ଯେ ମହାପାପ ! କହି ସୁରେଶ ଆଡ଼କୁ ଥରେ ଚାହିଁ ଦେଇ କହିଲେ—କ'ଣ କହୁଛ ସୁରେଶ ? ବିବାହିତା ପତ୍ନୀକୁ ଖାଇବାକୁ ପିଇବାକୁ ଦେଇ ପାରିବ ନାହିଁ, ପିଲା ହେଲେ ଲେଖା ପଢ଼ା

ଶିଖାଇ ପାରିବ ନାହିଁ, ଏହିପରି ଭାବରେ ତ ହିନ୍ଦୁମାନେ ଉଚ୍ଛନ୍ନ ହୋଇଯାଉଛନ୍ତି । ଆମ ବ୍ରାହ୍ମ ସମାଜର ଲୋକମାନେ ଯଦି ସତ୍ ଦୃଷ୍ଟାନ୍ତ ଦେଖାଇ ନପାରିବା ତେବେ ସଭ୍ୟ ସମାଜରେ ମୁହଁ ଦେଖାଇ ପାରିବା ନାହିଁ । କ'ଣ ଠିକ ନା ? କ'ଣ କହୁଛ ? କହୁନ······

ସୁରେଶ ପୂର୍ବପରି ମୌନ ହୋଇ ବସି ରହିଲା ।

ମହିମ ଭିତରେ ଭିତରେ ଅସନ୍ତୁଷ୍ଟ ହୋଇ କହିଲା—ଆପଣଙ୍କର ଉପଦେଶ ମୁଁ ମନେ ରଖିବି; କିନ୍ତୁ ଆପଣ କ'ଣ ଏଇ ଆଲୋଚନା କରିବା ପାଇଁ ମୋତେ ଆସିବାକୁ କହିଥିଲେ ?

କେଦାରବାବୁ ତାହାର ମନର ଭାବ ବୁଝି ପାରିଲେ, କହିଲେ ନା, କେବଳ ସେତିକ ନୁହେଁ ଅନ୍ୟ କଥା ମଧ୍ୟ ଅଛି କିନ୍ତୁ······ଏତିକ କହି ସେ ସୋଫା ଆଡ଼କୁ ଚାହିଁଲେ ।

ସୁରେଶ ଉଠିପଡ଼ି ଠିଆ ହୋଇ କହିଲା; ତାହାହେଲେ ଆମେ ସେ ଘରେ ବସୁଛୁ କହି ଅଚଳା କୋଳରୁ ଛବି ବହିଟା ଉଠାଇ ଧରିଲା । ତାହାର ଏହି ଇଙ୍ଗିତ ଠିକକ କିନ୍ତୁ ଅଚଳା ନିକଟରେ ନିଷ୍ଫଳ ହୋଇ ଉଠିଲା । ସେ ଯେପରି ବସିଥିଲା ସେହିପରି ବସିରହିଲା । ଉଠିବା ପାଇଁ ଲେଶ ମାତ୍ର ଉଦ୍ୟମ କଲାନାହିଁ ।

କେଦାରବାବୁ ତାହା ଲକ୍ଷ୍ୟ କରି କହିଲେ—ତୁମେ ଦୁଇଜଣ ଟିକଏ ସେ ଘରେ ଯାଇ ବସ ମା, ମହିମ ସହିତ ମୋର କିଛି ବ୍ୟକ୍ତିଗତ କଥା ଅଛି ।

: ଆଚ୍ଛା, ତାହାହେଲେ ମୁଁ ଯାଉଛି କହି ସୁରେଶ ଏକପ୍ରକାର ରାଗିଲା ପରି ହାତରେ ଧରିଥିବା ବହିଟାକୁ ଅଚଳାର କୋଳରେ କଚାଡ଼ି ଦେଇ ସଶବ୍ଦରେ ଘରୁ ଭିତରୁ ବାହାରି ଚାଲିଗଲା ।

ଝିଅର ଅବାଧ୍ୟତା ଦେଖି କେଦାରବାବୁ ଯେ ଖୁସି ହୋଇପାରିଲେ ନାହିଁ; ତାହା ତାଙ୍କ ମୁହଁରୁ ବେଶ୍ ଜଣା ପଡୁଥିଲେ ମଧ୍ୟ ଜୋର କରି ପାରିଲେ ନାହିଁ । କିଛିକ୍ଷଣ ଚୁପ୍ ରହି ସେ କହିଲେ; ମହିମ, ତୁମେ ମନେ କରନାହିଁ ଯେ ମୁଁ ତୁମ ଉପରେ ଅସନ୍ତୁଷ୍ଟ । ବରଞ୍ଚ ତୁମ ପ୍ରତି ମୋର ଯଥେଷ୍ଟ ଶ୍ରଦ୍ଧା ଅଛି । ସେଥିପାଇଁ ବନ୍ଧୁ ଭଳି ଉପଦେଶ ଦେଇ କହୁଛି ଯେ, ବର୍ତ୍ତମାନ କୌଣସି ଦାୟିତ୍ୱ ନିଜ ଉପରକୁ ନେଇ, ନିଜକୁ ଅକର୍ମଣ୍ୟ କରି ପକାଅ ନାହିଁ । ନିଜର ଉନ୍ନତି କର । ଯଶସ୍ୱୀ ହୁଅ । ତାହାପରେ ଦାୟିତ୍ୱ ନେବାପାଇଁ ଯଥେଷ୍ଟ ସମୟ ପାଇ ପାରିବ ।

ମହମ ମୁହଁ ବୁଲାଇ ଅଚଲା ଆଡ଼କୁ ଚାହିଁଲା । ଅଚଲା ପଲକ ମାତ୍ରେ ଆଖି ତଳକୁ କରିଦେଲା । ସେତେବେଳେ ମହମ କେଦାରବାବୁଙ୍କ ଆଡ଼କୁ ଚାହିଁ କହିଲା—ଆପଣଙ୍କର ଆଦେଶ ମୋର ଶିରୋଧାର୍ଯ୍ୟ; କିନ୍ତୁ ଆପଣଙ୍କର କନ୍ୟାର କ'ଣ ସେହି ଇଚ୍ଛା ?

କେଦାରବାବୁ ସଙ୍ଗେ ସଙ୍ଗେ କହି ଉଠିଲେ—ନିଶ୍ଚୟ, ନିଶ୍ଚୟ, ମୁହୂର୍ତ୍ତିକ ପାଇଁ ନୀରବ ରହି ପୁଣି କହିଲେ—ଅନ୍ତତଃ ଏ କଥା ନିଶ୍ଚିତ ଯେ ସବୁ ଜାଣି ଶୁଣି ମୁଁ ତୁମ ହାତରେ କନ୍ୟାକୁ ଟେକିଦେଇ ପାରିବି ନାହିଁ ।

ମହମ ଶାନ୍ତ ସ୍ୱରରେ କହିଲା—ଇଂରେଜମାନଙ୍କର ଏହିଭଳି ଗୋଟାଏ ପ୍ରଥା ଅଛି, ଏବଂ ସେଇଟା ହେଲା; ଏପରି ଅବସ୍ଥା ଥିଲେ ପରସ୍ପର ପରସ୍ପର ପାଇଁ ଅପେକ୍ଷା କରି ରହନ୍ତି । ତାହା କ'ଣ ଆପଣଙ୍କର ଅଭିଳାଷ କି ?

କେଦାରବାବୁ ହଠାତ୍ କ୍ରୋଧରେ ଜଳି ଉଠି କହିଲେ—ଦେଖ ମହମ, ମୁଁ ତୁମ ନିକଟରେ ଉପଦେଶ ନେବା ପାଇଁ ତୁମକୁ ଡାକିନାହିଁ । ତୁମେ ଯେଉଁଭଳି ବ୍ୟବହାର ମୋ ସଙ୍ଗରେ କରି ବସିଛ ସେଥିରେ ଆଉ କେଉଁ ବାପ ହୋଇଥିଲେ କୁରୁକ୍ଷେତ୍ର କାଣ୍ଡ ଘଟି ଯାଆନ୍ତାଣି । କିନ୍ତୁ ମୁଁ ନିତାନ୍ତ ଶାନ୍ତିପ୍ରିୟ ଲୋକ । କୌଣସି ପ୍ରକାର ଗୋଳମାଳ କିମ୍ବା ହାଙ୍ଗାମାକୁ ଭଲ ପାଏନାହିଁ ବୋଲି କେତେପଦ ମଧୁର କଥାରେ ମୋ ମନର କଥାକୁ ତୁମକୁ ଜଣାଇ ଦେଲି । ସେଥିରେ ତୁମେ ଅପେକ୍ଷା କରି ରହିବ କି ନ ରହିବ ଏବଂ ସାହେବ ମାନେ କ'ଣ କରନ୍ତି ନ କରନ୍ତି ସେ ସବୁର ପ୍ରୟୋଜନ ତ ମୁଁ ଦେଖି ପାରୁନାହିଁ । ତା ଛଡ଼ା ଆମେମାନେ ଇଂରାଜୀ ନୋହୁଁ, ବଙ୍ଗାଳୀ, ଆମମାନଙ୍କର ଝିଅ ଘରଯୋଗ୍ୟା ହେଲି ପରେ ବାପ ମାଆଙ୍କ ଆଖିକୁ ନିଦ ଆସେ ନାହିଁ । ତୁଣ୍ଡକୁ ଅନ୍ନ ଜଳ ରୁଚେ ନାହିଁ । ଏ କଥା ବୋଧହୁଏ ତୁମେ ଭଲକରି ଜାଣ ।

ମହମର ମୁହଁ ଓ ଆଖି କ୍ଷଣକ ପାଇଁ ନାଲି ହୋଇ ଉଠିଲା । କିନ୍ତୁ ସେ ଆତ୍ମ ସମ୍ବରଣ କରି ଧୀର ଭାବରେ କହିଲା—ମୁଁ ଏମିତ କି ବ୍ୟବହାର କରିଛି ଯେ ଯାହା ପାଇଁ ଅନ୍ୟାନ୍ୟ ଏତେବଡ଼ କାଣ୍ଡ ଘଟିପାରନ୍ତା ? ଏ ପ୍ରଶ୍ନ ମୁଁ ଆପଣଙ୍କୁ କରିବାକୁ ଚାହେଁ ନାହିଁ । କେବଳ ଆପଣଙ୍କ କନ୍ୟା ମୁହଁରୁ ଥରକ ପାଇଁ ଶୁଣିବାକୁ ଚାହେଁ । ସେ ଏଥିରେ ସମ୍ମତ କି ନାହିଁ ? କହି ନିଜେ ଅଚଳା ଆଗରେ ଠିଆ ହୋଇ ପଡ଼ି ପ୍ରଶ୍ନ କଲା—କ'ଣ ? ଏୟା ତ ?

ଅଚଳା ମୁହଁ ଉପରକୁ ଉଠାଇଲା ନାହିଁ କିମ୍ବା କଥା ମଧ୍ୟ କହିଲା ନାହିଁ ।

ଭିତରର କ୍ରୋଧକୁ କୌଣସିମତେ ଦମନ କରି ମହିମ ପୁଣି ପ୍ରଶ୍ନକଲା— ତୁମର ମନର କଥା କହିଲାରେ ଜାଣି ପାରିବାର ଅବକାଶ ମୁଁ ପାଇ ପାରିଲି ନାହିଁ । ସେଥିପାଇଁ ମୁଁ କ୍ଷମା ମାଗୁଛି । ସେଦିନ ସନ୍ଧ୍ୟାବେଳେ ଗୋଟାଏ ଖିଆଲରେ ଯେଉଁ କାମ କରି ବସିଥିଲି ସେଥିପାଇଁ ତୁମକୁ କୌଣସି କୈଫିୟତ ଦେବାକୁ ହେବ ନାହିଁ । କେବଳ ମୋତେ ଏତିକ କହି ସେ ମୁଦିଟା ଫେରି ଗ୍ରହଁ କି ନାହିଁ ?

ସୁରେଶ ଝଡ଼ ବେଗରେ ସେ ଘରେ ପ୍ରବେଶ କରି କହି ଉଠିଲା—ମୋତେ ମାଫ କରିବେ କେଦାରବାବୁ । ମୁଁ ଆଉ ମିନିଟିଏ ଅପେକ୍ଷା କରିବାର ଧୈର୍ଯ୍ୟ ମୋର ନାହିଁ ।

ସମସ୍ତେ ନୀରବରେ ଆଶ୍ଚର୍ଯ୍ୟ ହୋଇ ଗ୍ରହିଁ ରହିଲେ ।

କେଦାରବାବୁ ପ୍ରଶ୍ନକଲେ—କାହିଁକି ?

ସୁରେଶ ଅଭିନୟ ଭଙ୍ଗୀରେ ହାତ ଦୁଇଟା ଆଗକୁ ବଢ଼ାଇଦେଇ କହିଲା —ନା, ନା, ଏ ଭୁଲର କ୍ଷମା ନାହିଁ । ମୋର ଅନ୍ତରଙ୍ଗ ବନ୍ଧୁ ଆଜି ପ୍ଲେଗ୍‌ରୋଗରେ ମୃତ ପ୍ରାୟ । ଆଉ ମୁଁ ସେ କଥା ଭୁଲିଯାଇ ଏଠାରେ ବସି ବୃଥାରେ ସମୟ ନଷ୍ଟ କରୁଥିବ ?

କେଦାରବାବୁ ବ୍ୟସ୍ତ ହୋଇ କହି ଉଠିଲେ—କ'ଣ କହୁଛ ? ପ୍ଲେଗ ! ତୁମେ କ'ଣ ସେଠାକୁ ଯିବ କି ?

ସୁରେଶ ସାମାନ୍ୟ ହସି ଦେଇ କହିଲା—ନିଶ୍ଚୟ । ବହୁତ ପୂର୍ବରୁ ମୋର ସେଠାକୁ ଯିବାର ଉଚିତ୍ ଥିଲା ।

କେଦାରବାବୁ ଶଙ୍କିତ ଗଳାରେ କହି ଉଠିଲେ— ପ୍ଲେଗ ରୋଗ ଯେ ! ସେ କ'ଣ ତୁମର ଏପରି ବିଶେଷ ଆତ୍ମୀୟ ?

ସୁରେଶ କହିଲା—ହଁ; ଆତ୍ମୀୟଠାରୁ ବହୁତ ବଡ଼ କେଦାରବାବୁ । ମହିମ ଆଡ଼କୁ ଗ୍ରହିଁ ଦେଇ ପ୍ରଥମ କରି ତାକୁ ଉଦ୍ଦେଶ୍ୟ କରି କହିଲା, ଆମ ନିଶୀଥକୁ କାଲିଠାରୁ ପ୍ଲେଗ ରୋଗ ଧରିଛିରେ । ବଞ୍ଚିବ ବୋଲି ଆଶା ନାହିଁ, ମୋର ତତେ ଖବରଦେବା କର୍ତ୍ତବ୍ୟ । ଯିବୁ କି ଦେଖିବାକୁ ?

ମହିମ ନିଶୀଥ ଲୋକଟିକୁ ଚହ୍ନି ପାରିଲା ନାହିଁ । ପଗ୍ଚରିଲା ନିଶୀଥ ? କେଉଁ ନିଶୀଥ କହରେ ?

: କେଉଁ ନିଶୀଥ ? କ'ଣ କହୁଛୁ ମହିମ ? ଏ ମଧ୍ୟରେ ତୁ ନିଶୀଥକୁ ପାଶୋରି ଦେଲୁଣି । ଯାହା ସଙ୍ଗେ ପୁରା ସେକେଣ୍ଡ ଇୟରଟା ପଢ଼ିଲୁ, ଏତେବଡ଼

ବିପଦ ସମୟରେ ତାଙ୍କୁ ଚିହ୍ନିପାରୁ ନାହୁଁ ? କହି ଅଚଳା ପ୍ରତି ମୁହଁ କରି କହିଲା—ନ ଚିହ୍ନି ପାରିବାର କଥା; କାରଣ ପ୍ଲେଗ ରୋଗ କ'ଣ ?

ଏହି ବ୍ୟଙ୍ଗକୁ ମହିମ ନୀରବରେ ସହ୍ୟ କରି ପ୍ରଶ୍ନ କଲା—ସେ କ'ଣ ଭବାନୀ ପୁରରୁ ଆସୁଥିଲା କି ?

ସୁରେଶ ବିଦ୍ରୁପ କଲାଭଳି ଜବାବ ଦେଲା—ହଁ । ସେଥିା । କିନ୍ତୁ ଜଣୀଥ ବୋଲି ଆମ ସାଙ୍ଗରେ ଦୁଇ ଗୃହ ଜଣ ତ ପଢୁ ନ ଥିଲେ ଯେ ଏତେ ସମୟ ଧରି ତୋର ମନେ ପଡୁନାହିଁ । କ'ଣ ଯିବୁ କି ?

ମହିମ ଚିହ୍ନି ପାରି କହିଲା—ଜଣୀଥ ବର୍ତ୍ତମାନ ରହୁଛି କେଉଁଠି ?

ସୁରେଶ କହିଲା—ଆଉ ରହିବ କେଉଁଠି ? ନିଜ ଘରେ ଭବାନୀପୁରରେ ! ଏ ସମୟରେ ତାଙ୍କୁ ଦେଖା କରିବା ତୋର କ'ଣ କର୍ତ୍ତବ୍ୟ ବୋଲି ତୁ ମନେ କରୁ ନାହୁଁ ? ମୁଁ ଡ଼ାକ୍ତର । ମୋତେ ଯିବାକୁ ହେବ । ବନ୍ଧୁତ୍ୱକୁ ଭୁଲି ନଯାଇ ତୁ ବୋଧହୁଏ ମୋ ସଙ୍ଗରେ ଯାଉଛୁ । ତୋ ସହିତ କେଦାର ବାବୁଙ୍କର କଥା ବୋଧହୁଏ ଶେଷ ହୋଇ ଯାଇଛି । ଆଶାକରେ ଅନ୍ତତଃ କେତେଦିନ ପାଇଁ ତୋତେ କେଦାର ବାବୁ ନିଷ୍କୃତି ଛୁଟି ଦେଉଛନ୍ତି ।

ବିଦ୍ରୂପଟା ଯେ କାହାପ୍ରତି ଉଦ୍ଦିଷ୍ଟ ତାହା କେଦାରବାବୁ ହଠାତ୍ ଜାଣି ନପାରି ଉଦ୍‌ବିଗ୍ନ ମୁଖରେ ଥରେ ମହିମକୁ ଏବଂ ଆଉ ଥରେ ନିଜ କନ୍ୟା ଅଚଳା ଆଡ଼କୁ ଗୃହିଁ ନେଲେ । ତାଙ୍କର ଭାବୀ ବଡଲୋକ ଜୁଆଁଇଟିର ଅଭିମାନ ଯେ କପରି ଏବଂ କେତେଦୂର ବିକ୍ଷୁବ୍ଧ ହୋଇପାରେ ତହିଁର କୌଣସି କୂଳ କିନାର ସେ ଭାବି ପାଇପାରିଲେ ନାହିଁ । ତାଙ୍କ ମୁହଁରୁ କଥା ବାହାରିଲା ନାହିଁ ଏବଂ ମହିମ ମଧ୍ୟ ନିର୍ବୋଧଙ୍କ ଭଳି ନୀରବରେ ଗୃହିଁ ରହିଲା ।

ଏସବୁ ନାଟକୀୟ ଦୃଶ୍ୟ ଦେଖି ଦେଖି ଅଚଳାର ମୁହଁ ରାଗରେ ନାଲି ପଡ଼ିଗଲା । ସେ ଧୀରେ ଧୀରେ ଠିଆ ହେଲା ଏବଂ ଟେବୁଲ ଉପରେ ଛବି ବହିଟା ରଖି ଦେଇ ବାଧ୍ୟ ହୋଇ କହିଲା, ତୁମେ ଡ଼ାକ୍ତର । ତୁମର ତ ଯିବା ଉଚିତ୍ । କିନ୍ତୁ ତାଙ୍କର ଓକିଲାତି ବହିରେ ତ ପ୍ଲେଗ ରୋଗର ଚିକିତ୍ସା ଲେଖା ଯାଇନାହିଁ । ସେ ଯିବେ କାହିଁକି ଶୁଣେ ?

ଏଇଭଳି ସଂପୂର୍ଣ୍ଣ ଅପ୍ରତ୍ୟାଶିତ ଜବାବରେ ସୁରେଶ ଅବାକ୍ ହୋଇ ଉଠିଲା । କିନ୍ତୁ ପରକ୍ଷଣରେ କହି ଉଠିଲା—ମୁଁ ସେଠାକୁ ଡ଼ାକ୍ତରୀ କରିବାକୁ ଯାଉନାହିଁ କିମ୍ବା ତାର ଚିକିତ୍ସା ପାଇଁ ସେଠାରେ ଡାକ୍ତର ଅଭାବ ନାହାନ୍ତି ।

ମୁଁ ଯାଉଛି ବନ୍ଧୁତ୍ୱ ଖାତରରେ ସେବା କରିବା ପାଇଁ । ବନ୍ଧୁତ୍ୱ ସଂପର୍କକୁ ମୋର ପ୍ରାଣଠାରୁ ଅଧିକ ବୋଲି ସଦାବେଳେ ମନେ କରି ଆସିଛି ।

ଗୋଟିଏ କଷ୍ଟୁର ହସର ଆଭାସ ଅଚଳାର ଓଠ ଉପକୂଳରେ ଦେଖା ଦେଇ ମିଳାଇ ଗଲା । ସେ କହିଲା—ସମସ୍ତେ ଯେ ତୁମ ଭଳି ମହତ୍ତ୍ୱ ହେବେ ଏହାର କୌଣସି ଯଥାର୍ଥତା ନାହିଁ । ତୁମ ଭଳି ବଂଧୁତ୍ୱ ଜ୍ଞାନ ଯଦି ତାଙ୍କର ନଥାଏ ସେଥିପାଇଁ ମୁଁ ଆପଣାକୁ ଲଜ୍ଜିତ ମନେ କରିବି ନାହିଁ । ସେ ଯାହା ହେଉ, ସେ କୌଣସି ପ୍ରକାରରେ ବର୍ତ୍ତମାନ ଯାଇ ପାରିବେ ନାହିଁ ।

ସୁରେଶ ମୁହଁ କଳା ପଡ଼ିଗଲା ।

କେଦାରବାବୁ ଶଙ୍କିତ ହୋଇ ଉଠିଲେ । ଭୟରେ କହିବାକୁ ଲାଗିଲେ ଏ ସବୁ କ'ଣ ତୁ କହୁଛୁ ଅଚଳା ? ସୁରେଶ ଭଳି,······ପ୍ରକୃତରେ ମହିମ ବାବୁଙ୍କ ପରି······

ଅଚଳା ବାଧା ଦେଇ କହିଲା—ମହିମବାବୁଙ୍କୁ ସେ'ତ ପ୍ରଥମରୁ ଚିହ୍ନି ପାରିଲେ ନାହିଁ । ତା ଛଡ଼ା ସୁରେଶବାବୁ ଡାକ୍ତର । ସେ ଯାଇ ପାରନ୍ତି; କିନ୍ତୁ ଅନ୍ୟ ଜଣକୁ ଅନର୍ଥକ ବିପଦ ଭିତରକୁ ଟାଣି ନେଉଛନ୍ତି କାହିଁକି ?

ଆହତ ହେଲେ ସୁରେଶର କାଣ୍ଡଜ୍ଞାନ ରହେ ନାହିଁ । ସେ ଟେବୁଲ ଉପରେ ହାତ ବାଡ଼ାଇ ମୁହଁକୁ ଯାହା ଆସିଲା ତାହା ବଡ଼ ପାଟିରେ କହିଉଠିଲା —ମୁଁ ଭୀରୁ ନୁହେଁ, ଜୀବନ ପାଇଁ ଭୟ ମୋର ନାହିଁ । ମହିମକୁ ଉଦ୍ଦେଶ୍ୟ କରି କହିଲା—ଏଇ ନିମକହାରାମ୍‌କୁ ପଚାରିକରି ବୁଝ୍ ମୁଁ ତାକୁ ମରୁ ମରୁ ବଞ୍ଚାଇ ଥିଲି କି ନାହିଁ ?

ଅଚଳା ମୃଦୁକଣ୍ଠରେ କହିଲା, ସେ ନିମକ ହାରାମ ସତ । କିନ୍ତୁ ଯାହାକୁ ଦିନେ ବିପଦରୁ ବଞ୍ଚାଇଥାଅ ଦରକାର ପଡ଼ିଲେ ବୋଧହୁଏ ତାକୁ ତୁମେ ହତ୍ୟା କରିପାର ?

କେଦାରବାବୁ ବିଚଳିତ ହୋଇ କହି ଉଠିଲେ; ଅଚଳା ତୁ ଚୁପ୍ ହୁଅ । ଥାଉ, ଆଉ ବଳାବଳି ହୁଅ ନାହିଁ ସୁରେଶ । ଏ ସବୁ କ'ଣ ହେଉଛି କହିଲ ?

ସୁରେଶ ଲାଲ ଆଖିକରି କେଦାରବାବୁଙ୍କୁ ଚାହିଁ କହିଲା—ମୁଁ ପ୍ଲେଗ୍ ରୋଗୀ ପାଖକୁ ଗଲେ କ୍ଷତି ନାହିଁ । ମହିମର ପ୍ରାଣଟା ପ୍ରାଣ ଆଉ ମୋର ପ୍ରାଣଟାର ମୂଲ୍ୟ କିଛି ନୁହେଁ ? ଶୁଣିଲେ ତ ଆପଣ ?

ଲଜ୍ୟା ଓ କ୍ଷୋଭରେ ଅଚଳା କାନ୍ଦି ଉଠିଲା । ରୁକ୍ଷ ସ୍ୱରରେ କହିବାକୁ ଲାଗିଲା—ତାଙ୍କର ପ୍ରାଣ ସେ ଦେଇ ପାରନ୍ତି । ମୁଁ ମନା କରୁ ନାହିଁ । କିନ୍ତୁ ଯେଉଁଠାରେ ମୋର ବାଧା ଦେବାର ସଂପୂର୍ଣ୍ଣ ଅଧିକାର ଅଛି ସେହିଠାରେ ମୁଁ ବାଧାଦେବି । ମୁଁ କୌଣସି ମତେ ତାଙ୍କୁ ଏପରି ସ୍ଥାନକୁ ଗୁଚ୍ଛି ଦେଇ ପାରିବି ନାହିଁ; କହି ଚାଲିଯିବାକୁ ଉଦ୍ୟତ ହେଉଥିଲା ବେଳେ କେଦାରବାବୁ ଚିତ୍କାର କରି କହି ଉଠିଲେ—କୁଆଡ଼େ ଯାଉଛୁ ଅଚଳା ?

ଅଚଳା ଅଟକି ଯାଇ କହିଲା—ଦିନରାତି ଚବିଶ ଘଣ୍ଟା ମୁଁ ଏତେ କଷ୍ଟ ସହି ପାରିବି ନାହିଁ । ଯାହା ସଂପୂର୍ଣ୍ଣ ଅସଂଭବ ତାହା ପ୍ରାଣଥିବା ପର୍ଯ୍ୟନ୍ତ ସ୍ୱୀକାର କରିପାରିବାର ମୋର ଶକ୍ତି ନାହିଁ । ଅଥଚ ତୁମେ ଅହର୍ନିଶି ମୋତେ ସେଥିପାଇଁ ବ୍ୟସ୍ତକରି ଚାଲିଛ—କହି ଉଚ୍ଛ୍ୱସିତ କ୍ରନ୍ଦନକୁ ଚାପି ରଖି ହଠାତ୍ ଘରୁ ବାହାରି ଚାଲିଗଲା ।

ବୃଦ୍ଧ କେଦାରବାବୁ ମତିଭ୍ରଷ୍ଟ ଭଳି କେତେକ୍ଷଣ ଚାହିଁ ରହି ବାରମ୍ବାର କହିବାକୁ ଲାଗିଲେ—ସେତେ ସବୁ ପିଲାଳିଆମି ! ଏ ସବୁ କି ଖେଳା ଚାଲିଛି କୁହିତ ?

ମାସେ ଖଣ୍ଡେ ବିତି ଯାଇଛି ।

କେଦାରବାବୁ ରାଜି ହୋଇଛନ୍ତି । ମହିମ ସହିତ ଅଚଳାର ବିବାହ ଆଗାମୀ ରବିବାର ଦିନ ଅନୁଷ୍ଠିତ ହେବାର ସ୍ଥିର ହୋଇ ଯାଇଛି । ସେଦିନ ସୁରେଶ ଯେଉଁ କାଣ୍ଡ କରିଗଲା ତାହା କେଦାରବାବୁଙ୍କୁ ବିଶେଷ କଷ୍ଟ ଦେଇଥିଲା; କିନ୍ତୁ ସେହି ଅପମାନର ଗୁରୁତ୍ୱ ଓଜନ କରି ଯେ ସେ ପ୍ରସନ୍ନ ହୋଇ ମହିମ ସହିତ ବିବାହ ପାଇଁ ସମ୍ମତି ଦେଇଛନ୍ତି ତାହା ନୁହେଁ । ସୁରେଶ ମଧ୍ୟ କୁଆଡ଼େ ନିରୁଦ୍ଦେଶ୍ୟ ହୋଇ ଯାଇଛି ଯେ ଏତେ ଦିନ ଧରି ତାହାର କୌଣସି ଖୋଜ ଖବର ମିଳୁନାହିଁ । ଶୁଣା-ଯାଏ ସେହିଦିନ ରାତ୍ରିରେ ସେ କୁଆଡ଼େ ପଶ୍ଚିମ ଦେଶକୁ ଚାଲି ଯାଇଛି; କେବେ ଫେରିବ, ତାହା କେହି କହି ପାରିବେ ନାହିଁ ।

ସେଦିନ କାନ୍ଦକୁ ଚାପିରଖି ଅଚଳା ଯେତେବେଳେ ଘର ଭିତରକୁ ଚାଲିଗଲା ସେତେବେଳେ ଅନେକ ସମୟ ପର୍ଯ୍ୟନ୍ତ ଉଭୟଙ୍କ ଯାକ ମୁହଁ ଶୁଖାଇ

ବସି ରହିଲେ । କିନ୍ତୁ ପ୍ରଥମେ ସୁରେଶ କଥା କହିଲା । କେଦାରବାବୁଙ୍କୁ ଗୃହିଁ କହିଲା— ଯଦି ଆପତ୍ତି ନ ଥାଏ ତେବେ ଆପଣଙ୍କ ସମ୍ମୁଖରେ ଆପଣଙ୍କ କନ୍ୟାକୁ ମୋର କେତେଟା ପ୍ରଶ୍ନ ପଚାରିବାର ଥିଲା ।

କେଦାରବାବୁ ବ୍ୟସ୍ତ ହୋଇ କହିଲେ—ଇସ୍ସେ ଗୋଟାଏ କଥା ନା ? ତୁମେ ପଚାରିବ ଆଉ ସେଥିରେ ମୋର ଆପତ୍ତି ରହିପାରେ···ଯେତେସବୁ ପିଲାଳିଆ କଥା ତୁମର······

: ତାହା ହେଲେ ଡାକନ୍ତୁ । କାରଣ ମୋ ହାତରେ ଆଉ ଅଧିକ ସମୟ ନାହିଁ ।

ସୁରେଶର ମୁହଁ ଓ କଣ୍ଠସ୍ୱରର ଗାମ୍ଭୀର୍ଯ୍ୟ ଲକ୍ଷ୍ୟ କରି କେଦାରବାବୁ ମନେ ମନେ ପ୍ରମାଦ ଗଣିଲେ । କିନ୍ତୁ ଜୋର କରି ହସି ସେହି ପୁରୁଣା କଥାର ଦୁଆ ଧରି କହିଲେ— ଯେତେସବୁ ପିଲାଳିଆ କଥା ତୁମର । ଧୈର୍ଯ୍ୟ ଧରିବାର ଶକ୍ତି ତୁମ-ମାନଙ୍କର ଦେଖୁଛୁ ଆଦୌ ନାହିଁ । ବୁଝିଲ ସୁରେଶ; ଯେତେହେଲେ ଝିଅପିଲା ମନ ତ, ଏଇ ପ୍ଲେଗ ରୋଗ ନାମ ଶୁଣିଲେ ତ ଗୁଜୁଆଁ ।

କୌଣସି ପ୍ରକାର କୈଫିୟତ ଶୁଣିବା ଭଳି ମନର ଅବସ୍ଥା·ସୁରେଶର ନ ଥିଲା । ସେ ଅଧୀର ହୋଇ ଉଠି କହିଲା, ବାସ୍ତବିକ କେଦାରବାବୁ, ଅପେକ୍ଷା କରିବା ପାଇଁ ମୋର ସମୟ ନାହିଁ ।

: ତାହାତ ସତ କଥା । କିଏ ଅଛୁ କରେ ? ଡାକ ମାରି କେଦାରବାବୁ ମହିମ ପ୍ରତି ଗୋଟିଏ ବକ୍ର କଟାକ୍ଷ ହାଣିଲେ ।

ମହିମ ଉଠିପଡ଼ି ନମସ୍କାର କରି ଗ୍ଲଲିଗଲା ।

କେଦାରବାବୁ ନିଜେ ଯାଇ ଅଚଳାକୁ ଯେତେବେଳେ ଡାକି ଆଣିଲେ ସେତେବେଳକୁ ଅପରାହ୍ନର ରକ୍ତିମ ରଶ୍ମି ପଶ୍ଚିମଦିଗରେ ଥିବା ଝରକା ଦେଇ ଘର ସାରା ବିସ୍ତୃତ ହୋଇ ପଡ଼ିଥିଲା । ସେହି ଆଲୋକରେ ଉଦ୍ଭାସିତ ଏହି ତରୁଣୀ-ଟିର ଈଷତ୍ ଦୀର୍ଘ କ୍ଷୀଣ ଦେହ ଉପରେ ଦୃଷ୍ଟି ପଡ଼ିବା ମାତ୍ରେ ସୁରେଶ ମନ ଉପରେ ମୋହ ଓ ପୁଲକର ଗୋଟିଏ ସ୍ପର୍ଶ ସତେ ଯେପରି କିଏ ଦେଇଗଲା । କିନ୍ତୁ ସେହି ଅନୁଭୂତ ବହୁତ ସମୟ ରହି ପାରିଲା ନାହିଁ । ତାହାର ମୁହଁକୁ ଗୃହିଁବା ମାତ୍ରେ ନିମିଷକ ଭିତରେ ତାର ସେ ମୋହ ଭାଙ୍ଗିଗଲା । ଅଚଳା ମୁହଁ ଉପରେ ଆଲୋକ ପଡ଼ିନାହିଁ ସତ, କିନ୍ତୁ ସମ୍ମୁଖରେ ଥିବା କାନ୍ଥରେ ପ୍ରତିଫଳିତ ଆରକ୍ତ ଆଭା ଦ୍ୱାରା ସୁରେଶ ଆଖିକୁ ମୁହଁଟା ଯେପରି କଠିନ ବ୍ରୋଞ୍ଜର ମୂର୍ତ୍ତିପରି ମନେ ହେଲା । ସେ

ସ୍ପଷ୍ଟ ଦେଖିପାରିଲା ତୀବ୍ର ବିତୃଷ୍ଣାରେ ଏହି ନାରୀର ସମସ୍ତ ମାଧୁର୍ଯ୍ୟ, ସମସ୍ତ କୋମଳତା, ନିଃଶେଷ ହୋଇଯାଇ ମୁଖମଣ୍ଡଳର ପ୍ରତ୍ୟେକ ରେଖାକୁ ଅବିଚଳିତ ଦୃଢ଼ତାରେ ଧାତୁ ଭଳି ଶକ୍ତ କରି ପକାଉଛି । ହଠାତ୍ କେଦାରବାବୁଙ୍କ ଦୀର୍ଘ ନିଃଶ୍ୱାସ ଶବ୍ଦରେ ସତେ ଯେପରି ସୁରେଶ ଆତ୍ମସ୍ଥ ହୋଇ ଉଠିଲା ।

କେଦାରବାବୁ ଆହୁରି ଥରେ ତାଙ୍କର ପୁରାତନ ମନ୍ତବ୍ୟ ପ୍ରକାଶ କରି କହିଲେ—ଯେତେସବୁ ପାଗଳାମି କାଣ୍ଡ । କାହାକୁ କ'ଣ ଯେ କହୁଛୁ, ତାହା ମୁଁ ବୁଝି ପାରୁନାହିଁ ·······

ସୁରେଶ ଅଚଳାକୁ ଉଦ୍ଦେଶ୍ୟ କରି ଗମ୍ଭୀର କଣ୍ଠରେ ପ୍ରଶ୍ନ କଲା, ଆପଣ ଯାହା କହିଲେ, ତାହା କ'ଣ ଠିକ୍ ?

ଅଚଳା ମୁଣ୍ଡ ହଲାଇ କହିଲା—ହଁ ।

: କୌଣସି ପରିବର୍ତ୍ତନ କ'ଣ ସମ୍ଭବ ନୁହେଁ ?

ଅଚଳା ମୁଣ୍ଡ ହଲାଇ କହିଲା—ନା ।

ରକ୍ତର ଉଚ୍ଛ୍ୱାସ ଏକ ଝଲକ ନିଆଁ ପରି ସୁରେଶର ଆଖି ଓ ମୁହଁକୁ ପ୍ରଦୀପ୍ତ କରିଦେଲା । କିନ୍ତୁ ସେ କଣ୍ଠସ୍ୱରକୁ ସଂଯତ କରି କହିଲା—ମୋର ପ୍ରାଣଟାର ଯେତେବେଳେ କୌଣସି ମୂଲ୍ୟ ଆପଣଙ୍କ ନିକଟରେ ନାହିଁ ସେହି ସମୟରୁ ସମସ୍ତ ବିଷୟ ମୋତେ ଜଣା ଥିଲା । ତଥାପି ମୁଁ ପଚାରୁଛି, ମୁଁ କ'ଣ ଆପଣଙ୍କର ପ୍ରଥମ ଶିକାର ନା ଏହିପରି ଅନେକ ଏହି ଫାନ୍ଦରେ ପଡ଼ି ନିଜ ନିଜର ମୁଣ୍ଡ ପୋଡ଼ି ଖାଇଛନ୍ତି ।

ଅସହ୍ୟ ବିସ୍ମୟରେ ଅଚଳାର ଦୁଇଚକ୍ଷୁ ବିସ୍ଫାରିତ ହୋଇ ଉଠିଲା ।

ସୁରେଶ କେଦାରବାବୁଙ୍କୁ ଚାହିଁ କହିଲା—ବାପ-ଝିଅ ଷଡ଼ଯନ୍ତ୍ର କରି ଶିକାର ଧରିବା ବ୍ୟବସାୟ ବିଲାତରେ ଚଳେ ବୋଲି ଶୁଣିଥିଲି, କିନ୍ତୁ କେଦାରବାବୁ, ଆପଣଙ୍କୁ କହିଯାଉଛି ଦିନେ ହୁଏତ ଏଥିପାଇଁ ଆପଣଙ୍କୁ ଜେଲ ଯିବାକୁ ପଡ଼ିପାରେ ।

କେଦାରବାବୁ ଚିତ୍କାର କରି କହି ଉଠିଲେ—ଏ ସବୁ ତୁମେ କ'ଣ କହି ଯାଉଛ ସୁରେଶ ?

ସୁରେଶ ଅବିଚଳିତ ସ୍ୱରରେ ଜବାବ ଦେଲା—ଚୁପ୍ ରହନ୍ତୁ କେଦାରବାବୁ ! ବହୁତ ଦିନ ଧରି ଏଭଳି ନାଟକର ଅଭିନୟ ଚାଲିଲାଣି । ପୁରୁଣା ଲାଗିଲାଣି । ଆଉ ଏଥିରେ ମୁଁ ଭୁଲିବା ଅବସ୍ଥାରେ ନାହିଁ । ଟଙ୍କା ମୋର ଯାହା ଯାଇଛି, ତାହା

ଯାଉ । ତାହା ବଦଳରେ ଶିକ୍ଷା ମଧ କମ ପାଇଲ ନାହିଁ । କନ୍ତୁ ଏଇଠି ଯେପର ଏହାର ପରସମାପ୍ତି ଘଟେ ।

ଅଚଳା କାନ୍ଦ ଉଠି କହଲ—ତୁମେ ତାଙ୍କଠାରୁ ଟଙ୍କା କାହିଁକ ନେଉଥିଲ ବାବା ?

କେଦାରବାବୁ ପାଗଳ ଭଳ ଖଣ୍ଡିଏ ସାଦା କାଗଜ ଏଣେ ତେଣେ ଖୋଜୁ ଖୋଜୁ ଶେଷରେ ଖଣ୍ଡିଏ ପୁରୁଣା ଖବର କାଗଜ ଜୋରରେ ଟାଣି ଆଣି ଚଳାର କର କହ ଉଠିଲେ—ମୁଁ ଏହିକ୍ଷଣି ହ୍ୟାଣ୍ଡନୋଟ ଲେଖି ଦେଉଛୁ······

ସୁରେଶ କହଲ—ଥାଉ, ଥାଉ । ଲେଖାଲେଖିରେ ଆଉ ଆବଶ୍ୟକତା ନାହିଁ । ଆପଣଙ୍କର ପରଶୋଧ କରବା କଥା ମୋତେ ବେଶ ଜଣା । କନ୍ତୁ ମୁଁ ଏଇ କେତେଟା ଟଙ୍କା ପାଇଁ ଆପଣଙ୍କ ବରୁଦ୍ଧରେ ଅଦାଲତରେ ଠିଆ ହେବାକୁ ଯିବ ନାହିଁ ।

ଜବାବ ଦେବାପାଇଁ କେଦାରବାବୁଙ୍କର ଦୁଇ ଓଠ ଘନ ଘନ ଥରବାକୁ ଲଗିଲ । କନ୍ତୁ ଗଳାରୁ ପଦଟିଏ ହେଲେ କଥା ବାହାର ପାରଲ ନାହିଁ ।

ସୁରେଶ ଅଚଳା ଆଡ଼କୁ ଫେର ଚାହିଁଲ । ତାହାର ପାଣ୍ଡୁର ମୁଖ ଏବଂ ସଜଳ ନୟନ ଦେଖି ସୁଦ୍ଧା ତାର ମନରେ ଅଣୁ ମାତ୍ର ଦୟା ହେଲନାହିଁ । ବରଂ ତାର ଭିତରର ଜ୍ୱାଳା ଶହେଗୁଣ ବଢ଼ିଗଲ । ସେ ପିଶାଚଭଳ ନଷ୍ଠୁର ହୋଇ କହ ଉଠିଲ—ତୁମର ଗର୍ବ କରବାର କ’ଣ ଅଛୁ ଅଚଳା ? ଏଇ ତ ମୁଖର ଶ୍ରୀ । ଏଇତ କାଠଭଳ ଦେହ । ଏଇତ ଦେହର ରଙ୍ଗ । ତଥାପି ମୁଁ ଯେ ଭୁଲ ଯାଇଥିଲ ସେ’ କଣ ତୁମର ରୂପ ପାଇଁ ? ସେ କଥା କଦାପି ଧରକ ପାଇଁ ମନରେ ଭାବବ ନାହିଁ ।

ବାପାଙ୍କ ଆଗରେ ଏହିଭଳ ଅପମାନିତ ହୋଇ ଅଚଳା ଘୃଣା ଓ ଦୁଃଖରେ ଦୁଇ ହାତରେ ମୁହଁକୁ ଢାଙ୍କି ଧର କୋଚ ଉପରେ ପଡ଼ିଗଲ ।

ସୁରେଶ ଠିଆ ହୋଇ କହଲ—ବ୍ରାହ୍ମମାନଙ୍କୁ ମୁଁ ଦୁଇ ଆଖିରେ ଦେଖି ପାରେ ନାହିଁ । ଯେଉଁମାନଙ୍କର ଛାଇ ମାଡ଼ିବାକୁ ମୁଁ ଘୃଣା କରେ ସେମାନଙ୍କ ଭିତରୁ ଜଣକ ଘରେ ପାଦ ଦେବା ପରେ ମୋର ଆଜନ୍ମରୁ ରହ ଆସିଥିବା ସଂସ୍କାର ଏବଂ ଚରଦନର ବଦ୍ୱେଷ ଯେତେବେଳେ ମୁହୂର୍ତ୍ତକ ଭିତରେ ଧୋଇ ସଫା ହୋଇଗଲ, ସେତେବେଳେ ମୋର ଭବବା ଉଚତ୍ ଥିଲା; ଏହା ଯାଦୁ-

ବନ୍ଧ୍ୟା ନୁହେଁ ତ ! ମୋର ଯାହା ହୋଇଛୁ ହୋଇଥାଉ ପଛେ କିନ୍ତୁ ଯିବା ପୂର୍ବରୁ ମୁଁ ତୁମକୁ ସହସ୍ରବାର ଧନ୍ୟବାଦ ନ ଦେଇ ଯାଇ ପାରୁ ନାହିଁ ।

ଅଚଳା ମୁହଁକୁ ଲୁଚାଇ ରଖି କାନ୍ଦିବା ଭଳି କଣ୍ଠରେ କହି ଉଠିଲା—ବାବା, ତୁମେ ଏହାଙ୍କୁ ନୀରବ ହେବାକୁ କୁହ । ଆମେ ପଛେ ଗଛ ତଳରେ ଯାଇ ରହିବା କିନ୍ତୁ ତାଙ୍କଠାରୁ ଯେଉଁ ଟଙ୍କା ନେଇଛ ତାକୁ ଶୀଘ୍ର ଫେରାଇ ଦିଅ ।

ସୁରେଶ କହିଲା—ଗଛତଳରେ ମଧ୍ୟ ତୁମକୁ ସ୍ଥାନ ମିଳିବ ନାହିଁ ଏକଥା କହି ଯାଉଛି, କହି ପ୍ରତ୍ୟୁତ୍ତରକୁ ଅପେକ୍ଷା ନ କରି ସେ ତର ତର ହୋଇ ବାହାରି ଚାଲିଗଲା ।

କେଦାରବାବୁ କିଛି ସମୟ ନୀରବ ରହିବା ପରେ ଶେଷରେ ଗୋଟାଏ ଦୀର୍ଘ ନିଶ୍ୱାସ ତ୍ୟାଗ କରି କହିଲେ—ଓହୋ ! କେଡ଼େ ନିଷ୍ଠୁର ଲୋକ ! ଏପରି ଜାଣି ଥିଲେ ମୁଁ କଣ ତାକୁ ଘରେ ପୂରାଇଥାନ୍ତି ?

ବାପାଙ୍କ କଥା ଅଚଳା କାନକୁ ଗଲା । କିନ୍ତୁ ସେ କିଛି କହିଲା ନାହିଁ । ସେହିପରି ଶୋଇରହି କେବଳ କାନ୍ଦୁଥାଏ । ଅଳ୍ପଦୂରରେ କେଦାରବାବୁ ବସି ସବୁ ଦେଖୁଥିଲେ ସୁଦ୍ଧା ସାନ୍ତ୍ୱନା ଦେବାପାଇଁ ପଦଟିଏ କଥା କହିବାକୁ ସାହାସ କରିପାରିଲେ ନାହିଁ । ସନ୍ଧ୍ୟା ହୋଇଗଲା । ବେହେରା ଆସି ଆଲୁଅ ଜଳାଇବାକୁ ଉପକ୍ରମ କରିବାର ଦେଖି ଅଚଳା ନୀରବରେ ନିଜ ଶୋଇବା ଘରକୁ ଉଠି ଚାଲିଗଲା ।

ମହିମ କିନ୍ତୁ ଏହି ଘଟଣା କିଛି ଜାଣି ପାରି ନ ଥିଲା । କେବଳ କେଦାର-ବାବୁ ସେଦିନ କଥା ପ୍ରସଙ୍ଗରେ ତାହା ସହିତ ଅଚଳାର ବିବାହ ପାଇଁ ଯେତେ-ବେଳେ ସମ୍ମତ ଦେଲେ ସେତେବେଳେ ସେ କିଛିକ୍ଷଣ ପାଇଁ ସ୍ତବ୍ଧହୋଇ ବସି ରହିଲା । କେତେଆଡ଼୍ କେତେକଥା, କେତେ ସନ୍ଦେହ ମନରେ ଉଙ୍କିମାରିଲା ସତ, କିନ୍ତୁ ତାର ଏଇ ସୌଭାଗ୍ୟ ପାଇଁ ସୁରେଶ ଯେ ମୂଳକାରଣ ସେ କଥା ସେ କଳ୍ପନା ଆଦୌ କରି ପାରିଲା ନାହିଁ । ଅଚଳା ପ୍ରତି ସ୍ନେହ, ପ୍ରେମ ଓ କୃତଜ୍ଞତାରେ ତାର ହୃଦୟ ଭରି ଉଠିଲା । କିନ୍ତୁ ଏହି ଭାବନାକୁ ସେ ପ୍ରକାଶ କରିବାକୁ ଅସମର୍ଥ ହୋଇଉଠିଲା; ଯେହେତୁ ସେ ଚିରଦିନ ନୀରବ ପ୍ରକୃତିର ଲୋକ ଥିଲା । ଏଥିପାଇଁ ଗୋଟିଏ ଉଦାହରଣ ଦେଲେ ଯଥେଷ୍ଟ ହେବ—ସବୁଦିନଭଳି ସେଦିନ ସେ ଅଚଳା-ଠାରୁ ବିଦାୟ ନେଇ ଆସିଲାବେଳେ କହି ଆସିବାକୁ ପୂରାପୂରି ଭୁଲିଯାଇ-ଥିଲା ।

ବିବାହ ପ୍ରସଙ୍ଗ କେଦାରବାବୁ ପ୍ରଥମେ ତାଙ୍କ ଆଡ଼ୁ ଉଠାଇଥିଲେ, ଏପରିକି କଥାବାର୍ତ୍ତା ବେଳେ ଦିନ ଲଗ୍ନ ସବୁ ସ୍ଥିର କରି ଜଣାଇ ଦେଲେ । ଏପରି କହିଲା ବେଳେ ଜଣା ପଡୁଥିଲା ସେ ଯେପରି ଅନନ୍ୟୋପାୟ ହୋଇ ଏ ସବୁ କରି ଯାଉଛନ୍ତି । ମୁହଁରେ ତାଙ୍କର ଉତ୍ସାହ କିମ୍ବା ଆଗ୍ରହର ଚିହ୍ନ ଲେଶ ମାତ୍ର ଦେଖା ଯାଉ ନ ଥିଲା ।

ଦିନପରେ ଦିନ କଟିଗଲା । କ୍ରମେ ବିବାହର ଦିନ ନିକଟ ହେଲା । ଆସନ୍ତା କାଲି ବିବାହୋତ୍ସବ ଅନୁଷ୍ଠିତ ହେବ । ବାହାଘରରେ କୌଣସି ପ୍ରକାର ଧୂମ୍‌ଧାମ୍ କରିବେ ନାହିଁ ବୋଲି ସେ ଆଗରୁ ସ୍ଥିର କରିଥିବାରୁ ଆଗାମୀ ଶୁଭକାର୍ଯ୍ୟଟା ଯେତେଦୂର ପାରନ୍ତି ନିରାଡ଼ମ୍ବରରେ କରିବା ପାଇଁ ସେ ଚେଷ୍ଟିତ ଥିଲେ ।

ଆଜି ଚାରିଟା ବେଳେ କେଦାରବାବୁ ଚାହା ଖାଇବାକୁ ବସିଥିଲେ । ଅଚଳା ଗୋଟାଏ ସିଲାଇ କାମ ଧରି ଅଳ୍ପଦୂରରେ ବସିଥିଲା । ଅନେକ ଦୁଃଖ ଭୋଗିଲା ପରେ ଆଜକୁ କେତେଦିନ ହେବ ତା’ ମୁହଁରେ ଟିକିଏ ସରସତା ଦେଖିବାକୁ ମିଳୁଛି । କଳହ କରି ସୁରେଶ ଚାଲିଯିବା ପରେ ଏତେଦିନ ଧରି ସେ ମନ ମାରିଦେଇ ବସୁଥିଲା । ସୁରେଶ ଫେରି ଆସିଲେ କ’ଣ କରିବ, ନ କରିବ ଏହା ଏକ ଦୁଃଶ୍ଚିନ୍ତା । ତାହା ବ୍ୟତୀତ ଏ ସମ୍ବନ୍ଧରେ ତାଙ୍କର ନିଜର କର୍ତ୍ତବ୍ୟ କ’ଣ ହେବ, ହ୍ୟାଣ୍ଡ୍‌ନୋଟ୍ ଲେଖି ଦେବେ, କି ଅନ୍ୟଠାରୁ ଋଣ ଆଣି ତାକୁ ଟଙ୍କା ପରିଶୋଧ କରି ଦେବେ ? ଏହିଭଳି ବିଭିନ୍ନ ପ୍ରକାରର ଭାବନା ତାଙ୍କୁ ଅନବରତ ଭାରାକ୍ରାନ୍ତ କରି ରଖୁଥିଲା । ପୁଣି ଭାବୁଥିଲେ ଯାହାହେଉ କିଛି ତ ତାଙ୍କୁ କରିବାକୁ ହେବ । ସବୁଦିନ ପାଇଁ ସୁରେଶର ଅନୁପସ୍ଥିତି ଉପରେ ନିର୍ଭର କରି ରହି ପାରିବେ ନାହିଁ, କିମ୍ବା ଝିଅଭଳି ଖିଆଲୀ ହୋଇ ପଡ଼ିଲେ; ବିପଦରୁ ଉଦ୍ଧାର ଯାଇ ପାରିବେ ନାହିଁ । ହତାଶ ପ୍ରେମିକ ଦିନେ ନା ଦିନେ ଚେଇଁ ଉଠିବ । ଫେରି ଆସି ଘଟଣାଟାକୁ ଚାରିଆଡ଼େ ରାଷ୍ଟ୍ର କରି ଏପରି ହାଙ୍ଗାମା ସୃଷ୍ଟି କରି ବସିବ: ଯେଉଁଥିରେ କି ତାଙ୍କର ମାନ ସମ୍ମାନ ବୋଲି କିଛି ରହିବ ନାହିଁ । ଯଦିଓ କୌଣସି ଲେଖାପଢ଼ା ନଥାଇ ଚେକ୍ ଦ୍ୱାରା ସେ ଟଙ୍କା ଦେଇଛି ତଥାପି ଅଦାଲତରେ ଫାର୍ଙ୍କିଦେବା ସମ୍ଭବ ହେବ ନାହିଁ । ଝିଅ ସହିତ ଏ ବିଷୟରେ କୌଣସି ପରାମର୍ଶ କରିବାକୁ ତାଙ୍କର ସତ୍ ସାହାସ ନ ଥିଲି । ସୁରେଶର ନାମ ପାଟିରେ ଉଚ୍ଚାରଣ କରିବାକୁ ସେ ଭୟ କରୁଥିଲେ । ବର୍ତ୍ତମାନ ଅଚଳାର ଶାନ୍ତ ମୁହଁଟିକୁ ଚାହିଁଦେବାକ୍ଷଣି ତାଙ୍କର ଚରିତ୍ରୁଅଳୀ ଦେଖାଦେଲି । ସେ ଭାବିଲେ

ଏହି ଝିଅ ହିଁ ତାଙ୍କର ସବୁ ମାନସିକ ଅଶାନ୍ତିର ମୂଳ କାରଣ । ଯଦି ସୁରେଶ ସହିତ ବିବାହ ପ୍ରସ୍ତାବ ସ୍ଥିର ହୋଇ ପାରିଥାନ୍ତା ତେବେ କେତେ ସୁବିଧା ହୋଇ ନଥାନ୍ତା ଏବଂ ଭବିଷ୍ୟତରେ ଝିଅ ତାଙ୍କର କେଉଁ ସୁଖରେ ରହି ନଥାନ୍ତା !

ଯେଉଁ କଷ୍ଟୁରା କନ୍ୟା ବୃଦ୍ଧ ପିତାର ବାରମ୍ବାର ବାରଣ ସତ୍ତ୍ୱେ ତାହାର ସୁଖ ଦୁଃଖକୁ ଟିକିଏ ହେଲେ ଖାତିର କଲା ନାହିଁ; ସମସ୍ତ ପରିଶ୍ରମକୁ ପଣ୍ଡ କରିଦେଲା, ସେହି ସ୍ୱାର୍ଥପର ସନ୍ତାନ ବିରୁଦ୍ଧରେ ତାଙ୍କର ପ୍ରଚ୍ଛନ୍ନ କ୍ରୋଧ ଅଭିଶାପ ଭଳି ଯେତେବେଳେ ଇଚ୍ଛା ସେତେବେଳେ ଏହି କାମନା କରିବ ଯେ, ସେ ଯେପରି ଏହାର ଉଚିତ୍ ଫଳ ଭୋଗ କରେ । ସମସ୍ତ ଆସିବ ଦିନେ ସେ ତାହାଙ୍କୁ କାନ୍ଦି କରି କହିବ ଯେ ବାବା, ତୁମର ଅବାଧ୍ୟ ହେବାର ଉପଯୁକ୍ତ ଶାସ୍ତି ମୁଁ ପାଇଛି । ପାତ୍ର ହିସାବରେ ସୁରେଶ ମଧ୍ୟମ ଠାରୁ ଶହେଗୁଣ ବାଞ୍ଛନୀୟ, ଏ ବିଶ୍ୱାସ ତାହାଙ୍କ ମନରେ ଏପରି ଭାବରେ ବଦ୍ଧମୂଳ ହୋଇ ଉଠିଥିଲା ଯେ ସେଥିରୁ ବିଚ୍ୟୁତ ହେବାଟାକୁ ସେ ଗଭୀର କ୍ଷତି ବୋଲି ଗଣ୍ୟ କରୁଥିଲେ । ଏତେ କାଣ୍ଡ ପରେ ଆଜି ଯଦି ସୁରେଶକୁ ଫେରି ପାଇବାର ବାଟ କିଛି ଥାଇପାରେ ତେବେ ଉପସ୍ଥିତ ବିବାହକୁ ଭାଙ୍ଗି ଦେବାକୁ ସେ ତିଳେ ମାତ୍ର କୁଣ୍ଠାବୋଧ କରିବେ ନାହିଁ କିନ୍ତୁ ଆଉ କୌଣସି ଉପାୟ ନାହିଁ । ଅଚଳା ନିକଟରେ ସୁରେଶ ନାମ ଉଚ୍ଚାରଣ କରିବା ଅସମ୍ଭବ ହୋଇ ପଡ଼ିଛି ।

ପିଲାଇ କରୁ କରୁ ହଠାତ୍ ଅଚଳା କହିଲା, ବାବା ସୁରେଶ ବାବୁଙ୍କ ବିଷୟଟା ପଢ଼ିଲେତ ?

ଅଚଳାର ମୁହଁରେ ପୁଣି ସୁରେଶର ନାମ ! କେଦାର ବାବୁ ଚମକି ଫେରି ଗୁହିଁଲେ । ନିଜ କାନକୁ ମଧ୍ୟ ସେ ବିଶ୍ୱାସ କରି ପାରିଲେ ନାହିଁ । ସକାଳର ଖବର କାଗଜ ଖଣ୍ଡି ଟେବୁଲ ଉପରେ ପଡ଼ିଥିଲା । ଅଚଳା ସେଇଟାକୁ ଧରି ପୁଣି ସେହି ପ୍ରଶ୍ନ କଲା । କାଗଜ ଉପରେ ସକାଳେ ସେ ଏଠି ସେଠି ଆଖି ବୁଲାଇ ନେଇଥିଲେ କିନ୍ତୁ ସମସ୍ତ ସମ୍ବାଦ ଟିକିନିଖି ଜାଣିବା ଭଳି ଆଗ୍ରହ ତାଙ୍କର ଆଜି ନଥିଲା । କହିଲେ, କେଉଁ ସୁରେଶ ମା ?

ଅଚଳା ସଂବାଦ ପତ୍ରର ସେହି ସ୍ଥାନଟା ଖୋଜୁ ଖୋଜୁ କହିଲା—ବୋଧହୁଏ ଏ ହେଉଛନ୍ତି ଆମ ସୁରେଶ ବାବୁ ।

କେଦାର ବାବୁ ବିସ୍ମୟରେ ଦୁଇଚକ୍ଷୁ ବିସ୍ଫାରିତ କରି କହି ଉଠିଲେ ଆମ ସୁରେଶ ବାବୁ ! କ'ଣ କରୁଛନ୍ତି ସେ ? କେଉଁଠି ଅଛନ୍ତି ଆଜିକାଲି ?

ଅଚଳା ଉଠି ଆସି ଖବର କାଗଜର ଅଂଶଟା ବାବାଙ୍କ ହାତକୁ ବଢ଼ାଇ ଦେଇ କହିଲା—ପଢ଼ି ଦେଖ ବାବା ।

କେଦାର ବାବୁ ଚଷମା ପାଇଁ ପକେଟକୁ ହାତ ବଢ଼ାଇ କହିଲେ—ଚଷମାଟା ବୋଧହୁଏ ମୋ ଘରେ ଛାଡ଼ି ଆସିଛି । କ'ଣ ପଢ଼ି ଶୁଣାଇଲୁ ମା ।

ଅଚଳା ପଢ଼ି ଶୁଣାଇଲା । ଫୈଜ୍ୟାବାଦ ସହରରେ ଜନୈକ ପତ୍ରପେରକ ଲେଖି ଜଣାଇଛନ୍ତି ଯେ ସହରର ଦରିଦ୍ର ପଲ୍ଲୀରେ ଅଳ୍ପଦିନ ତଳେ ଭୟଙ୍କର ଅଗ୍ନିକାଣ୍ଡ ଘଟିଯାଇଛି । ଏକରେ ପ୍ଲେଗ, ଦ୍ୱିତୀୟରେ ଏହି ଦୁର୍ଘଟଣା ଫଳରେ ଲୋକଙ୍କର ଦୁଃଖର ସୀମାନାହିଁ । କିଛିଦିନ ହେବ ସୁରେଶ ନାମକ ଜଣେ ଭଦ୍ର ଯୁବକ ଏଠାକୁ ଆସି ଅର୍ଥ, ଔଷଧ ପଥ୍ୟ ଏପରିକି ନିଜର ଶାରୀରିକ ସାହାଯ୍ୟ ଦେଇ ସେବା କରୁଥିଲେ । ଏହିଭଳି ବିପଦ ସମୟରେ ସେ ଶୁଣିବାକୁ ପାଇଲେ ଯେ ରୋଗ ଶଯ୍ୟାରେ ପଡ଼ିଥିବା କୌଣସି ସ୍ତ୍ରୀ ଲୋକ ଗୋଟିଏ ପ୍ରଜ୍ୱଳିତ ଘର ଭିତରେ ଆବଦ୍ଧ ହୋଇ ରହି ଯାଇଛି । ତାହାକୁ ଉଦ୍ଧାର କରିବାକୁ କେହି ନାହାନ୍ତି ।

ସମ୍ବାଦ ଦାତା ଏହାପରେ ଲେଖିଛନ୍ତି ଯେ ତାହାର ପ୍ରାଣ ରକ୍ଷା କରିବାକୁ ଯୁବକ ଜଣକ ଅସୀମ ସାହାସ ଦେଖାଇ ଅଗ୍ନି ଭିତରକୁ ନିଜ ଜୀବନକୁ ପାଣି ଛଡ଼ାଇ ଧସେଇ ପଶି ଇତ୍ୟାଦି—ଇତ୍ୟାଦି

ପଢ଼ା ଶେଷ ହୋଇଗଲା ପରେ ଅନେକ କ୍ଷଣ ଚୁପ ରହି କେଦାରବାବୁ କହିଲେ—ତୋର କ'ଣ ମନେ ହେଉଛି, ଏ ଆମ ସୁରେଶ ?

ଅଚଳା ଶାନ୍ତ ଭାବରେ କହିଲା—ହଁ ବାବା, ସେ ହିଁ ହେଉଛନ୍ତି ଆମ ସୁରେଶବାବୁ ।

କେଦାରବାବୁ ଆଉଥରେ ଚମକି ଉଠିଲେ ।

ମନରେ ନିଶ୍ଚିତ ବିଶ୍ୱାସ ଜନ୍ମାଇବା ପାଇଁ ବୋଧହୁଏ ଅଚଳା ମୁହଁରୁ "ଆମର" କଥାଟା ଉପରେ ଅତିରିକ୍ତ ଜୋର୍ ପ୍ରକାଶ ପାଇଥିଲା; କିନ୍ତୁ କେଦାରବାବୁଙ୍କ ମନରେ ଏହା ଅନ୍ୟ ରୂପରେ ପ୍ରତିଧ୍ୱନି ତୋଳିଥିଲା । ଭାସିଗଲା ଲୋକ କୁଟାଖିଅକୁ ଆଶ୍ରା କଲାପରି ବୃଦ୍ଧ କେଦାରବାବୁ ଏଇ ପଦକ କଥାକୁ ବୁକୁରେ ଚୁପି ଧରିଲେ । ଏଇ କଥାଟି ତାଙ୍କର କାନରେ ନିମିଷକ ଭିତରେ ପହଁଞ୍ଚି ମନରେ କେତେ ଅସମ୍ଭବ ସମ୍ଭାବନାର ଦ୍ୱାର ଉଦ୍‌ଘାଟନ କରିଦେଲା ତାହାର ଇୟତ୍ତା ରହିଲା ନାହିଁ । ତାଙ୍କର ମୁହଁଟା ଏତେଦିନପରେ ଆଶା ଓ

ଆଙ୍କାକ୍ଷାରେ ଉଦ୍‌ଭାସିତ ହୋଇ ଉଠିଲା । କହିଲେ—ଆଚ୍ଛା ମା, ତୋର କ'ଣ ମନେ ହୁଏନି ......

ବାବାଙ୍କ କଥାକୁ ଶେଷ କରିବାକୁ ନଦେଇ ଅଚଳା, କହିଲା—କ'ଣ ମନେ ହୁଏ; ବାବା ?

କେଦାରବାବୁ ସାବଧାନରେ ଅଗ୍ରସର ହେବାପାଇଁ କଥାଟାକୁ ଗୃପି ଦେଇ କହିଲେ—ତୋର କ'ଣ ମନେ ହୁଏନି ଯେ ସୁରେଶ ଯେଉଁ ବ୍ୟବହାର ଆମମାନଙ୍କ ସହିତ କରିଗଲା ସେଥିପାଇଁ ସେ ବିଶେଷ ଅନୁତପ୍ତ ?

ଅଚଳା ତତ୍‌କ୍ଷଣାତ୍ ଉତ୍ତର ଦେଲା—ମୋର ତ ସେଇଆ ମନେହୁଏ ।

କେଦାରବାବୁ ମୁଣ୍ଡ ହଲାଇ କହିଲେ— ନିଶ୍ଚୟ । ନିଶ୍ଚୟ । ତାହା ନହୋଇଥିଲେ ସେ ଏପରି ଭାବରେ ପଳାଇ ଯାଇ ନଥାନ୍ତା । କେଉଁଠାରେ ଗୋଟାଏ ସ୍ତ୍ରୀ ଲୋକକୁ ବଞ୍ଚାଇବା ପାଇଁ ନିଆଁ ଭିତରକୁ ଧସେଇ ପଶନ୍ତା ନାହିଁ । ମୋର ଯାହା ମନେ ହେଉଚ୍ଛି ସେ କେବଳ ଅନୁତାପରେ ଦଗ୍‌ଧ ହୋଇ ନିଜର ପ୍ରାଣ ବିସର୍ଜ୍ଜନ ଦେବାକୁ ଗୃହିଁଥିଲା । ଏ କଥା ସତ କି ନାହିଁ ତୁ କହିଲୁ ମା'ଆ ?

ଅଚଳା ବାବାଙ୍କ କଥାର ଯଥାର୍ଥ ଉତ୍ତରକୁ ଏଡ଼ାଇ ଦେବାକୁ ଯାଇ ଧୀରେ ଧୀରେ କହିଲା—ଶୁଣିଛି ପରକୁ ବଞ୍ଚାଇବାକୁ ଯାଇ ଏହା ପୂର୍ବରୁ ଦୁଇ ତିନିବାର ସେ ନିଜର ପ୍ରାଣକୁ ବିପଦାପନ୍ନ କରି ବସିଛନ୍ତି ।

କଥାଟା କେଦାରବାବୁଙ୍କୁ ସେତେ ଭଲ ଲାଗିଲା ନାହିଁ । ସେ କହିଲେ—ସେ କଥା ଅଲଗା । କିନ୍ତୁ ସେ ଯେ ନିଆଁ ଭିତରେ ଝାସ ଦେଲା; ତାହା ପ୍ରକୃତରେ ମୃତ୍ୟୁକୁ ଆଲିଙ୍ଗନ କରିବା ସଙ୍ଗେ ସମାନ ।

ଅଚଳା ଆଉ ପ୍ରତିବାଦ ନକରି କହିଲା—ତାହା ଅବଶ୍ୟ ସତ । କିନ୍ତୁ ଯେଉଁମାନେ ମହତ୍ ଲୋକ, ସେମାନଙ୍କର ପର ଆପଣା ଭାବ ଆଦୌ ନଥାଏ ।

କେଦାରବାବୁ ଆନନ୍ଦିତ ହୋଇ ଉଠିଲେ । ସେ ଦୃପ୍ତ କଣ୍ଠରେ କହିଲେ—ଠିକ୍, ଠିକ୍ । ସେଇକଥା ତୋତେ କହୁଥିଲି ମା । ସୁରେଶ ହେଉଛି ଗୋଟାଏ ମହାନ ବ୍ୟକ୍ତି । ତେଣୁ ତାହା ସହିତ ଅନ୍ୟର ତୁଳନା କରାଯାଇ ପାରେ ନାହିଁ । ଏତେ ଲୋକ ତ ଅଛନ୍ତି; କହିଲୁ କଥା ପଦକରେ କିଏ ପାଞ୍ଚ, ପାଞ୍ଚ

ହଜାର ଟଙ୍କା ଫିଙ୍ଗି ଦେଇ ପାରବ ? ସେ ଯାହା ଭୁଲ୍ କରୁ ପଛକେ କିନ୍ତୁ ସେ ଯେ ଅନୁତାପ କରୁଛି ଏ କଥା ମୁଁ ଶପଥ କରି କହିପାରେ ।

ଶପଥ କରିବାର କିନ୍ତୁ କୌଣସି ଆବଶ୍ୟକତା ନାହିଁ ବୋଲି ଅଚଳା ଭଲ ଭାବରେ ଜାଣିଥିଲେ ମଧ୍ୟ ତୁଣ୍ଡ ଫିଟାଇ କହି ପାରିଲା ନାହିଁ । ଏକଥା କାଳେ ଭାବଭଙ୍ଗୀରୁ ଜାଣିହୋଇ ଯିବ ଭାବି ସେ ତାର ମୁହଁ ବୁଲାଇ ନେଇ ଚୁପ୍ ହୋଇ ରହିଲା ।

ବୃଦ୍ଧ କେଦାରବାବୁଙ୍କ ଆଖିରୁ କିନ୍ତୁ ତାହା ବାଦ୍ ପଡ଼ିଲା ନାହିଁ । ସେ ପୁଲକିତ ଚିତ୍ତରେ କହିବାକୁ ଲାଗିଲେ—ମଣିଷ ତ ଆଉ ଦେବତା ନୁହେଁ । ସେ ଯେ ମଣିଷ । ତାହାଠାରେ ଦୋଷଗୁଣ ଉଭୟ ହିଁ ଅଛି । ସେଥିପାଇଁ ତାର ଦୁର୍ବଳ ମୁହୂର୍ତ୍ତର ଉତ୍ତେଜନାଗୁଡ଼ିକୁ ତାହାର ସ୍ୱଭାବ ବୋଲି ଧରିନେବା ଉଚିତ୍ ହେବ ନାହିଁ । ବାହାର ଲୋକ ଯିଏ ଯାହା କହନ୍ତୁ ପଛକେ ଅଚଳା, କିନ୍ତୁ ଆମେ ଯଦି ଏଇଟା ତାର ଦୋଷ ବୋଲି ବିଚାର କରିବା ତେବେ ସେମାନଙ୍କ ସହିତ ଆମର ତଫାତ୍ ଆଉ ରହିଲା କେଉଁଠି ? ବଡ଼ଲୋକ ତ କଲିକତା ସହରରେ ବହୁତ ଅଛନ୍ତି । କିନ୍ତୁ ତାହାଭଳି ଏପରି ଅକାତରେ କେତେଜଣ ସାହାଯ୍ୟ କରିପାରିବେ ? କ'ଣ ଲେଖିଛି ଏହିଠାରେ ଆଉ ଥରେ ଭଲ କରି ପଢ଼ ତ ମା'; କଥା ଭିତରୁ ତାହାଙ୍କୁ କବିପଦରେ ବାହାର କରି ଅଣାଗଲା—ଉଃ ! କି ମହତ୍ ପ୍ରାଣ ! ଦେବତା ବୋଲି ଆଉ କୁହାଯାଏ କାହାକୁ ? କହି ସେ ଦୀର୍ଘନିଃଶ୍ୱାସ ତ୍ୟାଗ କଲେ । ଅଚଳା କୌଣସି ଉତ୍ତର ନ ଦେଇ ସେହିପରି ବସି ରହିଲା ।

କେଦାରବାବୁ କ୍ଷଣକାଳ ସ୍ତବଧ ଭାବରେ ବସିରହି ହଠାତ୍ କହି ଉଠିଲେ—ଆଚ୍ଛା, ଗୋଟିଏ ଟେଲିଗ୍ରାମ୍ କରି ତାର ଖବର ନେବାଟା କ'ଣ ଆମର ଉଚିତ୍ ହେବନାହିଁ ? ତାହାର ଏପରି ବିପଦ ସମୟରେ କ'ଣ ଆମ ମାନଙ୍କର ଅଭିମାନ କରିବାଟା ଶୋଭା ପାଇବ ?

ଏଥର ଅଚଳା ମୁହଁ ଉଠାଇ କହିଲା—ତାଙ୍କର ଠିକଣା ତ ମୋତେ ଜଣାନାହିଁ ବାବା ?

କେଦାରବାବୁ କହିଉଠିଲେ— ଫୟଜାବାଦ ସହରରେ ଏପରି କେହି ନଥିବେ ଯିଏ କି ଆମ ସୁରେଶକୁ ଆଜି ପର୍ଯ୍ୟନ୍ତ ଚିହ୍ନି ନ ଥିବେ ? ତା ଉପରେ ମୋର ରାଗ ଖୁବ୍ ହୋଇଥିଲା । କିନ୍ତୁ ବର୍ତ୍ତମାନ ମୋ ମନରେ ସେସବୁ କିଛି ନାହିଁ । ଗୋଟିଏ ଟେଲିଗ୍ରାମ୍ ଲେଖି ବର୍ତ୍ତମାନ ପଠାଇ ଦେବା ମା । ମୁଁ ତାର ଖବର ଜାଣିବା ପାଇଁ ବଡ଼ ବ୍ୟାକୁଳ ହୋଇଉଠିଛି ।

: ଏଇ ବର୍ତ୍ତମାନ କରଦେଉଛୁ  କହି  ଅଚଳା ଖଣ୍ଡେ ଟେଲିଗ୍ରାମ କାଗଜ ଆଣିବା ପାଇଁ ଘରୁ ବାହାର ଯାଉ ଯାଉ ହଠାତ୍ ସୁରେଶଙ୍କୁ  ଆଗରେ ଦେଖି ଚମକି ପଡ଼ିଲା  ।

ଅନ୍ତର ଭିତରେ ଗମ୍ଭୀର ଦୁଃଖ  ବହନ  କରିବାର କ୍ଲାନ୍ତି ଯେ  ଏତେ ଶୀଘ୍ର ମନୁଷ୍ୟର ମୁଖକୁ  ଏପରି ଶ୍ରୀହୀନ,  ଏପରି ଶୁଷ୍କ କରିଦେଇ ପାରେ, ଜୀବନରେ  ଆଜି ପ୍ରଥମ ଥର ପାଇଁ ଦେଖିପାରି ଅଚଳା ଚମକି ଉଠିଲା । କେତେସମୟ ପର୍ଯ୍ୟନ୍ତ କାହା ମୁହଁରୁ କିଛି କଥା ବାହାରିଲା ନାହିଁ । ତାହା  ପରେ ସେ କହିଲା—ବାବା ବସିଛନ୍ତି, ଆସନ୍ତୁ । ଘରେ  ବସନ୍ତୁ  । ଫଯ୍ଜାବାଦ୍‌ରୁ କେବେ ଆସିଲେ ? ଆପଣ ଭଲ ଅଛନ୍ତି ତ  ?

ଅଜ୍ଞାତସାରରେ  ସ୍ନେହବୋଲା  କେତେପଦ  ସମବେଦନାର  କଥା ଯେ କେତେବେଳେ ତାର ତୁଣ୍ଡରୁ ବାହାରି ପଡ଼ିଲା ଅଚଳା ତାହା ଜାଣି ପାରିଲା ନାହିଁ ।

ସୁରେଶ କିନ୍ତୁ ନରମି ଯାଉଥିଲେ  ମଧ୍ୟ ଅନ୍ତରର  ଶିକ୍ଷାକୁ ନିଷ୍ଫଳ ହେବାକୁ ଦେଲାନାହିଁ । ଅଚଳାର ଆରକ୍ତ  ପାଦତଳେ  ଜାନୁପାତି  ତାର ଅଗାଧ ଦୁଷ୍କୃତିକୁ ନିଃଶେଷ କରି  ଅଜାଡ଼ି ଦେବାର  ଦୁର୍ଜ୍ଜୟ  ସ୍ପୃହାକୁ  ଆଜି  ସେ ପ୍ରାଣ ପଣେ ଦମନ କରି ସମ୍ଭ୍ରମର ସହିତ କହି ଉଠିଲା—ମୁଁ ଫଯ୍ଜାବାଦରେ  ଥିବା କଥା ଆପଣ କିପରି ଜାଣିଲେ ?

ଅଚଳା ପୂର୍ବଭଳି ମମତାପୂର୍ଣ୍ଣ କଣ୍ଠରେ କହିଲା—ବର୍ତ୍ତମାନ ଖବର  କାଗଜରୁ ପଢ଼ି ବାବା ମୋତେ ଟେଲିଗ୍ରାମ୍ କରିବାକୁ କହିଥିଲେ ।  ଆପଣଙ୍କ ପାଇଁ  ସେ  ବଡ଼ ଉଦ୍‌ବିଗ୍ନ ହୋଇ ପଡ଼ିଛନ୍ତି । ଆସନ୍ତୁ ତାଙ୍କୁ  ସାକ୍ଷାତ୍ କରି ଆସିବେ କହି ସେ ଫେରିବାକୁ ଉପକ୍ରମ  କରୁ  କରୁ  ସୁରେଶ  କହି ଉଠିଲା—ସେ ହୁଏତ ଉଦ୍‌ବିଗ୍ନ ହୋଇ ପାରନ୍ତି କିନ୍ତୁ ତୁମେ ମୋତେ କ'ଣ ମାଫ୍ କରି ପାରିଛ ?

ଅଚଳା ମୁହଁରେ ହସର ସାମାନ୍ୟ ଆଭା ଦେଖାଦେଲା ।  କହିଲା  ସେଭଳି ପ୍ରୟୋଜନ ମୋର ଆଦୌ ହୋଇନାହିଁ । ମୁଁ ଦିନକ ପାଇଁ  ସୁଦ୍ଧା ଆପଣଙ୍କ ଉପରେ ରାଗ କରିନାହିଁ । ଆସନ୍ତୁ, ଆସନ୍ତୁ, ଘର ଭିତରକୁ ଆସନ୍ତୁ କହି ସୁରେଶଙ୍କୁ ପାଛୋଟି ନେଲା ।

ସୁରେଶ ଯେତେବେଳେ କହିଲା ଯେ, ସେ ମଦ୍ଧମ ଚିଠିରୁ ବିବାହ ସମ୍ବାଦ ପାଇ ଶୀଘ୍ର ଚାଲି ଆସିଛୁ ସେତେବେଳେ କେଦାରବାବୁଙ୍କ ମୁହଁ ଲାଜରେ ନାଲି ପଡ଼ିଗଲା ସତ, କିନ୍ତୁ ଅଚଳାଠାରେ କୌଣସି ପରିବର୍ତ୍ତନ ଦେଖାଗଲା ନାହିଁ ।

ସୁରେଶ କହିଲା—ମଦ୍ଧମର ବିବାହ ଉତ୍ସବରେ ମୁଁ ଯୋଗ ନ ଦେଇଥିଲେ ହୁଏତ ଆଉ କିଛିଦିନ ମୋତେ ଡାକ୍ତର ଖାନାରେ……

କେଦାରବାବୁ ଉତ୍କଣ୍ଠିତ ହୋଇ ପ୍ରଶ୍ନକଲେ—ଡାକ୍ତରଖାନାରେ କାହିଁକି ? ସେ ଭଲ କିଛି ତ……

ସୁରେଶ କହିଲା—ସେଭଳି ଯଦିଓ କିଛି ନୁହେଁ । ତେବେ ଦେହଟା ଭଲ ନ ଥିଲା ।

କେଦାରବାବୁ ସ୍ଥିର ହୋଇ କହିଲେ—ଭଗବାନଙ୍କୁ ସେଥିପାଇଁ ମୋର ଶତକୋଟି ପ୍ରଣାମ । ଅଚଳା ଯେତେବେଳେ ଖବରକାଗଜରୁ ତୁମ ବିଷୟରେ ଆଲୌକିକ କାହାଣୀ ପଢ଼ି ଶୁଣାଇଲା, ସୁରେଶ, ଆନନ୍ଦ ଆଉ ଗର୍ବରେ ମୋ ଆଖିରୁ ଲୁହ ଟପ୍ ଟପ୍ ହୋଇ ପଡ଼ିବାକୁ ଲାଗିଲା । ମନେ ମନେ କହିଲି, ଈଶ୍ୱର ! ମୁଁ ଧନ୍ୟ—ଯେହେତୁ ଏଭଳି ଲୋକର ମୁଁ ବନ୍ଧୁ । କହି ଦୁଇ ହାତ ଯୋଡ଼ି ମୁଣ୍ଡରେ ଲଗାଇଲେ । କିଛିକ୍ଷଣ ଅଟକି ରହି କହିଲେ—କହିଲ ବାବା, ଥରକୁ ଥର ଏପରି ଜୀବନକୁ ବିପଦାପନ୍ନ କରିବା କ'ଣ ଉଚିତ ? ଗୋଟିଏ ସାମାନ୍ୟ ପ୍ରାଣ ବଞ୍ଚାଇବାପାଇଁ ଯଦି ଏଭଳି ଗୋଟିଏ ମହତ୍ ପ୍ରାଣ ଚାଲିଯାଏ ତେବେ ଦୁନିଆରେ କେତେ ବଡ଼ କ୍ଷତି ନ ହେବ କହିଲ ?

: କ୍ଷତି ଆଉ କ'ଣ ହେବ, କହି ସୁରେଶ ସଲଜ୍ଜ ଭାବରେ ମୁହଁ ଫେରାଇ ଦେଖିବାକୁ ପାଇଲା ଅଚଳା ନିର୍ନିମେଷ ଆଖିରେ ଏତେ ସମୟ ତାହାର ମୁହଁକୁ ଚାହିଁ ରହିଥିଲା । ବର୍ତ୍ତମାନ ଦୃଷ୍ଟି ତଳକୁ କଲା ।

କେଦାରବାବୁ ବାରମ୍ବାର କହିବାକୁ ଲାଗିଲେ—ଏଭଳି କଥା ମୁହଁକୁ ଆଣିବା ଉଚିତ୍ ନୁହେଁ । କାରଣ ଆପଣାର ଲୋକଙ୍କ ବୁକୁରେ ଏକଥା କିଭଳି କଷ୍ଟ ଦେଉଥିବ ତାହା ବୋଧହୁଏ ତୁମେ ଜାଣିନାହଁ ।

ସୁରେଶର କେହିନାହିଁ ଶୁଣିବା କ୍ଷଣି କେଦାରବାବୁଙ୍କ ଶୁଷ୍କ ଚକ୍ଷୁ ସଜଳ ହୋଇ ଉଠିଲା । ସେ କହିଲେ କେବଳ ତୁମ ପିଉସୀ କ'ଣ ଦୁଃଖ କରିବେ, ତାହା

ନୁହେଁ ସୁରେଶ, ଏ ବୁଢ଼ା ଟା ମଧ୍ୟ କମ୍ କଷ୍ଟ ଅନୁଭବ କରିବ ନାହିଁ । ସେ ଯାହା ହେଉ, ଅନ୍ତତଃ ମୁଁ ଯେଉଁ କେତେଟା ଦିନ ବଞ୍ଚିଛୁ, ସେଇ କେତେଟା ଦିନ ତୁମେ ଶରୀର ପାଇଁ ଟିକିଏ ଯତ୍ନବାନ୍ ହୁଅ ସୁରେଶ । ମୋର ଏତିକି ମାତ୍ର ତୁମକୁ ଅନୁରୋଧ ।

ଘଣ୍ଟାରେ ରାତି ଦଶଟା ବାଜିଲା । ଘରକୁ ଫେରିଯିବାପାଇଁ ଉଦ୍ୟତ ହୋଇ ସୁରେଶ ହଠାତ୍ ହାତଯୋଡ଼ି କହିଲା—ମୋର ଗୋଟିଏ ପ୍ରାର୍ଥନା ଅଛି କେଦାର ବାବୁ । ମହିମର ବାହାଘର ସମୟରେ ମୋତେ ତ ଏଠାରେ ରହିବାକୁ ହେବ । ସେ'ତ ପଅରଦିନର କଥା । କିନ୍ତୁ କାଲି ରାତିରେ ଏ ଅଧମ ଘରେ ଦୟାକରି ଟିକିଏ ପାଦଧୂଳି ଦେବେ । ନଚେତ୍ ବିଶ୍ୱାସ କରି ପାରିବି ନାହିଁ ଯେ ଏ ଅଧମକୁ ଆପଣ କ୍ଷମା ଦେଇପାରିଛନ୍ତି । କହନ୍ତୁ, ମୋ ପ୍ରାର୍ଥନା ରଖିବେ ତ ? କହି କେଦାର ବାବୁଙ୍କ ପଦଧୂଳି ନେବାପାଇଁ ସେ ନଇଁ ପଡ଼ିଲା ।

କେଦାର ବାବୁ ବ୍ୟସ୍ତ ହୋଇପଡ଼ି ସୁରେଶକୁ ଜୋର କରି ବାଧା ଦେବାକୁ ଯିବା ସମୟରେ ହଠାତ୍ ତାର ଅସ୍ପଷ୍ଟ କାତର ଶବ୍ଦରେ ଚମକି ଉଠିଲେ । ନିଆଁରେ ପୋଡ଼ି ଯାଇଥିବା ପିଠିର କ୍ଷତକୁ ସୁରେଶ ଏତେବେଳେ ଯାଏ ଶାଲ ଘୋଡ଼େଇ ହୋଇ ଗୋପନ କରି ରଖିଥିଲା । ସାମାନ୍ୟ ଟଣା ଟଣି ଫଳରେ ବ୍ୟାଣ୍ଡେଜ୍‌ଟା ଛିଣ୍ଡିଗଲା । ଏଥର ଅନାବୃତ କ୍ଷତ ଆଡ଼କୁ ଦୃଷ୍ଟି ଦେଇ ବୃଦ୍ଧ କେଦାର ବାବୁ ଭୟରେ ଚିତ୍କାର କରି ଉଠିଲେ ।

ବିଦ୍ୟୁତ୍ ବେଗରେ ଅଚଳା ଉଠିଆସି ବ୍ୟାଣ୍ଡେଜ ଧରି ପକାଇ କହିଲା— ଭୟ କରିବାର କିଛି ନାହିଁ, ମୁଁ ବ୍ୟାଣ୍ଡେଜ କରି ଦେଉଛି । ଏହାପରେ ସେ ସୁରେଶକୁ ଚୌକିରେ ବସାଇ ଦେଇ ଅତି ସାବଧାନତାର ସହିତ ଯଥା ସ୍ଥାନରେ ବ୍ୟାଣ୍ଡେଜ ବାନ୍ଧିବାରେ ଲାଗି ପଡ଼ିଲା ।

କେଦାର ବାବୁ ତାଙ୍କ ଚୌକି ଉପରେ ଭୟରେ ଆଖି ବୁଜି ଲଥ୍‌କରି ବସି ପଡ଼ିଲେ । କିଛି ସମୟ ପାଇଁ ତାଙ୍କର ଯେତେ ଯେପରି ହୋସ ରହିଲା ନାହିଁ । ଚୌକି ପଛ ପାଖରେ କହୁଣୀ ଉପରେ ଭରାଦେଇ ଅଚଳା ନିଃଶବ୍ଦରେ ବ୍ୟାଣ୍ଡେଜ ବାନ୍ଧୁଥିଲା । ପୋଡ଼ାଘାଆକୁ ଦେଖୁ ଦେଖୁ ତାର ଦୁଇ ଆଖି ଲୁହରେ ଭରି ଉଠିଲା, ଏବଂ କିଛି ସମୟ ପରେ ମୁକ୍ତା ବିନ୍ଦୁ ପରି ଗୋଟିଏ ପରେ ଗୋଟିଏ ଟୋପା ଆଖିରୁ ପଡ଼ିବାକୁ ଲାଗିଲା ।

ସୁରେଶ କିନ୍ତୁ ଏସବୁ କିଛି ଦେଖିପାରୁ ନ ଥିଲା ଏବଂ ସେଥିପ୍ରତି ମଧ୍ୟ ତାର ଖିଆଲ ନ ଥିଲା । ସେ କେବଳ ଅପଲକ ଆଖିରେ ସ୍ଥିର ହୋଇ ବସି ତାର

ପ୍ରେମାସ୍ପଦାର କୋମଳ ହାତ ଦୁଇଟିର କରୁଣ ସ୍ପର୍ଶକୁ ମନ ଭିତରେ ଅନୁଭବ କରି ପୁଲକିତ ହୋଇ ଉଠୁଥିଲା ।

କୌଣସି ମତେ ଲୁହ ପୋଛି ଅଚଳା ଚୂପ ଚୂପ କରି କହିଲା—ଆଜି ଆପଣଙ୍କୁ ମୋ ପାଖରେ ଗୋଟାଏ ପ୍ରତିଜ୍ଞା କରିବାକୁ ହେବ ।

ସୁରେଶ ଚକିତ ହୋଇ ମୃଦୁସ୍ୱରରେ ପ୍ରଶ୍ନ କଲା—ପ୍ରତିଜ୍ଞା ?

: ଏପରି ଭାବରେ ଆପଣ ନିଜ ଶରୀରକୁ ନଷ୍ଟ କରି ପାରିବେ ନାହିଁ ।

: କିନ୍ତୁ ମୁଁ ତ ଇଚ୍ଛା କରି ନଷ୍ଟ କରୁ ନାହିଁ । କେବଳ ପରର ବିପଦ ସମୟରେ ମୋର କାଣ୍ଡଜ୍ଞାନ ରହେ ନାହିଁ, ଏହା ଯେ ମୋର ପିଲାବେଳର ସ୍ୱଭାବ, ଅଚଳା ।

ଅଚଳା ସିନା କୌଣସି ପ୍ରତିବାଦ କଲା ନାହିଁ । କିନ୍ତୁ ସଙ୍ଗେ ସଙ୍ଗେ ସେ ଯେଉଁ ଦୀର୍ଘଶ୍ୱାସ ପକାଇଲା, ତାହା ସୁରେଶ ଜାଣି ପାରିଲା । ବ୍ୟାଣ୍ଡେଜ ବନ୍ଧା ସରିବା ପରେ ସେ ଧୀରେ ଧୀରେ ଉଠି ଠିଆ ହୋଇ କହିଲା—କାଲି କିନ୍ତୁ ଏ ଗରିବ ଦୁଆରେ ପାଦଧୂଳି ଟିକିଏ ଦେବାକୁ ଯେପରି ନ ଭୁଲନ୍ତି । ତାର ଦୁଇ ଆଖି ଲୁହରେ ଛଳ ଛଳ ହୋଇ ଉଠିଲା ସତ୍ତ୍ୱେ; କିନ୍ତୁ କଣ୍ଠ ସ୍ୱରରେ ବ୍ୟାକୁଳତା ପ୍ରକାଶ ପାଇଲା ନାହିଁ ।

ଅଚଳା ମୁହଁ ତଳକୁ କରି ମୁ ଣ୍ଡ ହଲାଇ କହିଲା—ଆଚ୍ଛା, ଚେଷ୍ଟା କରିବି ।

ସୁରେଶ କେଦାର ବାବୁଙ୍କୁ ନମସ୍କାର କରି ହସି ଦେଇ କହିଲା—ଦେଖନ୍ତୁ, ମୋତେ ଯେପରି ନିରାଶ ନ କରନ୍ତି । ଏହାପରେ ଅଚଳା ମୁହଁକୁ ଚାହିଁ ଆଉ ଥରେ ନୀରବରେ ତାର ଅନୁରୋଧ ଜଣାଇ ଧୀରେ ଧୀରେ ବାହାରକୁ ଚାଲିଗଲା ।

ତା ପରଦିନ ଯଥା ସମୟରେ ସୁରେଶ ଗାଡ଼ି ପଠାଇ ଦେଇଥିଲା । କେଦାର ବାବୁ ପୂର୍ବରୁ ପ୍ରସ୍ତୁତ ହୋଇଥିଲେ । ଝିଅକୁ ସଙ୍ଗରେ ଧରି ନିମନ୍ତ୍ରଣ ରକ୍ଷା କରିବାକୁ ବାହାରି ପଡ଼ିଲେ ।

ସୁରେଶ ଘରର ସଦର ଦରଜା ମଧ୍ୟରେ ପ୍ରବେଶ କଲାମାତ୍ରେ କେଦାର ବାବୁ ଆଶ୍ଚର୍ଯ୍ୟ ହୋଇଗଲେ । ସେ ବଡ଼ଲୋକ । ଏହା ତ ଜଣାଶୁଣା କଥା । କିନ୍ତୁ ସେ ଯେ କେତେ ଦୂର ବଡ଼ଲୋକ, କେବଳ ଅନୁମାନ କରି ଏତେଦିନ ପର୍ଯ୍ୟନ୍ତ ଜାଣିବା କଠିନ ହୋଇ ପଡ଼ିଥିଲା । ଆଜି କିନ୍ତୁ ସେ ବିଷୟରେ ସମ୍ପୂର୍ଣ୍ଣ ନିଃସନ୍ଦେହ ହୋଇ ପାରିଲେ ।

ସୁରେଶ ଆସି ଉଭୟଙ୍କୁ ଅଭ୍ୟର୍ଥନା ଜଣାଇ ପାର୍ସ୍ଲେଟି ନେଲା । ହସି ହସି କହିଲା—ମହିମର ଗଡ଼ି ଆଜି ପର୍ଯ୍ୟନ୍ତ ଫେର୍ନି ହେଲା ନାହିଁ, କେଦାର ବାବୁ । ଅସନ୍ତା କାଲି ଦ୍ୱିପହର ପୂର୍ବରୁ ସେ କୌଣସି ମତେ ପହଞ୍ଚି ପାରିବ ନାହିଁ ବୋଲି ସ୍ପଷ୍ଟ କହିଦେଲା ।

କେଦାର ବାବୁ ସେ କଥାର କୌଣସି ଜବାବ ଦେଲେ ନାହିଁ । ତିନିଜଣ ମିଶି ବୈଠକ ଘରେ ପ୍ରବେଶ କରିବା ମାତ୍ରେ ଜଣେ ପ୍ରୌଢ଼ା ରମଣୀ ଅନ୍ତଃପୁରରୁ ବାହାରି ଆସି ଅଚଳାର ହାତ ଧରି ଘର ଭିତରକୁ ନେଇ ଗଲେ । ନିଜ ଘର ଭିତରେ ବିଛାଯାଇଥିବା କାର୍ପେଟ ଉପରେ ତାକୁ ବସାଇ ନିଜର ପରିଚୟ ଜଣାଇ ଦେଇ କହିଲେ, ମୁଁ ସମ୍ପର୍କରେ ତୋର ଶାଶୁ ହେବି ବୋହୂ । ମୁଁ ମହିମର ପିଉସୀ ।

ଅଚଳା ପ୍ରଣାମ କରି ପାଦଧୂଳି ନେଇ ଆଶ୍ଚର୍ଯ୍ୟରେ ତାଙ୍କ ମୁହଁକୁ ଚାହିଁ ପ୍ରଶ୍ନ କଲା—ଆପଣ ଏଠାକୁ କେବେଠାରୁ ଆସିଲେଣି ?

ମହିମର ଯେ ଜଣେ ପିଉସୀ ଥିଲେ ସେ କଥା ଅଚଳା ଆଦୌ ଜାଣି ନଥିଲା ।

ଅଚଳା ବିସ୍ମିତ ହେବାର କାରଣ ଅନୁମାନ କରିପାରି ପ୍ରୌଢ଼ା ଜଣକ ହସି ହସି କହିଲେ—ମୁଁ ଏଇଠାରେ ଥାଏ ବୋହୂ । ମୁଁ ସୁରେଶର ପିଉସୀ । କିନ୍ତୁ ମହିମ ମୋର ପର ନୁହେଁ । ତେଣୁ ମୁଁ ମଧ୍ୟ ତାର ପିଉସୀ ହୁଏ । ତାଙ୍କର ସ୍ୱଭାବ ସୁଲଭ କୋମଳ କଣ୍ଠସ୍ୱରର ସ୍ନେହ ଓ ଆନ୍ତରିକତାର ମୁହୂର୍ତ୍ତିକ ଭିତରେ ଅଚଳାର ଅନ୍ତର ଆନନ୍ଦରେ ପୂରି ଉଠିଲା । ତାର ମାଆ ନଥିଲେ । ସେହି ଅଭାବ ପୂର୍ତ୍ତି କରିବାକୁ ଘରେ କୌଣସି ଅନ୍ୟ ସ୍ତ୍ରୀ ଲୋକଙ୍କୁ ସେ ଦେଖି ନାହିଁ । ତାର ଜ୍ଞାନ ହେବା ପର୍ଯ୍ୟନ୍ତ ସେ ବାପାଙ୍କର ସ୍ନେହରେ ହିଁ ମଣିଷ ହୋଇ ପାରିଛି । କିନ୍ତୁ ସେହି ସ୍ନେହ ଯେ ତା ହୃଦୟରେ କେତେ ସ୍ଥାନ ଅଦ୍ୟାବଧି ଶୂନ୍ୟ ରଖିଥିଲା ତାହା ଏହି ମୁହୂର୍ତ୍ତରେ ସେ ଜାଣି ପାରିଲା । ଆଜି ପର ଘରର; ପର ପିଉସୀ ଯେପରି "ବୋହୂ ମାଆ" ଡାକି ଆଦର କରି ପାଖରେ ବସାଇଲେ ସେଥିରେ ପ୍ରଥମେ ସେ ଟିକିଏ ଲଜ୍ଜିତା ହୋଇ ପଡ଼ିଲା; କିନ୍ତୁ ପରେ ପରେ ଏହି ଡାକର ମାଧୁର୍ଯ୍ୟ ଏବଂ ଗୌରବ ତାର ନାରୀ ହୃଦୟରେ ବହୁକ୍ଷଣ ପର୍ଯ୍ୟନ୍ତ ପ୍ରତିଧ୍ୱନିତ ହେବାକୁ ଲାଗିଲା ।

ଦେଖୁ ଦେଖୁ ଦୁଇଜଣଙ୍କ ଭିତରେ କଥା ଜମି ଉଠିଲା । ଅଚଳା ଲଜ୍ଜିତ ମୁଖରେ ପ୍ରଶ୍ନ କଲା—ଆଚ୍ଛା ପିଉସୀ ମାଆ । ମୋତେ ଆପଣ ପାଖରେ ବସାଇଲେ; କିନ୍ତୁ ବ୍ରାହ୍ମ ବୋଲି ଘୃଣା ତ କଲେ ନାହିଁ ?

ପିଉସୀ ସଙ୍ଗେ ସଙ୍ଗେ କହି ଉଠିଲେ—ତୋତେ ଘୃଣା କରିବ କାହିଁକି ମାଆ ? ସାମାନ୍ୟ ହସିଦେଇ ପୁଣି କହିଲେ— ମୁଁ ହିନ୍ଦୁଘରର ବୋହୂ ବୋଲି କ'ଣ ଏଡ଼େ ନିର୍ବୋଧ, ଏତେ ନୀଚ ଯେ କେବଳ ଧର୍ମମତ ଅଲଗା ହେତୁ ତୋ ଭଳି ଝିଅକୁ ପାଖରେ ବସାଇବାକୁ ସଙ୍କୋଚ ବୋଧ କରିବ ? ଘୃଣା କରିବା ତ ବହୁ ଦୂରର କଥା, ମାଆ ।

ଅଚଳା ଅତ୍ୟନ୍ତ ଲଜ୍ଜିତା ହୋଇ କହିଲା ମୋତେ କ୍ଷମା କରନ୍ତୁ । ଆମ ବ୍ରାହ୍ମ ସମାଜ ବାହାରେ କୌଣସି ଝିଅ ସହିତ ମୁଁ ଆଜି ପର୍ଯ୍ୟନ୍ତ ମିଶି ପାରିନାହିଁ । କେବଳ ଶୁଣିଥିଲି ଯେ ସେମାନେ ଆମକୁ ବଡ଼ ଘୃଣା କରନ୍ତି, ଏପରିକି ଏକ ସଙ୍ଗରେ ବସିଲେ, ଗପିଲେ ଓ ଠିଆହେଲେ ସେମାନେ ଯାଇ ଗାଧୋଇ ପଡ଼ନ୍ତି ।

ପିଉସୀ କହିଲେ—ସେଇଟା ଘୃଣା ନୁହେଁ ମା, ଗୋଟାଏ ଆଗ୍ରହ । ଆମ ମାନଙ୍କର ବାହାର ଆଚରଣ ଦେଖି ତୁମମାନଙ୍କର ବୋଧହୁଏ ଏହିଭଳି ଅନେକ ସମୟରେ ମନେ ହେଉଥିବ କିନ୍ତୁ ସତ କହୁଛୁ ଆମେମାନେ କାହାକୁ ଘୃଣା କରୁନାହୁଁ । ଆମ ଗାଆଁରେ ଆଜି କାଲି ଯୁଦ୍ଧା ମୋର ଦେଢ଼େଇ ବଞ୍ଚି ଅଛନ୍ତି, ତାଙ୍କୁ କେତେ ଯେ ଭଲ ପାଏ, ତାହା କଥାରେ କହିହେବ ନାହିଁ ।

ସାମାନ୍ୟ ଅଟକିଯାଇ ସେ ପୁଣି କହିଲେ—ଆଚ୍ଛା, ଗୋଟାଏ କଥା ପଚାରିବ ମାଆ, ସୁରେଶ ମୁହଁରୁ ଶୁଣି, ନା ଆଜି ମୋତେ ଦେଖି ଏସବୁ କଥା ତୁମର ମନେ ପଡ଼ିଲା ?

ସୁରେଶ ନାମ ଶୁଣିବାକ୍ଷଣି ଅଚଳା ଧୀରେ ଧୀରେ କହିଲା—ଅନେକ ଦିନ ତଳେ ସେ କହୁଥିଲେ······

ପିଉସୀ ମାଆ, କହିଲେ—ତାର ସ୍ୱଭାବ ସେହିପରି, ଗୋଟାଏ କଥା ଥରେ ଶୁଣିଲେ ଆଉ ରକ୍ଷା ନାହିଁ । ତେଣିକି ପେଟରେ ଫୁଟୁଫୁଟୁ ହୋଇ ଫୁଟୁଥିବ । ଗୃହଆଡ଼େ କହି ନ ବୁଲିଲେ ତାକୁ ନିଦ ମାଡ଼େନାହିଁ । ପୂର୍ବରୁ ବ୍ରାହ୍ମମାନଙ୍କ ସହିତ ନ ମିଶିବା ଫଳରେ ସେମାନଙ୍କ ପ୍ରତି ତା'ମନରେ ଘୃଣା ଭାବ ବଢ଼ି ଚାଲିଥିଲା । ଏଥିପାଇଁ କେତେଥର ମହିମ ସଙ୍ଗେ ସେ ଝଗଡ଼ା ମଧ୍ୟ କରିଛି । କିନ୍ତୁ ମୁଁ ତ ତାକୁ ଏକ ପ୍ରକାର ମଣିଷ କରିଛି, ତେଣୁ ଭଲକରି ଜାଣେ ସଂସାରରେ କାହାକୁ ସେ ଘୃଣା କରେନାହିଁ । ଏଇ ଦେଖନ୍ତୁ ମାଆ, ଯେଉଁଦିନ-ଠାରୁ ତୁମମାନଙ୍କ ସହି ତାର ପରିଚୟ ହେଲା······

ସେ କଥାଟା କିନ୍ତୁ ଶେଷକରି ପାରିଲେ ନାହିଁ । ଅଚଳାକୁ ଚାହିଁବା ମାତ୍ରେ ଅଟକିଗଲେ । ସେ କେତେଦୂର ତାହାକୁ ଜାଣିଛନ୍ତି ନଜାଣି ଥିଲେ ସୁଦ୍ଧା; ଅଚଳାର ମନେହେଲା ଯେପରି ପିଉସୀ ମା'ଙ୍କୁ କିଛି ବୋଧହୁଏ ଅଜଣା ନାହିଁ । କିଛି ସମୟ ଧରି ଦୁଇଜଣ ନୀରବ ରହିବା ପରେ ଅଚଳା ନିଜେ ଲଜ୍ଜ୍ୟାକୁ କୌଣସିମତେ ଦମନ କରି ଅନ୍ୟ କଥା ଗପିବାକୁ ଆରମ୍ଭ କଲା । ସେ ପ୍ରଶ୍ନ କଲା— ଆପଣ ତେବେ ସୁରେଶବାବୁଙ୍କୁ ମଣିଷ କରିଥିଲେ ?

ପିଉସୀ ଆବେଗପୂର୍ଣ୍ଣ କଣ୍ଠରେ କହିଲେ—ହଁ ମାଆ, ମୁଁ ତାକୁ ମଣିଷ କରିଛି । ଦୁଇ ବରଷ ଦିନୁ ସେ ବାପ-ମାଆଛେଉଣ୍ଡ ହେଲା । ଏବେସୁଦ୍ଧା ମୋର ସେ କାମ ସରିନାହିଁ, କି ସେ ବୋଝ ମୋ ମୁଣ୍ଡରୁ ଓହ୍ଲାଇକରି କେହି ନେଇନାହିଁ । କାହାର ଦୁଃଖକଷ୍ଟ, କାହାର ଆପଦ, ବିପଦ, ସେ ସହ୍ୟ କରିପାରେ ନାହିଁ । ସେଥିପାଇଁ ପ୍ରାଣର ଆଶା ପର୍ଯ୍ୟନ୍ତ ନରଖି କେତେଥର ସେ ବିପଦ ମଝିକୁ ଡେଇଁ ପଡ଼ିଲାଣି । ମନରେ କେତେ ଭୟ ରଖି ମୁଁ ଯେ ଦିନଗୁଡ଼ିକ ବିତାଏ ସେ କଥା ତୁମକୁ କ'ଣ କହିବି ?

ଅଚଳା ଧୀରି ଗଳାରେ ପଚାରିଲା—ଫୟଜାବାଦର ଘଟଣାଟା ଆପଣ ଶୁଣିଛନ୍ତି ତ ?

ପିଉସୀ ମୁଣ୍ଡହଲାଇ କହିଲେ—ଶୁଣିଛି କ'ଣ ମା ? ଭଗବାନଙ୍କୁ ସଦାବେଳେ ଡାକୁଛି; ମୁଁ ବଞ୍ଚି ଥାଉ ଥାଉ ସେ ଅଘଟଣ ଦେଖିବାକୁ ମୋର ଆଖି ଦୁଇଟା ଯେପରି ନଥାଏ । କହୁ କହୁ ତାଙ୍କ କଣ୍ଠ କୋହରେ ଓଜନ ହୋଇ ଉଠିଲା ।

ତାଙ୍କର କାତର ପ୍ରାର୍ଥନା ଶୁଣି ଅଚଳାର ଆଖି ଦୁଇଟି ସଜଳ ହୋଇ ଉଠିଲା । କରୁଣ କଣ୍ଠରେ ସେ କହିଲା—ଆପଣ କାହିଁକି ତାଙ୍କୁ ମନା କରୁନାହାନ୍ତି ?

ପିଉସୀ ଆଖିର ଲୁହ ଭିତରେ ଟିକିଏ ହସିଦେଇ କହିଲେ—ମନା, ସେ କ'ଣ ମୋର ମନା ମାନିବ ? ଯାହାର ମନା ପ୍ରକୃତରେ ସେ ମାନିବ ସେହିଭଳି ଝିଅଟିଏ ମୁଁ ତ କେତେଦିନ ହେବ ଖୋଜି ବୁଲୁଛି, କିନ୍ତୁ ସେ ଝିଅ ତ ଏପରି ସେପରି ଝିଅ ହେଲେ ଚଳିବ ନାହିଁ । ଯେପରି ଝିଅ ଏପରି ବାଇଆ ମନକୁ ବାନ୍ଧି ପାରିବ; ସେହିପରି ଝିଅଟିଏ ଭଗବାନ ନ ଜୁଟାଇଲା ପର୍ଯ୍ୟନ୍ତ ମୁଁ ଅବା କେଉଁଠାରୁ ଖୋଜି ପାଇବି ମାଆ ?

ଅଚଳା କିଛିକ୍ଷଣ ନୀରବ ବସିରହିବା ପରେ ଧୀରେ ଧୀରେ ପଚାରିଲା— ଆପଣଙ୍କର ମନଲାଖି ଝିଅଟିଏ କେଉଁଠି କ'ଣ ପାଇପାରୁ ନାହାନ୍ତି ?

ପିଉସୀ କହିଲେ—ଏଇପରି ତତେ କହିଲି; ଭଗବାନ କୃପା ନକଲେ କେହି କୌଣସି ଦିନ ଖୋଜ କରି ପାଇପାରେ ନାହିଁ । ଯେଉଁ ସୁରେଶ କଦାପି ଏ କଥାରେ କାନ ଦିଏ ନାହିଁ, ସେ ନିଜେ ଆସି ସେଦିନ କହିଲା—ପିଉସୀ ମାଆ, ଏଥର ତୁମପାଇଁ ଗୋଟିଏ ଦାସୀ ଆଣି ହାଜର କରାଇ ଦେବ । ସେଦିନ ମୋର ଯେ କି ଆନନ୍ଦ ହୋଇଥିଲା ତାହା କଥାରେ କହିହେବ ନାହିଁ । ମନେ ମନେ ଆଶୀର୍ବାଦ କରି କହିଲି—ତୋ ତୁଣ୍ଡରେ ଫୁଲ ଚନ୍ଦନ ପଡୁ ବାବା, ସତରେ କ'ଣ ସେ ସୌଭାଗ୍ୟ ମୋର ହେବ ଯେ ଏଇ ଘରକୁ ପୁଅବୋହୂଙ୍କୁ ମୁଁ ବରଣ କରି ଆଣିବି ? କେତେଥର ତାକୁ କହିଲି ଆରେ ଥରକ ପାଇଁ ମୋତେ ଦେଖାଇ ଆଣ କିନ୍ତୁ କଦାପି ସେ ରାଜି ହୁଏନାହିଁ ବରଂ ହସି ହସି କହେ ପିଉସୀ ମାଆ, ତୁମେ ଏକାବେଳକେ ଯିବ ଯେ ଆଶୀର୍ବାଦ ଦେଇ ବିବାହର ଦିନ ସ୍ଥିର କରି ଆସିବ । ତେଣୁ ତାହା ପୂର୍ବରୁ ଯାଇ ଲାଭ ଅବା କ'ଣ ? ତାପରେ ଦିନେ ହଠାତ୍ ଆସି କହିଲା—ପିଉସୀ ମାଆ, ବୋହୂଦେଖି ଆଶୀର୍ବାଦ ଦେବା ତୁମ ଭାଗ୍ୟରେ ନାହିଁ । ମୁଁ ଆଜ ରାତି ଗାଡ଼ିରେ ପଶ୍ଚିମକୁ ଯାଉଛି । ଏଣୁତେଣୁ ଯେତେ ପଚାରିଲି କ'ଣ ଅସୁବିଧା ହେଲା; ମୋତେ ଖୋଲିକରି କହ, କିନ୍ତୁ ସେ କିଛି କହିଲା ନାହିଁ । ସେହିଦିନ ରାତି ଗାଡ଼ିରେ ଚାଲିଗଲା । ମନେ ମନେ ଭାବିଲି କେବଳ ମୋ ପୁଅର ଇଚ୍ଛାହେଲେ ସେ ହୋଇଯିବ ତାହା ନୁହେଁ ବରଂ ଝିଅଟିର ମଧ୍ୟ ଜନ୍ମ ଜନ୍ମାନ୍ତରର ତପସ୍ୟା ଫଳ ଥିବା ଦରକାର । କ'ଣ ମୁଁ କିଛି ଭୁଲ୍ କହୁଛି ମାଆ ?

ଅଚଳା ନୀରବରେ ମୁଣ୍ଡ ହଲାଇଲା । ଏତେ ସମସ୍ତ ପରେ ସେ ଜାଣି ପାରିଲା ଯେ ସେ ଝିଅଟି କିଏ; ତାହା ଏପର୍ଯ୍ୟନ୍ତ ପିଉସୀ ଜାଣିପାରି ନାହାନ୍ତି । ତାକୁ କପରି ଜଣା ପଡ଼ିଲା ଏତେ ଦିନ ପରେ ତାର ଛାତିରୁ ଗୋଟାଏ ମସ୍ତବଡ଼ ପଥରର ବୋଝ ଓହ୍ଲାଇଗଲା । କିନ୍ତୁ ପଥର ଯେ ସୁରୁଖୁରୁରେ ଖସି ଯାଇଛି ତା ନୁହେଁ ବରଂ ଛାତିରୁ ଅନେକ ଅଂଶ ଛିଣ୍ଡାଇ ଦେଇ ଯାଇଛି ଏହା ଯେପରି ସେ ଭଲ କରି ଅନୁଭବ କରିପାରିଲା ।

ଖିଆପିଆ ସରିବା ପରେ ପିଉସୀ ଅଚଳାକୁ ଅଲଗା ବସାଇ ଖୁଆଇସାରି ସଙ୍ଗରେ ଧରି ଘରର ପ୍ରତ୍ୟେକ କକ୍ଷ, ପ୍ରତିଟି ଜିନିଷପତ୍ର ବୁଲାଇ ବୁଲାଇ ଦେଖାଇ ଆଣି ହଠାତ୍ ଗୋଟାଏ ଦୀର୍ଘନିଃଶ୍ୱାସ ପକାଇ କହିଲେ—ମାଆ, ଭଗବାନଙ୍କର ଆଶୀର୍ବାଦରୁ ଅଭାବ ବୋଲି କିଛି ନାହିଁ । କିନ୍ତୁ ମୋର ଯେପରି ମନେହୁଏ ଏ ହେଉଛି ସେହି ଲକ୍ଷ୍ମୀହୀନ ବୈକୁଣ୍ଠପୁରୀ, ଏତିକି କହି ସେ ଯେପରି କାନ୍ଦି ପକାଇଲେ ।

ଏତିକିବେଳେ ଚାକର ଆସି ଖବର ଦେଲା, କେଦାରବାବୁ ଯିବାପାଇଁ ବାହାରେ ଅପେକ୍ଷା କରିଛନ୍ତି ।

ଅଚଳା ଯିବାପାଇଁ ପ୍ରଣାମ କରି ପାଦଧୂଳି ନେଉ ନେଉ ପିଉସୀ ମାଆ ତାକୁ ତଳୁ ଉଠାଇ ନେଇ ହାତ ଧରି ଚୁପ୍ ଚୁପ୍ କରି ପଚାରିଲେ —କିଛି ଯଦି ମନେ ନ କରିବୁ ତେବେ ଗୋଟାଏ କଥା ପଚାରିବି ମା ।

ଅଚଳା ତାଙ୍କ ମୁହଁକୁ ଚାହିଁ କେବଳ ଅଳ୍ପ ଟିକିଏ ହସି ଦେଲା ।

ପିଉସୀ ମାଆ କହିଲେ, ସୁରେଶ ନିକଟରୁ ମହିମ ଆଉ ତୋ ସମ୍ବନ୍ଧରେ ସବୁ କଥା ମୁଁ ଜାଣି ପାରିଛି । କିନ୍ତୁ ଗୋଟିଏ କଥା ଶୁଣି ଦୁଃଖିତ ହେଲି ଯେ ମହିମ ଗରିବ ବୋଲି କୁଆଡ଼େ ତୁମ ବାପା ରାଜି ହେଉ ନ ଥିଲେ । କେବଳ ତୁମରି ଜିଦ୍ ପାଇଁ······

ଅଚଳା କେବଳ ମୁଣ୍ଡ ହଲାଇ ସମ୍ମତି ଜଣାଇଲା ।

ପିଉସୀ ଆନନ୍ଦରେ ଅଚଳାକୁ କୁଣ୍ଢାଇ ପକାଇ କହିଲେ, ଏତିକି ତ ଦରକାର ମାଆ । ଯାହାକୁ ଭଲ ପାଇବ, ତାହା ତୁଳନାରେ ଧନ, ଜଉଡ଼ି, ଟଙ୍କା ପଇସା କେତେ ମାନ ! କିଛି ଦୁଃଖ କରିବୁ ନାହିଁ ମାଆ; ମୁଁ ମହିମକୁ ଖୁବ୍ ଭଲ ଭାବରେ ଜାଣେ । ତାହା ପାଇଁ ଯେତେ ଦୁଃଖ ସହିଲେ ସୁଦ୍ଧା ଦିନେ ନା ଦିନେ ଭଗବାନଙ୍କ ଆଶୀର୍ବାଦରୁ ସବୁ ସାର୍ଥକ ହେବ । ସେ ତୋର ଏତେବଡ଼ ତ୍ୟାଗକୁ କଦାପି ଅସମ୍ମାନ କରି ପାରିବ ନାହିଁ । ଏ ଭରସା ମୁଁ ତୋତେ ଦେଉଛି ।

ଅଚଳା ଆଉଥରେ ନଇଁପଡ଼ି ପିଉସୀଙ୍କର ପଦଧୂଳି ନେଲା ।

ପିଉସୀ ତାର ଗାଲରେ ସ୍ନେହର ଚୁମାଟିଏ ଦେଇ କହିଲେ—ଆହା ! ଏପରି ଗୋଟିଏ ବୋହୂ ଯଦି ମୁଁ ଘରକୁ ଆଣି ପାରନ୍ତି ନା ···

ସୁରେଶ ଆସି ଉଭୟଙ୍କୁ ଗାଡ଼ିରେ ବସାଇ ନମସ୍କାର କରି ବିଦାୟ ନେଇଗଲା । ସେ ଫେରିଯିବା ବେଳେ ଦଣ୍ଡିକ ପାଇଁ ଅଚଳା ତାକୁ ଚାହିଁ ଦେଇଥିଲା । ସେ ଚାହାଁଣୀରେ କି ଆକର୍ଷଣ ଥିଲା କେଜାଣି ଯାହା ଫଳରେ ତାର ଆଖିରେ ଲୁହ ଜମି ଉଠିଲା ।

ଗାଡ଼ି ଧୀରେ ଧୀରେ ଆଗେଇ ଚାଲିଥାଏ । ରାସ୍ତାର ଜନଗହଳି କମି ଆସିଲାଣି । ରାଜପଥକୁ ଚାହିଁ ରହି ଅଚଳାର ମନେ ହେଲା ସତେ ଯେପରି ସେ ଏତେ ସମୟ ଧରି ଗୋଟାଏ ସ୍ୱପ୍ନ ଦେଖୁଥିଲା । ସେହି ସ୍ୱପ୍ନ ସୁଖର କି ଦୁଃଖର ତାହା କହିବା ବଡ଼ କଠିନ । କେଦାରବାବୁ ଏ ପର୍ଯ୍ୟନ୍ତ ନୀରବ ହୋଇ ବସି ରହିଥିଲେ । ବୋଧହୁଏ ସୁରେଶର ଐଶ୍ୱର୍ଯ୍ୟର ଚେହେରା ତାଙ୍କ ମନରେ ଘୁରିବୁଲୁଥିଲା । ହଠାତ୍

ଗୋଟାଏ ଦୀର୍ଘ ନିଃଶ୍ୱାସ ସହ ତାଙ୍କ ଭିତରୁ ବାହାରି ପଡ଼ିଲା—ବାସ୍ତବିକ୍ ଯାହାକୁ କହନ୍ତି ବଳିବାନ୍........

ଝିଅ ତରଫରୁ କିନ୍ତୁ କୌଣସି ପ୍ରତ୍ୟୁତ୍ତର ସେ ପାଇ ପାରିଲେ ନାହିଁ । ତାଙ୍କ ମନ୍ତବ୍ୟ ପ୍ରତି ଅଚଳାର ଆଗ୍ରହ ନ ଦେଖି ସେ ନୀରବ ହୋଇ ବସି ରହିବାକୁ ବାଧ୍ୟ ହେଲେ ।

ତାଙ୍କ ଘର ନିକଟରେ ଗାଡ଼ି ବନ୍ଦ ହେବାମାତ୍ରେ କେଦାର ବାବୁଙ୍କର ଚମକ ଭାଙ୍ଗିଲା । ପୁଣି ଗୋଟାଏ ଦୀର୍ଘନିଃଶ୍ୱାସ ଛାଡ଼ି ଆପଣା ମନକୁ ମନ ସେ କହିବାକୁ ଲଗିଲେ—ସୁରେଶକୁ ଆମେ କେହି ଚିହ୍ନି ପାରିଲେ ନାହିଁ । ସେ ବାସ୍ତବିକ ଗୋଟାଏ ଦେବତା ।

ଆଜି ଅଚଳାର ବିବାହ ।

ବିଭାଘର ଗହଳି ଭିତରେ ମୁହୂର୍ତ୍ତିକ ପାଇଁ ସୁରେଶର ଦେଖା ମିଳିଥିଲା । ତାହାପରେ ସେ ଯେ କେଉଁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲା କେହି ଜାଣି ପାରିଲେ ନାହିଁ ।

ବିବାହ ସରିଗଲା । ଦିନେ ଦୁଇଦିନ ଅଚଳା ମନ ଭିତରେ ଦୁଃଖ ଦେଖା ଦେଇଥିଲା । ସୁରେଶ ଘରକୁ ନିମନ୍ତ୍ରଣ ରକ୍ଷା କରିବାକୁ ଯିବା ଅବସରରେ ପିଉସୀ ମାଆଙ୍କ କଥା ସେ କୌଣସି ମତେ ଭୁଲି ପାରୁ ନଥିଲା । ଆଜି ସେହି ଭାବନାରେ ପୂର୍ଣ୍ଣଛେଦ ପଡ଼ିଲା ।

ମହିମର ଅଟଳ ଗାମ୍ଭୀର୍ଯ୍ୟ ମଧ୍ୟ ଅକ୍ଷୁଣ୍ଣ ରହିଲା । ଆନନ୍ଦ କମ୍ପା କିମ୍ବା ନବାନନ୍ଦର ଚିହ୍ନ ତାହା ମୁହଁରେ ତିଳେମାତ୍ର ଦେଖା ଗଲା ନାହିଁ । ତଥାପି ଶୁଭଦୃଷ୍ଟି ସମୟରେ ଏଇ ମୁହଁ ଦେଖିବାକ୍ଷଣି ଅଚଳାର ଗୁଡି ଆନନ୍ଦ ଓ ମାଧୁର୍ଯ୍ୟରେ କୁମ୍ଭେମୋଟ ହୋଇଗଲା । ମନେ ମନେ ସ୍ୱାମୀର ପଦତଳେ ପ୍ରଣତ ହୋଇ ଭାବିଲା—ପ୍ରଭୁ, ଆଉ ମୋର କେଉଁଥିପାଇଁ ଭୟ ନାହିଁ । ତାଙ୍କ ସଙ୍ଗରେ ଯେଉଁଠାରେ ଓ ଯେଉଁପରି ରହିବ, ସେହି ହେବ ମୋର ସ୍ୱର୍ଗ । ଆଜିଠାରୁ ତାଙ୍କ କୁଡ଼ିଆ ହିଁ ମୋର ରାଜ ଉଆସ ।

ଅଚଳା ଶାଶୁଘରକୁ ଯିବାବେଳେ କେଦାରବାବୁ ଆଖିର ଲୁହ କୁଞ୍ଚକାନରେ ପୋଛୁ ପୋଛୁ କହିଲେ—ମାଆ, ମୁଁ ତୋତେ ଆଶୀର୍ବାଦ କରୁଛି, ସ୍ୱାମୀ ସହିତ ଘର ସଂସାର କରି ତୁ ସୁଖୀ ହୁଅ । ଭଗବାନ ତୋର ମଙ୍ଗଳ କରନ୍ତୁ—କହି କହି ପୁଣି ଆଖିର ଲୁହ ପୋଛି ପୋଛି ଘର ଭିତରକୁ ଚାଲି-ଗଲେ ।

ତାପରେ ଶ୍ରାବଣ ମାସର ଏକ ସ୍ୱଳ୍ପାଲୋକିତ ଦ୍ୱିପ୍ରହରରେ ଉପରେ ବର୍ଷଣକ୍ଳାନ୍ତ ମେଘାଚ୍ଛନ୍ନ ଆକାଶ ଓ ତଳେ ଫଙ୍କାଶୁଁ; କର୍ଦ୍ଦମାକ୍ତ, ପିଚ୍ଛିଳ ଗ୍ରାମ୍ୟ ପଥ ଉପରେ ପାଲିଙ୍କି ଚଢ଼ି ଅଚଳା ଆସି ସ୍ୱାମୀ ଗୃହରେ ପହଞ୍ଚିଲା ।

ବହିର ଛପା ଅକ୍ଷର ମାଧ୍ୟମରେ ପଲ୍ଲୀଗ୍ରାମ ସହିତ ତାର ପରିଚୟ ହୋଇଥିଲା । ସେହି ପରିଚୟରେ ଦୁଃଖ, ଦାରିଦ୍ର୍ୟର ସହସ୍ର ଇଙ୍ଗିତ ମଧ୍ୟରେ ଛନ୍ଦେ ଛନ୍ଦେ କବିତା ଥିଲା ଏବଂ କଳ୍ପନାର ସୌରଭ ମଧ୍ୟ ଥିଲା । ପାଲ୍‌କୀରୁ ଓହ୍ଲାଇ ଘର ଭିତରକୁ ଆସି ଚାରିଆଡ଼େ ଆଖି ବୁଲାଇ ଚାହିଁ ନେଇ, କାହିଁ କୌଣସି ସ୍ଥାନରେ ସେ କବିତ୍ୱର ସାମାନ୍ୟ ଗନ୍ଧ ସୁଦ୍ଧା ପାଇଲା ନାହିଁ । ତାର କଳ୍ପନାର ପଲ୍ଲୀଗ୍ରାମ ଯେ ବାସ୍ତବ କ୍ଷେତ୍ରରେ ଏପରି ନିରାନନ୍ଦ, ନିର୍ଜ୍ଜନ ଏବଂ ମାଟିଘରଟା ଯେ ଏପରି ସନ୍ତସନ୍ତିଆ, ଅନ୍ଧାରୁଆ, କବାଟ ଓ ଝରକା ଯେ ଏତେ କ୍ଷୁଦ୍ର, ଫଙ୍କାଶୁଁ, ଝାଟିମାଟି କାନ୍ଥ ଏବଂ ଉପରର ନୂଆଣିଆ ଚାଳ ଯେ ଏତେ କଦାକାର ହୋଇପାରେ, ତାହା ସେ ସ୍ୱପ୍ନରେ ସୁଦ୍ଧା ଭାବି ପାରି ନଥିଲା । ଏହି କଦର୍ଯ୍ୟ ଘରେ ସାରା ଜୀବନ ଚଳିବାକୁ ହେବ ଏହା ଜାଣିବାକ୍ଷଣି ତାର ଛାତି ଯେପରି ଫାଟିଯିବା ଭଳି ମନେ ହେଲା । ସ୍ୱାମୀସୁଖ, ବିବାହର ଆନନ୍ଦ, ସବୁ ଗୁଡ଼ିକ ଏକ ମୁହୂର୍ତ୍ତ ଭିତରେ ମାୟା ମରିଚିକା ଭଳି ତା ମନରୁ ଉଭେଇଗଲା । ଘରେ ଶାଶୁ ଶଶୁର ଯାଆ ନଣନ୍ଦ କେହି ହେଲେ ନ ଥିଲେ, ଦୂର ସମ୍ପର୍କୀୟ ଏକ ଆଈ ପୁଅ ବୋହୂଙ୍କୁ ବରଣ କରି ଆଣିବା ପାଇଁ ଅନ୍ୟ ଗ୍ରାମରୁ ଆସିଥିଲେ । ସେ ବିବାହ ସମୟର ବର-ବୋହୂଙ୍କଠାରେ ଆଜନ୍ମ ପରିଚିତ ସାଜ ସଜ୍ଜାର ଅଭାବ ଲକ୍ଷ୍ୟ କରି ଅବ୍ୟକ୍ତ ବିସ୍ମୟରେ କିଛିକ୍ଷଣ ଠିଆହୋଇ ରହିଲେ । ଅବଶେଷରେ ବୋହୂ ହାତଧରି ଘରକୁ ଆଣି ବସାଇ ଦେଲେ । ପାଇପଡ଼ିଶାରୁ ଯେଉଁ କେତେଜଣ ସ୍ତ୍ରୀଲୋକ ବୋହୂ ଦେଖିବାକୁ ଆସିଥିଲେ ସେମାନେ ଅଚଳାର ବୟସ ଅନୁମାନ କରି ମୁହଁ ଚାହାଁ ଚାହିଁ ହୋଇ ଚୁମି ଚୁମି ହସ ହସି ହେଲେ । ଫେରିଗଲାବେଳେ ସେମାନେ ଅସ୍ପଷ୍ଟ କଳରବ ମଧ୍ୟରେ "ବ୍ରାହ୍ମ" 'ମ୍ଳେଚ୍ଛ' ପ୍ରଭୃତି ମନ୍ତବ୍ୟ ମଧ୍ୟ ଦେବାକୁ ଭୁଲି ନଥିଲେ ।

ଅଳ୍ପ ସମୟ ଭିତରେ କଥାଟା ଗାଆଁ ସାରା ରାଷ୍ଟ୍ର ହୋଇଗଲା ଯେ, ମହମ ମେ୍ଲଚ୍ଛ ଝିଅଟିଏ ବାହାହୋଇ ଘରକୁ ବୋହୂ କରି ଆଣିଛି । ବିବାହ ପୂର୍ବରୁ ଅବଶ୍ୟ ଏହି ଭଳି ଏକ ଜନରବର ଆନ୍ଦୋଳନ ଏବଂ ଆଲୋଚନା କିଛି କିଛି ହୋଇ ଯାଇଥିଲା । ବର୍ତ୍ତମାନ ବୋହୂ ଦେଖି ସାରିବା ପରେ କାହାମନରେ ବିନ୍ଦୁ ମାତ୍ର ସନ୍ଦେହ ରହିଲା ନାହିଁ ଯେ ଯେଉଁ ଗୁଜବ ବିବାହ ପୂର୍ବରୁ ରଟିଥିଲା ତାହା ଷୋଳଅଣା ସତ୍ୟ ।

ପଡ଼ୋଶୀମାନେ ଚାଲିଗଲା ପରେ ଆଈ ଆସି କହିଲେ - ବୋହୂ, ତାହାହେଲେ ମୁଁ ଆଜି ଯାଉଛି । ଅନେକ ଦୂର ଯିବାକୁ ହେବ । ରାତି ହୋଇଯିବ । ତାପରେ ଘରକୁ ଫେରି ନ ଗଲେ ନାତଟି ...ଇତ୍ୟାଦି କହି କହି ସେ ରହିବା ନିମିତ୍ତ କୌଣସି ଅନୁରୋଧକୁ ଅପେକ୍ଷା ନକରି ଚାଲିଗଲେ । ଆଈ ଯେ ମୁହୂର୍ତ୍ତିଟିଏ ରହିଲେ ନାହିଁ ଏହି ବ୍ୟଥା ପାଇଁ ଅଚଳା ମନ ଛଟପଟ ହେବାକୁ ଲାଗିଲା । କିନ୍ତୁ ଆଈଙ୍କର ଏଥିପାଇଁ କିଛି ଦୋଷ ନଥିଲା । ଘଟଣା ଯେ ଏପରି ରୂପ ନେବ ଜାଣିଥିଲେ ହୁଏତ ସେ ମଧ୍ୟ ଆସି ନଥାନ୍ତେ । ପଡ଼ା ଗାଆଁରେ ଘରକରି ଏ ସକଳ ଚଳଣୀକୁ ଭୟ ନକରିବା ଲୋକ ଖୋଜି ପାଇବା ହୁଏତ ପଲ୍ଲୀ ଇତିହାସରେ ଦୁର୍ଲ୍ଲଭ ।

ଆଈ ଚାଲିଗଲେ । ଘରର ଚାକର ଯଦୁ ଏବଂ କଲିକତାରୁ ନୂଆ ଆସିଥିବା ଅଚଳାର ବାପ ଘରର ଦାସୀ ହରିଆ ମା ବ୍ୟତୀତ ଘରଟାରେ ଲୋକବୋଲି କେହି ନଥିଲେ । ଘରଟା ଖାଁ ଖାଁ ଲାଗୁଥାଏ । ଅଳ୍ପ ସମୟ ହେବ ବର୍ଷାହୋଇ ଛାଡ଼ିଯାଇ-ଥିଲା । ପୁଣି ବର୍ତ୍ତମାନ ଟପଟପ କରି ପାଣି ପଡ଼ିବାକୁ ଆରମ୍ଭ କଲାଣି । ହରିଆ ମା ପାଖକୁ ଆସି କହିଲା—ଏଇମିତି ଘର ମୁଁ ତ କେବେ କେଉଁଠି, ଦେଖିନାହିଁ । ଏତେ ଗୁଡ଼ାଏ ଘର, ଲୋକ ବୋଲି କାହିଁ କାହାର ଦେଖାନାହିଁ······

ଅଚଳା ତଳକୁ ମୁହଁ ପୋତି ସ୍ତବ୍ଧ ହୋଇ ବସିଥିଲା । ଅଜାଣତରେ ତା ପାଟିରୁ ବାହାରି ପଡ଼ିଲା—ହୁଁ ।

ହରିଆ ମାଆ ପୁଣି କହିଲା—ଜ୍ୱାଇଁଙ୍କୁ ତ ଦେଖୁନାହିଁ । ସେଇ ଯେ ଥରେ ଦେଖିଥିଲି........

ଅଚଳା ଏ କଥାର ମଧ୍ୟ ଉତ୍ତର ଦେଲାନାହିଁ ।

ଏହି ବଣ ଜଙ୍ଗଲ ପରିବୃତ୍ତ ଶୂନ୍ୟପୁରୀ ମଧ୍ୟରେ ହରିଆ ମାଆର ନିଜ ମନ ଯେତେ ଉଦ୍‌ଭ୍ରାନ୍ତ ହୋଇ ଉଠୁ ପଛକେ, ଯେହେତୁ ସେ ଅଚଳାକୁ ପିଲାବେଳରୁ

ମଣିଷ କରଆଣିଛୁ ତେଣୁ ତାକୁ ସାମାନ୍ୟ ଦଣ୍ଡ ଦେବା ପାଇଁ କହିଲ— ଭୟ କାହିଁକ ? ପ୍ରକୃତରେ ଆମେ ତ ଆସି ପାଣିରେ ପଡ଼ିନାହୁଁ ଯେ ଜ୍ୱାଇଁ ବାବୁ ଆସିଲେ ଆମକୁ ଉଦ୍ଧାର କଣ ବସିବେ । ମୁଁ ବେଡ୍ରୁଙ୍ଗ୍ ଖୋଲି ଶାଢ଼ୀ, ସାୟା ବାହାର କର ଦେଉଛୁ......

ବର୍ତ୍ତମାନ ସେସବୁ ଥାଉ; କନ୍ଦ ଅଚଳା ସେହିପର ମୁହଁ ତଳକୁ କର କାଠ ଭଳି ବସି ରହିଲ । ଜୀବନର ସମସ୍ତ ସ୍ୱାଦ-ଗନ୍ଧ ଯେପର ତା'ଠାରୁ ଉଭେଇ ଯାଇଥିଲ ।

ବର୍ଷା ମାତ୍ର ଆସିଲ । ସେହି ବର୍ଦ୍ଧିତ ବେଗ ବାରଧାର ମଝିରେ କେତେବେଳେ ଯେ ଦନ ଶେଷର ଅନ୍ତ୍ୟ ଆଲୋକ ନଭିଗଲ କେତେବେଳେ ଶ୍ରାବଣର ଗାଢ଼ ମେଘାବୃତ୍ତ ଆକାଶ ଭେଦ କର ମଳନ ପଲ୍ଲୀ ଗୃହରେ ସନ୍ଧ୍ୟା ନଇଁ ଆସିଲ; ଏସବୁ କଛୁ ସେ ଜାଣି ପାରିଲ ନାହିଁ । ଅନ୍ଧକାର ଘରର କୋଣେ କୋଣେ କେବଳ ନିଃଶବ୍ଦରେ ଗାଢ଼ତର ହେବାକୁ ଲାଗିଲ । ଯଦୁ ଆସି ଘର ମଝିରେ ଲଣ୍ଠନଟି ରଖିଦେଇଗଲ ।

ହରଆ ମାଆ ପଚ୍ଚରିଲ—ଜ୍ୱାଇଁବାବୁ କୁଆଡ଼େ ଗଲେ କ ?

କେଜାଣି, କହିଯଦୁ ଫେରିବାକୁ ଉଦ୍ୟତ ହେଲ ।

ତାହାଠାରୁ ସଂକ୍ଷିପ୍ତ ଏବଂ ଶୀଘ୍ର ଉତ୍ତର ପାଇ ହରଆ ମାଆ ଶଙ୍କିତ ହୋଇ କହି ଉଠିଲ— କେଜାଣି କପର ଲୋକ । ବାହାରେ କେଉଁଠି ନାହାଁନ୍ତି ?

: ନା, କହି ଯଦୁ ଗ୍ଭଲିଗଲ । ସେ ଯେ ସେମାନଙ୍କ ଆସିବା ହେତୁ ଆନନ୍ଦିତ ନୁହେଁ ତାହା ବେଶ୍ ବୁଝାପଡ଼ିଲ । ହରଆ ମାଆ ଭୟପାଇ ଅଚଳା ନିକଟକୁ ଘୁଞ୍ଚି ଆସି ବ୍ୟାକୁଳ କଣ୍ଠରେ କହିଲ—ଘଟଣା କପର ମୋତେ ଭଲ ଜଣାପଡୁ ନାହିଁ । ଦୁଆର ବନ୍ଦ୍ କର ଖିଲ୍‌ଟକ ଦେଇ ଦେବକ ?

ଅଚଳା ଆଶ୍ଚର୍ଯ୍ୟ ହୋଇ କହିଲ—ଖିଲ୍‌ଟକ କାହିଁକ ଦେଇଦେବୁ ?

ହରଆ ମାଆ ପିଲାଦନରୁ ଗାଆଁ ଛାଡ଼ି କଲିକତାକୁ ଆସିଥିଲ । ଆଉ କେବେ ଯାଇନାହିଁ । ପଲ୍ଲୀ ଗ୍ରାମରେ ଚୋର, ଡକାୟତ, ଠକ ପ୍ରଭୃତି ଗପ ବ୍ୟତୀତ ଆଉ ସବୁ ସ୍ମୃତି ତାହା ନିକଟରେ ଝାପ୍‌ସା ହୋଇ ଯାଇଛି । ବାହାରର ବହଳ ଅନ୍ଧାରକୁ ଦେଖି ଅଚଳା ଦେହକୁ ଜାକି ଜୁକି ହୋଇ ଆଉଜି ସେ ଚୁପ୍ ଚୁପ୍ କର କହିଲ—ଅପା, ମଫସଲ ପଡ଼ା ଗାଁ କଥା ତୁମେ କଛୁ ଜାଣି ନ......

ଏହି ସମୟରେ ମଟି ଅଗଣାରୁ ଡାକ ଶୁଭିଲା ଭଉଜ, କେଉଁଠି କଓ ? କହି କହି ଗୋଟିଏ କୋଡ଼ିଏ, ଏକୋଇଶି ବର୍ଷର ତନୁପାତଳି ଝିଅଟିଏ ପାଣିରେ ଭିଜି ଭିଜି ଆସି ଦୁଆର ବନ୍ଧ ନିକଟରେ ଠିଆ ହୋଇ କହିଲା—ଆଗ ଗୋଟାଏ ନମସ୍କାର କରିଦିଏ, ତାପରେ ଯାଇ ଲୁଗାପଟା ବଦଳାଇବି । ଏହାପରେ ଘର ଭିତରେ ପଶି ଅଚଳାର ପାଦ ଛୁଇଁ ପ୍ରଣାମ ଜଣାଇଲା ଏବଂ ଲଣ୍ଠନଟା ଅଚଳାର ମୁହଁ ପାଖକୁ ଟେକି ଧରି କ୍ଷଣକାଳ ପର୍ଯ୍ୟନ୍ତ ଏକ ଦୃଷ୍ଟିରେ ନିରୀକ୍ଷଣ କରି ଚିତ୍କାର କରି କହି ଉଠିଲା—ଭାଇ, ଭାଇ ।

ମହିମ ଘରେ ପହଞ୍ଚି ଯାଇ ଏହି ଝିଅଟିକୁ ଆଣିବାକୁ ଯାଇଥିଲା । ଅନ୍ୟ ଘରେ ଥାଇ ସେ ଉତ୍ତର ଦେଲା - କ'ଣ ହେଲା ମୃଣାଳ ?

: ଏ ଆଡ଼କୁ ଟିକିଏ ଆସିଲ ।

ମହିମ ଘରର ଦ୍ୱାରବନ୍ଧ ନିକଟରେ ଠିଆହୋଇ କହିଲା—କ'ଣ ହେଲା ?

ମୃଣାଳ ଲଣ୍ଠନ ଆଲୁଅରେ ଅଚଳାର ମୁହଁକୁ ଆଉ ଥରେ ଦେଖିନେଇ କହିଲା— ତୁମେ ଜିତି ଯାଇଛ ଭାଇ । ମୋତେ ବାହା ହୋଇଥିଲେ ଠକାମିରେ ପଡ଼ି ଯାଇଥାନ୍ତ ସିନା !

ମହିମ ବାହାରେ ଥାଇ ଉତ୍ତର ଦେଲା—ତୁ କ'ଣ ମୋ କଥା ଶୁଣିବୁ ନାହିଁ ? ପୁଣି ସେଇ ଥଟ୍ଟା ଆରମ୍ଭ କରିଦେଲୁ ମୃଣାଳ ?

: ବାଃ, ଥଟ୍ଟା କ'ଣ କଓ ? ଅଚଳା ମୁହଁକୁ ଚାହିଁ ରହି ମୁରୁକି ମୁରୁକି ହସି କହିଲା— ନୂଆବୋଉ ସତ କହୁଛୁ । ଆଦୌ ମିଛ ନୁହେଁ । ଆଚ୍ଛା ତୁମ ବରକୁ ପସନ୍ଦ କରିଥିଲେ କି ନାହିଁ ? ପତ୍ରର ଦେଖି ମୋତେ ଏହାପୂର୍ବରୁ ସେ ପସନ୍ଦ କରିଥିଲେ କି ନାହିଁ ?

ମହିମ କହିଲା— ତାହାହେଲେ ତୁ ଗପୁଥା । ମୁଁ ଯାଉଛୁ ।

ମୃଣାଳ କହିଲା—ଯାଉନ । ତୁମକୁ କିଏ ବାନ୍ଧି ରଖିଛୁ କି ? ଅଚଳାର ଚିବୁକକୁ ପରମ ସ୍ନେହରେ ହଲାଇ ଦେଇ କହିଲା—ଆଚ୍ଛା ନୂଆ'ଉ, ତୁମର ହିଂସା ହଉଛୁ କି ? ଏ ଘରେ ମୋର ବୋହୂ ହେବାର କଥା କିନ୍ତୁ ମୋ ପୋଡ଼ାମୁହିଁ ମାଆ ଭାଇଙ୍କ କାନରେ କି ମନ୍ତ୍ର ଫୁଙ୍କି ଦେଲା କେଜାଣି ମୁଁ ତେଣିକି ଭାଇଙ୍କ ଆଖିରେ ବିଷ ହୋଇ ଉଠିଲି । ଆରେ ଯଦୁ, ଘୋଷାଲ ମହାଶୟ କୁଆଡ଼େ ଗଲେ କରେ ?

ଯଦୁ କହିଲା—ପୋଖରୀକୁ ହାତ ଗୋଡ଼ ଧୋଇବାକୁ ଯାଇଛନ୍ତି ।

: ଏଁ ! ଏଇ ଅନ୍ଧାରରେ ପୁଣି ପୋଖରୀକୁ; ମୃଣାଳର ହସ ହସ ମୁହଁ ମୁହୂର୍ତ୍ତିକ ଭିତରେ ଦୁଃଶ୍ଚିନ୍ତାରେ ମଳିନ ପଡ଼ିଗଲା । ବ୍ୟସ୍ତ ହୋଇ ସେ କହିଲା—ସବୁ ; ଆଲୁଅ ନେଇ ଟିକିଏ ପୋଖରୀକୁ ଯାଆନ୍ତ ବାବା । ବୁଢ଼ାଲୋକ । ଅନ୍ଧାରରେ କେଉଁଠି ପାଦ ଖସିଯାଇ ଗୋଡ଼ ହାତ ଭାଙ୍ଗି ବସିବେ······

ପରକ୍ଷଣରେ ଅଚଳା ମୁହଁକୁ ଚାହିଁ ଲଜ୍ଜିତ ଭାବରେ ହସି କହିଲା -କି ପୋଡ଼ା କପାଳ ମୋର ନୂଆଁଉ । କେଉଁଠାରୁ ଗୋଟାଏ ବାସ୍ତରି ବର୍ଷର ବୁଢ଼ା ଧରି ଆଣି ତାର ହାତରେ ମୋତେ ଟେକି ଦେଲେ । ତାର ସେବା କରୁ କରୁ ଏବଂ ତାକୁ ସମ୍ଭାଳୁ ସମ୍ଭାଳୁ ମୋର ଜୀବନ ଗଲା । ଆଚ୍ଛା ଆଗ ସେ ଘରେ ଯାଇ ଓଦା ଲୁଗାଟା ପାଲଟି କରି ଆସେ କି ତାପରେ ତୁମ ସହିତ କଥା ହେବ । ସଉତୁଣି ବୋଲିମୋ ଉପରେ ରାଗ କରିବ ନାହିଁ । ଯଦି ଚାହିଁବ ତେବେ ବୁଢାଟାକୁ ପଛକେ ତୁମକୁ ଭାଗକୁ ଦେଇ ଦେବ । କହି ହସ ଛଟକରେ ସାରା ଘରଟା ଆଲୋକିତ କରିଦେଇ ସେ ତରତର ହୋଇ ଚାଲିଗଲା ।

ଏ ପ୍ରକାର ଥଟ୍ଟା ତାମସା ସହିତ ଅଚଳା ଆଦୌ ଆଗରୁ ପରିଚିତ ନଥିଲା । ସମସ୍ତ ପରିହାସ ତା' ନିକଟରେ ଏପରି ଅସୁନ୍ଦର ଓ କରୁଣ ହୋଇ ଉଠିଥିଲା ଯେ ଲଜ୍ଜ୍ୟାରେ ସେ ସମ୍ପୂର୍ଣ୍ଣ ସଙ୍କୁଚିତ ହୋଇ ଉଠିଲା । ଏପରି ନିର୍ଲଜ ପ୍ରଗଲ୍‌ଭତା ଯେ, କୌଣସି ସ୍ତ୍ରୀ ଲୋକ ନିକଟରେ ସମ୍ଭବ ହୋଇପାରେ ତାହା ସେ ଭାବି ପାରିଲା ନାହିଁ । ତେଣୁ ସମସ୍ତ ରସିକତା ଯାଇ ତାର ଆଜନ୍ମଶିକ୍ଷା ଓ ସଂସ୍କାରର ଭିତ୍ତି ଭୂମିରେ ଆଘାତ କରିବାକୁ ଲାଗିଲା । ତଥାପି ତାହାର ମନେ ହେଲା, ଯାହା ହେଉ ସେ ଆସିବା ଫଳରେ ନିଜର ଅର୍ଦ୍ଧେକ ନିର୍ବାସନ ଜନିତ ବେଦନା ଯେପରି ଦୂର ହୋଇଗଲା । ତାପରେ ସେ କିଏ ? କେଉଁଠାରୁ ଆସିଲା ? ତାହା ସହିତ କି ସମ୍ବନ୍ଧ ? ସମସ୍ତ ଜାଣିବା ପାଇଁ ଅଚଳା ଆଗ୍ରହୀ ହୋଇ ଉଠିଲା ।

ହରିଆ ମାଆ ପଚାରିଲା—ଏ ଝିଅଟି କିଏ ଅପା ? ବଡ଼ ମେଳାପୀଛ ?

ଅଚଳା ମୁଣ୍ଡ ହଲାଇ କେବଳ କହିଲା—ହଁ ।

ଓଦାଲୁଗା ପାଲଟି ଦେଇ ମୃଣାଳ ଏ ଘରକୁ ଆସି କହିଲା -କେବଳ ଥଟ୍ଟା ତାମସା କରି ଚାଲିଗଲି ସିନା ନୂଆବୋଉ, ହେଲେ ମୋର ଅସଲ ପରିଚୟଟା ବର୍ତ୍ତମାନ ସୁଦ୍ଧା ଦେଇ ପାରିନାହିଁ । କ'ଣ ଅବା ପରିଚୟ ଅଛି ଯେ ଦେବି ? ତୁମର ସିଏ ବର ତାଙ୍କୁ ପିଲା ଦିନରୁ ବଡ଼ ଭାଇ ବୋଲି ଡାକି ଆସିଛି, ମୋ ବାପା ଆଉ ତୁମ ଶଶୁର ଦୁହେଁ ବନ୍ଧୁ ଥିଲେ । ହଠାତ୍ ଦିନେ ଗାଡ଼ି ଚାପା ପଡ଼ି, ଡାହାଣ ହାତଟା ଭାଙ୍ଗି ଯାଇ ଯେତେବେଳେ ବାପାଙ୍କର ଚାକିରୀଟା ଚାଲିଗଲା ଯେତେବେଳେ

ତୁମ ଶଶୁର ତାଙ୍କୁ ଆଣି ଏହି ଘରେ ଆଶ୍ରୟ ଦେଇଥିଲେ । ଏହି ଦୁର୍ଘଟଣାର ଅନେକ ବର୍ଷ ପରେ ମୁଁ ଜନ୍ମ ହୁଏ । ଭାଇ ସେତେବେଳକୁ ଆଠ ବର୍ଷର ପିଲା । ତାଙ୍କ ମାଆ ତ ତାଙ୍କୁ ଜନ୍ମ ଦେଇ ମରି ଯାଇଥିଲେ ଏବଂ ମୋର ମାଆ ଏ ଘରକୁ ଆସିବା ପରେ ଘରର କର୍ତ୍ତ୍ରୀ ହୋଇ ପଡ଼ିଲେ । ମୋର ଜନ୍ମର କିଛିଦିନ ପରେ ବାପା ମରିଗଲେ । ସେହିଦିନ ଠାରୁ ଆମେ ଏ ଘରେ ରହିଗଲୁ । ଏଇ ପାଞ୍ଚ ବର୍ଷ ହେବ ପଲାଶୀ ଗାଆଁ ର ଘୋଷାଲ ଘରେ ବାହା କରାଇ ଦେଇ ଭାଇ ମୋତେ ଦୂର କରିଦେଲେ । ମାଆ ଅବା ବଞ୍ଚିଥିଲେ ଯାହାହେଉ ଟିକିଏ ଜୋର ହେଲେ ଥାଆନ୍ତା ।

: ବଡ଼ ବୋହୂ, କ'ଣ ଏହି ଘରେ ଅଛନ୍ତି କି ? କହି ଜଣେ ଗୌର ବର୍ଣ୍ଣର ବୟସ୍କ ଭଦ୍ରଲୋକ ଦ୍ୱାର ନିକଟରେ ଆସି ଠିଆ ହେଲେ ।

ମୃଣାଳ କହିଲା—ଆସ, ଆସ । ଅଚଳା ଆଡ଼କୁ ଚାହିଁ ଚୁପି ଚୁପି ହସି କହିଲା ନୂଆବୋଉ, ଏଇ ହେଉଛନ୍ତି ମୋର ସ୍ୱାମୀ । ଆଚ୍ଛା ତୁମେ କହତ ଭଉଣୀ, ଏହି ବାୟସ୍ତରି ବର୍ଷର ବୁଢ଼ା ସଙ୍ଗରେ କ'ଣ ମୋତେ ମାନୁଛି ? ଏ ଜନ୍ମର ସମସ୍ତ ରୂପ ଯୌବନ କ'ଣ ମାଟି ହୋଇଗଲା ନାହିଁ ଭଉଣୀ ?

ଅଚଳା କ'ଣ ଅବା ଉତ୍ତର ଦେବ ? କେବଳ ମଥା ଟେକି ଥରକ ପାଇଁ ଚାହିଁ ଦେଖିଲା ।

ଭଦ୍ରଲୋକଙ୍କର ନାମ ଭବାନୀ ଘୋଷାଲ । ସେ ହସି ଦେଇ କହିଲେ ନୂଆବୋଉ ଆପଣ ଆଦୌ ବିଶ୍ୱାସ କରିବେ ନାହିଁ । ସବୁ ମିଛ କଥା । ସବୁ କେବଳ ଥଟ୍ଟା । ମୋର ବୟସ ତ ମାତ୍ର ବାଉନ ବର୍ଷ ।

ମୃଣାଳ କହିଲା—ଚୁପ୍ କରନ୍ତୁ । ମୋ ଭାଇ ଯେ ମୋର କି ଶତ୍ରୁ, ତାହା ଭଗବାନ ଜାଣନ୍ତି । ସବୁ ଦିଗରୁ ସେ ମୋତେ ମାଟି କରି ଦେଇଛନ୍ତି । ଆଚ୍ଛା, ଏହି ବୁଢ଼ାର ହାତରେ ସମର୍ପି ଦେବା ଅପେକ୍ଷା, ମୋର ହାତ ଗୋଡ଼, ବାନ୍ଧି ବେକରେ ପଥର ଝୁଲାଇ କୂଅରେ ପକାଇ ଦେବାଟା କ'ଣ ଭଲ ହୋଇ ନ ଥାନ୍ତା । ତୁମେ ସତ କହିଲ ଭଉଣୀ ?

ଅଚଳା ଲାଜରେ ସଢିଯାଇ ନୀରବ ହୋଇ ବସି ରହିଲା ।

ଘୋଷାଲ ବାବୁ, ଧୀରେ ଧୀରେ ଘର ଭିତରେ ପ୍ରବେଶ କରି ଅଚଳାର ଲଜ୍ଜ୍ୟା ଅବନତ ମୁହଁକୁ ଦେଖି ହଠାତ୍ ଗୋଟାଏ ସ୍ୱସ୍ତିର ନିଃଶ୍ୱାସ ମାରି କହିଲେ— ବଞ୍ଚାଇ ଦେଲ ନୂଆଉ । ଏ ଉଦ୍ଧର୍ଣ୍ଣୀର ଅହଂକାର ଏତେଦିନ ପରେ ତୁମ୍ଭେ

ଜାଣ ଚୂନା କର ଦେଇ ପାରଲ । ରୂପର ଅହଂକାରରେ ସେ ଧରାକୁ ସରା ସରା ବୋଲ ମଣୁଥିଲା ।

ନଜ ସ୍ତ୍ରୀକୁ ଲକ୍ଷ୍ୟ କର କହିଲେ—କ'ଣ ଏଥର ହେଲ ତ ? ବଣରେ ଆଜି ପର୍ଯ୍ୟନ୍ତ ବିଲୁଆ ରଜା ହୋଇ ଆସିଥିଲ । ପ୍ରକୃତରେ ସୌନ୍ଦର୍ଯ୍ୟ କାହାକୁ କୁହନ୍ତି; ଥରେ ଆଖି ଖୋଲ ଦେଖି ପାରୁଛ ତ ?

ମୃଣାଳ କହିଲା—ସେସ୍ବା ନୁହେଁ ଆଉ କ'ଣ ? ମୋର ଅହଂକାର ଭାଙ୍ଗିବାକୁ ସାଧ୍ୟ କାହାର ଅଛି ? କହି ସେ ସ୍ୱାମୀ ପ୍ରତି ଯେଉଁ ଗୋପନ କଟାକ୍ଷ ହାଣିଲା ତାହା ଅଚଳା ଦୃଷ୍ଟିରୁ ବାଦ୍ ଗଲାନାହିଁ ।

ଘୋଷାଲ ବାବୁ ହସି ହସି କର କହିଲେ—ଶୁଣିଲ ତ ନୂଆବୋଉ । ଟିକଏ ସାବଧାନରେ ରହିବ । ଦୁଇଜଣଙ୍କର ଯେଉଁ ଭାବ, ଯେଉଁ ସିବା ଆସିବା, ତାହା କହିବାର କଥା ନୁହେଁ । ମୁଁ ତ ବାସ୍ତର ବର୍ଷର ବୁଢ଼ା, ସେ ଦୁହିଁଙ୍କ ମଝିରେ ରହିଲେ କେତେ ନ ରହିଲେ କେତେ ? ନଜ ମଣିଷଟିକୁ ନଜର ଦେଇ ରଖିବ—ମଙ୍ଗଳାଭିଳାଷୀ ବୁଢ଼ାର ଏତିକ ମାତ୍ର ତୁମକୁ ଅନୁରୋଧ ।

: ସାରା ରାତି ଏଇପର କଥା ହେଉଥିବୁ କ ମୃଣାଳ ?

: ଆଉ କ'ଣ କରବ ଭାଇ ?

: ବୋଷାଇ ଘରକୁ ଯିବୁନାହିଁ କ ?

ମୃଣାଳ ବଲ ପଡ଼ି କହିଲା—କ ଭୁଲ୍ ହୋଇଗଲା ଭାଇ । ମୋର ଅଗ ପୂଜାରୀକୁ ଦେଖିଆସିବା ଉଚିତ୍ ଥିଲା । ଆଚ୍ଛା ତୁମେ କୁଆଡ଼େ ଯିବ ଯଦି ଯାଅ ଆମେ ଯାଉଛୁ ।

ମହିମ ପ୍ରଶ୍ନ କଲା—ଆମେ ? କଏ, କଏ ?

ମୃଣାଳ କହିଲା—ମୁଁ ଆଉ ମୋର ନୂଆବୋଉ ।

ମହିମ ଏବଂ ଭବାନୀ ବାବୁ ବାହାରକୁ ଚାଲି ଗଲେ ।

ମୃଣାଳ କହିଲା—ମୋର ଦୁଇଦିନ ଆଗରୁ ନୂଆ'ଉ ଆସିବା ଉଚିତ୍ ଥିଲା । କିନ୍ତୁ ଶାଶୁଙ୍କର ଧର୍ମ କାଣ ହେତୁ କୌଣସି ପ୍ରକାରରେ ଘର ଛାଡ଼ି ଆସିପାରଲ ନାହିଁ । ଆଚ୍ଛା, ତୁମେ ବର୍ତ୍ତମାନ ଲୁଗା ବଦଳାଇ ପ୍ରସ୍ତୁତ ହୁଅ, ମୁଁ ଏହିକ୍ଷଣି ଆସି ତୁମକୁ ସଙ୍ଗରେ ନେଇଯିବ । କହି ମୃଣାଳ ବୋଷାଇ ଘରଆଡ଼କୁ ଆଗେଇ ଚାଲିଲା ।

ସେତେବେଳକୁ ବର୍ଷା ଛାଡ଼ି ଯାଇଥିଲା ଏବଂ ଗାଢ଼ ମେଘ ଅପସର ଯାଇ ନବମୀ ଜ୍ୟୋତ୍ସ୍ନାରେ ଆକାଶ ଅନେକ ପରିମାଣରେ ନିର୍ମଳ ହୋଇ ଉଠିଥିଲା ।

ସୋଷାଇର ସମସ୍ତ ବନ୍ଦୋବସ୍ତ କରସାରି ମୃଣାଳ ଅଚଳା ନିକଟରେ ଆସି ବସିଲା । ତାହାର ଗୋଟାଏ ହାତ ନିଜ ହାତ ପାପୁଲିରେ ମୁଠାଇ ଧରି କହିଲା—ନୂଆ ବୋଉ ଠାରୁ ଭଉଣୀ ଡାକଟା ଭଲ କି ନାହିଁ କହିଲ ?

ଅଚଳା ମୃଦୁ ସ୍ୱରରେ କହିଲା ହୁଁ ।

ମୃଣାଳ କହିଲା ସମ୍ପର୍କରେ ତୁମେ ବଡ଼ ହେଲେ କ'ଣ ହେବ ବୟସରେ କିନ୍ତୁ ମୁଁ ବଡ଼ । ସେଥିପାଇଁ ତୁମେ ମୋତେ ମୃଣାଳ ଅପା ଡାକଲେ କେମିତି ହୁଅନ୍ତା ?

ଅଚଳା କହିଲା—ବେଶ୍ ଭଲ ହୁଅନ୍ତା ।

ମୃଣାଳ କହିଲା—ଆଜି ତୁମକୁ ସୋଷାଇ ଘର ଦେଖାଇ ଆଣିଲି । କିନ୍ତୁ କାଲି ଭଣ୍ଡାର ଘରର ଚାବି କାନି ଅଗରେ ବାନ୍ଧି ଦେବି ।

ଅଚଳା କହିଲା—ମୋର ଚାବି ଦରକାର ନାହିଁ; ଅପା ।

ମୃଣାଳ ହସି କହିଲା—ଦରକାର ନାହିଁ ? ଏ କି କଥା ? ଭଣ୍ଡାର ଘରଟା କ'ଣ ତୁଚ୍ଛ ଜିନିଷ କି ଅପା ? କହୁଛ ଚାବି ରଖିବାର ଆବଶ୍ୟକତା ନାହିଁ ? ଘରଣୀର ରାଜତ୍ୱ ଅଞ୍ଚଳର ତାହା ହେଉଛି ପରା ରାଜଧାନୀ ।

ଅଚଳା କହିଲା—ରାଜଧାନୀ ହେଲେ ହେଉ ପଛକେ ମୋର ତହିଁକି ଲୋଭ ନାହିଁ ! କିନ୍ତୁ ତୁମ ଉପରେ ଭାରି ଲୋଭ । ତୁମକୁ କିନ୍ତୁ ଏତେ ଶୀଘ୍ର ମୃଣାଳ ଅପା ମୁଁ ଛାଡ଼ି ଦେଉନାହିଁ ଯେ···

ମୃଣାଳ ଦୁଇ ହାତରେ ଅଚଳାକୁ କୁଣ୍ଢାଇ ଧରି କହିଲା—ସଉତୁଣୀକୁ ଝାଡ଼ୁ ମାରି ବିଦାୟ କରି ନ ଦେଇ ଘରେ ରଖିବାକୁ ଚାହୁଁଛ ଏ ତୁମର କିଭଳି ବୁଦ୍ଧି ନୂଆ ବୋଉ ?

ଅଚଳା ଆସ୍ତେ ଆସ୍ତେ କହିଲା—ତୁମର ଏହି ଥଟ୍ଟା ଗୁଡ଼ାକ ମୋତେ ଭାରି ଭଲ ଲାଗୁଛି ଅପା, ଏ ଦେଶରେ କ'ଣ ସମସ୍ତେ ଏହିପରି ଥଟ୍ଟା ତାମସା କରନ୍ତି ?

ମୃଣାଳ ଖିଲ ଖିଲ ହୋଇ ହସି ଉଠିଲା—କହିଲା—ନା ଗୋ ନୂଆବୋଉ । ସମସ୍ତେ କରନ୍ତି ନାହିଁ , କେବଳ ଥଟ୍ଟା ମୁଁ କରେ । ସମସ୍ତେ ଏ ଜିନିଷର ମଜା କେଉଁଠୁ ପାଇବେ ଯେ କହି ବସିବେ ?

ଅଚଳା କହିଲା—ପାଇଲେ ମଧ୍ୟ ମୋ ମୁହଁକୁ ଏ ମିତାକ ଆସିପାରିବ ନାହିଁ । କୌଣସି ଭଦ୍ର ମହିଳା ଏପରି କଥା ଉଚ୍ଚାରଣ କରିପାରନ୍ତି ବୋଲି, ଆମ କଲିକତାରେ ଅଧିକାଂଶ ଚନ୍ତା ମଧ୍ୟ କରିପାରିବେ ନାହିଁ ।

ମୃଣାଳ ଏଥିରେ ଆଦୌ ଲଜ୍ଜିତ ହେଲାନାହିଁ ବରଂ ଅଚଳାକୁ ଗାଢରେ ଆଦର ନିବିଡ଼ ଭାବରେ ଜଡ଼ାଇ ଧରି କହିଲା—କହିଲ ନୂଆବୋଉ, ତୁମ ସହରରେ କେତେଜଣ ଭଦ୍ର ମହିଳା ଏପରି ତୁମକୁ ଗାଢରେ କୁଣ୍ଢାଇ ଧରି ପାରନ୍ତି ? ସମସ୍ତେ କ'ଣ ସବୁ କାମ କରନ୍ତି ? ତୁମକୁ କେତେ କ୍ଷଣ ଅବା ଦେଖିଲି ଯେ, ଏହା ଭିତରେ ମତେ ଲାଗୁଛି ମୋର ଭଉଣୀଟିଏ ନଥିଲା ବୋଲି ବୋଧହୁଏ ଭଗବାନ ମୋତେ ଭଉଣୀଟିଏ ଦେଲେ । ଏହା କେବଳ ମୋର ତୁଣ୍ଡର କଥା ନୁହେଁ । ସାରା ଜୀବନ ଧରି ମୋତେ ଏ କଥା ପ୍ରତ୍ୟେକ କ୍ଷେତ୍ରରେ ପ୍ରମାଣ କରି ଦେଖାଇ ଦେବାକୁ ହେବ । ଯାହା କହୁଛି ତାହା ସତ କଥା, ଏଥିରେ ଟିକିଏ ହେଲେ ପରିହାସ ନାହିଁ ।

ଅଚଳା ଶିକ୍ଷିତା ଝିଅ । ପଲ୍ଲୀ ଗ୍ରାମରେ ବିରୁଦ୍ଧ ସମାଜ ମଧ୍ୟରେ ତାର ଭବିଷ୍ୟତ ଜୀବନ ଯେ କି ଭାବରେ କଟିବ ସେ ବିଷୟ ଘରେ ପାଦ ଦେବାମାତ୍ରେ ସେ ବୁଝି ପାରିଥିଲା । ତେଣୁ ଏ ସୁଯୋଗକୁ ସେ ସହଜରେ ହାତ ଛଡା କରିବାକୁ ଚାହିଁଲା ନାହିଁ । ପରିହାସକୁ ଗାମ୍ଭୀର୍ଯ୍ୟରେ ପରିଣତ କରି ସେ କହିଲା, ମୃଣାଳ ଅପା ସତରେ କ'ଣ ତୁମ କଥାର ପ୍ରମାଣ ତୁମେ ବଂଚଥିବା ପର୍ଯ୍ୟନ୍ତ ଦେଇ ପାରିବ ?

ମୃଣାଳ କହିଲା—ମୁଁ ତ ସହରୀ ଝିଅ ନୁହେଁ ନୂଆଉ । ସତ୍ୟ ରକ୍ଷାକରି ପାରିବ କି ନାହିଁ, ତାହା ତ ତୁମର ଦେହ ଛୁଇଁକରି କହିଲି । ମରିଗଲେ ମଧ୍ୟ ତାହା ଅନ୍ୟଥା ହେବନାହିଁ ।

ଅଚଳା ଆଉ ଏ କଥାକୁ ନଘାଣ୍ଟି ଅନ୍ୟ କଥା ପକାଇବାକୁ ଯାଇ ହସି ହସି କହିଲା—ଶୀଘ୍ର ପଳାଇବ ନାହିଁ ତ······

ମୃଣାଳ ହସି ପକାଇ କହିଲା—ବୋକା ଭାବ ତୁମେ ମୋତେ ଫାନ୍ଦରେ ପକାଇବ ଚାହୁଁଛ ନୂଆଉ । କିନ୍ତୁ ମୁଁ ତ ଆଗରୁ କହିଛି ଦାୟିତ୍ୱ ବୁଝାଇ ନ ସାରିବା ଆଗରୁ ମୁଁ ଯାଉନାହିଁ ।

ଅଚଳା ମୁଣ୍ଡ ହଲାଇ କହିଲା—ଗୃହିଁ ବୁଝି ନେବାପାଇଁ ମୋର ଆଦୌ ଆଗ୍ରହ ନାହିଁ ।

ମୃଣାଳ କହିଲା—ସେତକ ମୁଁ ବୁଝାଇ ଦେଇ ଘାଗ ତେବେ ଯାଇ ଯିବ। କିନ୍ତୁ ବେଶୀଦିନ ତ ଘରଗ୍ରସ୍ତ ରହିବାର ଶକ୍ତି ନାହିଁ ନୂଆଉ; ଜାଣୁଥିବତ କେତେବଡ଼ ସଂସାର ଦାୟିତ୍ୱ ମୋ ମୁଣ୍ଡ ଉପରେ ?

ଅଚଳା ମୁଣ୍ଡ ହଲାଇ କହିଲା—ନା, ଜାଣିନାହିଁ।

ମୃଣାଳ ଆଶ୍ଚର୍ଯ୍ୟ ହୋଇ କହିଲା—ଭାଇ କ'ଣ ମୋ ସଂପର୍କରେ ତୁମକୁ ଆଗରୁ କିଛି କହି ନାହାନ୍ତି ?

ଅଚଳା କହିଲା—ଥରକ ପାଇଁ ସୁଦ୍ଧା କହି ନାହାନ୍ତି। ନିଜର ଘର ଦ୍ୱାର ବିଷୟରେ ସବୁ କଥା କହିଥିଲେ କିନ୍ତୁ ସବୁ ବିଷୟ ଆଗରୁ ଯେଉଁ କଥାଟି ଜଣାଇବା ଉଚିତ୍ ଥିଲା, ସେହି ତୁମ କଥା ସେ କିପରି ନ କହିଲେ, ଭାବିଲେ ଆଶ୍ଚର୍ଯ୍ୟ ଲାଗୁଛି, ମୃଣାଳ ଅପା।

ମୃଣାଳ ଅନ୍ୟମନସ୍କ ହୋଇ କହି ପକାଇଲା—ସତରେ ?

ଅଚଳା କିଛି ସମୟ ନୀରବ ରହି ପୁଣି ହସ ହସ ମୁହଁରେ ପଚାରିଲା—ତାହାହେଲେ ତୁମ ସହିତ ତାଙ୍କର ପ୍ରଥମେ ବିବାହ ପ୍ରସ୍ତାବ ପଡ଼ିଥିଲା ?

ସେତେବେଳେ ମଧ୍ୟ ମୃଣାଳ ଅନ୍ୟମନସ୍କ ହୋଇ କ'ଣ ଭାବୁ ଭାବୁ କହିଲା—ହଁ।

ଅଚଳା କହିଲା—ତାହାହେଲେ ବିବାହ ହେଲା ନାହିଁ କାହିଁକି ? ହୋଇଥିଲେ ବେଶ୍ ଭଲ ତ ହୋଇଥାନ୍ତା।

ଏତେବେଳକୁ ମୃଣାଳ କଥାଟା ଭଲ କରି ଶୁଣି ପାରିଲା। ସେ ଚମକି ପଡ଼ି ଅଚଳା ମୁହଁକୁ ଚାହିଁ କହିଲା—ହିବାର କଥା ନୁହେଁ ବୋଲି ହେଲା ନାହିଁ।

ଅଚଳା ତଥାପି ପ୍ରଶ୍ନ କଲା—ହିବା ପାଇଁ ବାଧା କଣ ଥିଲା ? ତୁମେ ତ ପ୍ରକୃତରେ ରକ୍ତର ସମ୍ପର୍କ ଆତ୍ମୀୟା ନୁହେଁ ? ତା ଛଡ଼ା ପିଲା ଦିନରେ ଯେଉଁ ଭଲ ପାଇବା ସୃଷ୍ଟି ହୁଏ, ତାକୁ ଉପେକ୍ଷା କରିବାଟା ତ ଭଲ କାମ ନୁହେଁ।

ତାର ପ୍ରଶ୍ନ ପଚାରିବା ଢଙ୍ଗ ଦେଖି ମୃଣାଳ ହଠାତ୍ ଚମକି ଉଠିଲା। କ୍ଷଣକାଳ ସ୍ଥିର ଦୃଷ୍ଟିରେ ଅଚଳା ମୁହଁକୁ ଚାହିଁ କହିଲା—ଏସବୁ ତୁମେ କାହିଁକି ଜାଣିବାକୁ ଚାହୁଁଛ ନୂଆ ବୋଉ। ତୁମେ କ'ଣ ମନେ କରୁଛ ସବୁ ଭଲ ପାଇବାର ଶେଷ ଫଳ ବିଭା ? ନା, ମନୁଷ୍ୟ ବିବାହ ଦେବାର ମାଲିକ ? ଏ କେବଳ ଏ ଜନ୍ମର ନୁହେଁ ନୂଆ'ଉ ଜନ୍ମ ଜନ୍ମାନ୍ତରର ସମ୍ବନ୍ଧ। ମୁଁ ଯାହାଙ୍କ ପାଇଁ

ଚିରକାଳର ଦାସୀ, ତାଙ୍କ ହାତରେ ସେ ମୋତେ ସମର୍ପି ଦେବେ ଏଥିରେ ମନୁଷ୍ୟର ଇଚ୍ଛା ଅନିଚ୍ଛାର କୌଣସି ଆବଶ୍ୟକତା ନାହିଁ ।

ଅଚଳା ଅପ୍ରତିଭ ହୋଇ କହିଲା—ସେ କଥା ମତ ମୃଣାଳ ଅପା । ମୁଁ ତ ସେହି କଥା ଜାଣିବା ପାଇଁ ପଚାରୁଥିଲି ।

କଥାଟା ସେ ଶେଷ କରି ପାରିଲା ନାହିଁ । ମୁହଁଟି ତାର ଲଜ୍ଜାରେ ନାଲି ପଡ଼ିଗଲା । ମୃଣାଳ ପାଖରେ ତାହା ଅଜଣା ହୋଇ ରହିଲା ନାହିଁ, ସେ ସ୍ନେହରେ ଅଚଳାର ହାତ ଧରି ପକାଇ କହିଲା ନୂଆ'ଉ କାଆଲି ପରି ଲାଗୁଛି ତୁମେ ସ୍ୱାମୀଟିଏ ପାଇଛ; କିନ୍ତୁ ମୁଁ ଏଇ ପାଞ୍ଚ ବରଷ ଧରି ସ୍ୱାମୀଙ୍କର ସେବା କରି ଆସିଛି । ମୋ କଥାଟା ମନେରଖିବ, ସ୍ୱାମୀଙ୍କର ଏହି ଦୁର୍ବଳତାକୁ ହିଁ କୌଣସି ଦିନ ବୁଦ୍ଧିର ଜୋର ଦେଖାଇ ଆବିଷ୍କାର କରିବାକୁ ଚେଷ୍ଟା କରିବ ନାହିଁ ।

ଯଦୁ ବାହାରେ ଥାଇ କହିଲା—ଅପା, ବାବୁ ମାନଙ୍କର ଖାଇବା ପାଇଁ ବ୍ୟବସ୍ଥା କଲିଣି ।

: ହଉ; ମୁଁ ଯାଉଛି କହି ମୃଣାଳ ହଠାତ୍ ଦୁଇ ହାତ ବଢ଼ାଇ ଅଚଳାର ମୁହଁଟି ତୋଳି ଧରି ଗୋଟିଏ ସ୍ନେହର ଚୋକ ତାହା ଗଣ୍ଡରେ ଆଙ୍କି ଦେଲା ।

ଅପା !

ଅଚଳା ପାଖଘରୁ ବ୍ୟସ୍ତ ହୋଇ ଦଉଡ଼ି ଆସିଲା ।

ମୃଣାଳ ଅଣ୍ଟାରେ ଲୁଗା ଭିଡ଼ି ଗୋଟାଏ ଟେଜେଇ ଟଣା ଟଣି କରି ସିଧା କରି ରଖୁଥିଲା, ଅଚଳା ଘରେ ପ୍ରବେଶ କରିବା ମାତ୍ରେ ସେ ରାଗରେ ପାଟି କରି କହିଲା—ତୁମେ ଘର ଭିତରେ ହାତ ଗୋଡ଼ ଜାକି ବସି ରହିବ ଆଉ ମୁଁ ତୁମର ଶୋଇବା ଘର ସଜାଡୁଥିବି ? ନିଅ କହୁଛି, ଏଇ ଝାଡ଼ୁଟା ଧର । ସେ କଣଟା ଝାଡ଼ି ପରିଷ୍କାର କରି ପକାଅ; କହି ଆଉ ହସକୁ ଚାପି ନ ପାରି ଖିଲ ଖିଲ ହୋଇ ହସି ଉଠିଲା ।

ପାଟି ତୁଣ୍ଡ ଶୁଣି ହରିଆ ମା ପଛେ ପଛେ ଆସିଥିଲା । ସେ କହିଲା— ଏ କ କଥା ଅପା ! ଆମ ଘରେ କେତେ ଗଣ୍ଡା ଦାସ ଦାସୀ । ଅପାଙ୍କର କଣ କେଉଁ ଦିନ ଝାଡ଼ୁ ଧରିବା ଅଭ୍ୟାସ ଅଛି ଯେ ସେ ଆଜି ମଫସଲି ଝିଅଙ୍କ ଭଳି ଘର ଓଳାଇବାକୁ ଯିବେ ? ମୁଁ ଘର ଓଳାଇ ଦେଉଛି କହି ସେ ଝାଡ଼ୁଟା ଟାଣି ନେଉଥିବା ବେଳେ ଅଚଳା କୃତ୍ରିମ କ୍ରୋଧରେ ତାକୁ ଗୋଟାଏ ଧମକ ଦେଇ କହିଲା ଆଉ । ଅପାଙ୍କୁ କ'ଣ ତୁ ମୋ ଅପେକ୍ଷା ବେଶୀ ଚିହ୍ନିଛୁ ଯେ ସାଲିସ କରିବାକୁ ଆଗେଇ ଆସୁଛୁ ? କହି ଅଚଳା ହାତରେ ଝାଡ଼ୁ ମୁଠାଟା ଗୁଞ୍ଜିଦେଇ ହରିଆ ମାଆକୁ ହସି କରି କହିଲା—ଆଲେ, ତୋ ଅପା ଇଚ୍ଛା କଲେ ଯେଉଁ କାମ କରି ପାରନ୍ତି ତାହା ଏଇ ସାତ ଗାଇର ଝିଅ ବୋହୂ କରି ପାରିବେ ନାହିଁ । ଅଚଳାକୁ କହିଲା— ଯାଅ ତ ନୂଆଉ, ସେ କଣଟା ଝାଡ଼ି ପକାଅ ତ……

ଅଚଳା ଝାଡ଼ୁ ଦେବା ପାଇଁ ଉଦ୍ୟତ ହୋଇ କହିଲା—ମୃଣାଳ ଅପା, ସତରେ ତୁମକୁ ଯାଦୁ ବିଦ୍ୟା ଜଣା; ନୁହେଁ ?

ମୃଣାଳ କହିଲା—କେମିତି ଜାଣିଲ ?

ଅଚଳା କହିଲା—ତା ନ ହେଲେ ମୁଁ ଘର ପରିଷ୍କାର କରିବା ପାଇଁ ଝାଡ଼ୁ ଧରିଛି; ଏହା ସେଇ ବିଦ୍ୟା ନୁହେଁ ତ ଆଉ କ'ଣ ?

ମୃଣାଳ କହିଲା— ତୁମେ ନ ଧରିବ ତ ଧରିବ କିଏ ? ତୁମ ଘର ସଫା ସଫି କରିବାକୁ ଆଉ କ'ଣ ଆର ଗାଇରୁ ପଦ୍ମ ମାଉସୀ ଆସିବ ? ଯାଅ ଅଯଥା ଗପି ସମୟ ନଷ୍ଟ କରନାହିଁ । ସନ୍ଧ୍ୟା ହୋଇଯିବ ।

ଅଚଳା, କାମ କରୁ କରୁ ହସି ହସି କହିଲା ନିଜେ ମୁହୂର୍ତ୍ତେ ବସିବେ ନାହିଁ କି ଅପରକୁ ବସାଇ ଦେବେ ନାହିଁ । ପ୍ରକୃତରେ ମୃଣାଳ ଅପା, ମୋତେ ଏଇ ଛଅ ସାତ ଦିନ ଧରି ଯାହା ଖଟାଇଲଣିନା ଗୃହା ବଗିଚ୍ଚାର ମାଲିକ ବୋଧହୁଏ ତାଙ୍କର କୁଲିଙ୍କୁ ଏତେ ଖଟାଉ ନ ଥିବେ ।

ମୃଣାଳ ଅଚଳା ନିକଟକୁ ଚାଲି ଆସି ତାହାର ଚିବୁକ ଉପରେ ଟିପ ମାରି କହିଲା — ସେଥିପାଇଁ ତ ଘର ଦ୍ୱାର ଦେଖିଲେ ମନେ ହେଉଛି ସତେ ଯେପରି ଏ ଘରକୁ ଲକ୍ଷ୍ମୀ ବିଜେ କରିଛନ୍ତି । ଖାଣ୍ଟେଣୀ କଥା କହୁଛି ନୂଆଉ – ଯେଉଁଦିନ ସ୍ୱାମୀ ଥିଲା ଝିଅ ଘର କରଣା ନେଇ ଖାଇବା ପିଇବାକୁ ସମୟ ପାଇବ ନାହିଁ ସେତେବେଳେ ଜାଣିବ ଏ ମାଇପି ଜନମ ସାର୍ଥକ ହେଲା । ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଛି କିପରି ତୁମର ସେହି ସୁଦିନ ଶୀଘ୍ର ଆସୁ ।

ହରଆ ମାଆ ହଠାତ୍ କାନ୍ଦ ଉଠି କହିଲା ସେଥିକ ଆଶୀର୍ବାଦ କର ଅପା । କେବଳ ସେଥିକ ଭଗବାନଙ୍କ ଠାରେ ପ୍ରାର୍ଥନା କର । ତାର ଅଚଳା ମାଆଙ୍କ କଥା ମନେ ପଡ଼ିଲା । ସେହି ସତୀ ସାଧ୍ୱୀ ଯେତେବେଳେ ସ୍ୱର୍ଗାରୋହଣ କଲେ ସେତେବେଳେ ଯେଉଁ ଝିଅଟିକୁ ହରଆ ମାଆ ହାତରେ ଟେକି ଦେଇ ଯାଇଥିଲେ; ସେହି ଝିଅଟି ବର୍ତ୍ତମାନ ଏଡ଼େଟିଏ ହୋଇ ଘର ସଂସାର କରିବାକୁ ପର ଘରକୁ ଆସିଛି ।

ମୃଣାଳ ତାକୁ ଧମକ ଦେଇ କହିଲା—ମରଣ ହେଉନ ତୋତେ । ନାକ କାନ୍ଦୁଣୀ ଟେ କଲୋ ? କାନ୍ଦୁଛୁ କାହିଁକି ?

ହରଆ ମାଆ ଆଖି ପୋଛୁ ପୋଛୁ କହିଲା—କାନ୍ଦ କର ଆଉ ଲାଭ କ'ଣ ଅଛି ? ତୁମ କଥା ଶୁଣି ନ କାନ୍ଦ ରହି ପାରିଲି ନାହିଁ, ତୁମକୁ ମୋ ରାଣ, ତୁମେ ଯଦି ଏ ଘରକୁ ନ ଆସିଥାନ୍ତ । ତେବେ ଅମେ ଟେଟିଏ ସୁଦ୍ଧା ରହିପାରି ନଥାନ୍ତୁ ।

ମୃଣାଳର ଆସିବା ଆଜକୁ ଛଅଦିନ ହେବ । ଆସିବା ଦିନରୁ ଘରଦ୍ୱାରଠାରୁ, ଘରର ମଣିଷମାନଙ୍କର ଚେହେରା ବଦଳାଇ ଦେବା କାମରେ ଅନବରତ ଲାଗି ପଡ଼ିଛି । ତାର କଳ୍ପ ଏତେ କାମ, ହସ, ଥଟ୍ଟା ଭିତରେ ସେ ପଳେଇ ଯିବାର କଥାଟା ଅଚଳା ମନରେ ଦୁଃଖ ଦେଉଥିଲା । ମୃଣାଳର ପ୍ରତିଟି କଥାରେ, ଆଚ୍ଛର ବ୍ୟବହାରରେ ଏତେ ଆତ୍ମୀୟତା ଥିଲା ଯେ ଅଚଳା ଘରକରଣା କାମ ସବୁ ସୁରୁଖୁରୁରେ ଶିଖି ପାରୁଥିଲା । ଏହା ବ୍ୟତୀତ ମୃଣାଳକୁ ଭଲ ଭାବରେ ଜାଣିବା ପାଇଁ ତାର ବିଶେଷ କୌତୂହଳ ଜାତ ହେଉଥିଲା । ସେ ଜାଣେ ମୃଣାଳର ସାଂସାରିକ ଅବସ୍ଥା ସ୍ୱଚ୍ଛଳ ନୁହେଁ । ଦେହରେ ତାର ଅଳଙ୍କାର ଖଣ୍ଡିଏ ନଥିଲା । ତା'ନହିଁତ ପୁଣି ରୋଗଣା ବୁଢ଼ାବର । ଶାଶୁଘରେ ଦିନରାତି ଖଟେଣୀର ସୀମା-ନାହିଁ । ସେଥିରେ ଶାଶୁ ମରମର ଅବସ୍ଥାରେ ପୁଣି ବେକରେ ଝୁଲୁଛନ୍ତି । କାରଣ ଥାଉ କି ନ ଥାଉ ତାଙ୍କର ପୁଣି ଗାଳିଦେବା ବନ୍ଦ ନାହିଁ, ଏହା ସେ ମୃଣାଳଠାରୁ ଶୁଣିଛି ଏକଥା ମଧ୍ୟ ଜାଣି ପାରିଛି ଯେ ଏତେ ପ୍ରତିକୂଳ ଅବସ୍ଥାରେ ଗତିକରି ସୁଦ୍ଧା ସେ କଦାପି ଧୈର୍ଯ୍ୟ ହରାଇ ନାହିଁ । ଏତେଦିନ ଧରି ତାହା ସହିତ ଚଳିବା ପରେ ସେ ଭଲକରି ବୁଝି ପାରିଥିଲା ଯେ, ପଦ୍ମ ପଙ୍କରୁ ଜନ୍ମ ହେଲେ ମଧ୍ୟ ଯେପରି ମଳିନତା ତାକୁ ସ୍ପର୍ଶ କରେନାହିଁ ସେହିପରି ଏହି ଅପାଠୋଇ ପଲ୍ଲୀ ଲକ୍ଷ୍ମୀଟି ସଂସାରର ଯେତେ ପ୍ରକାର ଦୁଃଖଦାରିଦ୍ର୍ୟ ଭିତରେ ଅହରହ ସଢ଼ୁଥିଲେ ମଧ୍ୟ ତାହାଠାରେ କେବେହେଲେ ଦୁଃଖ କମ୍ବା ବେଦନା ପ୍ରକାଶ ପାଏ ନାହିଁ । ତାର ନା ଅଛି ଦେହର କ୍ଳାନ୍ତି, ନା ଅଛି ମନର ଶ୍ରାନ୍ତି ସେଥିପାଇଁ ସେ ଅଚଳାକୁ ସବୁ-

ପ୍ରକାର ଅନଭ୍ୟସ୍ତ କାମରେ ଅହରହ ଟାଣି ନେଇ ଖଟାଇ ପାରୁଥିଲା । ନିଜ ଭାଗ୍ୟକୁ ଥରକ ପାଇଁ ନିନ୍ଦିବା ଲାଗି ଫୁରସତ୍ ସୃଷ୍ଟି ନ କରିବା ପାଇଁ ସେ ଅନବରତ ହସ ଖୁସିରେ କାମ କରି କରି ବ୍ୟସ୍ତ ରହୁଥିଲା । ସେଥିପାଇଁ ସେ ଯେତେବେଳେ ଶାଶୁ ଘରକୁ ଫେରିଯିବା କଥା କହୁଥିଲେ ସେତେବେଳେ ଅଚଳା ଭାବୁଥିଲେ— ମୃଣାଳ ଅପା ଚାଲିଗଲା ପରେ ସେ ମୁହୂର୍ତ୍ତିଟିଏ ସୁଦ୍ଧା ଏ ଘରେ ଚଳିବ କିପରି ?

ସନ୍ଧ୍ୟାବେଳେ ଅଚଳା କହିଲା—ବାପ ଘରକୁ ଆସି କେଉଁ ଝିଅ ପଳାଇବ ବୋଲି କେବେ କହେ ? ତୁମେ ବର୍ତ୍ତମାନ ଯାଇପାରିବ ନାହିଁ । ଯେତେଦିନ ପର୍ଯ୍ୟନ୍ତ ମୁଁ ଆମ ଘରକୁ ଫେରି ଯାଇନାହିଁ, ସେତେଦିନ ପର୍ଯ୍ୟନ୍ତ ତମକୁ ଏଠାରେ ରହିବାକୁ ହିଁ ପଡ଼ିବ ।

ମୃଣାଳ କହିଲା—ବୁଝିଲୁ ନୂଆ'ଉ, ଶାଶୁ ବୁଢ଼ୀ ନା ନିଜେ ମରୁଛି ନା ମୋତେ ମରିବାକୁ ଛାଡ଼ି ଦେଉଛି । ମୁଁ କହୁଛି ବୁଢ଼ୀ ତୁ ଆଗ ମର । ତୋ ପୁଅର ବୟସ ବର୍ତ୍ତମାନ ଷାଠିଏ ଟପିଲାଣି । କ'ଣ ତାକୁ ଖାଇଲେ ଯାଇ ଯିବୁ ? ଦିନରାତି ଅହରହ ଏତେ କାଶୁଛି ହେଲେ ନିଃଶ୍ୱାସ ବନ୍ଦ ହୋଇ ଯାଆନ୍ତା କି ?

ଅଚଳା ହସି ଉଠି କହିଲା—ସେ ବୋଧହୁଏ ତୁମକୁ ଭଲ ପାଆନ୍ତି ନାହିଁ ?

ମୃଣାଳ ମୁଣ୍ଡ ହଲାଇ କହିଲା—ଦଣ୍ଡକ ପାଇଁ ବି ନୁହେଁ ।

ଅଚଳା ପଚାରିଲା—ଆଉ ତୁମେ ?

ମୃଣାଳ କହିଲା—ମୁଁ ମଧ୍ୟ ଭଲ ପାଏନାହିଁ । ଯେଉଁଦିନ ବୁଢ଼ୀ ଅସ୍ଥିକୁ ନେଇ ଗଙ୍ଗାରେ ପକାଇ ଆସିବ ସେଦିନ ଭୋଗ କରିବ ବୋଲି ପାଞ୍ଚ ସୁକା ଧଇସା ପରା ମାନସିକ କରି ରଖି ଦେଇଛି ।

ମୋର ବିଶ୍ୱାସ ହେଉନାହିଁ । ତୁମ ସହିତ ମିଶିଲା ପରେ ମୋର ମନେହୁଏ ତୁମର ପୁଣି ଶତ୍ରୁ ଥିବା କ'ଣ ସମ୍ଭବ ? ହୁଏତ ସେଇ ବୁଢ଼ୀଙ୍କୁ ତୁମେ ସମସ୍ତଙ୍କଠାରୁ ବେଶୀ ଭଲ ପାଉଥିବ ।

ମୃଣାଳ ହସିଉଠି କହିଲା—ସବୁଠାରୁ ବେଶୀ ଭଲପାଏ ! ହୋଇଥିବ କହି ଅଚଳାର ଗାଲ ଚିପିଦେଇ ସେ ହସି ହସି କାମ ବାହାନାରେ ଚାଲିଗଲା ।

ଯିବ, ଯିବ, ହୋଇ ମୃଣାଳ ଆଉ କିଛି ଦିନ ରହିଗଲା । ଅଚଳା କ୍ରମେ କ୍ରମେ ଜାଣିପାରିଲା ଯିବା ପାଇଁ ସେ ମୁହଁରେ ଯେତିକି ବ୍ୟସ୍ତ ହେଉଛି କିନ୍ତୁ ପ୍ରକୃତରେ ସେତେଟା ନୁହେଁ । ଫେରିଯିବା ପାଇଁ ସେ ଯେପରି ଆଦୌ ଇଚ୍ଛୁକ ନୁହେଁ । ଏପର୍ଯ୍ୟନ୍ତ ଘରସଂସାର ଅନ୍ତରାଳରେ ରହି ସେ ପୃଥିବୀକୁ ଯେପରି ଚହ୍ନିଥିଲା ଏଥର ଗୃହିଣୀ ହେବା ପରେ ସେ ଡେହେଉ୍ ସେପରି ଆଉ ରହିଲା

ନାହିଁ । ଏ ଘରେ ପାଦ ଦେବା ପର୍ଯ୍ୟନ୍ତ ସ୍ୱାମୀଙ୍କ ମଦ୍ଧତ ସେ ଯେତେବେଳେ ଥଟ୍ଟା ତାମସା କରିଛୁ ସେତେବେଳେ କପର ଗୋଟାଏ ଆଘାତ ଅନୁଭବ କଲପର ତାକୁ ଜଣା ପଡ଼ୁଥିଲା । ଏବେ ମଧ୍ୟ ମଝିରେ ତାଙ୍କର ଭାବଭଙ୍ଗୀ ମନରେ କୁଞ୍ଚ ଫୋଡ଼ିଲା ପର ଲାଗୁଛି । ଏସବୁ କଛି ନୁହେଁ; ଏହା ମଧ୍ୟରେ କେବଳ ପରିହାସ ଛଡ଼ା ଆଉ କଛି ନାହିଁ, ମନ ଖରାପ କରିବାର କୌଣସି କାରଣ ନାହିଁ ଓ ତାହାର ମନ ବଡ଼ ସଂକୀର୍ଣ୍ଣ; ଏହିପର ଭାବରେ ମନକୁ ସେ ଯେତକ ଶାସନ କରିବାକୁ ଚାହିଁଛି ସେତକ ସନ୍ଦେହର ବିପରୀତ ତର୍କ ତାର ମନ ମଧ୍ୟରୁ ଅନଚ୍ଛା ସତ୍ତ୍ୱେ ମୁହଁଟେକ ତାକୁ ନଇଁଇବାକୁ ଲାଗିଛି । ମଦ୍ଧମର ସ୍ୱାଭାବିକ ଗାମ୍ଭୀର୍ଯ୍ୟ ଯେପର ଥଟ୍ଟା ତାମସା କ୍ଷେତ୍ରରେ ଅତ୍ୟଧିକ ପର ମନେହୁଏ । ସେଥିପାଇଁ ବେଳେବେଳେ ସେ ମନେ ମନେ ତର୍କ କରିଥାଏ, ପରିହାସର ଉତ୍ତର ପରିହାସରେ ଦେଲେ କ୍ଷତ କ'ଣ ? ଯିଏ ଥଟ୍ଟା କର ଉତ୍ତର ନଦେଇ ପାରେ ସେ ଅନ୍ତତଃ ହସ ହସ ମୁହଁରେ ତାକୁ ତ ଉପଭୋଗ କରିପାରେ । ଅଥଚ ସେ ଲକ୍ଷ୍ୟ କରିଛି ମୃଣାଳ ଥଟ୍ଟା ଆରମ୍ଭ କରିବା କ୍ଷଣି ମଦ୍ଧମ ମୁହଁ ଲାଜରେ ଝାଉଁଳି ଯାଏ ଏବଂ ସେ ସେଠାରୁ ଚାଲିଯାଏ । ସତେ ଯେପର କଛି ଅନ୍ୟାୟ ସେ କରି ପକାଇଛନ୍ତି ଏବଂ ସେହି ଅପରାଧକୁ କୌଣସି ମତେ ଯେପର ଭୁଲି ପାରୁ ନାହାନ୍ତି । ମୃଣାଳ ସଙ୍ଗେ ଏକାଠି ମିଶି କାମଧନ୍ଦା କଲାବେଳେ ମନେ ମନେ ଭାବେ ସେ ଯେତେବେଳେ ନିଅ ପିଲାଟିଏ ହୋଇ ମଧ୍ୟ ମୃଣାଳର ଏଭଳି ମଧୁର ବ୍ୟବହାରକୁ ଈର୍ଷା କରେ, ଏବଂ ଚେଷ୍ଟାକରି ସୁଦ୍ଧା ତାହାକୁ ପାଖରୁ ଦୂର କରି ପାରୁନାହିଁ; ସେତେବେଳେ ଏତେକାଳ ଏକତ୍ର ଗୋଟିଏ ଘରେ ବଢ଼ିଆସିଲାବେଳେ କୌଣସି ପୁରୁଷ କ'ଣ କେବେ ଏ ଝିଅଟିକୁ ଭଲ ନ ପାଇ ରହିଥାଇପାରେ ?

ମୃଣାଳ ଆସିଗଲେ ସେ ପୂଜାରୀ ଟୋକାକୁ ରୋଷାଇ ଘରୁ ଛୁଟିମିଳେ ଏକଥା ଅଚଳା ଜାଣି ନ ଥିଲା । ପୂଜାରୀ କାମ ନ କର ଏଣେତେଣେ ଘୁରି ବୁଲୁଥିଲାବେଳେ ଅଚଳା ଲକ୍ଷ୍ୟ କରି ଦେଖିଲା ମୃଣାଳ ନଜ ହାତରେ ରାନ୍ଧି ମଦ୍ଧମକୁ ଖାଇବାକୁ ଦେବାପାଇଁ ଯେପର ପ୍ରାଣ ପଣେ ଲାଗି ପଡ଼ିଛି । ଆଜି ସକାଳେ ସେ ହଠାତ୍ କହି ଉଠିଲା—ମୃଣାଳ ଅପା, ଆଜି ତୁମର ଛୁଟି ।

ମୃଣାଳ ବୁଝି ନ ପାରି କହିଲା—କେଉଁ କାମରୁ ଛୁଟି ମିଳିଲା ନୂଆଉ ?

ଅଚଳା କହିଲା---ରୋଷାଇରୁ । ଆଜିଠାରୁ ମୁଁ ରୋଷାଇବାସ କରିବ ।

ମୃଣାଳ ଆଶ୍ଚର୍ଯ୍ୟ ହୋଇ କହିଲା—ହାଏରେ ପୋଡ଼ା କପାଳ ! ତୁମେ ପୁଣି କ'ଣ ରୋଷାଇ କରିବ ?

ଅଚଳା ମୁଣ୍ଡ ହଲାଇ କହିଲା—ବାଃ, ତୁମେ କ'ଣ ଭାବୁଛ ମୋତେ ରୋଷାଇ କରି ଆସେ ନାହିଁ ଘରେତ ମୁଁ ଅଧିକାଂଶ ଦିନ ରାନ୍ଧୁ ଥିଲି । ସେ କଥା ମୁଁ ଶୁଣିବି ନାହିଁ । ଆଜି ମୁଁ ରାନ୍ଧିବି, ମୃଣାଲ ଅପା ।

ତାହାର ଆଗ୍ରହ ଦେଖି ମୃଣାଳ ହଠାତ୍ ଝାଉଁଳି ଗଲା । କହିଲା—ମୁଁ ଥାଉ ଥାଉ ତୁମେ ସେ ରୋଷେଇ ଘର ଧୂଆଁରେ କଷ୍ଟ ପାଇବ କାହିଁକି ନୂଆଉ ?

ତାର ମୁହଁର ଭାବ ଦେଖି ଅଚଳା ଜିଦ କରି କହିଲା ପୂଜାରୀ ଥାଉ ଥାଉ ତୁମେ ଅବା କଷ୍ଟ କରିବାକୁ ଯାଉଛ କାହିଁକି ? ଏ ବେଳା ମୁଁ ନିଶ୍ଚୟ ରାନ୍ଧିବି ।

ଅଚଳାର ରାନ୍ଧିବା ପାଇଁ କାହିଁକି ଯେ ଆଗ୍ରହ ସେ କଥା ମୃଣାଳ କିଛି ବୁଝି ପାରିଲା ନାହିଁ । ସେ ହସକୁ ଚାପି ରଖି କୃତ୍ରିମ ଅଭିମାନରେ ମୁଣ୍ଡ ହଲାଇ କହିଲା—ତୁମେ ବଡ଼ ଚାଲାଖ ତ ଦେଖୁଛି, ଗୋଟି ଗୋଟି କରି ବୋଧହୁଏ ମୋଠାରୁ ସବୁ ଛଡ଼ାଇ ନେବାକୁ ବସିଛ ? ସବୁ ତ ନେଇଛ । ଦୁଇଟା ଦିନ ରାନ୍ଧି ଖୁଆଇ କରି ସିବ ସେତକ ବୋଧହୁଏ ସହିପାରୁନ । ବର୍ତ୍ତମାନଠାରୁ ବୋଧହୁଏ ସଉତୁଣୀ ଭଳି ହିଂସା ଆରମ୍ଭ କଲଣି ?

ଅଚଳା ଭିତରେ କଥାଟା ଖୁବ୍ ଜୋରରେ ଆଘାତ କଲା । ମୃଣାଳର ଶେଷ କଥା ପଦକ ତାର ଈର୍ଷା ନିଆଁରେ ଘୃତାହୁତ ଦେଲା । ସେ ମୁହୂର୍ତ୍ତକ ପାଇଁ ଗମ୍ଭୀର ହୋଇ ସଂକ୍ଷେପରେ କହିଲା—ନା, ଆଜି ମୁଁ ରାନ୍ଧିବି ।

ଏତେବେଳକୁ ମୃଣାଳ ବୁଝି ପାରିଲା—ଅଚଳା ରାଗିଯାଇଛି । ସେଥିପାଇଁ ଆଉ ଯୁକ୍ତି ତର୍କ ନକରି ବରଂ ମନରେ କିଛିକ୍ଷଣ ଚୁପ୍ ରହି କହିଲା—ବେଶ୍ ତାହା ହେଲେ ତୁମେ ରାନ୍ଧ । କେଉଁଠାରେ କ'ଣ ଜିନିଷ ଅଛି; ଚାଲ ଦେଖାଇ ଦେଇ ଆସିବି ।

ମହିମ ଯେ ଘର ଭିତରେ ଏତେ ସମସ୍ତ ଧରି ଥିଲା ଏକଥା ଦୁଇଜଣଙ୍କୁ ଜଣା ନଥିଲା । ହଠାତ୍ ତାକୁ ଦେଖି ଦୁଇଜଣ ଅପ୍ରତିଭ ହୋଇ ଉଠିଲେ ।

ମହିମ ଅଚଳାକୁ ଉଦ୍ଦେଶ୍ୟ କରି ଧୀରେ ଧୀରେ କହିଲା—ମୃଣାଳ ଯେଉଁ କେତେଦିନ ଅଛି ସେତେଦିନ ସେ ରାନ୍ଧୁ ଥାଉ ।

କାହିଁକି ଯେ ମୃଣାଳ ଏତେ ଆପତ୍ତି କରୁଥିଲା । ଯଦିଓ ମହିମ ତାହା ଜାଣେ । କିନ୍ତୁ ସେ କଥାତ ଖୋଲି କହି ପାରିବ ନାହିଁ ।

ଅଚଳା ଜିଦ୍ ଧରି ରୋଷାଇ କରିବାକୁ ଗଲା । ଯଦିଓ ରୋଷାଇ କରିବାରେ ସେ ନିପୁଣା ଥିଲା ତଥାପି କିନ୍ତୁ ମନଦେଇ ରୋଷାଇ କରି ପାରିଲା ନାହିଁ । ଗତ

କେତେଦିନର ସମସ୍ତ ଘଟଣା ମନେ ପଡ଼ି ତାର ହୃଦୟକୁ ଯେପରି କର୍ କର୍ କରି କାଟିବାକୁ ଲଗିଲା । ସେ ଅନୁଭବ କଲା ଏଇ କେତେ ଦିନ ଧରି ସେ ମଧୁମ ଠାରୁ ଆଦୌ ସ୍ନେହ କମ୍ବା ଭଲ ପାଇବା ପାଇ ନାହିଁ । ତାର ବିବାହର ଅଳ୍ପଦିନ ପୂର୍ବରୁ ସୁରେଶକୁ ନେଇ ଯେଉଁ ତୁମୂଳ କାଣ୍ଡ ଘଟିଗଲା, ସେତେବେଳେ ମଧୁମ ଯେପରି ଉଦାସୀନ ରହିଲା ତାହା କୌଣସି ପ୍ରେମିକ ପକ୍ଷରେ ଆଦୌ ସମ୍ଭବ ନୁହେଁ । ବର୍ତ୍ତମାନ ସେ ପରିଷ୍କାର ଭାବରେ ଜାଣି ପାରିଲା ଯେ ମୃଣାଳ ପ୍ରତି ତାର ଦୁର୍ବଳତା ହେତୁ ତାହା ସହିତ ଯେତେବେଳେ ବାଘଘର ଖର୍ଚ୍ଚ ଯିବାକୁ ବସିଲା ସେ ଆଦୌ ବିଚଳିତ ହେଲା ନାହିଁ ।

ଏଠାକୁ ଆସିବା ଦିନଠାରୁ ମୃଣାଳ ଓ ଅଚଳା ଦୁହେଁ ଏକାଠି ବସି ଖାଉଥିଲେ । ଦିପହର ବେଳେ ହରିଆ ମାଆ ହାତରେ ମୃଣାଳ ଅପାଙ୍କୁ ଖାଇବା ପାଇଁ ଡକାଇ ପଠାଇ ସେ ନିଜେ ଅପେକ୍ଷା କରି ବସିଲା । କିଛି ସମୟ ପରେ ହରିଆ ମାଆ ଫେରି ଆସି କହିଲା ଯେ ମୃଣାଳ ଅପା କହିଲେ ତାଙ୍କୁ ଜ୍ୱର ହୋଇଛି । ସେ ଖାଇବେ ନାହିଁ ।

ଅଚଳା କିଛି ନ କହି ଉଠିଯାଇ ମୃଣାଳ ଅପାଙ୍କ ରହିବା ଘରେ ପହଞ୍ଚିଲା ।

ମୃଣାଳ ଆଖିବୁଜି ବିଛଣାରେ ଶୋଇଥିଲା ।

ଅଚଳା କହିଲା—ଆସ ଅପା—ଖାଇବ ଆସ ।

ମୃଣାଳ ଅଚଳାକୁ ଚାହିଁ ଦେଇ ଅଳ୍ପ ହସି ଦେଇ କହିଲା—ତୁମେ ଖାଇ ନିଅ, ନୂଆ'ଉ ମୋ ଦେହ ଭଲ ନାହିଁ ।

ଅଚଳା ଶୁଷ୍କ କଣ୍ଠରେ ପ୍ରଶ୍ନ କଲା କ'ଣ ହୋଇଛି ? ଜ୍ୱର ?

ମୃଣାଳ କହିଲା—ସେପରି ତ ମନେ ହେଉଛି । ଆଜିକ ଉପାସ ରହିଲେ ଆପେ ଆପେ ଭଲ ହୋଇଯିବ ଯେ ।

ଅଚଳା ମୃଣାଳ ଦେହର ଉତ୍ତାପ ଜାଣିବା ପାଇଁ ହାତ ମାରି କହିଲା—ମୁଁ ଏତେ ବୋକୀ ନୁହେଁ ଅପା, ଚାଲ, ଖାଇବ ଚାଲ ।

ମୃଣାଳ ମୁଣ୍ଡ ହଲାଇ କହିଲା—ସତ କହୁଛି ନୂଆ'ଉ ମୋର ଖାଇବାକୁ ଇଚ୍ଛା ନାହିଁ । ପୁଣି କାହିଁକି ତୁମେ କଷ୍ଟ କରି ଏ ଘରକୁ ଆସିଲ ? ହଉ ଚାଲ— ମୁଁ ନ ହେଲେ ଯାଇ ତୁମ ଆଗରେ ବସୁଛି । ତୁମେ ଖାଇନିଅ ।

ଅଚଳା କଠିନ ହୋଇ କହିଲା—ଜଣେ ବନ୍ଧୁକୁ ଉପବାସରେ ଆଗରେ ବସାଇ ଖାଇବା ମୁଁ ଶିଖିନାହିଁ ।

ମୃଣାଳ ତଥାପି ହସି ଦେଇ କହିଲା—ବନ୍ଧୁଟିର ଯଦି ଖାଇବାକୁ ଇଚ୍ଛା ନଥାଏ ତେବେ······

ଅଚଳା ସେହିପରି ଭାବରେ କହିଲା—କାହିଁକି ନଥିବ ଶୁଣେ ? ତୁମକୁ ଜ୍ୱର ହୋଇଛି, ମନରେ ଆସିଛି ରାଗ । ନିଜେ ନ ଖାଇ ମୋତେ ମଧ୍ୟ ଶୁଖିଲାରେ ମାରିବ, ଏହା ଯଦି ତୁମର ଇଚ୍ଛା ହୋଇଥାଏ; ତାହା ଖୋଲି କରି କହିଲେ ମୁଁ ତୁମକୁ ଆଦୌ ବିରକ୍ତ କରିବି ନାହିଁ ।

ମୃଣାଳ ସଙ୍ଗେ ସଙ୍ଗେ ବସି ପଡ଼ି ଗୋଟାଏ ଝୁଙ୍କରେ କହି ପକାଇଲା—ମୋ ସ୍ୱାମୀଙ୍କ ରାଣ ଖାଇ କହୁଛି ନୂଆ'ଉ ମୁଁ ଏତେ ଟିକିଏ ସୁଦ୍ଧା ରାଗ କରି ନାହିଁ । କିନ୍ତୁ ମୋର ଖାଇବା ପାଇଁ ଇଚ୍ଛା ନାହିଁ । ଚାଲ ନୂଆ'ଉ ମୁଁ ତୁମକୁ କୋଳରେ ବସାଇ ଖୁଆଇ ଦେବି ।

ଅଚଳା କହିଲା—ତାହାହେଲେ ଜର ଫର କିଛି ନୁହେଁ । ଗୋଟାଏ ଛଳନା କରୁଥିଲ ?

ମୃଣାଳ ଚୁପ୍ ରହିଲା ।

ଅଚଳା ସ୍ତବ୍‌ଧ ଭାବରେ କିଛିକ୍ଷଣ ରହିବା ପରେ ଗୋଟାଏ ଦୀର୍ଘ ନିଃଶ୍ୱାସ ଛାଡ଼ି କହିଲା—ଏତେବେଳକୁ ବୁଝି ପାରିଲି । ଆରମ୍ଭରୁ ଯଦି ମୁହଁ ଫିଟାଇ କହି ଦେଇ ଥାନ୍ତ ଯେ ମୋ ହାତ ଛୋଁଆଇକୁ ତୁମେ ଘୃଣାରେ ମୁହଁରେ ଦେଇ ପାରିବ ନାହିଁ; ତାହାହେଲେ ଏପରି ଅନ୍ୟାୟ ଭାବରେ ଜିଦ୍ କରି ତୁମକୁ ଅଯଥା କଷ୍ଟ ଦିଆଇ ନଥାନ୍ତି କି ନିଜକୁ ଦାସୀ, ଚାକରଙ୍କ ଆଗରେ ଲଜ୍ଜିତ କରାଇ ନଥାନ୍ତି । ସେ ଯାହାହେଉ; ମୋତେ କ୍ଷମାକର ଅପା । ଶୁଣିଛି ଦୁଧରେ କୁଆଡ଼େ ଛୁଆଁ ଲାଗେ ନାହିଁ । ସେଥିରୁ ଗିନାଏ ଆଣି ଦେଉଛି ଆଉ ଯଦୁ ଯାଇ ଦୋକାନରୁ କିଛି ସନ୍ଦେଶ କିଣି ଆଣୁ । ସେତକ ହେଲେ ଖାଇନିଅ । କଣ କହୁଛ ?

ମୃଣାଳ ସ୍ତବ୍‌ଧ ହୋଇଗଲା । କିଛିକ୍ଷଣ ପରେ ତାର ସେ ଭାବ କଟିଗଲେ ମଧ୍ୟ ସେ ଉତ୍ତର ଦେଇ ପାରିଲା ନାହିଁ । ତଳକୁ ମୁହଁ ପୋତି ବସି ରହିଲା ।

ଅଚଳା ପୁଣି କହିଲା—କ'ଣ କହୁଛ, କହୁନ ଅପା ?

ମୃଣାଳ ପଣତ କାନରେ ଆଖି ପୋଛି କହିଲା—ଆଉ ବର୍ତ୍ତମାନ କହି ଲାଭ ନାହିଁ ।

ଅଚଳା ଆଉ କିଛି ସମୟ ଚୁପ୍ ହୋଇ ଠିଆ ହୋଇ ଧୀରେ ଧୀରେ ଚାଲିଗଲା ।

ମୃଣାଳ ମୁହଁ ଟେକିଲା ନାହିଁ କି କଥା ମଧ୍ୟ କହିଲା ନାହିଁ । ଶାଶୁ ବୁଢ଼ୀଙ୍କୁ ସେ ଗ୍ରାହ୍ୟକରି ଦିଏ । ସେ ଶୁଚିବାଇ ପ୍ରକୃତିର ମଣିଷ । ଏକଥା ଶୁଣିଲେ କସ୍ମିନ୍ କାଳେ ସେ ତା ହାତରୁ ଜଳ ଟୁକା ସ୍ପର୍ଶ କରିବେ ନାହିଁ । ନିଦାରୁଣ ଅଭିମାନରେ ସେ ଏ କଥା ଇଙ୍ଗିତ ଦ୍ୱାରା ଅଚଳା ନିକଟରେ ମଧ୍ୟ ପ୍ରକାଶ କରିପାରିଲା ନାହିଁ ।

ଅଚଳା ଗ୍ରେଷାଇ ଘରକୁ ଯାଇ ସେଠିକାର କାମ ସବୁ ସାରି ହାତଗୋଡ଼ ଧୋଇ ନିଜ ଘରେ ଯାଇ ଶୋଇପଡ଼ିଲା । ଯଦିଓ ମୃଣାଳ ସେ ରାନ୍ଧିଥିବା ଅନ୍ନବ୍ୟଞ୍ଜନ ସ୍ପର୍ଶ କରିବାଟା ନିଚ୍ଛକ ଛଳନା ବୋଲି ଜାଣିଥିଲା, ତଥାପି ସେ ତାକୁ ସେହି କଥା କହି ଆଘାତ ଦେଇଥିଲା । କିନ୍ତୁ ଏହା ସତ୍ୟ ବୋଲି ଜାଣିଥିଲେ ବୋଧହୁଏ ସେ ପାଟି ଫିଟାଇ କେବେ କହି ନଥାନ୍ତା । ସକାଳରୁ କଳହ ଆରମ୍ଭ ହୋଇଥିଲା ଯେ ମଧ୍ୟାହ୍ନ ପର୍ଯ୍ୟନ୍ତ ଭଗବାନ ସେଥିପାଇଁ କାହା ତୁଣ୍ଡରେ ଅନ୍ନ ଦେଇ ପାରିଲେ ନାହିଁ । ଅଚଳା ଓ ମୃଣାଳ ଉଭୟେ ହିଁ ମନେ ମନେ ଏକଥା ବୁଝିପାରୁଥିଲେ ।

ଅପରାହ୍ନ ସମୟରେ ଶଗଡ଼ ଗାଡ଼ି ଆସି ଦାଣ୍ଡରେ ପହଞ୍ଚିଲା । ମୃଣାଳ ଅଚଳାର ଶୋଇବାଘରକୁ ଯାଇ କହିଲା; ବଦାୟ ନେବାକୁ ଆସିଥିଲି ନୂଆଁଉ ଘରକୁ ଯାଉଛି । ଯଦି କେବେ ଇଚ୍ଛା କରିବ ଡାକି ପଠାଇବା କ୍ଷଣି ଆସି ପହଞ୍ଚିବି । ଟିକିଏ ଅଟକି ଯାଇ ପୁଣି କହିଲା—କ’ଣ ଯିବା ସମୟରେ ପଦେ କଥା ଟୁକା କହିବ ନାହିଁ ? କହି ଆଗ୍ରହରେ ଚାହିଁ ରହିଲା ।

ଅଚଳା କିନ୍ତୁ ପଦେ କଥା ମଧ୍ୟ କହିଲା ନାହିଁ । ଯେପରି ମୁହଁ ହାଣ୍ଡି ଭଳି କରି ବସିଥିଲା ସେହିପରି ବସି ରହିଲା । ଘରୁ ବାହାରି ଯାଉ ଯାଉ ମୃଣାଳ ଦେଖି ପାରିଲା, ମହିମ ସେହି ଘରକୁ ଆସୁଛନ୍ତି । କହିଲା—ଟିକିଏ ଠିଆ ହୁଅ ଭାଇ ମୁଁ ତୁମକୁ ମୁଣ୍ଡିଆ ମାରି, ଚାଲିଯିବି ।

ମହିମ ମୁହଁ ଟେକି କହିଲା—କ’ଣ ସକାଳୁ କିଛି ନ ଖାଇ ଶାଶୁଘରକୁ ଯିବୁ ? ରାତିଟା ରହି କାଲି ସକାଳେ ଯାଇଥିଲେ କ’ଣ ଚଳି ନଥାନ୍ତା ?

ମୃଣାଳ ମୁଣ୍ଡ ହଲାଇ ସାମାନ୍ୟ ହସି କହିଲା—ନା ଭାଇ, ଯଦୁ ଯାଇ ଗାଡ଼ି ଡାକି ଆଣିଛି । ଆଜି ମୁଁ ଯିବି । ପୁଣି ଦିନେ ପଛେ ମୋତେ ଡକାଇ ଆଣିବ କହି ମହିମ ପାଦ ତଳେ ମୁଣ୍ଡିଆ ମାରି ପାଦଧୂଳି ନେଲା । କହିଲା ତୁମକୁ ମୋ ରାଣ, ମୋତେ ପୁଣି ଯେପରି ଆଉ ଥରେ ଡାକି ଆଣିବାକୁ ଭୁଲି ନଯାଅ ।

ମହିମ ହସି ପକାଇଲା । କହିଲା—ପୋଡ଼ା ମୁହିଁ, ତୋ ସ୍ୱଭାବ କେବେ ବଦଳିବ କହେ ?

: ମରଲେ ଯିବ । ତାହା ଆଗରୁ ନୁହେଁ । କହି ଅଳ୍ପ ହସି ହସି ସେ ଯାଇ ଗାଡ଼ିରେ ବସିଲା ।

ହଠାତ୍ ମୃଣାଳ ଯେ ଚାଲିଯାଇପାରେ ଅଚଳା ତାହା କଳ୍ପନା ସୁଦ୍ଧା କରିପାରି ନଥିଲା । ମୃଣାଳ ନିଜେ ଖାଇ ନାହିଁ ଆଉ ତାକୁ ମଧ୍ୟ ଖୁଆଇଦେଇ ନାହିଁ: ଏହି ଅପରାଧର କି ଶାସ୍ତି ସେ ଦେଇପାରିବ ସେହି କଥା ହିଁ ବସି ଚିନ୍ତା କରୁଥିଲା । ଯିଏ ତାକୁ ଭଲ ପାଇବା ବାହାନାରେ ଘୃଣା କରେ ତାକୁ ଭଲ ପାଇ ଲାଭ ଅବା କ'ଣ ? ସନ୍ଧ୍ୟାବେଳାକୁ ମୃଣାଳ ଉପରେ ଉଚିତ୍ ପ୍ରତିଶୋଧ ନେବାପାଇଁ ତାର ଯେତେସବୁ ବିଚାର ହଠାତ୍ ବଗିଡ଼ି ଗଲା ।

ଉପବାସରେ ରହି ମୃଣାଳ ଯେତେବେଳେ ଘରୁ ବାହାରିଗଲା ସେତେବେଳେ ଅଚଳାର ଦୁଇ ଆଖି ଅଶ୍ରୁପୂର୍ଣ୍ଣ ହୋଇଉଠିଥିଲା; କିନ୍ତୁ ମୃଣାଳ ମୁହଁରେ ସେହି ଶେଷ ହସଟିକକ ଯେପରି ତପ୍ତ ମରୁଭୂମି ଭଳି ଆଖି ପଲକରେ ତାହାର ଉଦ୍‌ଗତ ଅଶ୍ରୁକୁ ଶୁଷ୍କ କରିପକାଇଲା, ଏବଂ କବାଟ ଆଢୁଆଳରେ ଠିଆ ହୋଇ ସେ ମନପ୍ରାଣ ଦେଇ ଉଭୟଙ୍କର ବିଦାୟ ପାଳି ଦେଖି ଠିକ୍ ବଜ୍ରାହତ ତରୁ ପରି କିଂକର୍ତ୍ତବ୍ୟ ହୋଇ ଜଳିବାକୁ ଲାଗିଲା ।

ଅଳ୍ପ ସମୟ ପରେ ମହିମ ଆସି ଯେତେବେଳେ ଘରେ ପ୍ରବେଶ କଲା ସେତେବେଳେ ଅଚଳାର ସ୍ୱାଭାବିକ ଧୈର୍ଯ୍ୟ ସମୂଳେ ନଷ୍ଟ ହୋଇ ଯାଇଥିଲା ତଥାପି କିନ୍ତୁ ତାର ଆଜନ୍ମ ଶିକ୍ଷା ଓ ସଂସ୍କାର ତାକୁ ଇତରତାଠାରୁ ରକ୍ଷା କରିପାରିଲା । ପ୍ରାଣପଣେ ନିଜେ ସଂଯତ ରହି କଠୋର ହସ ହସି କହିଲା, ବାସ୍ତବିକ ସହରର ଲୋକ ପଡ଼ା ଗାଆଁରେ ଆସି ବସବାସ କରିବାର ବିଡ଼ମ୍ବନା, ବୋଧହୁଏ ସଂସାରରେ ଅଳ୍ପ ଅଛି; କ'ଣ କହୁଛ; ଏଇଆ ନା ?

ମହିମ ସ୍ତ୍ରୀର ମୁଖକୁ ଚାହିଁ କିଛିକ୍ଷଣ ନୀରବ ରହି କହିଲା—ତୁମ ନିଜ କଥା କହୁଛ ତ ? ବୁଝି ପାରୁଛି ତୁମକୁ ବହୁତ କଷ୍ଟ ହେଉଥିବ କିନ୍ତୁ ମୃଣାଳ ସଙ୍ଗେ ଯେ ତୁମର ମନାନ୍ତର ହୋଇପାରେ ଏ କଥା ମୁଁ ଆଦୌ ଭାବି ପାରି ନଥିଲି । କାହିଁକି ନା ତାହା ସହିତ ଆଜି ପର୍ଯ୍ୟନ୍ତ କାହାର ମଧ୍ୟ ଝଗଡ଼ା ହୋଇନାହିଁ ।

ଅଚଳା କହିଲା—ମୋ ସହିତ ଯେ ସାରା ବସ୍ତିର ଲୋକଙ୍କର ଝଗଡ଼ା ହୁଏ, ଏ କଥା ତୁମେ କାହାଠାରୁ ଶୁଣିଲ ?

ମହିମ ଧୀରେ ଧୀରେ କହିଲା—ତୁମେ ସାବଧାନ ଖାଇନାହୁଁ । ଥାଉ, ବର୍ତ୍ତମାନ ସେସବୁ ଆଲୋଚନାର ପ୍ରୟୋଜନ ନାହିଁ ।

ଅଚଳା ଆହୁରି ରାଗରେ ଜଳି ଉଠି କହିଲା—ମୃଣାଳ ଅପା ମଧ୍ୟ ସାବଧାନ ନ ଖାଇ କରି ଶାଶୁଘରକୁ ଗଲେ; କିନ୍ତୁ ତାଙ୍କ ସହିତ ହସି କରି କଥା କହିଲା ବେଳକୁ ତୁମର ତ ଆପତ୍ତି ନଥିଲା ।

ମହିମ ଆଶ୍ଚର୍ଯ୍ୟ ହୋଇ କହିଲା—ତୁମେ ଏସବୁ କ'ଣ କହୁଛ ଅଚଳା ?

ଅଚଳା କହିଲା—ମୁଁ ତୁମର ଏପରି କି ଗୁରୁତର ଅପରାଧ କରିବସିଛି ଯେ, ଏଇପରି ଅପମାନ ନ କରିଲେ ତୁମର ମନ ସନ୍ତୋଷ ହେବନାହିଁ ?

ଏସବୁ କଥାରୁ କିଛି ନ ବୁଝିପାରି ମହିମ ପୁଣି ପ୍ରଶ୍ନ କଲା—ଏସବୁ କ'ଣ କହି ଚାଲିଛ ? ଏସବୁ କଥାର ଅର୍ଥ କ'ଣ ?

ଅଚଳା ଅକସ୍ମାତ ଉଚ୍ଚକଣ୍ଠରେ କହି ଉଠିଲା ଅର୍ଥ ଏଇୟା ଯେ, କି ଅପରାଧ ହେତୁ ତୁମେ ମୋତେ ଏପରି ଅପମାନ କରିପାରିଲ ? ତୁମର ମୁଁ କଣ କ୍ଷତି କରିଛି ?

ମହିମ ଆଶ୍ଚର୍ଯ୍ୟ ହୋଇ କହି ଉଠିଲା—ମୁଁ ତୁମକୁ ଅପମାନ କରିଛି !

ଅଚଳା କହିଲା—ହଁ—ତୁମେ ।

ମହିମ ପ୍ରତିବାଦ କରି କହିଲା—ମିଛ କଥା ।

ଅଚଳା ମୁହୂର୍ତ୍ତିକ ପାଇଁ ସ୍ତମ୍ଭିତ ହୋଇ ରହିଗଲା । ତାପରେ ମୃଦୁ କଣ୍ଠରେ କହିଲା—ମୁଁ କୌଣସି ଦିନ ମିଛ କଥା କହିନାହିଁ । ଯାଉ ସେକଥା । ବର୍ତ୍ତମାନ ନିଜେ ଯଦି ସତ୍ୟବାଦୀ ବୋଲି ତୁମର ଅଭିମାନ ଥାଏ, ତାହାହେଲେ ସତରେ ଉତ୍ତର ଦେଇ ପାରିବ ?

ମହିମ ଆଗ୍ରହ ଦୃଷ୍ଟିରେ କେବଳ ଚାହିଁ ରହିଲା ।

ଅଚଳା ପ୍ରଶ୍ନ କଲା—ମୃଣାଳ ଅପା ଯେଉଁପରି ଭାବରେ ଆଜି ଚାଲିଗଲେ ତାହାକୁ କ'ଣ ତୁମ ମଫସଲ ଗାଆଁରେ ଅପମାନ ବୋଲି କହନ୍ତି ନାହିଁ ?

ମହିମ କହିଲା—କିନ୍ତୁ ସେଥିରେ ମୋତେ ଜଡ଼ିତ କରିବାକୁ ଚାହୁଁଛ କାହିଁକି ?

ଅଚଳା କହିଲା—କହୁଛି । ଆଗ କହନ୍ତୁ ସେହିଭଳି କାର୍ଯ୍ୟକୁ ଏଠାରେ କ'ଣ କୁହାଯାଏ ?

ମହିମ କହିଲା—ବେଶ୍ । ତା ଯଦି ହୁଏ······

ଅଚଳା ବାଧାଦେଇ କହିଲା—ହଁଏ କହିଲେ ଚଳିବ ନାହିଁ । ତାର ଠିକଣା ଜବାବ୍ ଦିଅ ?

ମଧୁମ କହିଲା—ହଁ, ମଫସଲ ଗାଆଁରେ ଲୋକମାନେ ମଧ୍ୟ ଏହାକୁ ଅପମାନ ବୋଲି ମନେ କରନ୍ତି ।

ଅଚଳା କହିଲା—କରନ୍ତି ତ ? ତାହାହେଲେ ତୁମେ ସବୁ ଜାଣିଶୁଣି ଏପରି ମୋତେ ଅପମାନିତ କରାଇଛ । ତୁମେ ନିଶ୍ଚୟ ଜାଣ, ମୁଁ ରାନ୍ଧିବା ଖାଦ୍ୟ କଦାପି ସେ ଗ୍ରହଣ କରିବେ ନାହିଁ । କ'ଣ ଠିକ୍ ନା ? କହି ସେ ନିର୍ନିମେଷ ନୟନରେ ଚାହିଁ ମଧୁମର ବୁକୁ ଭିତରକୁ ତାର ଜ୍ୱଳନ୍ତ ଦୃଷ୍ଟି ପ୍ରେରଣ କରିବାକୁ ଲାଗିଲା ।

ମଧୁମ ସେହିଭଳି ଅଭିଭୂତ ହୋଇ କେବଳ ଚାହିଁ ରହିଲା । ତାହା ମୁହଁରୁ ପଦଟିଏ କଥା ମଧ୍ୟ ବାହାରିଲା ନାହିଁ ।

ଠିକ୍ ଏତିକବେଳେ ବାହାରେ ସୁରେଶର ଚିତ୍କାର ଶୁଣାଗଲା—ମଧୁମ, କେଉଁଠି ଅଛ କରେ ?

: ସୁରେଶ ଯେ, ଆ, ଆ, ଘର ଭିତରକୁ ଆସ । ସବୁ ଭଲ ତ ?

ମଧୁମର ସ୍ୱାଗତ ସମ୍ଭାଷଣ ଶେଷ ହେବା ପୂର୍ବରୁ ସୁରେଶ ଆସି ଆଗରେ ଠିଆ ହୋଇଗଲା । ହାତରେ ଧରିଥିବା ଗ୍ଲାଡ଼ଷ୍ଟୋନ ବ୍ୟାଗ୍‌ଟା ଥୋଇଦେଇ କହିଲା—ହଁ, ଭଲ । କିନ୍ତୁ ଏ କ କଥା ? କ'ଣ ଏକାକୀ ଠିଆ ହୋଇଛ ? ଅଚଳା ନୂଆ'ଉ ସଚଳା ହୋଇ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲେ ? ତୁମ ଦୁହିଁଙ୍କର କଥା ମୋଡ଼ ଉପରେ ଶୁଣିବା ପରେ ମୋତେ ଏ ଘରର ଠିକଣା ଆପେ ଆପେ ମିଳିଗଲା ।

ପ୍ରକୃତରେ ଅଚଳାର ଶେଷ କଥାଟା ତାର ପାଟିରୁ ରାଗରେ ଖୁବ୍ ଜୋରରେ ବାହାରି ପଡ଼ିଥିଲା । ତେଣୁ ଦାଣ୍ଡ ଦୁଆରେ ସୁରେଶ କାନରେ ଏକଥା ଠିକ୍ ପଡ଼ିଯାଇଥିଲା ।

ସୁରେଶ କହିଲା—ଦେଖିଲୁ ମଧୁମ, ବହୁରୂପୀ ସ୍ତ୍ରୀ ବାହାହେଲେ କେତେ ସୁବିଧା ? କେତେଦିନ ହେବ ଅବା ଆସିଛନ୍ତି; କିନ୍ତୁ ଏହା ଭିତରେ ସେ

ପଲ୍ଲୀ ଗାଆଁର ପ୍ରେମାଲାପ ଧରଣଟା ଏପରି ଭାବରେ ଆଗ୍ରହ କରି ପାରିଛନ୍ତି ଯେ ସେଥିରେ ଖୁଣି ଦେବାକୁ କାହାର ସାଧ ନାହିଁ ।

ମଧୁମ ଲଜ୍ଜାରେ ରଙ୍ଗ ପଡ଼ି ଠିଆହୋଇ ରହିଲା । ସୁରେଶ ଘର ଆଡ଼କୁ ଚାହିଁ ଅଚଳାକୁ ଉଦ୍ଦେଶ୍ୟ କରି ପୁଣି କହିଲା ଅତ୍ୟନ୍ତ ଅସମୟରେ ଆସି ରସଭଙ୍ଗ କରିଦେଲି ନା,ଆଁ'ଉ । ମୋତେ କ୍ଷମା କରିବ । ମଧୁମ ଠିଆହୋଇ ରହିଲୁ ଯେ ? ବସିବାର କିଛି ଅଛି ତ ନେଇଆ । ବସିବା । ଚାଲି ଚାଲି ପାଦ ବିଣ୍ଡି ଛିଣ୍ଡି ଗଲାଣି, ଭଲ ଯାଗାରେ ଘରଟା କରିଛୁ ଭଲା । ଚାଲ୍, ଚାଲ୍, କଲିକତା ପଳାଇ ଚାଲ୍ ।

: ଚାଲ, କହି ମଧୁମ ତାହାକୁ ନେଇ ବାହାର ଘରେ ଆଣି ବସାଇ ଦେଲା ।

ସୁରେଶ କହିଲା—ବୋହୂ ଠାକୁରାଣୀ କ'ଣ ମୋ ଆଗକୁ ଆସିବେ ନାହିଁ କି ? ଏକଦମ୍ ପର୍ଦ୍ଦାନସୀନ ?

ମଧୁମ କିଛି କହିବା ପୂର୍ବରୁ ପାଖ ଦରଜା ଠେଲି ଅଚଳା ପ୍ରବେଶ କଲା । ତାହା ମୁହଁରେ କଳାହିର ଚିହ୍ନ ମାତ୍ର ନଥିଲା । ନମସ୍କାର କରି ପ୍ରସନ୍ନ ମୁହଁରେ କହିଲା—ଏ ଯେ ଆଶାତୀତ ସୌଭାଗ୍ୟ ? କିନ୍ତୁ ଏପରି ଅକସ୍ମାତ ଯେ ?

ତାହାର ପ୍ରସନ୍ନ ମୁହଁରେ ସୁଖ-ସୌଭାଗ୍ୟର ସଫଳ ବିକାଶ ଦେଖି ସୁରେଶ ମନଟା ଈର୍ଷାରେ ଜଳି ଉଠିଲା । ହାତ ଟେକି ପ୍ରତି ନମସ୍କାର କରି କହିଲା—ବର୍ତ୍ତମାନ ଜାଣି ପାରୁଛ, ଅକସ୍ମାତ୍ ଆସି ଠିକ୍ କରିନାହିଁ । ଆଉ ଖବର ସବୁ କ'ଣ ?

ଅଚଳା ସେହିପରି ହସ ହସ ମୁହଁରେ କହିଲା - କେଉଁଟା ଶୁଣିଲେ ଆପଣ ବେଶୀ ଖୁସିହେବେ କହନ୍ତୁ ? କଥାବାର୍ତ୍ତାର ଶେଷ ଅଂଶଟା ତ ? ତାହାହେଲେ ମୋର ସେଇଟା କହିବା ଉଚିତ୍ ହେବ । ଅତିଥିଙ୍କ ମନରେ ଦୁଃଖ ଦେବା ଆଦୌ ଠିକ୍ ନୁହେଁ ······

ସୁରେଶ ମୁହଁ ଗମ୍ଭୀର କରି କହିଲା—କିଏ କହିଲା, ନୁହେଁ ? ଘରର ଘରଣୀଙ୍କର ତାହା ହେଲା ଅସଲ କର୍ତ୍ତବ୍ୟ ? ସେଥିରେ ତ ପକ୍କା ପରିଚୟ ମିଳେ ।

ଅଚଳା ହସି ହସି କହିଲା—ଘର ନାହିଁ ଆଉ ସେଥିରେ ପୁଣି ଘରଣୀ ? ଏହି ଗରିବ କୁଡ଼ିଆରେ କିପରି ଯେ ଆଜି ରାତି କଟାଇବେ, ସେହି ହେଉଛି ମୋର

ଚଳନ୍ତା । କିନ୍ତୁ ଧନଂ ଆପଣଙ୍କୁ କହିବା, ଯେହେତୁ ଜାଣି ଶୁଣି ସୁଦ୍ଧା ଏ ଦୁଃଖକଷ୍ଟ ସହିବାକୁ ଆସି ପାରିଛନ୍ତି ।

ସ୍ୱାମୀଙ୍କ ମୁହଁକୁ ଚାହିଁ ଅଚଳା କହିଲା—ଆଚ୍ଛା ନୟନବାବୁଙ୍କୁ କହି ଚନ୍ଦ୍ରବାବୁଙ୍କ ଘରେ ଆଜି ରାତିଟା ତାଙ୍କର ଶୋଇବାର ବ୍ୟବସ୍ଥା କରିହେବ ନାହିଁ ? ତାଙ୍କର କୋଠାଘର । ବୈଠକ ଘର ମଧ୍ୟ ଅଛି । ତେଣୁ ସୁରେଶବାବୁଙ୍କର କଷ୍ଟ ହେବନାହିଁ ।

ସୌଜନ୍ୟର ଆବରଣ ତଳେ ଉଭୟଙ୍କର ଶ୍ଳେଷର ଏହି ସକଳ ପ୍ରଚ୍ଛନ୍ନ ଘାତ ପ୍ରତିଘାତରେ ମହିମ ମନେ ମନେ ଅଧୀର ହୋଇ ଉଠିଥିଲା । କିପରି ଏହାକୁ ବନ୍ଦ କରିଯାଇ ପାରିବ, ସେ ଭାବି ଠିକ୍ କରି ପାରୁ ନଥିଲା । ଏପରି ଅବସ୍ଥାରେ ସୁରେଶ ହଠାତ୍ କହି ଉଠିଲା—ମୋତେ ବଡ଼ କଷ୍ଟ ନ ଆଁଉ । ବରଂ ଟିକିଏ ଚ୍ଚ-ଫା ଦିଅ । ପିଇ ଦେଇ ଦେହରେ ଟିକିଏ ଜୋର୍ ଆଣିପାରେ । ତା ପରେ ନୟନବାବୁଙ୍କୁ କହି କି ଶ୍ରବଣବାବୁଙ୍କୁ କହି ଚନ୍ଦ୍ରବାବୁଙ୍କ କୋଠାଘରେ ଶୋଇବା ପାଇଁ ସୁପାରିସ କରିବାକୁ ରାଜିଅଛି । କିନ୍ତୁ ଯାହା କହି ମହିମ, ଏ ଭିତରେ ଏତେ ମାୟା ନ ଆବୋଉଙ୍କର ଆସିବାରେ ଅବଶ୍ୟ ଖୁସିହେବା କଥା ।

ମହିମ ତରଫରୁ ଅଚଳା ଉତ୍ତର ଦେବାକୁ ଯାଇ ହସି ହସି କହିଲା—ଖୁସି ହେବା, ନ ହେବାଟା ମଣିଷର ନିଜ ହାତରେ । କିନ୍ତୁ ଏ ହେଉଛି ମୋର ଶଶୁରଙ୍କ ଭିଟାମାଟି । ଏହା ଉପରେ ଲୋଭ ଏବଂ ମାୟା ନ ଜନ୍ମି ଯଦି ବଡ଼-ଲାଟଙ୍କର ରାଜପ୍ରାସାଦ ଉପରେ ମାୟା ସୃଷ୍ଟି ହୁଏ ତେବେ ତାହା ଭୁଲ୍ ହେବ । ସେ କଥା ଥାଉ । ଆଗ ଦେହରେ ଶକ୍ତି ଆସୁ ତା'ପରେ ଯାଇ କଥା ହେବା । ମୁଁ ଚାହା ପାଇଁ ପାଣି ବସାଇବାକୁ କହିଦେଇ ଆସିଛି । ପାଞ୍ଚ ମିନିଟ୍ ଭିତରେ କରି ଆଣି ହାଜର କରିଦେବ । ସେତିକି ସମୟ ପର୍ଯ୍ୟନ୍ତ ଟିକିଏ ମୁହଁ ବନ୍ଦ କରି ବିଶ୍ରାମ କରନ୍ତୁ, କହି ଅଚଳା ହସି ହସି ଚାଲିଗଲା ।

ସେ ଚାଲିଯିବା ପରେ ସୁରେଶ ବୁକୁର ଜ୍ୱାଳା ଯେପରି ବଢ଼ି ଉଠିଲା । ନିଜକୁ ସେ ସବଦା ଦୁର୍ବଳ ଓ ଅସ୍ଥିରମନା ବୋଲି ଜାଣିଛି ଏବଂ ଏଥିପାଇଁ ତାର ଲଜ୍ୟା କିମ୍ବା କ୍ଷୋଭ ନଥିଲା । ପାଠପଢ଼ା ବେଳର ବନ୍ଧୁବାନ୍ଧବ ମାନେ ତାକୁ ମହିମ ସଙ୍ଗେ ତୁଳନା କରି ଖିଆଲି ପ୍ରକୃତିର ବୋଲି କହିବା ବେଳେ ସେ ମନେ ମନେ ଖୁସି ହୋଇ କହୁଥିଲା—ହଁ ସେ କଥା ଠିକ୍, ଜୀବନରେ କୌଣସି କାର୍ଯ୍ୟରେ ମୁଁ ଦୃଢ଼ ସଂକଳ୍ପ ନେଇ ପାରେ ନାହିଁ । ମୁଁ ପ୍ରବୃତ୍ତିର ଦାସ, କିନ୍ତୁ ମୋର ହୃଦୟ ଉଦାର ଏବଂ ମୁଁ କଦାପି ହୀନ କାର୍ଯ୍ୟ କରି ପାରିବି ନାହିଁ । ମୁଁ ନିଜର ଆସ୍ଥ

ତ୍ରୁଟି ବ୍ୟସ୍ତ କରିପାରେ ନାହିଁ । ପାଣି କିମ୍ବା ଅପାଣି ହିସାବ କରି ମୁଁ ଦାନ କରିପାରେ ନାହିଁ । ପର ଦୁଃଖରେ ପ୍ରାଣ କାନ୍ଦି ଉଠିଲେ ଦେହର ପିଣ୍ଡା ଲୁଗା ଖଣ୍ଡକ ପର୍ଯ୍ୟନ୍ତ ବିସର୍ଜ୍ଜନ କରି ଚାଲିଆସିବାକୁ ମୋତେ କଷ୍ଟ ଲାଗେ ନାହିଁ । କିନ୍ତୁ ଏ କଥା କହିବାକୁ ତାହାର ଶକ୍ତି ନାହିଁ ଯେ ସୁରେଶ ତାହା ପ୍ରତି ଈର୍ଷା କରିଛି କିମ୍ବା ସ୍ୱାର୍ଥ ପାଇଁ ଏପରି କିଛି କାର୍ଯ୍ୟ କରିଛି, ଯାହା ତାର କରିବାର ଉଚିତ୍ ନଥିଲା । ସୁତରାଂ ଆଜନ୍ମରୁ ଯେଉଁ ଚିତ୍ତଦୁର୍ବଳତା ପାଇଁ ସେ ବିଖ୍ୟାତ ଥିଲା, ନିଜେ ଯେଉଁ କଥାକୁ ସେ ସତ୍ୟ ବୋଲି ବିଚାର କରେ ସେ ଯେତେବେଳେ ଅଚଳା ବିଷୟରେ ଶେଷ ମୁହୂର୍ତ୍ତରେ ସଂଯମୀ ହୋଇ ପାରିଲା; ସେତେବେଳେ ନିଜ ଭିତରେ ଏହି ଅଜ୍ଞାତ ଶକ୍ତିର ସନ୍ଧାନ ପାଇ କେବଳ ଆତ୍ମପ୍ରସାଦ ଯେ ଲାଭ କଲା ତାହା ନୁହେଁ, ବରଂ ତାର ହୃଦୟ ଗର୍ବରେ ଫାଟି ପଡ଼ିଲା । ଅଚଳାର ବିବାହ ସରିବା ପରେ ପରେ, ଦୁଇଦିନ କାଳ ସେ ନିଜ ମନକୁ ନିଜେ ସାନ୍ତ୍ୱନା ଦେଇ କହିଥିଲା—ସେ ଶକ୍ତିହୀନ କିମ୍ବା ଅକ୍ଷମ ନୁହେଁ । ସେ ପ୍ରବୃତ୍ତିର ଦାସ ନୁହେଁ, ବରଞ୍ଚ ଆବଶ୍ୟକ ହେଲେ ସମସ୍ତ ପ୍ରବୃତ୍ତିଗୁଡ଼ାକୁ ସେ ମନ ଭିତରୁ ସମୂଳେ ଉତ୍ପାଟନ କରି ଫିଙ୍ଗି ଦେଇ ପାରେ । ବନ୍ଧୁତ୍ୱ ଯେ କ'ଣ ଏବଂ ବନ୍ଧୁର ସୁଖ ପାଇଁ ଜଣେ ଯେ କେତେ ଦୂର ତ୍ୟାଗ କରିପାରେ, ଏଥର ବନ୍ଧୁ ଓ ବନ୍ଧୁପତ୍ନୀ ଥରେ ହେଲେ ବୁଝନ୍ତୁ ।

କିନ୍ତୁ କୌଣସି ମିଛ ବାହାନା ଦ୍ୱାରା ଦୀର୍ଘକାଳ ଗୋଟାଏ ଫାଟକୁ ବନ୍ଦ କରାଯାଇ ପାରେନା । ପ୍ରକୃତରେ ଆତ୍ମ ସଂଯମ ତାହାର ନଥିଲା ବରଂ ଥିଲା ଆତ୍ମ ପ୍ରତାରଣା । ସୁତରାଂ ଗୋଟିଏ ସପ୍ତାହ ପୂର୍ଣ୍ଣ ହେବା ପୂର୍ବରୁ ଏହି ମିଥ୍ୟା ସଂଯମର ମୋହ ତାର ଉଦାର ହୃଦୟରୁ ଆସ୍ତେ ଆସ୍ତେ ନିର୍ବାସିତ ହୋଇ ତାକୁ ସଙ୍କୁଚିତ କରିବାକୁ ଲାଗିଲା । ତାର ମନ ତାକୁ ବାର ବାର କହିବାକୁ ଲାଗିଲା—ଏହି ସ୍ୱାର୍ଥ ତ୍ୟାଗ ଦ୍ୱାରା ସେ ପାଇଲା କ'ଣ ? ଏହା ତାହାକୁ ଦେଲା କ'ଣ ? କେଉଁ ଅବଲମ୍ବନ ଦେଇ ସେ ନିଜକୁ ଠିଆ କରାଇବ ? ପିଉସୀ ମାଆ କହିଲେ—ବାବା ଏଥର ତୁ ଘରକୁ ବୋହୂଟିଏ ଆଣ୍ । ମୁଁ ତାକୁ ଧରି ଘର ସଂସାର କରେ ।

ଦିନେ ବ୍ରାହ୍ମ ସମାଜ ନିକଟରେ କେଦାର ବାବୁଙ୍କ ସହିତ ସାକ୍ଷାତ ହେବା କ୍ଷଣି ସେ ସ୍ପଷ୍ଟ କହିଲେ—ସୁରେଶ ତୁମେ ଯାହା କରି ବସିଲ ତାହା ଭଲ ହେଲା ନାହିଁ । ମହିମ ସହିତ ଅଚଳାକୁ ବିବାହ ଦେବାପାଇଁ ମୁଁ ଆରମ୍ଭରୁ ରାଜି ନଥିଲି କେବଳ ତୁମେ ନିଶ୍ଚେଷ୍ଟ ହୋଇ ରହିଲ ବୋଲି ମୁଁ ଶେଷରେ ମତ ଦେଲି । ଘରକୁ ଆସିବା ପରେ ତାର ମନ ଭିତରୁ ଯେପରି କିଏ ଅଭିଶାପ ଦେଇ କହି

ଉଠିଲା, ଏ ବିବାହରେ କେହି ଯେପରି ସୁଖୀ ନ ହୁଅନ୍ତୁ । ନିଜ ଅବସ୍ଥାକୁ ବୁଝି ପାରି ବନ୍ଧୁଦ୍ରୋହି ପାଇଁ ମଧୁମ ଏବଂ ନିଜର ଭୁଲ ତ୍ରୁଟି ପାଇ ଅଚଳା ଯେପରି ଆତ୍ମ ଗ୍ଲାନିରେ ଜଳି ପୋଡ଼ି ମରନ୍ତୁ । ପରକ୍ଷଣରେ ଏହି ଅକଲ୍ୟାଣ କାମନା ପାଇଁ ସେ ନିଜକୁ ଧିକ୍କାର କରିବାକୁ ଲଗିଲା । ଏହିଥିରୁ ଜଣା ପଡ଼େ ସେ ସଂକୀର୍ଣ୍ଣମନା ନୁହେଁ । ତଥାପି ତାର ପୀଡ଼ିତ, ପ୍ରତାରିତ ହୃଦୟକୁ ସେ ଆଦୌ ବୁଝାଇ ପାରିଲା ନାହିଁ ବରଂ ନିତାନ୍ତ ଏକଜିଦିଆ ପିଲା ପରି ନିରନ୍ତର ସେହି କଥାକୁ ହିଁ ଘୋଷିବାକୁ ଲାଗିଲା । ଏହିପରି ଭାବରେ କୌଣସି ପ୍ରକାରରେ ମାସଟିଏ କଟାଇ ସାରିଲା ପରେ ମନର କୌତୂହଳକୁ ଆଉ ଦମନ କରି ନପାରି ଶେଷରେ ବ୍ୟାଗ ଧରି ଆସି ମଧୁମ ଘରେ ପହଞ୍ଚିବାକୁ ବାଧ୍ୟ ହେଲା ।

ସୁରେଶ ମଧୁମ ମୁହଁକୁ ଚାହିଁ କହିଲା – ବର୍ତ୍ତମାନ ଦେଖି ପାରୁଛୁ ମୋ କଥାଟା କେତେଦୂର ସତ ?

ମଧୁମ ପଚାରିଲା—କେଉଁ କଥା ?

ସୁରେଶ ଜଣେ ବିଜ୍ଞ ବ୍ୟକ୍ତି ପରି କହିଲା—ମୁଁ ଅବଶ୍ୟ ମଫସଲ ଗାଆଁରେ ବାସ କରିନାହିଁ ସତ, ତଥାପି ମୁଁ ଏ ସମସ୍ତ ଆଗରୁ ଜାଣିଥିଲି । ସେଥିପାଇଁ କ'ଣ ତୋତେ ମୁଁ ସେତେବେଳେ ସାବଧାନ କରି ଦେଇ ନଥିଲି ଯେ ତୋର ଏ ବିବାହ ଫଳରେ ଗାଆଁ ସହିତ, ସମାଜ ସହିତ ଘୋର ଶତ୍ରୁତା ଉପୁଜିବ ବୋଲି ?

ମଧୁମ ଖୁବ୍ ସରଳ ଭାବରେ କହିଲା—କାହିଁ ! ସେପରି ଶତ୍ରୁତା ତ ନାହିଁ ।

: ଶତ୍ରୁତା ଆଉ କାହାକୁ କୁହାଯାଏ ? ତୋ ଘରେ ଗାଆଁର କେହି ଖାଇଲେ କି ? ସେତକ କଣ ଯଥେଷ୍ଟ ଅପମାନ ନୁହେଁ ?

: ମୁଁ କାହାକୁ ଖାଇବାକୁ ନିମନ୍ତ୍ରଣ କରିନାହିଁ ।

: ନିମନ୍ତ୍ରଣ କରି ନାହୁଁ ! ହଁ, ହଁ, କାହିଁ ଚତୁର୍ଥୀ ଭୋଜକୁ ମୋତେ ତ ଡ଼ାକି ନାହୁଁ !

: ଭୋଜଟା ହୋଇ ନାହିଁ ବୋଲି ଡାକି ନାହିଁ ।

ସୁରେଶ ବିସ୍ମିତ ହୋଇ କହିଲା···ଭୋଜି କରିନାହୁଁ ? ଓହୋ ! ତୋର ପୁଣି ସେ ଗୋଟାଏ·····କିନ୍ତୁ ଏପରି କେତେଟା ଉପଦ୍ରବକୁ ତୁ ଏଡ଼ାଇ ଦେଇ ଚାଲିଯାଇ ପାରିବୁ ? ଆପଦ ବିପଦ ଅଛି । ଛୁଆ ପିଲାଙ୍କର କେତେ ଶୁଭକାର୍ଯ୍ୟ ଅଛି, ଘର ସଂସାର କରି ବସିଲେ କେତେ ସାମାଜିକ ଆଚ୍ଛର···ମୁଁ କଣ କହୁଥିଲି କି······

ଯଦୁ ହାତରେ ସୂହାର ସରଞ୍ଜାମ ଏବଂ ଜଣେ ଥାଳୀରେ ମିଠା ଧରି ଅଚଳା ପହଞ୍ଚିଲା । ସୁରେଶ କଥାର ଶେଷ ଅଂଶଟା ଯେ ସେ ଶୁଣି ପାରିଥିଲା ଏହା ତା ମୁହଁର ଭାବଭଙ୍ଗୀରୁ ସୁରେଶ ବୁଝିପାରୁ ନଥିଲା । ଦୁଇ ବନ୍ଧୁଙ୍କର ସୂହାପାନ ଏବଂ ଜଳଯୋଗ ଶେଷ ହେବାମାତ୍ରେ ମହିମ କାନ୍ଧ ଉପରେ ଗୁଦରଟା ପକାଇ ଉଠି ଠିଆ ହେଲା । ଗ୍ରାମର ଜମିଦାର ମୁସଲମାନ । ତାଙ୍କର ପୁଅକୁ ମହିମ ଇଂରାଜୀ ପଢ଼ାଏ । ଜମିଦାର ମହାଶୟ ଜଣେ ଲେଖାପଢ଼ା ନ ଜାଣିଥିଲେ ମଧ୍ୟ, ତାଙ୍କର ଉଦାରତା ଯଥେଷ୍ଟ ଥିଲା । ଏଇଥିପାଇଁ ଗାଆଁ ଲୋକମାନେ ଧର୍ମର ଦୁହାଇ ଦେଇ ଆଜି ପର୍ଯ୍ୟନ୍ତ ସୁଦ୍ଧା ତାଙ୍କ ସହିତ ଶତ୍ରୁତା କରିବାକୁ ସାହାସ କରିପାରି ନାହାଁନ୍ତି ।

ଅଚଳା କହିଲା—ଆଜିକ ପଢ଼ାଇବାକୁ ନଗଲେ କ'ଣ ଚଳନ୍ତା ନାହିଁ ?

ମହିମ କହିଲା—କାହିଁକି ?

ଅଚଳାର ମନର ଜୋର୍ ଓ ଅନ୍ତରର ନିର୍ମଳତା ଯେତେ ବେଶୀ ହେଉ ପଛକେ କିନ୍ତୁ ସୁରେଶ ସହିତ ତାର ସମ୍ପର୍କଟା ଯେଉଁ ରୂପ ଧାରଣ କରିଥିଲା ସେଥିରେ ତାର ଆକସ୍ମିକ ଆଗମନ ହେତୁ ଯେ କୌଣସି ବିବାହିତା ରମଣୀ ସଙ୍କୁଚିତ ନ ହୋଇ ରହି ନପାରେ ଏହା ନିଘଟ ସତ କଥା । ସୁରେଶକୁ ସେ ଭଲକରି ଜାଣେ । ତାର ହୃଦୟ ଯେତେ ମହତ ହେଉ ପଛକେ କିନ୍ତୁ ସେହି ହୃଦୟ ଉପରେ ତାର କୌଣସି ଦିନ ଆସ୍ଥା ନଥିଲା । ଏଥିପାଇଁ ସେ ବରାବର ସୁରେଶକୁ ଭୟ କରୁଥିଲା । ଆଜି ସନ୍ଧ୍ୟାରେ ତାହା ସହିତ ତାକୁ ଏକାକିନୀ ଛାଡ଼ିଦେଇ ଯିବାର ପ୍ରସ୍ତାବକୁ ଯଦିଓ ସେ ମନେ ମନେ ସମର୍ଥନ କରୁ ନଥିଲା ତଥାପି ବାହାରକୁ ତାର ମନଭାବନା ତିଳେମାତ୍ର ପ୍ରକାଶ ନକରି ହସି ହସି କହିଲା—ବାଃ । ସେମିତି କ'ଣ ହୁଏ ? ଅତିଥିଙ୍କୁ ଏକାକୀ ଛାଡ଼ିଦେଇ······

ମହିମ କହିଲା—ତାହାଫଳରେ ଅତିଥି ସତ୍କାର କରିବାପାଇଁ କୌଣସି ଅସୁବିଧା ହେବନାହିଁ । ତାହାଛଡ଼ା ତୁମେ ତ ଅଛ—

ଅଚଳା ଇତସ୍ତତଃ ହୋଇ କହିଲା—ମୁଁ ମଧ୍ୟ ରହିପାରିବ ନାହିଁ । ସୁରେଶକୁ ଚାହିଁ କହିଲା—ମୋର ପୂଜାଘର ବ୍ରାହ୍ମଣଟି ଏଡ଼େ ପକା ରାନ୍ଧୁଣୀ ଯେ ତାହା ପାଖେ ପାଖେ ନ ରହିଲେ ତେଣିକି କିଛି ତୁଣ୍ଡରେ ଦେବାକୁ ଇଚ୍ଛାହେବ ନାହିଁ । ମୁଁ କହୁଛି ତୁମେ ବରଂ ଚ······

ମହିମ ମୁଣ୍ଡ ହଲାଇ କହିଲା—ନା, ତାହା ହୋଇପାରିବ ନାହିଁ । ମାତ୍ର ଘଣ୍ଟା ଦୁଇଟା—କହି ବାଡ଼ି ଖଣ୍ଡ ଘର କୋଣରୁ ଧରି ସେ ଯିବାକୁ ଉଦ୍ୟତ ହେଲା ।

ପ୍ରଥମରେ ତ ମହିମର କାର୍ଯ୍ୟର ଗତି ସହଜରେ ବିପର୍ଯ୍ୟସ୍ତ ହୁଏନାହିଁ, ତେଣୁ ଏହିଭଳି ଗୋଟାଏ ସାମାନ୍ୟ କାରଣ ନେଇ ବାରମ୍ବାର ଅନୁରୋଧ କରିବା ପାଇଁ ଅଚଳାକୁ ଲଜ୍ଜା ଲାଗିଲା ଏବଂ ଦ୍ୱିତୀୟରେ ତାର ଚେଷ୍ଟା ସୁରେଶ ଆଖିରେ ଧରା ପଡ଼ିଯିବା ଫଳରେ ସେହି ଲଜ୍ଜାଟା ଗୁଣକରୁ ଶହେଗୁଣ ହୋଇ ଉଠିଲା ।

ମହିମ ଧୀରେ ଧୀରେ ବାହାରକୁ ଚାଲିଗଲା ।

ସୁରେଶ ମହିମକୁ ଶୁଣାଇ ଶୁଣାଇ ଅଚଳାକୁ ହସି ହସି କହିଲା—କାହିଁକି ତୁମେ ପାରୁଥିଲ କହିଲ ? ମୁଁ ଜାଣେ, ମହିମ ସେପରି ଲୋକ ନୁହେଁ; ଯିଏ ଅନ୍ୟର କଥା ରଖିବ । ତୁମେ ବରଂ ଯାହାତାହା ଖଣ୍ଡେ ବହି ମୋତେ ପଢ଼ିବାକୁ ଦେଇ ନିଜ କାମରେ ବ୍ୟସ୍ତ ରୁହ । ଦେଖିବ, ମୋର ସମୟ ଖୁବ୍ ସୁନ୍ଦର ଭାବରେ କଟିଯିବ ।

କଥାଟା ହଠାତ୍ ଅଚଳାକୁ ଏପରି ଶୁଣାଗଲା ଯେପରି ମହିମ କୌଣସି ଦିନ ତାର କୌଣସି ଅନୁରୋଧକୁ ସମ୍ମାନ ଦିଏନାହିଁ । ହୋଇପାରେ ତାଙ୍କର ଏହା ସୁମହତ୍ ଗୁଣ । ତଥାପି କିନ୍ତୁ ସୁରେଶ ଆଗରେ ସ୍ୱାମୀଙ୍କର ଆଜନ୍ମ କର୍ତ୍ତବ୍ୟ-ନିଷ୍ଠାର ପରିଚୟଟା ଯେପରି ତାକୁ ଉପେକ୍ଷା କଲାଭଳି ଲାଗିଲା । କୌଣସି କଥା ନକହି ସେ ଚୁପ୍ କରି ଘର ଭିତରକୁ ଚାଲିଯାଇ ଯତ୍ନ ହାତରେ ଗୋଟାଏ ବଙ୍ଗଳା ବହି ସୁରେଶ ନିକଟକୁ ପଠାଇ ଦେଲା ।

ଶୋଇବାକୁ ଗଲାବେଳେ ରାତି ଅନେକ ହୋଇ ଯାଇଥିଲା, ସେତେବେଳେ ମହିମ ପଚାରିଲା—ସୁରେଶ ଏଠାରେ କେତେଦିନ ରହିବ ବୋଲି ତୁମକୁ କିଛି କହିଲା କି ?

ନାନା କାରଣରୁ ସ୍ୱାମୀ ଉପରେ ଅଚଳାର ମନ ସାରାଦିନ ପ୍ରସନ୍ନ ନଥିଲା, ତାପରେ ଏହି ପ୍ରଶ୍ନ ମଧ୍ୟରେ ଗୋଟାଏ କୁତ୍ସିତ, ବିଦ୍ରୂପ ନିହିତ ଅଛି କଳ୍ପନା କରି ସେ ଆଖି ପିଛୁଳାକେ ଜଳି ଉଠିଲା । କଠୋର କଣ୍ଠରେ ପ୍ରଶ୍ନ କଲା—ତାର ମାନେ ?

ମହିମ ଆଶ୍ଚର୍ଯ୍ୟ ହୋଇ ଉଠିଲା । ସେ ସରଳ ଭାବରେ କଥାଟା ଜାଣିବାକୁ ଚାହିଁଥିଲା, ବ୍ୟଙ୍ଗ କି ବିଦ୍ରୂପ କିଛି କରିନାହିଁ । ଏତେସମୟ ଧରି ଆଳାପ ଆଲୋଚନା ଭିତରେ ସେ ବନ୍ଧୁକୁ ଏହି ପ୍ରଶ୍ନଟା ସଙ୍କୋଚ କରି ପଚାରିପାରି ନଥିଲା ଏବଂ ସୁରେଶ ମଧ୍ୟ ନିଜ ଆଡ଼ୁ କେବେ ଯିବ ସେ କଥା କହିନାହିଁ ତଥାପି ସେ ଆଶା କରିଥିଲା, ସୁରେଶ ନିଶ୍ଚୟ ଅଚଳାକୁ ସେ ବିଷୟରେ କିଛି ନା କିଛି କହିଥିବ ।

ମହିମଙ୍କୁ ନୀରବ ହୋଇ ରହିବାର ଦେଖି ଅଚଳା କହିଲା—ଏ କଥାର ଅର୍ଥ ଏତେ ସରଳ ଯେ ତୁମର ପଚାରିବା ଦରକାର ଆଦୌ ନଥିଲା । ତୁମର ବିଶ୍ୱାସ ଯେ ସୁରେଶବାବୁ କୌଣସି ମତଲବ ନେଇ ଏଠାକୁ ଆସିଛନ୍ତି ଏବଂ ତାହା ସଫଳ ହେବାକୁ କେତେଦିନ ବିଳମ୍ବ ହେବ, ସେ କଥା ବୋଧହୁଏ ମୁଁ ଜାଣେ । ଏଇୟା ତ ?

ମହିମ ଆହୁରି କିଛି ସମୟ ଚୁପ୍ ରହି କୋମଳ କଣ୍ଠରେ କହିଲା—ମୋର ଏପରି କୌଣସି ବିଶ୍ୱାସ ନାହିଁ । କିନ୍ତୁ ମୃଣାଳର ବ୍ୟବହାରରେ ଆଜି ତୁମର ମନ ଭଲନାହିଁ । ତେଣୁ ତୁମେ ସହଜ ଭାବରେ କିଛି ବୁଝିପାରିବ ନାହିଁ । ଶୋଇପଡ଼ । କାଲି ଉଠିଲେ ସେ ବିଷୟରେ କଥା ହେବା, କହି ନିଜେ କର ଲେଉଟାଇ ଶୋଇବା ପାଇଁ ଚେଷ୍ଟା କଲା ।

ଅଚଳା ଶୋଇପଡ଼ିଲା ସତ, କିନ୍ତୁ ପ୍ରକୃତରେ ତା ଆଖିକୁ ନିଦ ଆସିଲା ନାହିଁ । ତା ମନ ଭିତରେ ଯେଉଁ ବିରକ୍ତି ଉତ୍ତରୋତ୍ତର ଜମା ହୋଇ ଉଠିଥିଲା, ସାମାନ୍ୟ ଟିକିଏ କଳହ ଆକାରରେ ତାହା ବାହାରି ପଡ଼ିଲେ ହୁଏତ ସେ ସୁସ୍ଥ ହୋଇ ପାରନ୍ତା । କିନ୍ତୁ ଏପରି ଭାବରେ ତାର ମୁହଁ ବନ୍ଦ କରିଦେବା ଫଳରେ ସେ ନିଜ ଭିତରେ ନିଜେ ପୋଡ଼ିବାକୁ ଲାଗିଲା । ଅଶିକ୍ଷିତା ସାଧାରଣ ସ୍ତ୍ରୀ ଲୋକଙ୍କ ପରି ଉପରେ ପଡ଼ି କଜିଆ କରିବାର ଯେଉଁ ଲଜ୍ୟା ଓ ଇତରତା ଅଛି ସେପରି କରିବା ମଧ୍ୟ ତାହା ପକ୍ଷରେ ଅସମ୍ଭବ । ତେଣୁ ସେ କେବଳ କଳ୍ପନାରେ ସ୍ୱାମୀଙ୍କୁ ପ୍ରତିପକ୍ଷ ରୂପେ ଠିକ୍ କରିଇ ଜ୍ୱାଳାମୟୀ ପ୍ରଶ୍ନ ଓ ଉତ୍ତର ସମୂହ ଦ୍ୱାରା ନିଜକୁ କ୍ଷତ ବିକ୍ଷତ କରାଇ, ବହୁତ ରାତି ପର୍ଯ୍ୟନ୍ତ ବିଛଣାରେ ପଡ଼ି ଛଟପଟ ହେବାକୁ ଲାଗିଲା ।

ତା'ପର ଦିନ ସକାଳେ ଟିକିଏ ବିଳମ୍ବରେ ନିଦ ଭାଙ୍ଗିବା ମାତ୍ରେ ଅଚଳା ଧଡ଼ପଡ଼ ହୋଇ ଉଠିପଡ଼ି ବାହାରକୁ ଆସି ଦେଖିଲା—ଯଦୁ କେଟଲୀ ଧରି ରୋଷ ଘରକୁ ଯାଉଛି । ଯଦୁକୁ ଡାକି ପଚାରିଲା—ବାବୁ କ'ଣ କିଛି କହି-ଯାଇଛନ୍ତି କି ଯଦୁ ?

ଯଦୁ କହିଲା—ବେଳ ଘଡ଼ିକ ପହରକୁ ସେ ଫେରି ଆସିବେ ବୋଲି କହି ଯାଇଛନ୍ତି ।

ମହିମ ପ୍ରତିଦିନ ସକାଳୁ ଉଠି ନିଜର ବିଲବାଡ଼ି ଦେଖିବାକୁ ଯାଏ । ଫେରୁ ଫେରୁ କେଉଁଦିନ ଦ୍ୱିପହର ମଧ୍ୟ ହୋଇଯାଏ ।

ଅଚଳା ପଚାରିଲା—ନୂଆବାବୁ ଉଠିଲେଣି ?

ଯଦୁ କହିଲା—ଉଠିଲେଣି କ'ଣ ? ସେ ତ ଚାହା ତିଆରି କରିବା ପାଇଁ ତଗାଦା କରୁଛନ୍ତି ।

ଅଚଳା ଶୀଘ୍ର ହାତ ମୁହଁ ଧୋଇ ଲୁଗା ବଦଳାଇ, ବାହାରକୁ ଆସି ଦେଖିଲା—ସୁରେଶ ବହୁତ ବେଳରୁ ପ୍ରସ୍ତୁତ ହୋଇ, ଘରର ସମସ୍ତ କବାଟ ଝରକା ଖୋଲିଦେଇ, ଖୋଲା ଝରକା ଆଗରେ ଗୋଟିଏ ଚୌକି ଟାଣିନେଇ ସେହି ବହି ଖଣ୍ଡ ପଢ଼ିବାରେ ଲାଗିପଡ଼ିଛି । ଅଚଳାର ପାଦ ଶବ୍ଦ ଶୁଣି ସୁରେଶ ବହିରୁ ମୁହଁ ଉଠାଇ ଚାହିଁଲା । ଅଚଳା ମୁହଁରେ ଗତ ରାତି ଉଜାଗର ରହିଥିବାର ଚିହ୍ନ ସୁସ୍ପଷ୍ଟ ହୋଇ ଦେଖାଯାଉଥାଏ । ଆଖି ତଳେ କଳା ଦାଗ, ଗଣ୍ଡ ପାଂଶୁବର୍ଣ୍ଣ, ଓଠ ମଳିନ । ସେ ଯେତେ ଦେଖିବାକୁ ଲାଗିଲା, ତା'ମନ ସେତିକି ଈର୍ଷାରେ ଜଳି ଉଠିଲା । ତଥାପି ସେ ଅଚଳା ମୁହଁ ଉପରୁ ଆଖି ଫେରାଇ ଆଣି ପାରିଲା ନାହିଁ ।

ସୁରେଶର ଚାହିଁବା ଭଙ୍ଗୀ ଦେଖି ଅଚଳା ବିସ୍ମିତା ହୋଇ ଉଠିଲା ଯଦିଓ କିନ୍ତୁ ଅର୍ଥ ବୁଝି ପାରିଲା ନାହିଁ । ପଚାରିଲା—କେତେବେଳେ ଉଠିଲେ ? ମୋର ଉଠୁ ଉଠୁ ଆଜି ଡେରି ହୋଇଗଲା ।

: ସେଇଆ ତ ଦେଖୁଛି । ସୁରେଶ ଆସ୍ତେ ଆସ୍ତେ ମୁଣ୍ଡ ହଲାଇଲା । ସମ୍ମୁଖ କାନ୍ଥରେ ବହୁଦିନର ଗୋଟିଏ ପୁରୁଣା ଦର୍ପଣ ଟଙ୍ଗା ହୋଇଥିଲା । ଠିକ୍ ସେହି ସମୟରେ ଅଚଳାର ଦୃଷ୍ଟି ତାହା ଉପରେ ପଡ଼ିଲା । ସୁରେଶ ଚାହାଣୀର ଅର୍ଥ ମୁହୂର୍ତ୍ତକ ଭିତରେ ଅଚଳା ଆଗରେ ପରିଷ୍କାର ହୋଇଗଲା । ନିଜର ଶ୍ରୀହୀନତା ପାଇଁ ସେ ଲାଜରେ ମରିଗଲା । ଏହି ମୁହଁ ଖଣ୍ଡିକ କେଉଁଠି ଲୁଚାଇବ, ଏବଂ ସୁରେଶର ମିଥ୍ୟା ଧାରଣାକୁ କିପରି ପ୍ରତିବାଦ କରି ଦୂରକରି ପାରିବ, ଏ ବିଷୟରେ କିଛି ନିଷ୍ପତ୍ତି କରି ନପାରି ସେ ଶୀଘ୍ର ସେଠାରୁ ଚାଲିଯିବାବେଳେ କହି ଉଠିଲା— ଯାଏ, ଆପଣଙ୍କ ପାଇଁ ଚାହା ନେଇ ଆସେ ।

ସୁରେଶ କିଛି କହିଲାନାହିଁ କେବଳ ଗୋଟିଏ ଦୀର୍ଘ ନିଃଶ୍ୱାସ ଛାଡ଼ି ଶୂନ୍ୟ ଦୃଷ୍ଟିରେ ଶୂନ୍ୟ ଆକାଶକୁ ଚାହିଁରହି ସ୍ତବ୍ଧ ଭାବରେ ବସି ରହିଲା ।

ଦଶ ମିନିଟ୍ ପରେ ଚାହା ତିଆରିକରି ଅଚଳା ପୁଣି ଯେତେବେଳେ ସୁରେଶ ନିକଟରେ ପହଞ୍ଚିଲା ସେତେବେଳକୁ ନିଜକୁ ସେ ସଜ୍ଜିତ କରି ପାରିଥିଲା ।

ଚାହା ପିଉ ପିଉ ସୁରେଶ କହିଲା—କାହିଁ ! ତୁମେ ତ ଚାହା ପିଇଲ ନାହିଁ ?

ଅଚଳା ହସିଦେଇ କହିଲା—ଚାହା; ମୁଁ ଛାଡ଼ି ଦେଇଛି ।

: ଗ୍ରହଣ କରିଦେଲ କାହିଁକ ?

: ଆଉ ଭଲ ଲାଗିଲା ନାହିଁ । ତା'ଛଡ଼ା ଏ ଜାଗାଟା ଅତ୍ୟନ୍ତ ଗରମ କି ନା ? ଗ୍ରହା ପିଇଲେ ରାତିରେ ନିଦ ହୁଏନାହିଁ । କାଲିତ ସେଥିପାଇଁ ସାରା ରାତି ଶୋଇପାରି ନାହିଁ । ହସି ହସି କହିଲା—ଗୋଟିଏ ରାତି ନିଦ ନ ହେଲେ ଆଖି ଓ ମୁହଁ ଯେ କି କଦର୍ଯ୍ୟ ହୋଇଉଠେ ଯାହା ଫଳରେ କାହା ଆଗକୁ ଆସିବାକୁ ମୋତେ ଖରାପ ଲାଗେ ।

ସୁରେଶ କିଛି କ୍ଷଣ ନୀରବ ରହି କହିଲା, କିନ୍ତୁ ତୁମର ତ ଗ୍ରହା ପିଇବା ପିଲା ବେଳରୁ ଅଭ୍ୟାସ ଥିଲା । ଗ୍ରହା ପିଇବାକୁ କେବେ ମହିମ ତୁମକୁ ଅନୁରୋଧ କରିନାହିଁ ?

ଅଚଳା ହସି କରି କହିଲା—ଅନୁରୋଧ କଲେ ସୁଦ୍ଧା ଶୁଣୁଛି କିଏ ? ତା'ଛଡ଼ା ଏ ଏମିତି କି ଜିନିଷ ଯେ ନ ଖାଇଲେ ନ ଚଳେ ।

ସେ ହସ ଯେ ଶୁଖିଲା ହସ, ସୁରେଶ ତାହା ସ୍ପଷ୍ଟ ଦେଖି ପାରିଲା । ପୁଣି କିଛି କ୍ଷଣ ନୀରବ ରହି କହିଲା—ତୁମେ ତ ଜାଣ ଭୂମିକା ଦେଇ କଥା କହିବା ମୋର ଅଭ୍ୟାସ ନାହିଁ କିମ୍ବା ଚେଷ୍ଟା କଲେ ସୁଦ୍ଧା କହିପାରେ ନାହିଁ । ଖୋଲାଖୋଲି ଗୋଟାଏ, ଦଇଟା ପ୍ରଶ୍ନ ପଚାରିଲେ, ତୁମେ କ'ଣ ରାଗ କରିବ କି ?

ଅଚଳା ହସି ହସି କହିଲା—କଥା ଶୁଣେମ । ରାଗ କରିବ କାହିଁକି ?

ସୁରେଶ କହିଲା—ଆଚ୍ଛା, ତୁମେ ଏଠାରେ ସୁଖରେ ଅଛ ତ ?

ଅଚଳାର ହସ ହସ ମୁହଁ ଲାଲ୍ ପଡ଼ିଗଲା । ସେ କହିଲା—ଆପଣଙ୍କର ଏ ପ୍ରଶ୍ନ ପଚାରିବା ଉଚିତ୍ ହୋଇନାହିଁ ।

: କାହିଁକି ?

: ଅଚଳା ମୁଣ୍ଡ ହଲାଇ କହିଲା—ନା, ମୁଁ ସୁଖରେ ନାହିଁ ଏ କଥା ଭାବି ବସିବା ଆପଣଙ୍କର ଅନ୍ୟାୟ ହୋଇଛି ।

ସୁରେଶ ଶୁଖିଲା ହସ ହସି କହିଲା—ମଣିଷ କ'ଣ ଉଚିତ୍, ଅନୁଚିତ୍ ଭାବି ପାରିବା ପରେ, ଭାବନା ଆରମ୍ଭ କରେ ? କେବଳ ଦୁଇମାସ ତଳେ ମୋର ଏପରି ଭାବନା ଉଚିତ୍ ଥିଲା, ତା ନୁହେଁ, ବରଂ ଏପରି ଚିନ୍ତା କରିବାର ଅଧିକାର ମଧ୍ୟ ଥିଲା । ଆଜି ଦୁଇମାସ ପରେ ସେ ଅଧିକାର ଯଦି ନଥାଏ ତେବେ ନଥାଉ ଏବଂ ସେଥିପାଇଁ ମୁଁ କାହା ନିକଟରେ ନାଲିଶ କରୁନାହିଁ । ବର୍ତ୍ତମାନ କେବଳ ଯିବା ପୂର୍ବରୁ ସତ କଥାଟା ଜାଣିବା ପାଇଁ ଚାହେଁ । ଆସିବା ପରଠାରୁ ମୋର

କପର ମନେ ହେଉଛୁ ତୁମେ ଜଡ ଯାଇଛ ତ ପୁଣି କେତେବେଳେ ଭାବୁଛ ହାର ଯାଇଛ । ମୋ ମନଟା ତ ତୁମକୁ ଅଜଣା ନାହିଁ । ସତକର କହଲ, ଅଚଳା ?

ଦୁର୍ନିବାର ଅଶ୍ରୁର ଢେଉ ଅଚଳାର କଣ୍ଠ ପର୍ଯ୍ୟନ୍ତ ଫେଣାଇ ଆସିଲା । କନ୍ତୁ ପ୍ରାଣପଣେ ତାର ଶକ୍ତ ଖଟାଇ ତାକୁ ଦବାଇ ସେ ମୁଣ୍ଡ ହଲାଇ କହଲା— ମୁଁ ବେଶ୍ ଭଲ ଅଛୁ ।

ସୁରେଶ ଧୀରେ ଧୀରେ କହଲା—ଭଲ କଥା ।

ଏହାପରେ କଛୁ ସମୟ ପର୍ଯ୍ୟନ୍ତ କେହ ଯେପର କ'ଣ କଥାହେବେ ସ୍ଥିର କରପାରଲେ ନାହିଁ । ସୁରେଶ ହଠାତ୍ ଆଷ୍ଟର୍ଯ୍ୟ ହୋଇ କହ ଉଠିଲ—ଆଉ ଗୋଟିଏ କଥା, ତୁମ ପାଇଁ ଯେ ମୁଁ କେତେ ବେଦନା ସହ୍ୟ କରୁଛୁ ସେସବୁ କଣ ତୁମର କେତେବେଳେ······ ··

ଅଚଳା ଦୁଇକାନ ଭିତରେ ଆଙ୍ଗୁଳି ପୁରାଇ କହଲା—ମୋର ଅନୁରୋଧ ଦୟାକର ଏ ସମସ୍ତ ଆଲୋଚନା କରନ୍ତୁ ନାହିଁ ।

ସୁରେଶ ଖୋଲା ଦରଜା ନକଟରେ ଦୁଇହାତ ବଢ଼ାଇ ଅଚଳାର ଯିବା ବାଟକୁ ଓଗାଳ କହ ଉଠିଲା—ନା, ଅନୁରୋଧ ମୁଁ ରକ୍ଷା କରବ ନାହିଁ । ତୁମକୁ ମୋ କଥା ଶୁଣିବାକୁ ହିଁ ପଡ଼ିବ ।

ସୁରେଶ ଆଖିରେ ସେହ ଗୃଧ୍ନାଁଣୀ; ଯାହା ମନେ ପଡ଼ିଲେ ଏବେ ମଧ୍ୟ ଅଚଳା ଭୟରେ ଶିହର ଉଠେ । ସେ ଆତଙ୍କରେ ଦୁଇପାଦ ପଛକୁ ଘୁଞ୍ଚିଯାଇ କହଲା—ଆଚ୍ଛା କହନ୍ତୁ········

ସୁରେଶ କହିଲା—ଭୟ କରବାର କଛୁ ନାହିଁ, ତୁମ ଦେହରେ ମୁଁ ଆଦୌ ହାତ ଦେବ ନାହିଁ । ମୋର ସେତେକ ଜ୍ଞାନ ଅଛୁ, କହି ପୁଣି ଚୌକି ଉପରେ ବସିପଡ଼ି କହବାକୁ ଆରମ୍ଭ କଲ—ଏ କଥା ତୁମକୁ ମନେ ରଖିବାକୁ ହେବ ଯେ, ତୁମ ଉପରେ ମୁଁ ମୋର ସମସ୍ତ ଅଧିକାର ହରାଇ ଥିଲେ ସୁଦ୍ଧା ମୋ ଉପରେ ତୁମର କନ୍ତୁ ସମସ୍ତ ଅଧିକାର ପୂର୍ବପର ରହିଛୁ ।

ଅଚଳା ବାଧା ଦେଇ କହଲା—ମନେ ରଖିବା ଦ୍ୱାରା କୌଣସି ଲାଭ ହେବ ନାହିଁ । ଏତକ କହ ସେ ଦେଖିବାକୁ ପାଇଲା ନମିଷକ ଭିତରେ ଏ କଥା ପଦକ ଯେପର ସୁରେଶ ବୁକୁରେ ଏତେ ଜୋରରେ ଆଘାତ କଲା ଯେ ତାର ମୁହ ଶୁଖି କଳାକାଠ ପଡ଼ିଗଲା ।

କିଛି ସମୟ ଚୁପ୍ ରହିବା ପରେ ଏଥର ସେ ନରମ କଣ୍ଠରେ କହିଲା— ସୁରେଶବାବୁ, ଏସବୁ କଥା ଶୁଣିବା ମୋର ପାପ । ଆପଣଙ୍କର ମଧ୍ଯ କହିବା ଅନୁଚିତ୍ । ଏସବୁ କଥା ଉଠାଇ ଆପଣ କାହିଁକି ମୋତେ ଦୁଃଖ ଦେଉଛନ୍ତି ?

ସୁରେଶ ଅଚଳା ମୁହଁକୁ ଚାହିଁରହି କହିଲା—ସତରେ କ'ଣ ତୁମେ "ଦୁଃଖ" ବୋଲି କିଛି ଅନୁଭବ କରିପାର ?

ଅଚଳା ମୁହଁରୁ ହଠାତ୍ ବାହାରି ପଡ଼ିଲା—ମୁଁ କ'ଣ ପାଷାଣ ସୁରେଶବାବୁ ?

ସୁରେଶ ତାହାର ସେହି ଦୃଷ୍ଟି ଅଚଳା ମୁହଁରୁ ଫେରାଇ ନେଲାନାହିଁ ସତ; କିନ୍ତୁ ଅଚଳାର ଦୁଇ ଆଖି ତଳକୁ ହୋଇଗଲା, ସୁରେଶ ଧୀରେ ଧୀରେ କହିଲା— ବେଶ୍, ସାରା ଜୀବନ ପାଇଁ ଏତିକି ମୋର ସମ୍ବଳ ହୋଇ ରହିଲା ଅଚଳା; ଏହାଠାରୁ ବେଶୀ ଆଉ କିଛି ମୁଁ ଚାହେଁ ନାହିଁ କହି ମୁହୂର୍ତ୍ତିକ ପାଇଁ ନୀରବରହି ପୁଣି କହିଲା—ତୁମ ସୁଖର ଭାର ଯାହା ଉପରେ ଥାଉ ; ତୁମେ ଯେତେବେଳେ ପାଷାଣୀ ନୁହଁ ସେତେବେଳେ ମୋତେ ମୋର ଶେଷ ଭିକ୍ଷା ମାଗିବାରୁ ବଞ୍ଚିତ କରି ପାରିବ ନାହିଁ । କିନ୍ତୁ ତୁମ ହାତରୁ ଯେତେବେଳେ ଦୁଃଖ ପାଇ ଆସିଛି ସେତେବେଳେ ତୁମର ଯେତେ ଦୁଃଖର ଭାର ସେତକ ଯେପରି ମୋତେ ବୋହିବା ପାଇଁ ଅନୁମତି ମିଳୁ । ମୁଁ ଆଜି ତୁମକୁ ଏତିକି ମାଗୁଛି । ଆଶାକରେ ମୋତେ ନିରାଶ କରିବ ନାହିଁ; କହୁ କହୁ, କୋହରେ ତାହାର କଣ୍ଠ ରୁଦ୍ଧହୋଇ ଆସିଲା ।

ଅଚଳା ଆଖିରୁ ମଧ୍ଯ ଗଲା ରାତିର ସମସ୍ତ ପୁଞ୍ଜୀଭୂତ ବେଦନା ତାର ଅନିଚ୍ଛା ସତ୍ତ୍ୱେ ଏଣିକି ଟପ୍ ଟପ୍ ହୋଇ ପଡ଼ିବାକୁ ଲାଗିଲା ।

ଏହି ସମୟରେ ହଠାତ୍ ବାହାରେ ଯୋତାର ଶବ୍ଦ ଶୁଣାଗଲା ଏବଂ ପରକ୍ଷଣରେ ମହିମ ଘର ଭିତରକୁ ପ୍ରବେଶ କରୁ କରୁ କହି ଉଠିଲା—ଆରେ ସୁରେଶ, କ'ଣ ଚା'ଟା, ଖାଇଲୁଣି କି ନାହିଁ ?

ସୁରେଶ ହଠାତ୍ ଉତ୍ତର ଦେଇପାରିଲା ନାହିଁ । ସେ କୌଣସି ମତେ ମୁହଁ ତଳକୁ କରି ଆଖିରୁ ଲୁହ ପୋଛିବାକୁ ଲାଗିଲା ଏବଂ ଅଚଳା ଦ୍ରୁତ ପଦରେ ମହିମ ପାଖଦେଇ ଘର ଭିତରକୁ ଚାଲିଗଲା ।

ମହିମ ଚୌକାଠ ଉପରେ ଗୋଟିଏ ପାଦ ଏବଂ ବାହାରେ ଗୋଟିଏ ପାଦ ରଖି ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲା ।

ନିଜକୁ ଯଥା ସମ୍ଭବ ସଂଯତ କରି ମଧୁମ ଘର ଭିତରକୁ ଯାଇ ଚୌକିଟିଏ ଟାଣିନେଇ ବସିପଡ଼ିଲା ।

ମଣିଷ ହୃଦୟ ଯେଉଁ ସମୟରେ ସର୍ବାପେକ୍ଷା ଅସଙ୍କୋଚ ଓ ଅବଲୀଳା-କ୍ରମେ ମିଥ୍ୟା ଉଦ୍ଭାବନ କରିପାରେ, ସୁରେଶର ସେତେବେଳେ ସେହି ଅବସ୍ଥା । ସେ ଚଟ୍‌କରି ହାତରେ ଆଖି ପୋଛି ପକାଇ ସଲ୍ଲଜ ଭାବରେ ହସି ହସି କହିଲା— ବାସ୍ତବିକ୍ ମୁଁ ବଡ଼ ଦୁର୍ବଳ ହୋଇପଡ଼ିଛି ।

ମଧୁମ ସେଥିପାଇଁ କୌଣସି ଉଦ୍‌ବେଗ ତ ପ୍ରକାଶ କଲାନାହିଁ ଏପରିକି ତାହାଁର କାରଣ ପର୍ଯ୍ୟନ୍ତ ଜାଣିବା ପାଇଁ ଇଚ୍ଛା ମଧ୍ୟ କଲାନାହିଁ ।

ସୁରେଶ ତେଣୁ ନିଜେ ନିଜର କୈଫିୟତ ଦେବାକୁ ଲାଗିଲା । କହିଲା ଯିଏ' ଯାହା କହୁ ପଛକେ ମଧୁମ, ଏ କଥା ମୁଁ ଜୋର କରି କହି ପାରିବ ଯେ ଅନ୍ୟ ଆଖିରେ ଲୁହ ଦେଖିଲା ପରେ କେଜାଣି କାହିଁକି ମୋ ଆଖିରେ ମଧ୍ୟ ଲୁହ ଆସିଯାଏ । ମୁଁ ହୁଏତ ଯାଇ ନଥିଲେ କେଦାରବାବୁ ଏଥର ବଞ୍ଚି ନଥାନ୍ତେ; କିନ୍ତୁ ବୁଢ଼ା ତ ଆଚ୍ଛା ବଦ୍‌ମିଜାଜୀ ଲୋକରେ ମଧୁମ, ଗୋଟିଏ ବୋଲି ଝିଅ, ତଥାପି; କିନ୍ତୁ ତାକୁ ଖବର ଦେଲେ ନାହିଁ । ବାଘଘର ପରଠାରୁ ସେ ଭୀଷଣ ବିଗିଡ଼ି ଯାଇଛନ୍ତି । ତାଙ୍କ ରାଗ କୌଣସିମତେ ଆଜି ପର୍ଯ୍ୟନ୍ତ ସୁଦ୍ଧା ଶାନ୍ତ ହୋଇପାରିଲା ନାହିଁ । ମୁଁ କହିଲି ଯାହା ହେବାର ତ ହୋଇ ଯାଇଛି······

ମଧୁମ ପ୍ରଶ୍ନ କଲା—ଗୃହା ପିଇଲୁଣି ତ ?

ସୁରେଶ ମୁଣ୍ଡ ହଲାଇ କହିଲା—ହଁ । କିନ୍ତୁ ନିଜ ବାପାଙ୍କଠାରୁ ଏପରି ବ୍ୟବହାର ପାଇଲେ କେଉଁ ଝିଅ ଦୁଃଖ ନକରିବ କହିଲୁ ? ପୁରୁଷ ଲୋକ ହୋଇ ଆମେ ତ ସହ୍ୟ କରିପାରୁ ନାହିଁ; ଯେତେହେଲେ ସେ ତ ସ୍ତ୍ରୀ ଲୋକ······

ମଧୁମ କହିଲା—ତା' ଅବଶ୍ୟ ସତ । ରାତିରେ ତୋର ଶୋଇବାରେ କିଛି ଅସୁବିଧା ହୋଇନି ସୁରେଶ ? ଭଲରେ ଶୋଇ ପାରିଥିଲୁ ତ ? ନୂଆ ଯାଗା କି' ନା······

ସୁରେଶ ସଙ୍ଗେ ସଙ୍ଗେ କହି ଉଠିଲା—ନା, ନୂଆ ଯାଗା ହେଲେ ମଧ୍ୟ ମୋର ଶୋଇବାରେ କିଛି ଅସୁବିଧା ହୋଇନାହିଁ । ଭଲ ନିଦ ହୋଇଥିଲା । ଏକ କଡ଼କରେ ରାତି ପାହିଛି । ଆଚ୍ଛା ମଧୁମ, କେଦାରବାବୁ ତାଙ୍କର ଅସୁସ୍ଥତା ଖବର ଏକବାରେ ତୁମମାନଙ୍କୁ ଜଣାଇଲେ ନାହିଁ ! ଏ ତ କମ୍ ଆଶ୍ଚର୍ଯ୍ୟର କଥା ନୁହେଁ ?

ମଦ୍ଦମ ନହାଡ ସରଳ ଭାବରେ କହିଲା; ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ତା ପରେ ସାମାନ୍ୟ ହସିଦେଇ କହିଲା; ହାତ ମୁହଁ ଧୋଇ ଟିକିଏ ବୁଲିବାକୁ ଯିବୁ କି ? ଯାଆ, ଶୀଘ୍ର କାମ ସାରି ନେ । ମୋତେ ପୁଣି ଘଣ୍ଟାଏ ମଧ୍ୟରେ ବାହାରିବାକୁ ପଡ଼ିବ । ଏପର୍ଯ୍ୟନ୍ତ ପୁଲା ମୋର ସକାଳର ଯେତେକ କାମ ସବୁ ସରିପାରି ନାହିଁ ।

ସୁରେଶ ପଢ଼ି ବସିଥିବା ବହିପ୍ରତି ମନୋନିବେଶ କରି କହି ଉଠିଲା— ଗଳ୍ପଟା ବଡ଼ ଭଲ ଲାଗୁଛି । ରହ, ଏଇଟା ପଢ଼ି ଶେଷ କରିଦିଏ ।

: ହଉ ପଢ଼ । ମୁଁ ଘଣ୍ଟାଏ କି ଦୁଇଘଣ୍ଟା ଭିତରେ ଫେରି ଆସୁଛି କହି ମଦ୍ଦମ ଉଠି ଚାଲିଗଲା ।

ସେ ଚାଲିଯିବା ପରେ ସୁରେଶ ଆଖି ଟେକି ଚାହିଁଲା । ତା'ର ମନେହେଲା କୌଣସି ଅଦୃଶ୍ୟ ହାତ ମୁହୂର୍ତ୍ତକ ଭିତରେ ତା ମୁହଁରେ ମେଞ୍ଚାଏ କାଳି ଯେପରି ଘଷି ଦେଇ ଚାଲିଗଲା ।

ଯେଉଁ ବାଟେ ମଦ୍ଦମ ବାହାରିଗଲା, ସେହି ଖୋଲା ଦରଜା ଆଡ଼େ ଅପଲକ ଆଖିରେ ଚାହିଁ ରହି ସୁରେଶ କାଠପରି ବସି ରହିଲା । ଅଯାଚିତ ସମସ୍ତ ପ୍ରଶ୍ନର ଉତ୍ତର ନପାଇବା ଫଳରେ କ୍ଷୁବ୍ଧ ଅଭିମାନର ଦଂଶନରେ ଯେପରି ସେ ମନେ ମନେ ଅସ୍ଥିର ହୋଇ ଉଠୁଥିଲା ।

ଦୁଇବନ୍ଧୁଙ୍କର କଥାବାର୍ତ୍ତା କବାଟ ଆଢ଼ୁଆଳରେ ରହି ଅଚଳା ସବୁ ଶୁଣି ପାରିଥିଲା । ମଦ୍ଦମ ଲୁଗା ବଦଳାଇବା ପାଇଁ ଶୋଇବା ଘରେ ପହଞ୍ଚିବାର କିଛି ସମୟ ପରେ ସେ କବାଟ ଠେଲି ପ୍ରବେଶ କଲା ।

ମଦ୍ଦମ ମୁହଁ ଫେରାଇ ଚାହିଁବା କ୍ଷଣି ଅଚଳା ସ୍ୱାଭାବିକ ଭାବରେ ପଚାରିଲା—ମୋ ବାପା କ'ଣ ତୁମ ନିକଟରେ ଏପରି କିଛି ଗୁରୁତର ଅପରାଧ କରି ବସିଛନ୍ତି କି ?

ହଠାତ୍ ଏଭଳି ପ୍ରଶ୍ନର ତାତ୍ପର୍ଯ୍ୟ ବୁଝି ନପାରି ମଦ୍ଦମ ଅଚଳା ମୁହଁକୁ ପ୍ରଶ୍ନିଳ ଦୃଷ୍ଟିରେ ଚାହିଁ ରହିଲା ।

ଅଚଳା ପୁଣି ଥରେ ପ୍ରଶ୍ନ କଲା—ବୋଧହୁଏ ମୋ କଥାଟା ବୁଝିପାରୁନ ?

ମଦ୍ଦମ କହିଲା—ନା । ତୁମ କଥାଗୁଡ଼ାକ ପ୍ରିସ୍ଥ ନ ହେଲେ ମଧ୍ୟ ସ୍ପଷ୍ଟ; କିନ୍ତୁ ତା'ର ଅର୍ଥ ମୋ ପକ୍ଷରେ ବୁଝିବା ବଡ଼ କଠିନ ।

ଅଚଳା ଅନ୍ତରର କ୍ରୋଧକୁ ଯଥାଶକ୍ତି ଦମନ କରି ଜବାବ ଦେଲା—ଏ ଦୁଇଟା ମଧ୍ୟରୁ କେଉଁଟା ମଧ୍ୟ ତୁମ ନିକଟରେ କଠିନ ନୁହେଁ, କିନ୍ତୁ କଠିନ ହେଉଛି ତାହା ସ୍ୱୀକାର କରିବାଟା । ସୁରେଶ ବାବୁଙ୍କୁ ଯେଉଁ କଥାଟା ତୁମେ ସ୍ୱଚ୍ଛନ୍ଦରେ ଜଣାଇ ଦେଇ ଆସିଲ, ସେହି କଥାଟା ବୋଧହୁଏ ମୋତେ ଜଣାଇବା ପାଇଁ ତୁମର ସାହାସ ହେଉନାହିଁ । ଆଜି କିନ୍ତୁ ମୁଁ ତୁମକୁ ସ୍ପଷ୍ଟ ପଚାରିବାକୁ ଚାହେଁ, ମୋ ବାପା କ'ଣ ତୁମ ନିକଟରେ ଏତେ ତୁଚ୍ଛ ହୋଇ ପଡ଼ିଛନ୍ତି ଯେ, ତାଙ୍କର ସାଙ୍ଘାତିକ ଅସୁସ୍ଥତାର ଖବରଟାକୁ ତୁମେ ଶୁଣିବାକୁ ଆବଶ୍ୟକ ମନେ କର ନାହିଁ ?

ମହିମ ମୁଣ୍ଡ ହଲାଇ କହିଲା—ଖୁବ କରେ । କିନ୍ତୁ ଯେତେବେଳେ ତାର ଆବଶ୍ୟକତା ନାହିଁ, ସେତେବେଳେ ମୋତେ କ'ଣ କରିବାକୁ ହେବ କହିଲ ?

ଅଚଳା କହିଲା—କେତେବେଳେ ଆବଶ୍ୟକ ନାହିଁ, ଶୁଣେ ?

ମହିମ ମୁହୂର୍ତ୍ତିକ ପାଇଁ ସ୍ତ୍ରୀ ମୁହଁକୁ ନିଃଶବ୍ଦରେ ଚାହିଁ ରହି ହଠାତ୍ କଠୋର କଣ୍ଠରେ କହି ପକାଇଲା—ଯେପରି ଏକ୍ଷଣି ସୁରେଶର ନ ଥିଲା । ଆଉ ଯେପରି ଏଥିପାଇଁ ତୁମର ଏତେ ଗୁଡ଼ାଏ ରାଗ କରି ମୋ ତୁ ଣ୍ଡରୁ କଡ଼ା କଡ଼ା କଥା କାଢ଼ିବାର ନ ଥିଲା । ଥାଉ, ଆଉ କଥା ବଢ଼ାଇ ଲାଭ ନାହିଁ । ଯେଉଁ ପୋଖରୀରେ ପଙ୍କ ଥାଏ ତାକୁ ଘାଣ୍ଟିବାକୁ ମୁଁ ଭଲପାଏ ନାହିଁ କହି, ମହିମ ବାହାରକୁ ଚାଲି ଯାଉଥିଲା, ଅଚଳା ଏହି ସମୟରେ ଶୀଘ୍ର ଚାଲିଆସି ତା ଆଗରେ ବାଟ ଓଗାଳି ଠିଆହେଲା । କିଛିକ୍ଷଣ ସେ ଏପରି ଠିଆ ହୋଇ ତା ଭିତରୁ ଉଠି ଆସୁଥିବା କ୍ରୋଧକୁ ଦମନ କରି କହିଲା—ତୁମର କ'ଣ ବାହାରେ ଏମିତି କିଛି ଜରୁରୀ କାମ ଅଛି ଯେ ଦୁଇ ମିନିଟ ସୁଦ୍ଧା ଅପେକ୍ଷା କରି ପାରିବ ନାହିଁ ?

ମହିମ କହିଲା—ଅପେକ୍ଷା କରି ପାରିବ ।

ଅଚଳା କହିଲା—ତାହାହେଲେ କଥାଟା ପରିଷ୍କାର ହୋଇଯାଉ । ପାଣି ଯେତେବେଳେ ସରି ଆସେ ସେତେବେଳେ ଯାଇ ପଙ୍କର ସନ୍ଧାନ ମିଳେ—ଏୟାନା ?

ମହିମ ମୁ ଣ୍ଡ ହଲାଇ କହିଲା—ହଁ ।

ଅଚଳା କହିଲା—ନିରର୍ଥକ ପାଣି ଘାଣ୍ଟିବାର ମୁଁ ମଧ୍ୟ ପକ୍ଷପାତି ନୁହେଁ; କିନ୍ତୁ ସେହି ଭୟରେ ପୋଖରୀରୁ ପଙ୍କ ସଫା କରିବା କାର୍ଯ୍ୟ କ'ଣ ବନ୍ଦ ରଖିବାଟା ଉଚିତ ? ଥରେ ଘାଣ୍ଟିଲେ ସିନା ପାଣି ଗୋଳିଆ ହୋଇଯାଏ କିନ୍ତୁ ସବୁ ଦିନ ପାଇଁ ପୋଖରୀରୁ ପଙ୍କ ସଫା ହୋଇଯାଏ । କ'ଣ ସତ ତ ?

ମନ୍ମଥ କଠୋର କଣ୍ଠରେ କହିଲା, ମୋର ସେଥିପାଇଁ ଆପତ୍ତି ନାହିଁ । ବର୍ତ୍ତମାନ ମୋର ଢେର ଢେର ବେଶୀ ଦରକାରୀ କାମ ପଡ଼ି ରହିଛି—ତେଣୁ ବର୍ତ୍ତମାନ ସମୟ ହେବ ନାହିଁ ।

ଅଚଳା ଠିକ୍ ସେହିପରି କଠୋର କଣ୍ଠରେ କହିଲା—ତୁମର ସେହି ଢେର ଢେର ଦରକାରୀ କାମ ସରିଗଲା ପରେ ସମୟ ହେବତ ? ବେଶ୍ ସେ ପର୍ଯ୍ୟନ୍ତ ମୁଁ ଅପେକ୍ଷା କରିଛି—କହି ବାଟ ଛାଡ଼ି ଦେଇ ଅଲଗା ହୋଇଗଲା ।

ମନ୍ମଥ ଘର ଭିତରୁ ବାହାରକୁ ବାହାରି ଚାଲିଗଲା ।

ମନ୍ମଥର ଯିବା ବାଟକୁ ଅଚଳା ଚାହିଁ ରହିଥିଲା । ସେ ଲୁଚିଯିବା ପରେ ବାଧ୍ୟ ହୋଇ କବାଟ ବନ୍ଦ କରିଦେଲା ।

ଘଣ୍ଟାକ ପରେ ଯେତେବେଳେ ଅଚଳା ଗାଧୋଇବା ବିଷୟ ପଚାରିବା ପାଇଁ ସୁରେଶ ରହୁଥିବା ଘରେ ଆସି ଠିଆହେଲା—ସେତେବେଳେ ତାର ମୁହଁର ଶୋକାଚ୍ଛନ୍ନ ଚେହେରାକୁ ଆଖି ଟେକି ଚାହିଁବା ମାତ୍ରେ ସୁରେଶ ଅନୁଭବ କରି ପାରିଲା, ମନ୍ମଥ ସଙ୍ଗରେ ଇତି ମଧ୍ୟରେ ନିଶ୍ଚୟ କିଛି ଘଟି ଯାଇଛି । ଅନୁମାନ କରି ସୁରେଶ ମନେ ମନେ ସଂକୁଚିତ ହୋଇ ପଡ଼ିଲା । କିନ୍ତୁ ସାହାସ କରି ପଚାରି ପାରିଲା ନାହିଁ ।

ଅଚଳା ଚୁପ କରି ଠିଆ ହୋଇ ପଚାରିଲା—ଏ କ'ଣ ହେଉଛି ?

ସୁରେଶ ବ୍ୟାଗ୍ ଭିତରେ ଗତକାଲିର ବ୍ୟବହୃତ ଲୁଗାପଟା ପ୍ରଭୃତି ଏକାଠି କରି ପୁରାଉଥିଲା, କହିଲା—ଗୋଟାକ ବେଳେ ଟ୍ରେନ । ସେଥିପାଇଁ ଆଗରୁ ଜିନିଷ ପତ୍ର ଠିକ୍ କରି ନେଉଛି ।

ଅଚଳା ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନ କଲା—ଆପଣ କ'ଣ ଆଜି ଚାଲିଯିବେ କି ?

ସୁରେଶ ଅଚଳା ଆଡ଼କୁ ନ ଚାହିଁ କହିଲା—ହଁ ।

ଅଚଳା କହିଲା—କାହିଁକି, କହନ୍ତୁ ତ ?

ସୁରେଶ ସେହିପରି ତଳକୁ ଚାହିଁ ରହି କହିଲା—ଆଉ ଅଧିକା ଦିନ ରହି ଲାଭ କ'ଣ ହେବ ? ତୁମକୁ ଥରକ ପାଇଁ ଦେଖିବାକୁ ଆସିଥିଲି । ଦେଖିଗଲି ।

ଅଚଳା କିଛିକ୍ଷଣ ନୀରବ ରହି କହିଲା-- ହଉ, ଉଠି ଆସନ୍ତୁ । ଏ ସବୁ କାମ ଆପଣମାନଙ୍କର ନୁହେଁ, ଝିଅମାନଙ୍କର । ମୁଁ ସବୁ ଠିକ୍ କରି ଦେଉଛି କହି ଆଗେଇ ଯିବାର ଦେଖି ସୁରେଶ ବ୍ୟସ୍ତ ହୋଇ କହି ଉଠିଲା—ନା, ନା, ତୁମକୁ କିଛି କରିବାକୁ ହେବ ନାହିଁ । ଏ ସବୁ କିଛି ନୁହେଁ । ଏ ତ ଅତି ସାମାନ୍ୟ...,

ସୁରେଶ ମୁହଁର କଥାକୁ ଶେଷ କରିବାକୁ ନ ଦେଇ ଅଚଳା ବ୍ୟାଗଟା ତାହା ଆଗରୁ ଟାଣି ନେଇ ସମସ୍ତ ଜିନିଷ ବ୍ୟାଗ ଭିତରୁ କାଢ଼ି ବାହାରେ ଗଦେଇ ଦେଇ ପୁଣି ଧୀରେ ଧୀରେ ବ୍ୟାଗ ଭିତରେ ସଜାଡ଼ି ରଖିବାକୁ ଲାଗିଲା । ସୁରେଶ ଅଳ୍ପ ଦୂରରେ ଠିଆ ହୋଇ ଅତ୍ୟନ୍ତ କୁଣ୍ଠିତ ହୋଇ ବାରମ୍ବାର କହିବାକୁ ଲାଗିଥାଏ—ଏ ସବୁର କିଛି ଆବଶ୍ୟକତା ନ ଥିଲା—ସେ ଯଦି···ମୁଁ ନିଜେ··· ଇତ୍ୟାଦି, ଇତ୍ୟାଦି ।

ଅନେକ କ୍ଷଣ ପାଇଁ ଅଚଳା ସୁରେଶର ଏହି ଖଣ୍ଡିତ କଥାର କୌଣସି ପ୍ରତ୍ୟୁତ୍ତର ଦେଲା ନାହିଁ । ଧୀରେ ଧୀରେ କାମ କରୁ କରୁ କହିଲା—ଆପଣଙ୍କର ଭଉଣୀ କିମ୍ବା ସ୍ତ୍ରୀ ଥିଲେ ସେମାନେ ଏହି କାମ କରିଥାନ୍ତେ । ଆପଣଙ୍କୁ କରିଇ ଦେଇ ନ ଥାନ୍ତେ । କିନ୍ତୁ ଆପଣଙ୍କର ଭୟ; କାଳେ ଆପଣଙ୍କର ବନ୍ଧୁ ଯଦି ଫେରି ଦେଖି ନିଅନ୍ତି—ଏଇଆନା ? କିନ୍ତୁ ସେଥିରେ କ'ଣ ଅଛି ? ଏ'ତ ଝିଅ-ପିଲାମାନଙ୍କର କାମ ।

ସୁରେଶ ଚୁପ କରି ଠିଆ ହୋଇ ରହିଲା । ମନେ ମନେ ଭାବିବାକୁ ଲାଗିଲା ଏଇମାତ୍ର ମହିମ ସହିତ ସେ ଯେଉଁ ବାକ୍ ଯୁଦ୍ଧ କରିଛି ଅଚଳା ନିଶ୍ଚୟ ତାହା ଜାଣି ନାହିଁ । ତେଣୁ କଥାଟାକୁ ପକାଇ ପୁଣି ତାକୁ କ୍ଷୁଣ୍ଣ କରିବା ପାଇଁ ତା'ର ସାହାସ ହେଲା ନାହିଁ । ସେ ଭୟ କରିବାକୁ ଲାଗିଲା ଯେ ଯଦି ଫେରି ଆସି ମହିମ ଏହି ଦୃଶ୍ୟ ସ୍ୱଚକ୍ଷୁରେ ଦେଖି ପକାଏ, ତେଣିକି···

ବ୍ୟାଗ୍‌ଟିକୁ ପରିପାଟୀ କରି ସଜାଇ ସାରି ଅଚଳା ଆସ୍ତେ ଆସ୍ତେ କହିଲା—ବାବାଙ୍କର ଅସୁସ୍ଥତା କଥା ନ କହିଥିଲେ ଭଲ ହୋଇଥାନ୍ତା । ଏଥିରେ କେବଳ ତାଙ୍କର ଅପମାନ ପାଇବା ହିଁ ସାର ହେଲା । ସିଏ ତ ଏ ଦୁଃସମ୍ବାଦକୁ ଗ୍ରହଣ ସୁଦ୍ଧା କଲେ ନାହିଁ ।

ସୁରେଶ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇ ପଚାରିଲା—ମହିମ ତୁମକୁ କ'ଣ କହିଲା କି ?

ଅଚଳା ସଠିକ୍ ଉତ୍ତର ନଦେଇ ପାଖ ଦରଜାକୁ ଆଖି ଦ୍ୱାରା ଦେଖାଇ ଦେଇ କହିଲା—ଏହିଠାରେ ଠିଆହୋଇ ମୁଁ ନିଜେ ସବୁ ଶୁଣି ପାରିଛି ।

ସୁରେଶ ଅପ୍ରତିଭ ହୋଇ କହି ଉଠିଲା—ସେଥିପାଇଁ ମୁଁ ତୁମ ନିକଟରେ କ୍ଷମା ଚାହୁଁଛି, ଅଚଳା ।

ଅଚଳା ହସିଦେଇ କହିଲା—କାହିଁକି ?

ସୁରେଶ ଅନୁତପ୍ତ କଣ୍ଠରେ କହିଲା—କାରଣ ତ ତୁମେ ନିଜେ କହିଲ । ମୋର ନିଜ ଦୋଷରୁ ବାବାଙ୍କୁ ଓ ତୁମକୁ ମୁଁ ଅପମାନିତ କରି ବସିଛି । ସେଥିପାଇଁ ତୁମ ନିକଟରେ କ୍ଷମା ଚାହୁଁଛି ।

ଅଚଳା ମୁହଁଟେକ ଚାହିଁଲା । ହଠାତ୍ ତାର ଆଖି ଓ ମୁହଁ ଯେପରି ଭିତରର ଆବେଗରେ ଉଦ୍‌ଭାସିତ ହୋଇ ଉଠିଲା । କହିଲା—ଯାହା ଆପଣ କରି ବସିଛନ୍ତି ସେ ସବୁ ତ ମୋର ପାଇଁ । ମୋତେ ଲଜ୍ଜ୍ୟାରୁ ରକ୍ଷା କରିବା ପାଇଁ ଆପଣ ଆଜି ଅପମାନିତ; ଏଥିରେ ପୁଣି ଆପଣଙ୍କୁ ମୁଁ କ୍ଷମାଦେବି ? ଏତେବଡ଼ ଅମଣିଷ ମୁଁ ନୁହେଁ । କେଉଁଥି ପାଇଁ ଏତେ ଲଜ୍ଜିତ ହେଉଛନ୍ତି ? ଯେତିକ କରି ବସିଲେଣି, ଯଥେଷ୍ଟ ହେଲାଣି ।

ସୁରେଶ ମୁହଁକୁ ଚାହିଁ ଅଚଳା ବୁଝିପାରିଲା ଯେ କଥାଟାର ମର୍ମ ସେ ହୃଦୟଙ୍ଗମ କରିପାରି ନାହାନ୍ତି । ତେଣୁ ଦଣ୍ଡିଟିଏ ନୀରବ ରହିବା ପରେ କହିଲା—ଆପଣ କିନ୍ତୁ ଆଜି ଯାଇ ପାରିବେ ନାହିଁ ସୁରେଶବାବୁ ! ଏଠାରେ ଯଦି କୌଣସି ଅପମାନ ପାଇ ପାରିଥାନ୍ତି ତାହା କେବଳ ମୋତେ ଅପମାନରୁ ରକ୍ଷା କରିବା ପାଇଁ । ନଚେତ୍ ଆପଣଙ୍କର କ'ଣ ଅବା ଦରକାର ଥିଲା ? ଏ ଘର ଆଉ ଏଣିକି ଆପଣଙ୍କ ବନ୍ଧୁଙ୍କର ନୁହେଁ । ଏହା ଉପରେ ମୋର ତ କିଛି ଅଧିକାର ଅଛି । ସେହି ଜୋରରେ ମୁଁ ଆଜି ଆପଣଙ୍କୁ ନିମନ୍ତ୍ରଣ କରୁଛି ଯେ ମୋର ଅତିଥି ହୋଇ ଏଠାରେ ଆଉ କିଛିଦିନ ରହନ୍ତୁ ।

ଅଚଳାର ସାହସ ଦେଖି ସୁରେଶ ଅଭିଭୂତ ହୋଇପଡ଼ିଲା; କିନ୍ତୁ ଦ୍ୱିଧାଗ୍ରସ୍ତ ମନରେ କ'ଣ କିଛି କହିବାକୁ ଉପକ୍ରମ କରୁ କରୁ ଦେଖିବାକୁ ପାଇଲା—ମହିମ କାମ ସାରି ଘର ଭିତରକୁ ଆସୁଛି ।

ଅଚଳା ସେତେବେଳ ପର୍ଯ୍ୟନ୍ତ ବ୍ୟାଗ୍‌ଟା ଆଗରେ ରଖି ମେଜ ଉପରେ ଦାଣ୍ଡି ଆଡ଼କୁ ପଛ କରି ବସିଥିଲା, କାଳେ ମହିମର ଆସିବା ଜାଣି ନପାରି ଆଉ କିଛି କହି ପକାଇବ ଏହି ଭୟରେ ସୁରେଶ ଭୟରେ ସମ୍ପୂର୍ଣ୍ଣ ସଙ୍କୁଚିତ ହୋଇ କହି ଉଠିଲା—କ'ଣ ମହିମ, କାମ ତୋର ସରିଲା ତ ?

: ହଁ, ସରିଗଲା, କହି ମହିମ ଘର ଭିତରେ ପାଦ ଦେଉ ଦେଉ ଅଚଳାକୁ ସେହି ଅବସ୍ଥାରେ ନିରୀକ୍ଷଣ କରି କହିଲା—ଏ କ'ଣ ହେଉଛି ?

ଅଚଳା ମୁହଁ ଫେରାଇ ମହିମକୁ ଯଦିଓ ଦେଖିଲା; କିନ୍ତୁ ତା'ର ପ୍ରଶ୍ନର ଉତ୍ତର ନ ଦେଇ ସୁରେଶକୁ ଲକ୍ଷ୍ୟ କରି ପୂର୍ବ ପ୍ରସଙ୍ଗର ସୂତ୍ର ଧରି କହିଲା—

ଆପଣ ମୋର ମଧ୍ୟ ବନ୍ଧୁ । କେବଳ ବନ୍ଧୁ କାହିଁକି ଆମର ଯାହା କରିଛନ୍ତି ସେଥିପାଇଁ ଆପଣ ହୋଇଛନ୍ତି ମୋର ପରମ ଆତ୍ମୀୟ । ଏପରି ଭାବରେ ଚାଲିଗଲେ ମୋର ଲଜ୍ଜ୍ୟା ଓ କ୍ଷୋଭର ସୀମା ରହିବ ନାହିଁ । ଆଜି ଆପଣଙ୍କୁ ତ କୌଣସି ପ୍ରକାରେ ମୁଁ ଛାଡ଼ିଦେଇ ପାରିବ ନାହିଁ ।

ସୁରେଶ ଶୁଖିଲା ହସ ହସି କହିଲା କଥା ଶୁଣ୍ ମହିମ ! ତୁମମାନଙ୍କୁ ଦେଖିବାକୁ ଆସିଥିଲି, ଦେଖିଗଲି, ବେଶ୍ । କିନ୍ତୁ ଏ ଜଙ୍ଗଲ ଭିତରେ ମୋତେ ଅନର୍ଥକ ବେଶୀଦିନ ବାନ୍ଧିରଖି ତୁମମାନଙ୍କର କ'ଣ ଅବା ଲାଭହେବ ?

ମହିମ ଧୀର ଭାବରେ କହିଲା—ବୋଧହୁଏ ରାଗକରି ଚାଲି ଯାଉଥିଲୁ ? କିନ୍ତୁ ସେଇଟାକୁ ସେ ପସନ୍ଦ କରନ୍ତି ନାହିଁ ।

ଅଚଳା ତୀକ୍ଷ୍ଣ କଣ୍ଠରେ ପ୍ରଶ୍ନ କଲା—ତୁମେ କ'ଣ ପସନ୍ଦ କର କି ?

ମହିମ ଉତ୍ତର ଦେଲା—ମୋ କଥା ତ ଏଠାରେ ପଡ଼ୁନାହିଁ ।

ସୁରେଶ ମନେ ମନେ ଆତଙ୍କିତ ହୋଇ ଉଠିଲା । ଏହି ଅପ୍ରିୟ ଆଲୋଚନାକୁ କୌଣସିମତେ ଏଡ଼ାଇ ଦେବାପାଇଁ ପ୍ରଫୁଲ୍ଲତାର ଛଳନା କରି ହସି ହସି କହିଲା—ଏ'କି ମିଥ୍ୟା ଅପବାଦ ଦେଉଛୁ କିରେ ? ରାଗ କରିବି କାହିଁକି ? ଆଚ୍ଛା ଲୋକ ତୁ ! ହଉ, ଯଦି ତୁମେମାନେ ଖୁସି ହେବ ତେବେ ଆଉ ଦିନେ ଦୁଇଦିନ ରହିଯିବି । ନୂଆଁ'ଉ, ଲୁଗାଗୁଡ଼ାକ ଆଉ ଭିଡ଼ି କରି ଲାଭନାହିଁ, ବାହାର କରିଦିଅ । ଚାଲ ମହିମ, ତୋ ପୋଖରୀରେ ଆଜି ଯାଇ ଗାଧୋଇ ଆସିବା । ତା'ପରେ ହୁଏତ ଘରକୁ ଯାଇ ଗୋଟାକେତେ କୁଇନାଇନ ବଟିକା ଗିଳି ଦେବ ପଡ଼ିବ ।

: ହଉ, ମୁଁ ଆସୁଛି; କହି ମହିମ ଲୁଗା ବଦଳାଇବା ପାଇଁ ଘର ଭିତରକୁ ଚାଲିଗଲା ।

ଯେଉଁମାନେ ନୂଆ ଯୋତା ପିନ୍ଧିଥିବା ହେତୁ ତାର ଫୋଟକାର ଅସହ୍ୟ ବେଦନା ସହ୍ୟ କରି ବାହାରେ ସ୍ୱଚ୍ଛନ୍ଦତାର ଛଳନା କରନ୍ତି ଠିକ୍ ସେହିମାନଙ୍କ ଭଳି •ସୁରେଶ ସାରା ଦିନଟା ହସ ଖୁସିରେ କଟାଇ ଦେଲା; ଆଉଜଣେ, ଯାହାକୁ ଗୋପନରେ ଏହି କଷ୍ଟରେ ଅଂଶ ଗ୍ରହଣ କରିବାକୁ ହେଲା, ସେ କିନ୍ତୁ ପାରିଲା ନାହିଁ ।

ସ୍ୱାମୀଙ୍କର ଅବିଚଳିତ ଗାମ୍ଭୀର୍ଯ୍ୟ ନିକଟରେ ଏହି କଦାକାର ଭଣ୍ଡାମି ଏବଂ ବେହିଆପଣିଆ ହେତୁ ଲଜ୍ଜା ଓ ଅପମାନରେ ମୁଣ୍ଡ ପିଟି ମରିବାକୁ ଅଚଳାର ଇଚ୍ଛା ହେଉଥିଲା । ଉଦାରତା ଦିଗରୁ ତାହାଙ୍କୁ ଚିହ୍ନି ପାରି ନଥିଲେ ସୁଦ୍ଧା ବୁଦ୍ଧି ଦିଗରୁ ସେ ବେଶ୍ ଚିହ୍ନି ପାରିଥିଲା । ସେ ସ୍ପଷ୍ଟ ଦେଖି ପାରିଲା—ଏହି ଧୀମାନ୍, ଶିଷ୍ଟ, ଅଳ୍ପଭାଷୀ ଲୋକଟି ନିକଟରେ ଏ ଅଭିନୟ ସମ୍ପୂର୍ଣ୍ଣ ଭାବରେ ବ୍ୟର୍ଥ ହୋଇ ଯାଇଛି ଏବଂ ଲଜ୍ଜାର କାଳିମା ଯେପରି ପ୍ରତି ମୁହୂର୍ତ୍ତରେ ଗାଢତର ହୋଇ ଉଠୁଛି । ଆଜି ସକାଳୁ ମହିମ ଆଉ ଘରୁ ବାହାରକୁ କୁଆଡ଼େ ଯାଇନାହିଁ । ସୁତରାଂ ଦିନରେ ଭାତ ଖାଇବାଠାରୁ ଆରମ୍ଭ କରି ରାତିରେ ଲୁଚି ଖାଇବା ପର୍ଯ୍ୟନ୍ତ ସମସ୍ତ ସମୟଟା ଏହିପରି ଭାବରେ କଟିଗଲା ।

ଅନେକ ରାତି ପର୍ଯ୍ୟନ୍ତ ବିଛଣା ଉପରେ ଛଟପଟ ହେବା ପରେ ଅଚଳା ଧୀରେ ଧୀରେ କହିଲା—ରାତିସାରା ଆଲୁଅ ଜାଳିଲେ ଆଉ ଜଣେ ଯେ ଶୋଇ ପାରିବ ନାହିଁ । ତୁମଠାରୁ ଏଇତକ ଦୟା କ'ଣ ମୁଁ ପ୍ରତ୍ୟାଶା କରିପାରିବି ନାହିଁ ?

ତାହାର କଣ୍ଠସ୍ୱର ଶୁଣି ମହିମ ଚମକି ଉଠିଲା ଏବଂ ବତୀକୁ ଶୀଘ୍ର କମାଇ ଦେଇ କହିଲା—ଭୁଲ୍ ହୋଇଯାଇଛି । କ୍ଷମା କରିବ, କହି ବହି ବନ୍ଦ କରି ଆଲୁଅ ନିଭାଇ ଦେଇ ବିଛଣାରେ ଆସି ଶୋଇପଡ଼ିଲା । ଏହି ପ୍ରାର୍ଥିତ ଅନୁଗ୍ରହ ପାଇଁ ଅଚଳା ଯଦିଓ କୃତଜ୍ଞତା ପ୍ରକାଶ କଲା ନାହିଁ; କିନ୍ତୁ ଏହା ତାହାର ସୁନିଦ୍ରା ପାଇଁ ଲେଶମାତ୍ର ସାହାଯ୍ୟ କରିପାରିଲା ନାହିଁ । ଅଧିକନ୍ତୁ ସମୟ ଯେତେ ଆଗେଇ ଚାଲିଲା, ଏହି ନିଃଶବ୍ଦ ଅନ୍ଧକାର ଯେପରି ବ୍ୟଥାରେ ଭାରିହୋଇ ଉଠି ପ୍ରତି ମୁହୂର୍ତ୍ତରେ ତାହା ନିକଟରେ ଦୁଃସହ ହୋଇ ଉଠିଲା । ଅଧୈର୍ଯ୍ୟ ହୋଇ ସେ ଧୀରେ ଧୀରେ ପଚାରିଲା—ଆଚ୍ଛା: ଜାଣତରେ ହେଉ କିମ୍ବା ଅଜାଣତରେ ହେଉ ସଂସାରରେ ଭୁଲ କରି ବସିଲେ ସେଥିପାଇଁ ଶାସ୍ତି ଭୋଗିବାକୁ ପଡ଼େ ଏ କଥା କ'ଣ ସତ ?

ମହିମ ଅତି ସରଳ ଭାଷାରେ କହିଲା—ଅଭିଜ୍ଞ ଲୋକମାନେ ତ ସେଇଆ କହିଛନ୍ତି ।

ଅଚଳା କିଛିକ୍ଷଣ ନୀରବ ରହି କହିଲା—ତେବେ ସେ ଭୁଲ ଆମେ ଦୁଇଜଣ କରି ବସିଛେ । ଯାହାର କୁଫଳ ଆରମ୍ଭରୁ ହିଁ ଜଣା ପଡ଼ିଲାଣି । ଶେଷ ଫଳଟା କ'ଣ ହେବ ତୁମେ କ'ଣ ଅନୁମାନ କରି ପାରୁଛ ?

ମହିମ କହିଲା—ନା ।

ଅଚଳା କହିଲା—ମୁଁ ମଧ୍ୟ ପାରୁନାହିଁ । କିନ୍ତୁ ଭାବି ଭାବି ମୁଁ ଏତିକି ମାତ୍ର ସ୍ଥିର କରିଛି ଯେ, ଏହି ଦଣ୍ଡର ବେଶୀ ଭାଗ ପୁରୁଷ ପାଇବା ଉଚିତ୍ ।

ମହିମ କହିଲା—ଆଉ ଟିକିଏ ଭାବିଲେ, ଦେଖି ପାରିବ । ସ୍ତ୍ରୀ ଲୋକ ମାନଙ୍କର ଅଂଶ କମ୍ ମଧ୍ୟ ହେବା ଠିକ୍ ହେବ ନାହିଁ । କିନ୍ତୁ ସେ ପୁରୁଷଟି କିଏ ? ମୁଁ ନା ସୁରେଶ ?

ଅଚଳା ଯେ ଶିହରି ଉଠିଲା ଅନ୍ଧକାର ମଧ୍ୟରେ ଥାଇ ସୁଦ୍ଧା ମହିମ ତାହା ଅନୁଭବ କରି ପାରିଲା ।

କ୍ଷଣକାଳ ଚୁପ୍ ରହି ଅଚଳା ଧୀରେ ଧୀରେ କହିଲା—ତୁମେ ଯେ ଦିନେ ମୋତେ ଅପମାନ ଦେବା ଆରମ୍ଭ କରିବ ଏ କଥା ମୁଁ ଆଗରୁ ଭାବିଥିଲି । ଆହୁରି ମଧ୍ୟ ଏ କଥା ଜାଣେ ଯେ ଏ ଜିନିଷ ଥରେ ଆରମ୍ଭ ହେଲେ କେଉଁଠି ଯେ ଶେଷ ହୁଏ, ତାହା କେହି କହି ପାରିବେ ନାହିଁ । କିନ୍ତୁ ମୁଁ କଜିଆ କରି ପାରିବି ନାହିଁ, କିମ୍ବା ବିବାହ କରିଛି ବୋଲି ଝଗଡ଼ା କରି ସୁଦ୍ଧା ତୁମ ସହିତ ଘର ସଂସାର କରି ପାରିବି ନାହିଁ । ସେ ଯାହାହେଉ କାଲି କିମ୍ବା ପଅରି ଦିନ ମୁଁ ବାବାଙ୍କ ପାଖକୁ ଫେରିଯିବି ।

ମହିମ କହିଲା—ତୁମ ବାପା କିନ୍ତୁ ଏଥିରେ ଆଶ୍ଚର୍ଯ୍ୟ ହୋଇଯିବେ ?

ଅଚଳା କହିଲା—ନା, ସେ ବହୁ ପୂର୍ବରୁ ଏକଥା ଜାଣନ୍ତି । ସେଥିପାଇଁ ମୋତେ ବାରମ୍ବାର ସତର୍କ କରିବାକୁ ଚେଷ୍ଟା କରି କହିଥିଲେ ଯେ ଏହାର ଫଳ କୌଣସି ଦିନ ଭଲ ହେବ ନାହିଁ । କଲିକତାରେ ଚଳିଯାଇ ପାରେ କିନ୍ତୁ ମଫସଲ ଗାଆଁରେ, ସମାଜ, ଆତ୍ମୀୟ, ବନ୍ଧୁ ବାନ୍ଧବଙ୍କୁ ତ୍ୟାଗ କରି କେବଳ ସ୍ତ୍ରୀକୁ ଧରି କେହି ବେଶୀଦିନ ଚଳି ପାରନ୍ତି ନାହିଁ । ସୁତରାଂ ସେ ଆଉ ଯାହା ହୋଇ ପାରନ୍ତି କିନ୍ତୁ ଆଶ୍ଚର୍ଯ୍ୟ ହେବେ ନାହିଁ ।

ମହିମ କହିଲା— ତେବେ ତାଙ୍କର ମନ ମାନିଲା ନାହିଁ କାହିଁକି ?

ଅଚଳା ପ୍ରାଣପଣେ ଗୋଟାଏ କୋହକୁ ଦମନ କରି କହିଲା—ମୁଁ ଭାବିଥିଲି ତୁମେ ନ ବୁଝି କିଛି କରି ନାହଁ ।

: ସେ ଧାରଣା କ'ଣ ଭାଙ୍ଗିଗଲା ?

: ହଁ ।

: ସେଥିପାଇଁ ଗ୍ରାମରେ ବ୍ୟବସାୟ କରିବା ସୁବିଧାଜନକ ହେଲା ନାହିଁ ଜାଣି ଦୋକାନ ଭାଙ୍ଗିଦେଇ ଘରକୁ ଫେରି ଯିବା ପାଇଁ କହୁଛ କି ?

: ହଁ ।

ମଧୁମ କିଛିକ୍ଷଣ ଚୁପ ରହିବାପରେ କହିଲା—ତାହାହେଲେ ଯାଇପାର । କିନ୍ତୁ ଏହାକୁ ବ୍ୟବସାୟ ବୋଲି ଯଦି ବୁଝିଥାଅ ତେବେ ମୋ ସହିତ ଆଉ ମତର ମେଳ ହେବନାହିଁ । କିନ୍ତୁ ଏ କଥା ମଧ୍ୟ ଭୁଲି ନ ଯାଅ ଯେ ବ୍ୟବସାୟ ଜିନିଷଟାକୁ ମଧ୍ୟ ବୁଝିବାକୁ ସମୟ ଲାଗେ । ସେ ଭୁଲ ଯଦି କେତେବେଳେ ଜାଣିପାର, ସେତେବେଳେ ମୋତେ ଜଣାଇଲେ ମୁଁ ଯାଇ ତୁମକୁ ପୁଣି ଘେନି ଆସିବି ।

ଅଚଳା ଆଖିରୁ ବିନ୍ଦୁଟିଏ ଲୁହ ଗଡ଼ି ପଡ଼ିଲା । ହାତରେ ଲୁହ ପୋଛି ପୋଛି କିଛି ସମୟ ପରେ ସେ ସ୍ଥିର କଣ୍ଠରେ କହିଲା—ମଣିଷ ବାରମ୍ବାର ଭୁଲ୍ କରେ ନାହିଁ । ତେଣୁ ତୁମକୁ ସେଭଳି କଷ୍ଟ କରିବାକୁ ପଡ଼ିବ ବୋଲି ମୁଁ ମନେ କରି ପାରୁନାହିଁ ।

ମଧୁମ କହିଲା—ମନେ କରାଯାଇ ପାରେନାହିଁ ବୋଲି ତାକୁ ଭବିଷ୍ୟତ କୁହାଯାଏ । ସେହି ଭବିଷ୍ୟତର ଭାବନା ଭବିଷ୍ୟତ ପାଇଁ ରଖି ଆଜି ମୋତେ କ୍ଷମା ଦିଅ । ମୁଁ ଆଉ ତୁମ ସହିତ ଗପି ପାରିବି ନାହିଁ ।

ଅଚଳା ଆଘାତ ପାଇ କହିଲା—ମୋତେ ତୁମେ କ'ଣ ଅଟକା କରୁଛ ? ତା ଯଦି କରୁଥାଅ ତେବେ ତୁମର ଭୁଲ୍ ହେଉଛି । ମୁଁ ସତରେ କାଲି କମ୍ପା ପଥରଦନ ଚାଲି ଯିବାକୁ ଚାହୁଁଛି ।

ମଧୁମ କହିଲା—ପ୍ରକୃତରେ ମୁଁ ତୁମକୁ କିଛି ଛାଡ଼ିବାକୁ ଆଦୌ ଚାହେଁ ନାହିଁ ।

ଅଚଳା ହଠାତ୍ ଅତ୍ୟନ୍ତ ଉତ୍ତେଜିତ ହୋଇ ପ୍ରଶ୍ନ କଲା ତୁମେ କ'ଣ ମୋର ଇଚ୍ଛା ବିରୁଦ୍ଧରେ ଜୋର କରି ରଖିବାକୁ ଚାହଁ ? ତାହା ତୁମେ କଦାପି କରି ପାରିବ ନାହିଁ, ଏହା ତୁମର ଜାଣି ରଖିବା ଉଚିତ୍ ।

ମଧୁମ ଶାନ୍ତ ସହଜ ଭାବରେ ଉତ୍ତର ଦେଲା ବେଶ୍ । ସେ କଥା ଆଜି ରାତିରେ ଥାଉ । କାଲି କମ୍ପା ପଥରଦନ ଯେତେବେଳେ ଯିବ ସେତେବେଳେ ବିବେଚନା କରି ଦେଖିଲେ ଚଳିବ । ବହୁତ ସମୟ ତ ଅଛି । ଆଜି ସେତିକି ପର୍ଯ୍ୟନ୍ତ ଥାଉ; କହି ତକିଆଟା ଓଲଟାଇ ଦେଇ ସମସ୍ତ ପ୍ରସଙ୍ଗ ଜୋର କରି ବନ୍ଦ କରିଦେଇ ନିଶ୍ଚିନ୍ତ ଭାବରେ ଶୋଇବାକୁ ଚେଷ୍ଟା କଲା ଏବଂ ବୋଧହୁଏ ସଙ୍ଗେ ସଙ୍ଗେ ଶୋଇ ପଡ଼ିଲା ।

ତା ପରଦିନ ସ୍କୁଲ ମିଳିଲାବେଳେ ସୁରେଶ ପ୍ରଶ୍ନ କଲା—ମଧୁମ ଆଜି ମଧ୍ୟ ବଲବାଡ଼ିର ଖେଳ ଦେଖିବା ପାଇଁ ସକାଳୁ ବାହାର ଗଲାଣି ?

ଅଚଳା ମୁଣ୍ଡ ହଲାଇ କହିଲା—ପୃଥିବୀ ଓଲଟ ପାଲଟ ହୋଇଗଲେ ମଧ୍ୟ ସେଥିରେ ଏପଟ ସେପଟ ହେବ ନାହିଁ ।

ସୁରେଶ କପ୍‌ଟାକୁ ଟେବୁଲ ଉପରେ ରଖି କହିଲା ତୁଳନା କରି ବସିଲେ ସେ ମୋ ଠାରୁ ଢେର ଭଲ । ତାର କାର୍ଯ୍ୟରେ ଗତି ଅଛି । କଳର ଚକଭଳି ଯେତେ କ୍ଷଣ ପର୍ଯ୍ୟନ୍ତ ଦମ୍ ଅଛି, ସେତେକ୍ଷଣ ପର୍ଯ୍ୟନ୍ତ ସେ ଚାଲିଥିବ ।

ଅଚଳା କହିଲା – କଳ ପରି ଦେହଟାକୁ କ'ଣ ଆପଣ ପସନ୍ଦ କରନ୍ତି ?

ସୁରେଶ ମୁଣ୍ଡ ହଲାଇ କହିଲା --ସେ କଥା କାହିଁକି କହୁଥିଲି କ, ସେ କ୍ଷମତା ମୋର ନିଜର ସାଧ୍ୟାତୀତ । ଦୁର୍ବଳ ହେବାରେ ଯେ କେତେ ଦୋଷ, ସେ କଥା ମୁଁ ଜାଣେ । ସେଥିପାଇଁ ଯିଏ ସ୍ଥିର ଅଛି ତାକୁ ମୁଁ ପ୍ରଶଂସା ନକରି ରହିପାରେ ନାହିଁ । କିନ୍ତୁ ଆଜି ମୋତେ ଛୁଟି ଦିଅ । ମୁଁ ଘରକୁ ଫେରଯାଏ ।

ଅଚଳା ତତ୍‌କ୍ଷଣାତ୍ ସମ୍ମତି ଜଣାଇ କହିଲା—ହଉ ଯାଆନ୍ତୁ । ମୁଁ ମଧ୍ୟ କାଲି ଯାଉଛି ।

ସୁରେଶ ଆଶ୍ଚର୍ଯ୍ୟ ହୋଇ କହିଲା—ତୁମେ କାଲି କୁଆଡ଼େ ଯିବ ?

: କଲିକତା ।

: ହଠାତ୍ କଲିକତା ଯିବ କାହିଁକି ? କାହିଁ ! କାଲି ତ କିଛି କହୁ ନ ଥିଲ ?

: ବାବାଙ୍କ ଦେହ ଅସୁସ୍ଥ । ତେଣୁ ତାଙ୍କୁ ଥରେ ଦେଖି ଆସିବ ।

ସୁରେଶ ମୁହଁରେ ଉଦ୍‌ବେଗର ଛାୟା ପଡ଼ିଥିଲା, କହିଲା ଅସୁସ୍ଥ ବାବାଙ୍କୁ ଦେଖିଯିବାଟା ସଂସାରରେ କିଛି ଆଶ୍ଚର୍ଯ୍ୟକର ଘଟଣା ନୁହେଁ । କିନ୍ତୁ ଭୟ ଆସୁଛି କାଲେ ମୋ ପାଇଁ ଆଉ ରାଗାରାଗି କରି······

ଅଚଳା ଏ କଥାର କୌଣସି ଉତ୍ତର ଦେଲାନାହିଁ ।

ଯଦୁ ଆଗରେ ଚାଲି ଯାଉଥିଲା । ସୁରେଶ ତାକୁ ଡାକି କହିଲା– ତୋ ବାବୁ କ୍ଲବରୁ ଫେରିଲେଣି କରେ ?

ଯଦୁ କହିଲା—ସେ'ତ ଆଜି ସକାଳୁ କୁଆଡ଼େ ଯାଇ ନାହାନ୍ତି । ତାଙ୍କ ପଢ଼ାଘରେ ଶୋଇଛନ୍ତି ।

ଅଚଳା ଡରଡର ହୋଇ ଦ୍ୱାର ବାହାରେ ଥାଇ ଉଙ୍କିମାରି ଦେଖିଲା— ମଧୁମ ଗୋଟାଏ ଚଉକି ଉପରେ ଆଉଜି ପଡ଼ି ଗୋଡ଼ ଦୁଇଟା ମେଜ ଉପରେ ରଖି ଶୋଇ ପଡ଼ିଛି । ଗୋଟାଏ ଲୋକ ଅତୃପ୍ତ ନିଦ୍ରାର ତୃଷ୍ଣାକୁ ଏପରି ଭାବରେ ମେଣ୍ଟାଇ ନେବା ଯଦିଓ ସଂସାରରେ ଅଦ୍ଭୁତ ନୁହେଁ ତଥାପି କିନ୍ତୁ ଅଚଳାର ବିସ୍ମୟର ସୀମା ରହିଲା ନାହିଁ । ଯେତେବେଳେ ସେ ଦେଖିଲା ତାର ସ୍ୱାମୀ ଦିନର କାର୍ଯ୍ୟ ବନ୍ଦ ରଖି ଏହି ଅସମୟରେ ଶୋଇ ପଡ଼ିଛନ୍ତି, ସେ ପାଦ ଚପି ଚପି ଯାଇ ଚୂପ କରି ତାଙ୍କ ମୁହଁକୁ ଚାହିଁଲା । ସମ୍ମୁଖର ଖୋଲା ଝର୍କା ଦେଇ ପ୍ରଭାତର ଅପର୍ଯ୍ୟାପ୍ତ ଆଲୋକ ସେହି ଚିନ୍ତାମଗ୍ନ ମୁହଁ ଉପରେ ପଡ଼ିଥିଲା । ଆଜି ଅକସ୍ମାତ୍ ତା ଆଖିରେ ଏପରି ଏକ ନୂଆ ଜିନିଷ ପଡ଼ିଲା ଯାହାକି ସେ ଏହା ପୂର୍ବରୁ କୌଣସି ଦିନ ଦେଖି ନଥିଲା । ସମସ୍ତ ମୁହଁଟା କପରି କେଉଁ ଗୋପନ ବ୍ୟଥା ଦ୍ୱାରା ଶାନ୍ତ ଓ ପୀଡ଼ିତ । ସେ ନିଃଶବ୍ଦରେ ଆସିଥିଲା ଏବଂ ନିଃଶବ୍ଦରେ ଚାଲିଯିବାକୁ ବସିଥିଲା । କିନ୍ତୁ ପିକଦାନିଟା ପାଦରେ ବାଜିବା ହେତୁ ଯେତକ ଶବ୍ଦହେଲା ସେଥିରେ ମଧୁମ ଆଖି ମେଲି ଚାହିଁଲା । ଅଚଳା ଅପ୍ରସ୍ତୁତ ହୋଇ କହିଲା—ବର୍ତ୍ତମାନ ଶୋଉଛ ଯେ ? ଦେହ ଖରାପ ଲାଗୁନି ତ ?

ମଧୁମ ଆଖି ମଳି ମଳି ବସି କହିଲା—କେଜାଣି ? ଖରାପ ନ ହେବାଟା ତ ଆଶ୍ଚର୍ଯ୍ୟକର ?

ଅଚଳା ଆଉ ଦ୍ୱିତୀୟ ପ୍ରଶ୍ନ ନପଚାରି ଘରୁ ବାହାରି ଚାଲିଗଲା ।

ଖାଇ ସାରିବା ପରେ ସୁରେଶ ଯିବା ପାଇଁ ପ୍ରସ୍ତୁତ ହେଉଥିଲା ଏବଂ ମଧୁମ ଅଳ୍ପଦୂରରେ ଚୌକିରେ ବସି ତାହା ସହିତ କଥାବାର୍ତ୍ତା କରୁଥିଲା, ଅଚଳା ଦ୍ୱାର ନିକଟରେ ଆସି ଯବନିକାରେ କହି ବସିଲା କାଲି ମୁଁ ମଧ୍ୟ ଯାଉଛି । ସୁବିଧା ହେଲେ ବାବାଙ୍କ ସହିତ ଥରେ ହେଲେ ଦେଖା କରିବେ ।

ସୁରେଶ ଆଶ୍ଚର୍ଯ୍ୟ ହେଲାପରି କହିଲା—ସତେନା କ'ଣ ? ଏହାପରେ ମଧୁମ' ମୁହଁକୁ ଚାହିଁ ପଚାରିଲା—ନୂଆଉଙ୍କୁ କାଲି ତୁ କଲିକତା ପଠାଇ ଦେଉଛୁ ?

ସ୍ତ୍ରୀର ଏହି ଉପରେ ପଡ଼ି କଥା କହିବାର ବଳୁଙ୍ଗରେ ମଧୁମ ଭିତରଟା ଯେପରି ଜଳି ଉଠିଲା । କିନ୍ତୁ ସେ ମୁହଁର ଭାବକୁ ପ୍ରସନ୍ନ ରଖି ଅଳ୍ପ ହସି କହିଲା— ଆଉ କୌଣସି ବାଧା ନଥିଲା କିନ୍ତୁ ଆମ ଏଇ ପଲ୍ଲୀ ଗ୍ରାମରେ ଅଭିଜାତ ଗୃହସ୍ଥ ଘରେ ନାଟକ ଅଭିନୟ କରିବାର ଚଳଣି ନାହିଁ । ତେଣୁ କାଲି କାହିଁକି, ଆଜି ମଧ୍ୟ ତୋ ସଙ୍ଗେ ପଠାଇ ଦେଇ ପାରଥାନ୍ତି ।

ସୁରେଶ ମୁହଁ ଲଜ୍ଜରେ ରଙ୍ଗ ପଡ଼ିଗଲା ।

ଅଚଳା ଆଖି ଫିଙ୍ଗିଲାବେଳେ ତାହା ଲକ୍ଷ୍ୟ କରି ଜୋରକରି ହସି କହି ଉଠିଲା – ଅସୁସ୍ଥ ବାପା, ମାଙ୍କୁ ଦେଖିଯିବା ଯଦି ପଡ଼ା ଗାଆଁର ଚଳଣୀ ନ ହୁଏ ତେବେ ମୁଁ ତ କହିବ ଆମ ସହରର ନାଟକ ଢେର ଭଲ । ଆପଣ ନ ହେଲେ ଆଜି ଦିନଟି ରହି ଯାଆନ୍ତୁ ନା କାଲି ସକାଳେ ସାଙ୍ଗ ହୋଇ ଯିବା ।

ତାହାର ଅପରସୀମ ଔଦ୍ଧତ୍ୟରେ ସୁରେଶର ହୃଦୟ ବିଦୀର୍ଣ୍ଣ ହୋଇଗଲା । ସେ ବାଧ ହୋଇ କହିଲା—ନାହିଁ, ନା,ଆଉ; ତୁମର ଇଚ୍ଛା ହେଲେ କାଲି ଯାଇ ପାର କିନ୍ତୁ ମୁଁ ଆଜି ଚାଲିଲି କହି ସେ ତୀବ୍ର ଉତ୍ତେଜନାରେ ହଠାତ୍ ବ୍ୟାଗ୍‌ଟା ହାତରେ ଧରି ଉଠି ଠିଆ ହୋଇ ପଡ଼ିଲା ।

ସୁରେଶର ଉତ୍ତେଜନାର ଆବେଗ ଅଚଳାକୁ ଯେପରି ମୂକ କରି ଦେଲା । ସେ ହଠାତ୍ ବ୍ୟାକୁଳ ହୋଇ କହି ଉଠିଲା—ବର୍ତ୍ତମାନ ଗୁଡ଼ା ଟ୍ରେନ ଆସିବାକୁ ବିଳମ୍ବ ଅଛି ସୁରେଶବାବୁ, ଏ ଭିତରେ ଯିବେନାହିଁ । ଟିକଏ ଠିଆ ହୁଅନ୍ତୁ । ତାହାର ଆର୍ତ୍ତ କଣ୍ଠ ସ୍ୱରର ବ୍ୟାକୁଳ ଅନୁରୋଧରେ ଉଭୟ ଶ୍ରୋତା ଯୁଗପତ୍ ଚମକି ଉଠିଲେ ।

ଅଚଳା କୌଣସି ଦିଗକୁ ଲକ୍ଷ୍ୟ ନକରି କହିବାକୁ ଲାଗିଲା—ତୁମର କୌଣସି ଦରକାରରେ ମୁଁ ଆସି ପାରିଲି ନାହିଁ ସୁରେଶବାବୁ । କିନ୍ତୁ ତୁମ ବ୍ୟତୀତ ଅସମୟରେ ମୋର କେହି ବନ୍ଧୁ ନାହାଁନ୍ତି । ତୁମେ ବାପାଙ୍କୁ ଯାଇ କହିବ ମୋତେ ଏଠାରେ ସେ ବନ୍ଦ କରି ରଖିଛନ୍ତି । କୁଆଡ଼େ ଯିବାକୁ ଦେଉ ନାହାଁନ୍ତି । ମୁଁ ଏଠାରେ ରହିଲେ ମରିଯିବ । ସୁରେଶବାବୁ ତୁମେ ମୋତେ ଏଠାରୁ ନେଇ ଯାଅ । ମୁଁ ଯାହାକୁ ଭଲ ପାଏ ନାହିଁ ତାହା ସହିତ ଘର ସଂସାର କରିବା ପାଇଁ ମୋତେ ଏଠାରେ ଛାଡ଼ି ଏପରି ପଳାଇ ଯାଅନାହିଁ ।

ମହିମ ବିହ୍ୱଳ ହୋଇ ଚାହିଁ ରହିଲା ।

ସୁରେଶ ପୁଣି ଦୃପ୍ତ କଣ୍ଠରେ କହି ଉଠିଲା—ତୁ ଜାଣୁ ମହିମ, ଏ ହେଉଛନ୍ତି ବ୍ରାହ୍ମ ମହିଳା । ସ୍ତ୍ରୀ ହେଲେ ମଧ୍ୟ ଏହାଙ୍କ ଉପରେ ପାଶବିକ ବଳପ୍ରୟୋଗ କରିବା ଅଧିକାର ତୋର ନାହିଁ ।

ମହିମ କ୍ଷଣକ ପାଇଁ ଅଭିଭୂତ ହୋଇ ପଡ଼ିଥିଲା । ତାପରେ ସେ ଆତ୍ମ ସମ୍ବରଣ କରି ଶାନ୍ତ ସ୍ୱରରେ ଅଚଳାକୁ କହିଲା—ତୁମେ କେଉଁଥିପାଇଁ, କ'ଣ କରିବକୁ ଥରେ ଭାବିକରି ଦେଖୁଛତ ? ସୁରେଶକୁ ଲକ୍ଷ୍ୟ କରି କହିଲା—ପଶୁବଳ କି ମନୁଷ୍ୟ ବଳ କୌଣସି ଜୋର ମୁଁ କୌଣସି ଦିନ କାହା ଉପରେ ପ୍ରୟୋଗ

କରେ ନାହିଁ । ଆଚ୍ଛା ସୁରେଶ, ତୁ ଯଦି ରହି ପାରନ୍ତୁ ତେବେ ଏହାଙ୍କୁ ସାଙ୍ଗରେ ନେଇ ଚାଲିଯାଇ ପାରନ୍ତୁ । ମୁଁ ନିଜେ ଯାଇ ତୁମ ଦୁହିଁଙ୍କୁ ଟ୍ରେନରେ ବସାଇ ଦେଇ ଆସିବି । ଗାଆଁ ଲୋକଙ୍କ ଆଖିରେ ତେଣିକି ତାହା ଆଉ ଦୃଷ୍ଟି କଟୁ ହେବ ନାହିଁ । ଟିକିଏ ଦମ୍ ନେଇ କହିଲା—ବର୍ତ୍ତମାନ ମୋର ସାମାନ୍ୟ କାମ ଅଛି । ସେଥିପାଇଁ ବାହାରକୁ ଯାଉଛି । ସୁରେଶ, ତୋର ଯେତେବେଳେ ଯିବାର ହେଲା ନାହିଁ ସେତେବେଳେ ଲୁଗାପଟା ରଖି ଦେ । ମୁଁ ଘଣ୍ଟାକ ମଧ୍ୟରେ ଫେରି ଆସୁଛି କହି ଧୀରେ ଧୀରେ ଘର ଛାଡ଼ି ବାହାରକୁ ଚାଲିଗଲା ।

ଅଚଳା ପଥର ମୂର୍ତ୍ତିପରି ଚୌକାଠ ଧରି ଯିମିତି ଠିଆ ହୋଇଥିଲା ଠିକ ସେମିତି ଠିଆ ହୋଇ ରହିଲା । ସୁରେଶ କ୍ଷଣକ ପାଇଁ ସ୍ତବ୍‌ଧ ହୋଇ ରହିବା ପରେ ଅଟ୍ଟହାସ କରି କହି ଉଠିଲା—ବାଃ ରେ ବାଃ, ନାଟକର ବେଶ୍ ସୁନ୍ଦର ଗୋଟିଏ ଅଙ୍କ ଅଭିନୀତ ହୋଇଗଲା । ତୁମେ ମନ୍ଦ କରି ନାହଁ ଆଉ ମୁଁ ମଧ୍ୟ ଚମତ୍କାର ଅଭିନୟ କରି ପାରିଛି । ତାରି ଘରେ ଆତିଥ୍ୟ ଗ୍ରହଣ କରି ତାର ସ୍ତ୍ରୀ ପାଇଁ ତାକୁ ବେଶ ଶାସନ କରି ଲାଲ ଆଖି ଦେଖାଇ ପାରିଲି । ଅଧିକ କ'ଣ ଅବା ମୋର ଦରକାର ? ଆଉ ବନ୍ଧୁ ମୋର ମୋତେ ବାହାବା ଦେଇ ମିଠା ହସ ହସି ବାହାରକୁ ଚାଲିଗଲେ । ମୁ ବାଜିରଖି କହିପାରେ, ସେ ଆଢୁଆଳରେ କେବଳ ହୋ, ହୋ, ହୋଇ ହସିବା ପାଇଁ କାମର ବାହାନା କରି ବାହାରକୁ ଚାଲିଗଲା । ଯାଅ, ଟିକିଏ ଦର୍ପଣଟା ଆଣିତ ନୂଆବୋଉ । ଦେଖିନିଏ ମୋ ନିଜ ମୁହଁର ଚେହେରାଟା କିପରି ଦେଖା ଯାଉଛି କହି ଦେଖିଲା ଅଚଳାର ମୁହଁଟା ଧଳା ହୋଇ ଉଠିଛି ।

ଅଚଳା କୌଣସି ଉତ୍ତର ନ ଦେଇ ନୀରବରେ ଧୀରେ ଧୀରେ ସୁରେଶ ଆଗରୁ ଚାଲିଗଲା ।

ଯେଉଁ ଶଯ୍ୟା ସ୍ପର୍ଶ କରିବା ପାଇଁ ଆଜି ଅଚଳାର ଘୃଣା ବୋଧହେବା ଉଚିତ୍ର ଥିଲା, ତାହାକୁ ସେ ସ୍ୱିତମତ ପ୍ରସ୍ତୁତ କରି ଯେତେବେଳେ ଅପରାହ୍ନ ସମୟରେ ଘର ଭିତରେ ପ୍ରବେଶ କଲା, ସେତେବେଳେ ତାର ମନଟା ଯେ କିପରି ଅବସ୍ଥାରେ ଥିଲା—ମାନବ ଚରିତ୍ର ସଂବନ୍ଧରେ ଯେଉଁମାନଙ୍କର କିଛି ହେଲେ ଅଭିଜ୍ଞତା ଥିବ ସେମାନଙ୍କୁ ଏହା ଅଗୋଚର ରହିବ ନାହିଁ ।

ଯନ୍ତ୍ର ଚାଳିତ ପରି ଅଭ୍ୟସ୍ତ କର୍ମ ସାରି ଅଚଳା ଘର ଭିତରୁ ବାହାରି ଆସିଲା ବେଳେ ଗ୍ରେଟ ଟେବୁଲଟି ଉପରେ ବ୍ଲଟିଂ କାଗଜ ଉପରେ ଥୁଆ ହୋଇଥିବା ଗୋଟିଏ ଗ୍ରେଟ ଚଠି ଉପରେ ତାର ନଜର ପଡ଼ିଗଲା । କେତୋଟି ମାତ୍ର ଧାଡ଼ି—ବାର, ତାରିଖ, ନାହିଁ । ମୃଣାଳ ଲେଖିଛି ହେ ମୋର ସ୍ୱତ୍ତ୍ୱ ଦେବ ମହାଶୟ, ଗତ ଦୁଇଦିନ ହେବ ତୁମର ବାଟ ଚାହିଁ ଚାହିଁ ତୁମ ମୃଣାଳର ଆଖି ଦୁଇଟା ନଷ୍ଟ ହୋଇ ଗଲାଣି ସିନା !

ବହୁକ୍ଷଣ ପର୍ଯ୍ୟନ୍ତ ଅଚଳାର ପଲକ ପଡ଼ିଲା ନାହିଁ । ଠିକ୍ ପଥର ଗଢ଼ା ମୂର୍ତ୍ତିପରି ତାର ପଲକହୀନ ଦୃଷ୍ଟି ସେହି ଚଠିଟି ଉପରେ ଲାଖି ରହିଲା । ଏ ଚଠି କେବକାର ? କେତେବେଳେ କିଏ ଆଣି ଦେଇଗଲା ? ସେ ତ ଏ ବିଷୟରେ କିଛି ଜାଣେ ନାହିଁ । ମୃଣାଳର ଘର କେଉଁ ଆଡ଼ରେ ? କେଉଁ ବାଟରେ ତାହା ଘରକୁ ଯିବାକୁ ହୁଏ ? କେତେଦୂର ? କେଉଁଥି ପାଇଁ ସେ ବ୍ୟଗ୍ର ଉତ୍ସୁକ ଦୃଷ୍ଟିରେ ଚାହିଁ ରହିଛି ଏସବୁ ଜାଣିବାରତ କିଛି ଉପାୟ ନାହିଁ । ସମ୍ମୁଖରେ ଥିବା ଏଇ କେତୋଟି କାଳିର ଦାଗ କେବଳ ଏତିକ ଖବର ଦେଉଛି ଯେ ଗତ ଦୁଇଦିନ ଧରି ଜଣେ ଆଉଜଣକ ପାଇଁ ପ୍ରତୀକ୍ଷା କରି, ବାଟ ଚାହିଁ ଚାହିଁ ତା'ର ଆଖି ଦୁଇଟିକୁ ନଷ୍ଟ କରିବା ପାଇଁ ଉପକ୍ରମ କରୁଛି, ତଥାପି କିନ୍ତୁ ଦେଖା ମିଳିନାହିଁ ।

ଏ ପାଖରେ ପ୍ରାୟନ୍ଧକାର ଘର ଭିତରେ ଏକ ଦୃଷ୍ଟିରେ ଗୃହିଁ ଗୃହିଁ ତା ନିଜର ଆଖି ଦୁଇଟି ବେଦନାରେ ପୀଡ଼ିତ ଏବଂ କଳା କଳା ଅକ୍ଷର ଗୁଡ଼ିକ ପ୍ରଥମେ ଝାପସା ଏବଂ ପରେ ଯେପରି ଗ୍ରେଟ ଗ୍ରେଟ ପୋକ ଭଳି କାଗଜ ସାରା ଖେଳି ବୁଲିଲେ । ତଥାପି ଏହିପରି ଆଉ କେତେ ସମୟ ଧରି ଠିଆ ହୋଇ ସେ ହୁଏତ ଗୃହିଁ ରହି ଥାନ୍ତା କିନ୍ତୁ ନିଜର ଅଜ୍ଞାତସାରରେ ଏତେ କ୍ଷଣ ଧରି ତାହାର ଭିତରେ ଭିତରେ ଯେଉଁ ନିଃଶ୍ୱାସଟା ଉତ୍ତରୋତ୍ତର ଜମା ହୋଇ ଉଠୁଥିଲା; ତାହା ଯେତେବେଳେ ଅବରୁଦ୍ଧ ସ୍ରୋତ ବନ୍ଧ ଭାଙ୍ଗିବା ପରି ଝଣତ୍କାରରେ ଗର୍ଜନ କରି ବାହାରକୁ ବାହାରି ଆସିଲା, ଯେତେବେଳେ ସେ ଚମକି ପଡ଼ି ଯେପରି ଆତ୍ମସ୍ଥ ହୋଇ ପଡ଼ିଲା । ବାହାରକୁ ଗୃହିଁ ଦେଖିଲା ସନ୍ଧ୍ୟାର ଅନ୍ଧାର ନଇଁ ଆସିଛି ଏବଂ ଯଦୁ ଆସି ବାହାର ଘରେ ଲଣ୍ଠନ ଜଳାଇ ରଖି ଦେଇ ଗଲା । ଅଚଳା ଯଦୁକୁ ଡାକି ପ୍ରଶ୍ନ କଲା—ବାବୁ ଫେରି ଆସିଲେଣି କିରେ ?

ଏତେ କ୍ଷଣ ପରେ ଅଚଳାର ମନେ ପଡ଼ିଲା, ଦିପହର ବେଳେ ସେହି ଲକ୍ଷ୍ୟାକର ଅଭିନୟଟାର ଗୋଟାଏ ଅଙ୍କ ଶେଷ ହେଲା ପରେ ସେ ବାହାରକୁ ଯାଇଛନ୍ତି ଯେ ଏପର୍ଯ୍ୟନ୍ତ ସୁଦ୍ଧା ଫେରି ନାହାନ୍ତି । ସ୍ୱାମୀଙ୍କର ଦୈନନ୍ଦିନ ଗତିବିଧି ସମ୍ବନ୍ଧରେ ଆଜି ତାର ତିଳେମାତ୍ର ସନ୍ଦେହ ରହିଲା ନାହିଁ । ସୁରେଶ ଆସିବା

ପର୍ଯ୍ୟନ୍ତ ଏ ଘରେ ଏପରି ଗୋଟାଏ ଉତ୍କଟ ଓ ଅବଚ୍ଛିନ୍ନ କଳହର ଧାରା ପ୍ରବାହିତ ହୋଇ ଚାଲିଥିଲା ଯେ ସେଥିରେ ମାତ୍ର ରହି ଅଚଳା ସବୁକଥା ଭୁଲି ଯାଇଥିଲା । ସେ ଯେ ସ୍ୱାମୀଙ୍କୁ ଭଲପାଏ ନାହିଁ । ଅଥଚ ଭୁଲ କରି ବିବାହ କରି ବସିଛି; ସାରାଜୀବନ ସେହି ଭୁଲ ପାଇଁ ଦାସତ୍ୱ ବରୁଛିରେ ତାର ଅଶାନ୍ତ ଚିତ୍ତ ବିଦ୍ରୋହ ଘୋଷଣା କରି ଅହର୍ନିଶି ଲଢ଼ାଇ କରୁଥିଲା । ସେଥିପାଇଁ ସେ ମୃଣାଳ କଥାଟା ସମ୍ପୂର୍ଣ୍ଣ ପାଶୋରି ପକାଇ ଥିଲା । କିନ୍ତୁ ଆଜି ସନ୍ଧ୍ୟାରେ ସେହି ମୃଣାଳର ଖଣ୍ଡିଏ ପତ୍ର ତାହାର ପୁରାତନ ଦାବି ନେଇ ଯେତେବେଳେ ଓଲଟା ସ୍ରୋତରେ ଫେରି ଆସି ଉପସ୍ଥିତ ହେଲା; ସେତେବେଳେ ମୁହୂର୍ତ୍ତିକ ଭିତରେ ପ୍ରମାଣ ହୋଇଗଲା ଯେ ତାର ସେହି ଭୁଲ କରି ସ୍ୱାମୀଙ୍କର ଅନ୍ୟ ନାରୀ ସହିତ ଆସକ୍ତିର ସନ୍ଦେହ; ତାର ହୃଦୟକୁ ପୋଡ଼ି ଜାଳି ଛାରଖାର କରିଦେବା ପାଇଁ ସଂସାରରେ କୌଣସି ଚିନ୍ତା ତୁଳନାରେ କମ୍ ନୁହେଁ ।

ଚିଠି ଖଣ୍ଡିକ ସେ ଆଉ ଥରେ ପଢ଼ିବା ପାଇଁ ହାତ ବଢ଼ାଇ ଥିଲା, କିନ୍ତୁ କ୍ଷିପ୍ରଣ ଘୃଣାରେ ତାର ହାତ ଆପଣା ଛୁଏଁ ଫେରି ଆସିଲା । ସେହି ଚିଠି ସେହିପରି ମେଜ୍‌ଠାରେ ଖୋଲା ହୋଇ ପଡ଼ି ରହିଲା । ଅଚଳା ଘର ବାହାରକୁ ଆସି ବାରଣ୍ଡାର ଖୁଣ୍ଟକୁ ଆଉଜି ସ୍ତବଧ ହୋଇ ଠିଆ ହୋଇ ରହିଲା ।

ହଠାତ୍ ତାର ମନେହେଲା—ସବୁ ମିଛ ! ଏହି ଘର ଦ୍ୱାର, ସ୍ୱାମୀ ସଂସାର, ଖାଇବା ପିଇବା, ଶୋଇବା, ବସିବା କିଛି ବାସ୍ତବ ନୁହେଁ । କେବଳ ମନର ଭୁଲ ପାଇଁ ମଣିଷ ଛଟପଟ ହୋଇ ମରେ । ନ ହେଲେ ପଲ୍ଲୀ ଗ୍ରାମ, ସହର, ଚାଲଘର, ରାଜ ପ୍ରାସାଦ, ସ୍ୱାମୀ-ସ୍ତ୍ରୀ, ମାଆ ବାପ, ଭାଇ-ଭଉଣୀ, ସମ୍ବନ୍ଧ ଅବା କେଉଁଠି ' ଆଉ କେଉଁଥି ପାଇଁ ମଣିଷ ଅବା ରଗାରଗି, କନ୍ଦାକଟା, ଝଗଡ଼ା ଝାଣ୍ଟି କରି ମରେ ? ଦ୍ୱିପହର ବେଳର ଏତେ ବଡ଼ କାଣ୍ଡ ପରେ ସୁଦ୍ଧା ଯେଉଁ ସ୍ୱାମୀ, ସ୍ତ୍ରୀକୁ ଏକୁଟିଆ ଛାଡ଼ି ନିଶ୍ଚିନ୍ତ ହୋଇ ଘଣ୍ଟାଏ ପରେ ଘଣ୍ଟାଏ ବାହାରେ କଟାଇ ପାରେ, ତାର ମନର କଥା ପାଇଁ ଏତେ ଭାବି ଲଭ କ'ଣ ? ସବୁ ମିଛ, ସବୁ ଛଳନା, ଠକାମି । ମରୀଚିକା ଭଳି ସବୁ ଅସତ୍ୟ । କିନ୍ତୁ ସଂସାର ଅଚଳା ନିକଟରେ ଏତେଦୂର ଶୂନ୍ୟ ମନେ ହୁଅନ୍ତା ନାହିଁ; ଥରକେ ପାଇଁ ଯଦି ସେ ମୃଣାଳର ଏହି ଚିଠି ଖଣ୍ଡିକ ଉପରେ ସମସ୍ତ ମନ ଢାଳି ନ ଦେଇ, ସେହି ମୃଣାଳକୁ ଭାବିବା ପାଇଁ ଚେଷ୍ଟା କରନ୍ତା । ଅନ୍ୟ ନାରୀ ସହିତ ସେହି ପଲ୍ଲୀବାସିନୀ ସଦାନନ୍ଦମୟୀର ଆଚରଣ ତୁଳନା କରି ଦେଖିଲେ, ତାହାର ନିଜର ମନଟାକୁ ଏଇ କେତେଟା କଥାର କାଳିମା ଏପରି ବୋଧହୁଏ କଳା କରି ପାରନ୍ତା ନାହିଁ ।

ଯଦୁ ଫେରିଆସି କହିଲା—ବାବୁ ପଚାରୁଛନ୍ତି ଚାହା ପାଇଁ ପାଣି ଗରମ ହୋଇଛି କି ?

ଅଚଳା ଯେତେ ଯେପରି ନିଦରୁ ଉଠିଲା ପରି ପଚାରିଲା—କେଉଁ ବାବୁ ?

ଯଦୁ ଜୋର ଦେଇ କହିଲା—ଆମ ବାବୁ । ଏଇ ବର୍ତ୍ତମାନ ସେ ଫେରି-ଆସିଲେ । ଚାହା ପାଇଁ ପାଣି ତ ଅନେକ ବେଳୁ ଗରମ ହୋଇଯିବା କଥା ମାଆ···

—ଚାଲ ଯାଉଛି, କହି ଅଚଳା ଘେଷାଇ ଘର ଆଡ଼କୁ ପାଦ ବଢ଼ାଇଲା । କିଛି ସମୟ ପରେ ଚାହା ଓ ଜଳଖିଆ ଚାକର ହାତରେ ପଠାଇ ଦେଇ ସେ ଆସି ଦେଖିଲା—ମହିମ ଅନ୍ଧକାର ବାରଣ୍ଡାରେ ପଦ ଚାରଣା କରୁଛି ଏବଂ ସୁରେଶ ଘର ଭିତରେ ଲଣ୍ଠନ ନିକଟରେ ଏକ ଲୟରେ ଖବର କାଗଜ ପଢ଼ି ଚାଲିଛି; ଯେପରି କେହି କାହାର ଉପସ୍ଥିତି ଆଦୌ ଜାଣିପାରୁ ନାହାନ୍ତି । ଯେପରି ଅତ୍ୟନ୍ତ ଲଜ୍ଜ୍ୟାକର ସଙ୍କୋଚ, ସେହିଦିନର ଦୁଇଟି ବନ୍ଧୁଙ୍କ ମଝିରେ ଆଜି ସରଳ ଶିଷ୍ଟାଚାର ପଥକୁ ମଧ୍ୟ ରୁନ୍ଧି କରି ଦେଇଛି । ତାହାର ଉପଲକ୍ଷଟା ମନେ ପଡ଼ିବା କ୍ଷଣି ଅଚଳାର ପାଦ ଦୁଇଟି ଆପେ ଅଟକି ଗଲା ।

ଅଚଳାକୁ ଦେଖି ମହିମ ପ୍ରଶ୍ନ କଲା—ସୁରେଶକୁ ଚାହା ଦେବାକୁ ଏତେ ବିଳମ୍ବ ହେଲା ଯେ ?

ଅଚଳା ମୁହଁରୁ କିଛି କଥା ବାହାରି ପାରିଲା ନାହିଁ । ସେ ମୁହୂର୍ତ୍ତିକ ପାଇଁ ମୁଣ୍ଡ ଟେକି ଚାହିଁ ଧୀରେ ଧୀରେ ଘର ଭିତରେ ଆସି ପହଞ୍ଚିଲା ।

ଯଦୁ ଚାହାର ସରଞ୍ଜାମ ଟେବୁଲ ଉପରେ ରଖିଦେଇ ବାହାରି ଗଲା । ସୁରେଶ କାଗଜ ଖଣ୍ଡ ରଖିଦେଇ ମୁହଁ ବୁଲାଇ କହିଲା—ମହିମ କାହିଁ ? ସେ କ'ଣ ଏ ପର୍ଯ୍ୟନ୍ତ ଫେରି ନାହିଁ କି ?

ସଙ୍ଗେ ସଙ୍ଗେ ମହିମ ପ୍ରବେଶ କରି ଗୋଟିଏ ଚୌକି ଟାଣି ନେଇ ବସି ପଡ଼ିଲା । ତାପରେ ସମସ୍ତେ ଚୁପ୍ ଚାପ୍ ।

ଅଚଳା ନିଃଶବ୍ଦରେ ମୁହଁ ତଳକୁ ପୋତି ଦୁଇଟି ଚାହା ତିଆରି କରି ଗୋଟିଏ କପ୍ ସୁରେଶକୁ ଦେଇ ଅନ୍ୟଟି ସ୍ୱାମୀଙ୍କ ଆଡ଼କୁ ପେଲି ଦେଇ ନୀରବରେ ଉଠି ଚାଲି ଯାଉଥିଲା, ଏହି ସମୟରେ ମହିମର ଡାକ ଶୁଣି ସେ ଚମକି ପଡ଼ି ଠିଆ ହୋଇ ରହିଲା ।

: ଟିକିଏ ଅପେକ୍ଷା କର; କହି ମହିମ ନିଜେ ଉଠି ଯାଇ ଚଟ୍ କରି କବାଟ ବନ୍ଦ କରି ଶିକୁଳି ଲଗାଇ ଦେଲା । ଆଖିର ପଲକ ମାତ୍ରେ ତାହାର ଛୁଅନଳୀ ପିସ୍ତଲ କଥାଟା ସୁରେଶର ମନେ ପଡ଼ିଗଲା ଏବଂ ହାତରେ ଧରିଥିବା

ଗୁହା କପ ଥରେ ଉଠି ସେଥିରୁ କିଛି ଟାହା ତଳେ ପଡ଼ିଗଲା । ତା ମୁହଁଟା ମୂର୍ଚ୍ଛାର ଭଳି ବିବର୍ଣ୍ଣ ହୋଇ ଉଠିଲା । ସେ ଭୟ ବିଜଡ଼ିତ କଣ୍ଠରେ ପ୍ରଶ୍ନ କଲା—ଦୁଆର ବନ୍ଦ କରୁଛୁ ଯେ ?

ତାହାର କଣ୍ଠସ୍ୱର, ମୁହଁର ଚେହେରା ଓ ପ୍ରଶ୍ନର ଭଙ୍ଗୀରେ ଅଚଳାର ମଧ୍ୟ ସେହି କଥା ମନେପଡ଼ିବାରୁ ସେ ଭୟରେ ଶିହରି ଉଠିଲା । ତାର ଇଚ୍ଛାହେଲା ବଡ଼ ପାଟିରେ ଚିତ୍କାର କରିବାକୁ; କିନ୍ତୁ ତାର ସେ ଇଚ୍ଛା ସଫଳ ହୋଇ ପାରିଲା ନାହିଁ । ମହିମ କ୍ଷଣକାଳ ମାତ୍ର ଅଚଳା ପ୍ରତି ଦୃଷ୍ଟି ପକାଇ ସବୁ ବୁଝିପାରିଲା । ତା'ପରେ ସୁରେଶ ମୁହଁକୁ ଚାହିଁ କହିଲା—ଚାକର ଯେପରି ପଶି ନ ଆସେ ଏଇଥି ପାଇଁ, ନଚେତ୍ ପିସ୍ତଲଟା ମୋର ସବୁଦିନ ପରି ଯେପରି ବାକ୍ସରେ ବନ୍ଦ ହୋଇଥାଏ, ଏବେ ମଧ୍ୟ ସେହିପରି ଠିକ୍ ଅଛି । ତୁମେମାନେ ଏତେ ଭୟ ପାଇବାର ଜାଣିଥିଲେ ମୁଁ ଦ୍ୱାର ବନ୍ଦ କରି ନଥାନ୍ତି ।

ସୁରେଶ ଗୁହା କପଟା ରଖି ହସିବାର ଛଳନା କରି କହିଲା—ବାଃ, ଭୟ କରିବ କାହିଁକି ? ତୁ ମୋ ଉପରକୁ ଗୁଳି ଚଳାଇବୁ ? ବାଃ, ପ୍ରାଣର ଭୟ ମୋର କେବେ ତୁ ଦେଖିଥିଲୁ ? ଆଚ୍ଛା ସେ କଥା ଥାଉ······

ତାହାର ଅସଂଲଗ୍ନ କୈଫିୟତ ଶେଷ ହେବା ପୂର୍ବରୁ ମହିମ କହିଲା—ସତରେ ତୁ ଭୟଭୀତ ହେବାର କେବେ ଦେଖିନାହିଁ । ପ୍ରାଣର ମାୟା ତୋର ନାହିଁ ବୋଲି ମୁଁ ଭଲକରି ଜାଣେ । ସୁରେଶ; ମୋ ନିଜ ଅପେକ୍ଷା ତୋର ଏଇ ଅଧଃପତନ ମୋ ମନରେ ବେଶୀ ଦୁଃଖ ଦେଉଛି, ତଥାପି ତୋ ଭଳି ବନ୍ଧୁକୁ ଶ୍ରେଷ୍ଠ ବୋଲି ମନେକରି ପାରୁନି । ସୁରେଶ, ତୋତେ କାଲି ଘରକୁ ନିଶ୍ଚୟ ଯିବାକୁ ହେବ । କୌଣସି କାରଣର ବାହାନା କରି ବିଳମ୍ବ କରିବା ଆଉ ଠିକ ହେବନାହିଁ ।

ସୁରେଶ ତଥାପି କ'ଣ କହିବାକୁ ଚାହୁଁଥିଲା କିନ୍ତୁ ଏଥର ତାର କଣ୍ଠ ଦେଇ ସ୍ୱର ଫୁଟା ବାହାରି ପାରିଲା ନାହିଁ । ମୁହଁଟେକି ସିଧାକରି ମହିମକୁ ମଧ୍ୟ ଚାହିଁପାରିଲା ନାହିଁ । ମୁଣ୍ଡଟା ଯେପରି ତାର ଅଜାଣତରେ ତଳକୁ ଝୁଙ୍କି ହୋଇ ପଡ଼ିଲା ।

: ତୁମେ ଭିତରକୁ ଯାଅ ଅଚଳା, କହି ମହିମ କବାଟର କିଳଣୀ ଖୋଲିଦେଇ ଅନ୍ଧକାର ମଧ୍ୟରେ ମିଳାଇଗଲା ।

ଏଥର ସୁରେଶ ମୁହଁ ଉପରକୁ ଉଠାଇ ଜୋରକରି ହସିଉଠି କହିଲା ଶୁଣିମ ତା କଥାକୁ । ଏପରି କେତେ ଗଣ୍ଡା ବନ୍ଧୁକ, ପିସ୍ତଲ ନଚେଇ ନଚେଇ କରି ବୁଢ଼ା ହୋଇ ଗଲିଣି, ବର୍ତ୍ତମାନ ତାର ଗୋଟାଏ ଭଙ୍ଗା କଣା ପିସ୍ତଲ ଭୟରେ

ସତେ ମରଯାଉଛୁ ! ଯାହାହେଉ ବହୁତ ହସାଇଲ କହି, ସୁରେଶ ବାଧହୋଇ ହସିବାକୁ ଲଗିଲ । ସେହି ହସରେ ଯୋଗ ଦେବାପାଇଁ ସେ ଘରେ ଅଚଳା ବ୍ୟତୀତ ଆଉ କେହି ନଥିଲେ । ସେ ମଧ୍ୟ ଠିକ୍ ସେହିପରି ଠିଆହୋଇ ରହିଥିଲ । କିଛିକ୍ଷଣ ସ୍ତବ୍ଧ ଭାବରେ ଠିଆହେବା ପରେ ଧୀରେ ଧୀରେ ପାଖ ଦରଜା ବାଟଦେଇ ଭିତରକୁ ଚାଲିଗଲା ।

ଘଣ୍ଟାକ ପରେ ମହିମ ନିଜ ଘରେ ପ୍ରବେଶ କରି ଦେଖିଲ କେହିକୁଆଡ଼େ ନାହାନ୍ତି । ପାଖ ଘରେ ଯାଇ ଦେଖିଲ ତଳେ ଗୋଟିଏ ମୁଦୁରୀ ପକାଇ ହାତ ଉପରେ ମୁଣ୍ଡ ରଖି ଅଚଳା ଶୋଇଛି । ସ୍ୱାମୀଙ୍କୁ ଘରେ ପ୍ରବେଶ କରିବାର ଦେଖି ସେ ଉଠି ବସିଲ । ପାଖରେ ଗୋଟାଏ ଖଟ ପଡ଼ିଥିଲ ମହିମ ତାହା ଉପରେ ବସିପଡ଼ି କହିଲ—କ'ଣ ? କାଲି ତୁମର ବାପଘରକୁ ଯିବା ଠିକ୍ ତ ?

ଅଚଳା ତଳକୁ ଚାହିଁ ବସିରହିଲ । କୌଣସି ଜବାବ ଦେଲନାହିଁ । ମହିମ ଅଳ୍ପକ୍ଷଣ ଅପେକ୍ଷା କରି ପୁଣି କହିଲ—ଯାହାକୁ ଭଲ ପାଅନା, ତା ସହିତ ଘର ସଂସାର କରିବାକୁ ହେବ. ଏତେବଡ଼ ଅନ୍ୟାୟ, ମୁଁ ସ୍ୱାମୀ ହେଲେ ମଧ୍ୟ, ତୁମ ପ୍ରତି କରିପାରିବ ନାହିଁ ।

ଅଚଳାକୁ ସେହିପରି ପାଷାଣ ମୂର୍ତ୍ତିଭଳି ମୂକ ଭାବରେ ସ୍ଥିରହୋଇ ରହିବାର ଦେଖି ମହିମ ତଥାପି କହିବାକୁ ଲଗିଲ—କିନ୍ତୁ ତୁମ ଉପରେ ମୋର ଅନ୍ୟ ଅଭିଯୋଗ ଅଛି । ମୋର ସ୍ୱଭାବ ତ ଜାଣ । କେବଳ ବିବାହ ପରଠାରୁ ନୁହେଁ, ଅନେକ ଆଗରୁ ମୋତେ ଜାଣ ଯେ ମୁଁ ସୁଖଦୁଃଖ ଯାହାହେଉ ନିଜର ପ୍ରାପ୍ୟ ବ୍ୟତୀତ ଏକ ବିନ୍ଦୁ ଉପୁରି ପାଉଣା କେତେବେଳେ ପ୍ରତ୍ୟାଶା କରେନାହିଁ । ପାଇଲେ ମଧ୍ୟ ଗ୍ରହଣ କରେନାହିଁ । ଜୋରକରି କାହାକୁ ଭଲପାଇ ହୁଏନାହିଁ ଅଚଳା । ନ ପାଇପାରିଲେ ସେ ଦୁଃଖର କଥା, କିନ୍ତୁ ଲଜ୍ଜାର କଥା ତ ନୁହେଁ । କାହିଁକି ତେବେ ଏତେଦିନ ଧରି କଷ୍ଟ ପାଉଥିଲ ? ମୋତେ ନ ଜଣାଇ କାହିଁକି ଧରି ନେଇଥିଲ ଯେ ମୁଁ ଜୋର କରି ତୁମକୁ ଅଟକାଇ ରଖିବ ? କୌଣସି ଦିନ କୌଣସି ବିଷୟରେ ମୁଁ ତ ତୁମ ଉପରେ ବଳ ପ୍ରୟୋଗ କରିନାହିଁ ? ସେ ତୁମକୁ ଉଦ୍ଧାର କରିନେଲେ ଯେ ତୁମର ଜୀବନ ବଞ୍ଚିବ ଆଉ ମୋତେ ଜଣାଇଥିଲେ କ'ଣ କିଛି ଉପାୟ ହୋଇପାରି ନଥାନ୍ତା ? ତୁମ ପ୍ରାଣର ଦାମ୍ଟା କ'ଣ କେବଳ ସେ ବୁଝନ୍ତି ?

ଅଚଳା ଅଶ୍ରୁ ବିକୃତ ଅସ୍ପଷ୍ଟ କଣ୍ଠ ସ୍ୱରକୁ ଯେତେ ଦୂର ପାରେ ସହଜ ଓ ସରଳ କରି ଚୁପ୍ ଚୁପ୍ କରି କହିଲ—ତୁମେ ତ ମୋତେ ଭଲ ପାଅନା·····

ମହେନ୍ଦ୍ର ଆଶ୍ଚର୍ଯ୍ୟ ହୋଇ କହିଲା—ତୁମକୁ ଏ କଥା କିଏ କହିଲା ! ମୁଁ ତ କେତେବେଳେ ତୁମକୁ କିଛି କହେନାହିଁ ।

ଅଚଳାକୁ ଉତ୍ତର ଦେବାକୁ ବେଶୀ ସମୟ ଲାଗିଲା ନାହିଁ । କହିଲା— କେବଳ କଥା କହିଲେ କ'ଣ ସବୁ ? କେବଳ ମୁହଁର କୁହା କଥା ସତ ଆଉ ସବୁ ମିଛ ? ରାଗବେଳେ ମନକଷ୍ଟରେ ମଣିଷ ପାଟିରୁ ଯାହା ବାହାରିଯାଏ ତାହାକୁ ତୁମେ ସତ ବୋଲି ଧରିନେଇ ଜୋର୍ ଖଟାଇବାକୁ ଇଚ୍ଛାକର । ତୁମଭଳି ନିକଟରେ ତଉଲିଲା ପରେ ମାପିଚୁପି କଥା ଯିଏ କହି ନପାରେ ତୁମେ କ'ଣ ତାର ହାତଗୋଡ଼ ବାନ୍ଧି ବୁଡ଼ାଇ ଦେବ ?....କହୁ କହୁ ତାର ଗଳା ପ୍ରାୟ ରୁଦ୍ଧହୋଇ ଆସିଲା ।

ମହେନ୍ଦ୍ର କିଛି ବୁଝି ନପାରି ପ୍ରଶ୍ନ କଲା—ଏହାର ଅର୍ଥ ?

ଅଚଳା ଉଚ୍ଛ୍ୱସିତ କ୍ରନ୍ଦନକୁ ଚାପିରଖି କହିଲା—ମନେ କରନାହିଁ ତୁମଭଳି ସାବଧାନୀ ଲୋକ ମଧ୍ୟ ମିଥ୍ୟାକୁ ସବୁଦିନ ଚାପିରଖି ପାରେ । ତୁମର ଜପର ଭୁଲ୍ ହୋଇପାରେ ଥରେ ପାଇଁ ତୁମ ଟେବୁଲ ଉପରେ ଥୁଆ ହୋଇଥିବା ଚିଠିକୁ ଦେଖି ଆସ । କେବଳ ମୋତେ······

ମହେନ୍ଦ୍ର ବିସ୍ମିତ ହୋଇ କହିଲା—ମୋ ଟେବୁଲ ଉପରେ କ'ଣ······!!

ଅଚଳା ମୁହଁରେ ପଣତକାନିକୁ ଚାପିଧରି ମସିଣା ଉପରେ ଶୋଇ ରହିଲା । ତାହାଠାରୁ କୌଣସି ଉତ୍ତର ନପାଇ ମହେନ୍ଦ୍ର ଆସ୍ତେ ଆସ୍ତେ ଟେବୁଲ ନିକଟକୁ ଗଲା । ତାର ପଢ଼ାଘର ଟେବୁଲ ଉପରେ କେତେଖଣ୍ଡ ପଢ଼ାବହି ପଡ଼ିଥିଲା । ପ୍ରାୟ ଦଶ ମିନିଟ୍ ଧରି ସେଗୁଡ଼ାକୁ ଓଲଟ ପାଲଟ କରି ଦେଖି; ଆଖପାଖ ତନ୍ନତନ୍ନ କରି ଖୋଜି ଅଚଳା କହିଥିବା ଅଭିଯୋଗର କିଛି ମାତ୍ର ତାତ୍ପର୍ଯ୍ୟ ବୁଝି ନ ପାରି, ବିମୂଢ଼ ପରି ଫେରି ଆସିବା ବାଟରେ ଶୋଇବା ଘର ପ୍ରତି ଦୃଷ୍ଟି ପକାଇ ଭିତରେ ଗୋଟାଏ ପାଦ ଦେବାକ୍ଷଣି ମୃଣାଳର ସେହି ଚିଠି ଖଣ୍ଡିକ ଉପରେ ଆଖି ପଡ଼ିଗଲା । ସେ ଖଣ୍ଡିକ ହାତରେ ଉଠାଇ ନେଇ ପଢ଼ିବା ମାତ୍ରକେ ଅନ୍ଧାର ରାତିରେ ବିଜୁଳି ଭଳି ମୁହୂର୍ତ୍ତିକ ଭିତରେ ମହେନ୍ଦ୍ର ବାଟ ପାଇଗଲା । ଅଚଳା ଯେ କି ଇଙ୍ଗିତ କରିଥିଲା; ସେ କଥା ବୁଝିବାକୁ ଆଉ ତାର ବିଳମ୍ବ ହେଲାନାହିଁ । ଚିଠି ଖଣ୍ଡିକ ହାତରେ ଧରି ମହେନ୍ଦ୍ର ବିଛଣା ଉପରେ ବସି ଶୂନ୍ୟ ଦୃଷ୍ଟିରେ ବାହାରର ଅନ୍ଧକାରକୁ ଚୁପ୍ କରି ଚାହିଁ ରହିଲା । କିପରି ମୃଣାଳ ପ୍ରଥମ ଦିନ ଆସିଥିଲା । କିପରି ଭାବରେ ସେ ଚାଲିଗଲା, ଗଲାବେଳେ ସଇତୁଣୀ ବୋଲି ଅଚଳା ପରିହାସ କରିଗଲା । ଗୋଟି ଗୋଟି ହୋଇ ସବୁ ମନେ ପଡ଼ିଲା ।

ପଲ୍ଲୀ ଗ୍ରାମର ଏସବୁ ସରସ ଥଟ୍ଟା ପରିହାସ ସହିତ ଯେଉଁ ହିଁଅ ପରିଚିତ ନୁହେଁ; ଏତେ ଦିନ ତାହାକୁ ଯେ କି ପ୍ରକାର କଷ୍ଟ ହୋଇଛୁ ଏବଂ ନିଜେ ଯେତେବେଳେ ସେ ମଧ୍ୟ ଏହି ଥଟ୍ଟା ପରିହାସରେ ଖୋଲା ମନରେ ଯୋଗ ଦେଇ ପାରିନାହିଁ ଅଥଚ ସ୍ତ୍ରୀ ସମ୍ମୁଖରେ ବାରମ୍ବାର ବାଧା ଦେବା ପାଇଁ ଚେଷ୍ଟା କରିଛି; ତାର ସେହି ଲଜ୍ଜ୍ୟା ଯଦି ଏହି ଉଚ୍ଚଶିକ୍ଷିତା ବୁଦ୍ଧିମତୀ ରମଣୀର ଧାରଣାରେ ଅପରାଧୀର ସତ୍ୟମୂଳକ ଲଜ୍ଜ୍ୟା ବୋଲି ଧୀରେ ଧୀରେ ବଦ୍ଧମୂଳ ହୋଇ ଉଠିଥାଏ ତ; ଆଜି କିପରି ସେ ଏହାର ମୂଳୋତ୍ପାଟନ କରି ବସିବ ? ବାହାରର ଅନ୍ଧକାର ଭିତରେ ଏହି ସବୁ ଘଟଣାରୁ ସେ ଅନେକ ସତ୍ୟ ଦେଖିବାକୁ ପାଇଲା । କିପରି ଅଚଳାର ହୃଦୟ ଦୁଃଖରେ ଭରି ଉଠିଛି, କିପରି ସ୍ୱାମୀଙ୍କର ଆଶ୍ରୟ ତା ପ୍ରତି ପ୍ରତି-ମୁହୂର୍ତ୍ତରେ କାରାଗାର ତୁଲ୍ୟ ମନେ ହେଉଛି: ଏସବୁ ଯେପରି ସେ ସ୍ପଷ୍ଟ ଭାବରେ ଦେଖିବାକୁ ଲାଗିଲା । ଏହି ପ୍ରାଣାନ୍ତକ ଅବରୋଧରୁ ପରିତ୍ରାଣ ପାଇବା ପାଇଁ ସେ ଯେଉଁ ଆକୁଳ ପ୍ରାର୍ଥନା ସେତେବେଳେ ସୁରେଶ ନିକଟରେ କରିଥିଲା, ତାହା ଆଜି ମହିମର ମନଆଖି ଆଗରେ ଆଉ ଲୁଚି ରହି ପାରିଲା ନାହିଁ । ଯେଉଁ ଅଚଳାକୁ ସେ ବାସ୍ତବିକ ହୃଦୟ ଦେଇ ଭଲପାଏ; ସେହି ଅଚଳା ଏତେଦିନ ଧରି, ଏତେ ନିକଟରେ ରହି ମଧ୍ୟ ତାହାର ଏତେ ବଡ଼ ବେଦନା ପ୍ରତି ଆଖି ବୁଜି ଦେଇ କଥାଟାକୁ କିପରି ଭୀଷଣ ଅପରାଧ ବୋଲି ମନେକଲା ? କିନ୍ତୁ ଏଥର ଆଉ ମୁହୂର୍ତ୍ତେ ତ ଚଳି ହେବ ନାହିଁ । ସ୍ତ୍ରୀର ଭଲ ପାଇବା ଫେରି ପାଇବାର ଉପାୟ ଅଛି କି ନାହିଁ, ଏବଂ ତାହା କେତେଦୂର ତାହାଠାରୁ ଅପସରି ଯାଇଛି ତାହା ଅନୁମାନ କରିବା ମଧ୍ୟ ଦୁଃସାଧ୍ୟ । ଅନେକ ପ୍ରତିକୂଳତାର ବିରୁଦ୍ଧରେ ଯୁଦ୍ଧ କରି ମଧ୍ୟ ସ୍ୱାମୀ ବୋଲି ଯାହାକୁ ସେ ଦିନେ ଆଶ୍ରୟ କରିଥିଲା ତାହା ନିକଟରେ ଅପମାନ ଓ ଲାଞ୍ଛନା ପାଇଁ ଯେ ତାହାକୁ ଆଜି ଫେରିଯିବାକୁ ହେଉଛି; ଏତେ ବଡ ଭୁଲ ତ ଅଚଳାର ତାକୁ ଜଣାଇ ଦେବା ଉଚିତ ଥିଲା ।

ମହିମ ଧୀରେ ଧୀରେ ଉଠିଯାଇ ଅଚଳା ଶୋଇଥିବା ଘରର ଦ୍ୱାର ନିକଟରେ ଠିଆ ହୋଇ ଦେଖିଲା, କବାଟ ବନ୍ଦ ଅଛି । ବାହାରୁ ଠେଲି ଦେଖିଲା ତାହା ଭିତରୁ ଦିଆ ହୋଇ ଯାଇଛି । ଆସ୍ତେ ଆସ୍ତେ ଦୁଇଥର ଡ଼ାକିବା ପରେ ଯେତେବେଳେ କୌଣସି ଉତ୍ତର ପାଇ ପାରିଲା ନାହିଁ ସେତେବେଳେ ଜୋର କରି ଶାନ୍ତି ଭଙ୍ଗ କରିବାକୁ ତାର ଯେ ଇଚ୍ଛା ହେଲା ନାହିଁ, ତାହା ନୁହେଁ ବରଂ ଗୋଟାଏ କଠିନ ପରୀକ୍ଷାର ଦାୟିତ୍ୱରୁ ଆପାତତଃ ରକ୍ଷା ପାଇବା ପାଇଁ ସେ ଫେରି ଆସିଲା ।

ମହମ ଫେରି ଆସି ନିଜ ଶେଯରେ ଶୋଇ ପଡ଼ିଲା କିନ୍ତୁ ଯେଉଁ ଲୋକ ହେତୁ ଆଜି ପାଖର ସ୍ଥାନଟା ଶୂନ୍ୟ ପଡ଼ି ରହିଲା, ସେ ଘରେ ସେ ଅନଶନ କରି ତଳେ ପଡ଼ି ରହିଛି ଭାବିବା କ୍ଷଣି ତାର ଆଖିକୁ କୌଣସିମତେ ନିଦ ଆସିଲା ନାହିଁ । ଉଠିଯାଇ ତାହାକୁ ଆଦର କରି ଆଣିବା ଉଚିତ୍ ହେବ କି ନାହିଁ, ଭାବି ଭାବି ଅନେକ ରାତିକୁ ମହମ ଆଖିପତା ବୁଜି ହୋଇ ଯାଉଥିବା ବେଳେ ହଠାତ୍ ତୀବ୍ର ଆଲୋକ ଅନୁଭବ କରି ଆଖି ମେଲି ଚାହିଁଲା । ଦେଖିଲା ଚାଳ ଫାଙ୍କ ଏବଂ ଖୋଲା ଝରକା ଭିତର ଦେଇ ପ୍ରଚୁର ଆଲୋକ ଏବଂ ପୋଡ଼ା ଧୂଆଁ ଆସି ଘର ସାରା ଭର୍ତ୍ତି ହୋଇ ଯାଇଛି । କେଉଁଠାରେ ଯେ ନିଶ୍ଚୟ ନିଆଁ ଲାଗିଛି ଜାଣିନେବା ପରେ ତାର ଗୋଡ଼ହାତ ସତେ ଯେପରି ଅଚଳ ହୋଇ ଉଠିଲା ଏବଂ ପରକ୍ଷଣରେ ତା ମୁଣ୍ଡ ଭିତରେ ଯେପରି ବ୍ରହ୍ମାଣ୍ଡଟାର ଚକ୍କା ଭରି ଗଲା । ସେ ଡେଇଁ ପଡ଼ି ବାହାରକୁ ଆସି ଦେଖିଲା ରୋଷେଇ ଘର ଏବଂ ଯେଉଁ ଘରେ ଅଚଳା ଭିତରୁ କବାଟ ବନ୍ଦ କରି ଶୋଇଛି ସେହି ବାରଣ୍ଡାର ଗୋଟାଏ ଅଂଶରେ ପ୍ରଜ୍ଜ୍ୱଳିତ ଅଗ୍ନି ଶିଖା ଉପରକୁ ଉଠି ଅଗଣାର ଜାମୁ ଗଛଟାକୁ ନାଲି କରି ଦେଲାଣି । ପଲ୍ଲୀ ଗ୍ରାମରେ ଚାଳଘରେ ନିଆଁ ଲାଗିଲେ, ତାହାକୁ ଲିଭାଇବାର କଳ୍ପନା କରିବା ପାଗଳାମି । ସେ ଚେଷ୍ଟା ମଧ୍ୟ କେହି କରନ୍ତି ନାହିଁ । ସାହିର ଲୋକମାନେ ଯେ ଯାହାର ଜିନିଷ ପତ୍ର ଏକତ୍ର କରି, ଗୋରୁ ଗାଈଙ୍କୁ ଗୁହାଳରୁ ଫିଟାଇ ଦେଇ ଅନ୍ୟତ୍ର ପଳାଇବାକୁ ଚେଷ୍ଟା କରୁଥିଲାବେଳେ ପାଖ ଗାଆଁର ଲୋକମାନେ ଆସି ନିଆଁ କିପରି, କେଉଁଠୁ ଲାଗିଲା, ସଂପତ୍ତିପତ୍ରର ପରିମାଣ କଥା ଆଲୋଚନା କରି ନିଆଁ ଲାଗିବା ଦୃଶ୍ୟକୁ ଉପଭୋଗ କରନ୍ତି, ଏବଂ ଘର ସବୁ ପୋଡ଼ି ସାରିଲା ପରେ ଆପଣା ଆପଣା ଘରକୁ ଫେରିଯାଇ ଶେଯରେ ଗଡ଼ି ପଡ଼ନ୍ତି । ପୁଣି ସକାଳୁ ଉଠି ଅସମାପ୍ତ ଆଲୋଚନାକୁ ଆରମ୍ଭ କରି ଦିଅନ୍ତି ଏବଂ କିଛି ସମୟ ପରେ ନିତ୍ୟମିତ ସ୍ନାନାହାର ସାରି ନିଜ ନିଜ କର୍ତ୍ତବ୍ୟରେ ମନ ଦିଅନ୍ତି । ସେଥିପାଇଁ ପଲ୍ଲୀ ଗ୍ରାମରେ ଜଣକର ଅଗଣାରେ ବିରାଟ ଭସ୍ମସ୍ତୁପ ଥିଲେ ମଧ୍ୟ ଅନ୍ୟମାନଙ୍କର ଜୀବନ ଯାତ୍ରାରେ ତାହା ଲେଶ ମାତ୍ର ବ୍ୟାଘାତ ସୃଷ୍ଟି କରାଇ ପାରେ ନାହିଁ ।

ମହମ ପଲ୍ଲୀ ଗ୍ରାମର ଲୋକ । ସମସ୍ତଙ୍କ କଥା ତେଣୁ ତାକୁ ଜଣା । ତେଣୁ ନିରର୍ଥକ ପାଟି ତୁଣ୍ଡ କରି ଗାଆଁ ଲୋକଙ୍କର ନିଦ ଭାଙ୍ଗିବାକୁ ଇଚ୍ଛା କଲା ନାହିଁ । ଅନ୍ୟ ମାନଙ୍କୁ ମଧ୍ୟ ଜଣାଇବାର ଆବଶ୍ୟକତା ନଥିଲା ଯେହେତୁ ତା ବାଡ଼ିର ଆମ୍ବ ବଗିଚା ଟପି ଏହି ଅଗ୍ନିବତ୍ୟାତ ଯାଇ ଗାଆଁର ଅନ୍ୟ କାହାରି ଘରକୁ ସ୍ପର୍ଶ କରି ପାରିବା ସମ୍ଭାବନା ନଥିଲା । ଆଗ ଧାଡ଼ି ଘରେ ଚାକର ବାକର ଏବଂ ସୁରେଶ ଶୋଇଥିଲେ । ନିଆଁ ଲାଗିଥିଲେ ମଧ୍ୟ ସେମାନେ ତାହା ଜାଣିବାକୁ ବିଳମ୍ବ

ହୋଇଥିଲା । ତେଣୁ ସେମାନେ ମଧ୍ୟ ନିଘୋଡ଼ ନିଦରେ ଶୋଇଥିଲେ । ଅଚଳାକୁ କିନ୍ତୁ ଶୀଘ୍ର ଉଠାଇ ଦେବା ଦରକାର । ତେଣୁ ସେ ଜୋରରେ ଅଚଳା ଶୋଇବା ଘରର କବାଟକୁ ବାଡ଼େଇ ଡାକ ଛାଡ଼ିଲା—ଅଚଳା, ଅଚଳା, ଅଚଳା ।

ଅଚଳା ସତେ ସ୍ୱପ୍ନ ଦେଖୁଥିଲା ପରି ଉତ୍ତର ଦେଲା - କ'ଣ ?

ମହିମ କହିଲା—ଦୁଆର ଖୋଲି ବାହାରକୁ ଶୀଘ୍ର ଚାଲିଆସ ।

ଅଚଳା ଶାନ୍ତ କଣ୍ଠରେ କହିଲା—ବାହାରକୁ ଗଲେ କ'ଣ ଅଧିକା ହେବ ? ମୁଁ ତ ଭଲ ଅଛି ।

ମହିମ କହିଲା—ଡେରି କର ନାହିଁ । ଶୀଘ୍ର ବାହାରି ଆସ । ଆମ ଘରେ ନିଆଁ ଲାଗି ଯାଇଛି ।

ପ୍ରତ୍ୟୁତ୍ତରରେ ଅଚଳା ଥରକ ପାଇଁ ଭୟ ବିଜଡ଼ିତ କଣ୍ଠରେ ଚିତ୍କାର କରି ଉଠିଲା । ତାହାପରେ ସବୁ ଚୁପ୍ ଚାପ୍ । ମହିମର ପୁନଶ୍ଚ ବ୍ୟଗ୍ର ଆହ୍ୱାନରେ ସେ ଆଉ ଉତ୍ତର ଦେଲା ନାହିଁ । ଠିକ୍ ମହିମର ଏହି ଭୟ ହିଁ ଥିଲା । କାରଣ ଘରେ ନିଆଁ ଲାଗିବା ଯେ କି କାଣ୍ଡ ସେ ବିଷୟରେ ଅଚଳାର କୌଣସି ଧାରଣା ନଥିଲା । ମହିମ ଠିକ୍ ବୁଝି ପାରିଲା ବର୍ତ୍ତମାନ ସେ ଆଖି ବୁଜି କଥା କହୁଥିଲା । କିନ୍ତୁ ଆଖି ଖୋଲିବା ମାତ୍ରେ ସେହି ଭୟଙ୍କର ଦୃଶ୍ୟ ତାହାକୁ ଅବଶ କରି ପକାଇଛି ଏବଂ ଅପର୍ଯ୍ୟାପ୍ତ ଆଲୋକରେ ଘରଟା ଉଦ୍ଭାସିତ ହୋଇଥିବାର ଦେଖି ଅଚଳାର ନିଶ୍ଚୟ ସଂଜ୍ଞା ବିଲୁପ୍ତ ହୋଇ ଯାଇଛି । କିନ୍ତୁ ଏହି ଦୁର୍ଘଟଣା ପାଇଁ ମହିମ ଆଗରୁ ପ୍ରସ୍ତୁତ ହୋଇ ଯାଇଥିଲା । ସେ ଫାଳେ କବାଟ ଟାଣି ଭୁହୁଣ୍ଡାଟା ଟେକି ଘର ଭିତରେ ପ୍ରବେଶ କଲା ଏବଂ ମୂର୍ଚ୍ଛିତା ସ୍ତ୍ରୀକୁ ଗ୍ଭଢରେ ତୋଳି ଧରି ଅବିଳମ୍ବେ ଅଗଣାରେ ଆସି ପହଞ୍ଚି ଗଲା ।

ଏଥର ସେ ଘରର ସବୁ ଲୋକଙ୍କ ନାମ ଧରି ଡାକି ଉଠାଇଲା । ସୁରେଶ ଶୁଖିଲା ମୁହଁରେ ବାହାରକୁ ବାହାରି ଆସିଲା । ଯଦୁ ପ୍ରଭୃତି ପ୍ରତ୍ୟେକ ନିଦରୁ ଉଠିଆସି ଏକାଠି ହେଲେ । ତାହାପରେ ଗୋଟାଏ ପ୍ରଚଣ୍ଡ ଶବ୍ଦ ଶୁଣି ଅଚଳା ଚେତା ଫେରି ପାଇ ଦୁଇବାହୁ ଦେଇ ସ୍ୱାମୀର କଣ୍ଠକୁ ଜାବୁଡ଼ି ଧରି କାନ୍ଦିବାକୁ ଲାଗିଲା ।

ମହିମ ସମସ୍ତଙ୍କୁ ନେଇ ଯେତେବେଳେ ଖୋଲା ପଡ଼ିଆକୁ ଆସିଲା ସେତେବେଳେ ଆଗ ଧାଉଡ଼ିର ବଡ଼ ବଖରାରେ ନିଆଁ ଲାଗିଯାଇଥାଏ । ସେତିକି ବେଳେ ତାର ମନେ ପଡ଼ିଲା, ଅଚଳାର ଅଳଙ୍କାର ପ୍ରଭୃତି ଦାମୀ ଜିନିଷ, ଯାହା

କିଛି ଅଛି ସେ ସବୁ ସେହି ଘରେ ଏବଂ ମୁହୂର୍ତ୍ତେ ବିଳମ୍ବ କଲେ ଯେ **ସବୁ କିଛି** ରକ୍ଷା କରି ହେବ ନାହିଁ ।

ଅଚଳା ପ୍ରକୃତିସ୍ଥା ହୋଇ ସାରିଥିଲା । ସେ ଜୋର କରି ସ୍ୱାମୀଙ୍କର ହାତ ଟାଣି ଧରି କହିଲା –ନା, ସେ କଥା ହେବ ନାହିଁ । ପ୍ରତିଶୋଧ ନେବା ପାଇଁ କ'ଣ ଏହାକୁ ଉଚିତ୍ ସମୟ ବୋଲି ଭାବିଲ କି ? କୌଣସି ପ୍ରକାରରେ ସେ ନିଆଁ ଭିତରକୁ ଯିବାକୁ ମୁଁ ତୁମକୁ ଛାଡ଼ି ଦେଇ ପାରିବି ନାହିଁ । ଯାଉ, ସବୁ ପୋଡ଼ିଗଲେ ପୋଡ଼ିଯାଉ ।

: କିନ୍ତୁ ମହିମ ଶୁଣିଲେ ଚଳିବ ନାହିଁ ଅଚଳା; କହି ଜୋର କରି ହାତ ଛଡ଼ାଇ ନେଇ ମହିମ ଦୌଡ଼ିଯାଇ ସେହି ମୋଟ ଧୂଆଁ ଭିତରେ ଧସେଇ ପଶିଲା । ଯଦୁ ମଧ ଡାକି ଡାକି ତାର ପଛେ ପଛେ ଦୌଡ଼ିଲା ।

ସୁରେଶ ଅଭିଭୂତ ହୋଇ ଅଦୂରରେ ଠିଆ ହୋଇ ଏ କାଣ୍ଡ ଦେଖୁଥିଲା । ହଠାତ୍ ଚେତା ଫେରି ପାଇଲା ପରି ସେ ପଛେ ପଛେ ଯିବାକୁ ଉପକ୍ରମ କରିବା ମାତ୍ରକେ ଅଚଳା ତାହାର ଲୁଗା କୁଞ୍ଚକୁ ଟାଣି ଧରି କହିଲା—ଆପଣ ଯାଉଛନ୍ତି କୁଆଡ଼େ ?

ସୁରେଶ ଟଣା ଟଣି କରି କହିଲା—ମହିମ ଚାଲିଗଲା ଯେ……

ଅଚଳା ତୀକ୍ଷ୍ଣ ସ୍ୱରରେ କହିଲା—ସେ ଗଲେ ତାଙ୍କର ଜିନିଷକୁ ଆଣିବା ପାଇଁ । ଆପଣ ଏ ଘରର କିଏ ? ଆପଣଙ୍କୁ କୌଣସି ମତେ ଯିବା ପାଇଁ ମୁଁ ଦେବି ନାହିଁ ।

ତାହାର କଣ୍ଠ ସ୍ୱରରେ ସ୍ନେହର ଲେଶ ମାତ୍ର ସମ୍ପର୍କ ନଥିଲା । ସେ ଯେପରି ସେହି ଅନଧିକାରର ଉତ୍ପାତକୁ ତିରସ୍କାର କରି ଦମନ କରିଲା ।

ଦୁଇ ତିନି ମିନିଟ୍ ପରେ ମହିମ ଦୁଇ ହାତରେ ଦୁଇଟା ବାକ୍ସ ଧରି ଏବଂ ଯଦୁ ଗୋଟାଏ ପ୍ରକାଣ୍ଡ ପେଟେରା ମୁଣ୍ଡ ଉପରେ ଥୋଇ ଆସି ଉପସ୍ଥିତ ହେଲା । ମହିମ ଜିନିଷସବୁ ଅଚଳା ପାଦ ପାଖରେ ରଖିଦେଇ କହିଲା—ତୁମର ଗହଣା ବାକ୍ସଟା ହେପାଜତରେ ରଖ, ମୁଁ ଯାଉଛି ଦେଖେ ଆମ ବାହାର ଘର ଭିତରୁ ଯଦି କିଛି ଜିନିଷ ରକ୍ଷା କରିପାରେ……

ଅଚଳା ମୁହଁରୁ କୌଣସି କଥା ବାହାରିଲା ନାହିଁ; ତାର ମୁଠା ଭିତରେ ସେତେବେଳକୁ ସୁରେଶ ପିନ୍ଧାଲୁଗାର କୁଞ୍ଚ ସେହିପରି ଥିଲା ।

୧୯

ମଧୁମ ଅପଲକ ନେତ୍ରରେ ସେ ଆଡ଼କୁ ଦୃଷ୍ଟି ପକାଇ ସବୁକୁ ନେଇ ପୁନରାୟ ଅଦୃଶ୍ୟ ହୋଇଗଲା ।

ସକାଳର ପହିଲି ଆଲୁଅରେ ସ୍ୱାମୀଙ୍କ ମୁହଁକୁ ଚାହିଁଦେବା କ୍ଷଣି ଅଚଲାର ଅନ୍ତର ଭିତରଟା ଦୁଃଖରେ କାନ୍ଦି ଉଠିଲା । ଆଖିର ଲୁହକୁ ସେ କୌଣସି ମତେ ବନ୍ଦକରି ପାରିଲା ନାହିଁ । ଏ କ'ଣ ହୋଇଛି ମୁଣ୍ଡର କେଶରାଶି ଧୂଳିରେ, ବାଲିରେ, ଓ ପାଉଁଶରେ ରୁକ୍ଷ, ବିବର୍ଣ୍ଣ, ହୋଇପଡ଼ିଛି । ନିଆଁ ଧାସରେ ତାଙ୍କର ସୁନ୍ଦର ମୁହଁଟି ଏପରି ଶୀର୍ଣ୍ଣ ଓ ବିରସ ହୋଇ ପଡ଼ିଛି ସେ ଯାହାକୁ ଚାହିଁଲେ ଜଣାପଡ଼ୁଛି ସତେ ଯେପରି ରାତିକ ଭିତରେ ସେ ବୁଢ଼ା ହୋଇ ଯାଇଛନ୍ତି ।

ଗାଆଁ ଲୋକମାନେ ପାଟିକରି ଏଣେତେଣେ ହେଉଛନ୍ତି । ପିତଳ ଓ କଂସାବାସନ କିଛି ନାହିଁ । ଗଲେ ଯାଉ ସବୁ । କେତେ ଭରି ଗହଣା ଅବା ଏଇ ସୁଟ୍‌କେଶ ଭିତରେ ରକ୍ଷା ପାଇଛି ସେ ସେଥିପାଇଁ ସମାଲୋଚନା ଆରମ୍ଭ ହୋଇଯାଇଛି । ଅଳ୍ପ ଦୂରରେ ନିର୍ବାଣୋନ୍ମୁଖ ଅଗ୍ନି ସ୍ତୁପ ଆଡ଼କୁ ଶୂନ୍ୟ ଦୃଷ୍ଟିରେ ଚାହିଁ ମଧୁମ ଚୁପ୍‌କରି ଠିଆ ହୋଇଥିଲା । ସବୁ ଶୁଣିବାକୁ ପାଉଥିଲା; କିନ୍ତୁ କୌତୂହଳ ନିବାରଣ କରିବା ଭଳି ମନର ଅବସ୍ଥା ତା'ର ନଥିଲା । ସେ ଗାଆଁର ଭିକୁ ବାନାର୍ଜି, ଅତ୍ୟନ୍ତ ଗଣ୍ୟମାନ୍ୟ ବ୍ୟକ୍ତି । ରାତି ହେତୁ ବୋଧହୁଏ ଆସିପାରି ନଥିଲେ । ବର୍ତ୍ତମାନ ସଦଳବଳରେ ବାଡ଼ି ଖଣ୍ଡିଏ ଧରି ଆସୁଥିବାର ଦେଖି ମଧୁମ ଆଗେଇ ଗଲା ।

ବାନାର୍ଜି ମହାଶୟ ବହୁ ପ୍ରକାର ବିଳାପ କରି ଶେଷରେ କହିଲେ, ମଧୁମ, ତୋର ବାପା ଅନେକ ଦିନୁ ସ୍ୱର୍ଗବାସୀ ହୋଇଛନ୍ତି ସତ କିନ୍ତୁ ସେ ଓ ମୁଁ ଭିନ୍ନ ନଥିଲୁ । ଆମେ ଦୁଇଜଣ ହରିହର ଆତ୍ମା ଥିଲୁ ।

ମଧୁମ ମୁଣ୍ଡ ହଲାଇ କହିଲା ଏଥିରେ ତା'ର କୌଣସି ସନ୍ଦେହ ନାହିଁ ।

ଏହା ଶୁଣିବା ପରେ ବାନାର୍ଜି ମହାଶୟ କହିଲେ—ଏହିଭଳି କାଣ୍ଡ ଯେ ଘଟିବ ତାହା ସେ ପୂର୍ବାହ୍ନ ବେଳୁ ଜାଣି ପାରିଥିଲେ ।

ମହମ ଆଶ୍ଚର୍ଯ୍ୟ ହୋଇ ଜିଜ୍ଞାସୁ ଦୃଷ୍ଟିରେ ଗୃହିଁରହିଲା ।

ଅଚଳା ଆଡୁଆଳରେ ଜିନିଷପତ୍ର ଧରି ସ୍ତବ୍ଧ ହୋଇ ବସିଥିଲା । ସେ ମଧ୍ଯ ଶୁଣିବା ପାଇଁ ଉତ୍କଣ୍ଠି ହୋଇ ଉଠିଲା ।

ଏହି ପର୍ଯ୍ୟନ୍ତ ଭୂମିକା କରି ବାନାର୍ଜି ମହାଶୟ କହିବାକୁ ଲାଗିଲେ— ବ୍ରହ୍ମାଙ୍କର କ୍ରୋଧ ତ କେବେ ଅକାରଣରେ ହୁଏନାହିଁ ବାବା, ମୋତେ ସୁଦ୍ଧା ଥରକ ପାଇଁ ପଗୃରି ନାହଁ ଅଥଚ ଏତେବଡ଼ ନୈଷ୍ଠିକ ବ୍ରାହ୍ମଣ ପିଲା ହୋଇ ତୁ କିପରି ଏଭଳି ଅକର୍ମଟାକୁ କରି ବସିଲୁ କହି ତ ଦେଖି ?

ମହମ କଥାଟା ବୁଝିପାରିଲା ନାହିଁ ।

ନିଜର କଥାଟାକୁ ସେତେବେଳେ ବିସ୍ତୃତ ବ୍ୟାଖ୍ୟା କରିବାକୁ ଯାଇ ବାନାର୍ଜି ମହାଶୟ ଅନୁଚରମାନଙ୍କ ପ୍ରତି ଦୃଷ୍ଟିପାତ କରି କହିବାକୁ ଲାଗିଲେ, ଆମେ ସମସ୍ତେ କୁହାକୁହି ହେଉଥିଲେ ଯେ ଯାହାକିଛି ହେଲେ ଅଘଟଣ ନିଶ୍ଚୟ ଘଟିବ । କାହିଁ ଆଉ କାହାପ୍ରତି ଏ ଗାଆଁରେ ବ୍ରହ୍ମାଙ୍କର କୋପ ହେଲନାହିଁ କାହିଁକି ? ଆରେ ବାବା, ବ୍ରାହ୍ମ ଯାହା ଖ୍ରୀଷ୍ଟାନ ମଧ୍ଯ ସେଇଆ । ସାହେବମାନଙ୍କୁ କହନ୍ତି ଖ୍ରୀଷ୍ଟାନ ଆଉ ବଙ୍ଗାଳୀଙ୍କୁ କହନ୍ତି ବ୍ରାହ୍ମ । ଏହା ଆମମାନଙ୍କ ନିକଟରେ ଅର୍ଥାତ୍ ଯେଉଁମାନଙ୍କର ଶାସ୍ତ୍ର ଜ୍ଞାନ ଅଛି ସେମାନଙ୍କ ନିକଟରେ ଲୁଚି ରହିପାରି ନାହିଁ ।

ଉପସ୍ଥିତ ସମସ୍ତେ ଏହାକୁ ଅନୁମୋଦନ କରିବାକୁ ଲାଗିଲେ । ବାନାର୍ଜି ମହାଶୟ ଉତ୍ସାହ ପାଇ କହି ଉଠିଲେ— ଯାହା କରିବ କର ବାବା; କିନ୍ତୁ ଆଗେ ପ୍ରାୟଶ୍ଚିତ୍ତ କରି ଏଇଟାକୁ ତ୍ୟାଗ କର ।

ମହମ ହାତଯୋଡ଼ି କହିଲା— ବନ୍ଦ କରନ୍ତୁ । ମୁଁ ଆପଣଙ୍କୁ ଅସମ୍ମାନ କରିବାକୁ ଇଚ୍ଛା କରୁନାହିଁ; କିନ୍ତୁ ଯାହା ଆଦୌ ସମ୍ଭବ ନୁହେଁ ତାହା ମୁହଁରେ ଆଣନ୍ତୁ ନାହିଁ । ମୁଁ ଯାହାକୁ ଘରକୁ ଆଣିଛି ତାର ପୁଣ୍ୟରେ ଘର ରହୁ ଅବା ପାପରେ ବାରମ୍ବାର ପୋଡ଼ିଯାଉ ତାହା ମୋର ସହ୍ୟ ହେବ; କହି ଅନ୍ୟତ୍ର ଗୃଲିଗଲା ।

ବାନାର୍ଜି ମହାଶୟ ସାଙ୍ଗଫାଙ୍ଗ ଧରି କିଛିକ୍ଷଣ ହାଁ କରି ଠିଆହୋଇ ରହି ବାଡ଼ି ଠକ୍ ଠକ୍ କରି ଘରକୁ ଫେରିଗଲେ । ଗୁଣୁ ଗୁଣୁ ହୋଇ ଯାହା କହିଗଲେ ତାହା ମୁହଁରେ ନ ଆଣିବା ହିଁ ଭଲ ।

ଅଚଳା ସବୁକଥା ଶୁଣି ପାରିଲା, ତା'ର ଦୁଇ ଆଖିରୁ ବଡ଼ ବଡ଼ ଦୁଇ ଟୋପା ଲୁହ ଝରି ପଡ଼ିଲା ।

ଯଦୁ ଆସି କହିଲା—ମାଆ, ତୁମକୁ ପଗ୍ଲୁର କର ବାବୁ ପାଲଙ୍କି ଡାକ ଆଣିବା ପାଇଁ ମୋତେ କହିଲେ, କ'ଣ ଡାକ ଆଣିବ ?

ଅଚଳା ପଣତ କାନରେ ଆଖି ପୋଛି ପକାଇ କହିଲା—ବାବୁଙ୍କୁ ଥରେ ଡାକ ଦଅ ତ ଯଦୁ ।

: ପାଲ୍‌କୀ ?

: ବର୍ତ୍ତମାନ ଥାଉ ।

ମହିମ ନିକଟକୁ ଆସିବା କ୍ଷଣି ଅଚଳା ଆଖିରେ ପୁଣି ଲୁହ ଆସିଗଲା । ସେ ହଠାତ୍ ନଇଁ ପଡ଼ି ତା'ର ପାଦଧୂଳି ନେଇ ମୁଣ୍ଡରେ ଲଗାଇବାରେ ମହିମ ବିସ୍ମିତ ଓ ବ୍ୟସ୍ତ ହୋଇ ପଡ଼ିଲା । ହୁଏତ ସେ ସ୍ୱାମୀଙ୍କର ହାତ ଦୁଇଟା ଟାଣିନେଇ ପାଖରେ ବସାଇଥାନ୍ତା କିମ୍ବା ହୁଏତ ଆଉ କିଛି ପିଲାଳିଆମି କରିପକାଇଥାନ୍ତା ତାହା ବୋଧହୁଏ ଅନ୍ତର୍ଯ୍ୟାମୀ ଜାଣନ୍ତି । କିନ୍ତୁ ସକାଳ ହୋଇ ଯାଇଛି । ଘରଦ୍ୱାରରେ କୌତୂହଳୀ ଲୋକ । ଅଚଳା ନିଜକୁ ସଞ୍ଜତ କରିନେଇ ପ୍ରଶ୍ନ କଲା—ପାଲଙ୍କୀ କାହିଁକି ଡକାଇବ ?

ମହିମ କହିଲା—ନଅଟା ବେଳର ଗାଡ଼ି ଧରିପାରିଲେ ସବୁଦିଗରୁ ସୁବିଧା । ତାହାହେଲେ ଗୋଟାଏ ଭିତରେ ଘରେ ପହଞ୍ଚି ଖାଇପିଇ ପାରିବ । କାଲି ରାତିରେ ମଧ୍ୟ ତମେ କିଛି ଖାଇନାହଁ ।

: ଆଉ ତୁମେ ?

: ମୁଁ ? ମହିମ ଆଉ ଟିକିଏ ଚିନ୍ତା କରି କହିଲା—ମୋର ଯାହାହେଲେ କିଛି ବ୍ୟବସ୍ଥା ହୋଇଯିବ ।

: ତାହାହେଲେ ମୋର ମଧ୍ୟ ହୋଇପାରିବ । ମୁଁ ଯିବନାହିଁ ।

: କ'ଣ ବ୍ୟବସ୍ଥା ହେବ କୁହ ?

ଅଚଳା ଏ ପ୍ରଶ୍ନର ଉତ୍ତର ଦେଇପାରିଲା ନାହିଁ । ତା ପାଟିରୁ ବାହାରି ପଡ଼ିଲା—କାହିଁକି ଗଛମୂଳ ? କିନ୍ତୁ ପ୍ରକୃତରେ ତାହା ସମ୍ଭବ ନୁହେଁ । ଆଉ ମଧ୍ୟ ସାହିରେ କାହା ଘରେ ଘଣ୍ଟାକ ପାଇଁ ଆଶ୍ରୟ ନେବା ଯେ କେତେ ଅପମାନ ଜନକ, ସେହି ଉର୍ଜ୍ଜିତ ତ ସେ ବର୍ତ୍ତମାନ ଭଲରୂପେ ପାଇସାରିଛି । ମୃଣାଳର କଥା ଯେ ତାର ମନେ ପଡ଼ିନାହିଁ ତାହାନୁହେଁ, ବାରମ୍ବାର ମନେ ପଡ଼ୁଛି । କିନ୍ତୁ ଲଜ୍ଜାରେ ସେ ତାହା ନାମ ଉଚ୍ଚାରଣ କରିପାରିଲା ନାହଁ । କିଛିକ୍ଷଣ ମୌନ ରହିବା ପରେ କହିଲା—ତୁମେ ମଧ୍ୟ ମୋ ସଙ୍ଗରେ ଚାଲ ।

ମଧୁମ ଆଶ୍ଚର୍ଯ୍ୟ ହୋଇ କହିଲା—ମୁଁ ତୁମ ସଙ୍ଗରେ ଯିବ ! ସେଥିରେ ଲାଭ କ'ଣ ହେବ ?

ଅଚଳା କହିଲା—ଲାଭ, ଲୋକଯାନ ଦେଖିବା ଦାୟିତ୍ୱ ମୋର । ତୁମର ଶୁଭାକାଂକ୍ଷୀ ଏଠାରେ ବେଶି ନାହାନ୍ତି ତାହା ମୁଁ ବେଶ୍ ଜାଣିପାରିଛି । ତା'ଛଡ଼ା ତୁମ ମୁହଁର ଚେହେରା ଗାଢ଼କ ଭିତରେ ଯେପରି ହୋଇ ଉଠିଛି ତାହା ତୁମେ ତ ଦେଖିପାରୁ ନାହଁ, ମୁଁ ପାରୁଛି । ମୋତେ ସ୍ୱାମୀ ଡିକ୍‌ଟିକ୍ କରିଦେଲେ ମଧ୍ୟ ମୁଁ ତୁମକୁ ଏଠାରେ ଏକାକୀ ଛାଡ଼ିଦେଇ ଯାଇପାରିବ ନାହିଁ ।

ମଧୁମ ମନ ଭିତରେ ଭାବାନ୍ତର ଦେଖାଦେଲା । ତଥାପି କିନ୍ତୁ ସେ ସ୍ଥିର ହୋଇ ରହିଲା ।

ଅଚଳା କହିବାକୁ ଲାଗିଲା କାହିଁକି ତୁମେ ଏତେ ଚିନ୍ତା କରୁଛ ? ମୋର ଗହଣା ଗୁଡ଼ାକ ତ ଅଛି । ସେ ଗୁଡ଼ାକ ବନ୍ଧା କରି ପଶ୍ଚିମ ଆଡ଼େ ଯେଉଁଠି ହେଲେ ନୂଆ ଘର ଖଣ୍ଡିଏ କିଣି ପାରିବା । ସେଇଠାରେ ରହିବା । ତୁମେ ମୋତେ ଖାଇବାକୁ ନ ଦେଇ କେବେହେଲେ ମାରି ଦେବ ନାହିଁ । ସେ ଚେଷ୍ଟା ତୁମକୁ କରିବାକୁ ହିଁ ହେବ । ଆଉ କହୁଛ ତ ତୁମ ଭାର ଏଣିକ ମୋ ଉପରେ ।

ଯଦୁ ଅଳ୍ପ ଦୂରରେ ଠିଆ ହୋଇ ପ୍ରଶ୍ନ କଲା; ପାଲିଙ୍କି ଆଣିବାକୁ ଯିବ ମାଆ ?

ଉତ୍ତର ପାଇଁ ଅଚଳା ଉତ୍ସୁକ ଦୃଷ୍ଟିରେ ସ୍ୱାମୀଙ୍କର ମୁହଁକୁ ଚାହିଁ ରହିଲା । ମଧୁମ ଏହାର ଜବାବ ଦେଲା । ଯଦୁକୁ ପାଲିଙ୍କି ଆଣିବାକୁ ହୁକୁମ ଦେଇ ସ୍ତ୍ରୀକୁ କହିଲା—କିନ୍ତୁ ମୁଁ ତ ବର୍ତ୍ତମାନ ଯାଇ ପାରୁ ନାହିଁ ।

ଏତିକ ଶୁଣି ଅନିର୍ବଚନୀୟ ଶାନ୍ତି ଓ ତୃପ୍ତିରେ ଅଚଳାର ମନ ଭରି ଉଠିଲା । ସେ ଅନ୍ତରର ଆବେଗ ସଂବରଣ କରି ସହଜ ଭାବରେ କହିଲା—ତା ଅବଶ୍ୟ ସତ୍ୟ, ବର୍ତ୍ତମାନ ତୁମେ ଯାଇ ପାରିବ ନାହିଁ । କିନ୍ତୁ ସଂଧ୍ୟା ଗାଡ଼ିରେ ନିଶ୍ଚୟ ଯିବ ତ କୁହ ? ନ ହେଲେ ମୁଁ ତେଣେ ଖାଇବା ଥାଳି ପାଖରେ ବସି ବସି ଭାବୁଥିବ ଆଉ……

ମଧୁମର ଦୀର୍ଘ ନିଶ୍ୱାସ ଫଳରେ ଅଚଳାର ଅବଶିଷ୍ଟ କଥା ମିଳାଇଗଲା । ସେ ଭୟ ବିଜଡ଼ିତ କଣ୍ଠରେ କହିଲା—ଏ ବେଳା ଯାଇ ପାରିବ ନାହିଁ ? ତେବେ ଏହି ଅନ୍ଧକାର ରାତିରେ କାହାଘରେ ···କିନ୍ତୁ କହୁ କହୁ ସେ ଅଟକି ଗଲା । ଯାହା ଘରେ ସ୍ୱାମୀଙ୍କର ରାତ୍ରି ଯାପନର ସମ୍ଭାବନା, ସେ କଥା ମନେ ପଡ଼ିବା କ୍ଷଣି ତାର ମୁଖଶ୍ରୀ ଗମ୍ଭୀର ଓ ବିବର୍ଣ୍ଣ ହୋଇ ଉଠିଲା ।

ବୋଧହୁଏ ତାର ମନର କଥା ମହମ ବୁଝିପାରିଲା ନାହିଁ । ପ୍ରଶ୍ନ କଲା—କଲିକତାରେ ମୋତେ କେଉଁଠିକି ଯିବାକୁ କହୁଚ ?

ଅଚଳା ତତ୍‌କ୍ଷଣାତ୍ ଉତ୍ତରଦେଲା—କାହିଁକି ଆମ ଘରକୁ ।

ମୁଣ୍ଡ ହଲାଇ ମହମ କହିଲା—ନା ।

ଅଚଳା କହିଲା—ନ ହେଲେ ସେଠାରେ ମାତ୍ର ଦିନ ଦୁଇଟା କଟାଇ ଆମେ ପଶ୍ଚିମ ଦେଶକୁ ଚାଲିଯିବା ।

: ନା

: ନାହିଁ କାହିଁକି ? ସେଇଟା କ'ଣ ତୁମର ଆପଣାର ଘର ନୁହେଁ ?

ମହମ ସେହିପରି ମୁଣ୍ଡ ହଲାଇ କହିଲା—ନା !

ଅଚଳା ଜାଣେ, ତାହାଙ୍କୁ ଟଳାଇବା ସମ୍ଭବ ନୁହେଁ । ସାମାନ୍ୟ ଚିନ୍ତା କରି କହିଲା—ତେବେ ଚାଲ ଏଇଠାରୁ ଦୂରେ ପଶ୍ଚିମଆଡ଼େ କେଉଁ ସହରକୁ ଚାଲିଯିବା । ମୁଁ ତୁମ ସହିତ ଯେଉଁଠି ହେଲେ ରହିଲେ, ମୋତେ କଷ୍ଟ ହେବ ନାହିଁ, ଏ କଥା ମୁଁ ଭଲକରି ଜାଣେ, କିନ୍ତୁ ଗହଣା ଗୁଡ଼ାକ ତ ବିକିବାକୁ ହେବ । ସେ ସବୁ କଲିକତା ବ୍ୟତୀତ ଆଉ କେଉଁଠାରେ ସମ୍ଭବ ହେବ କିପରି ?

ମହମ ଅନ୍ୟ ଦିଗକୁ ଚାହିଁରହି ଚୁପ୍ ରହିଲା । ଅଚଳା ବ୍ୟଗ୍ର କଣ୍ଠରେ ପ୍ରଶ୍ନ କଲା ପଶ୍ଚିମ ଦେଶରେ'ତ ବଡ଼ ବଡ଼ ସହର ଅଛି; ସେଠାରେ ମଧ୍ୟ ବିକ୍ରି କରାଯାଇ ପାରେ ? ମୋ ବାକ୍‌ସରେ ପ୍ରାୟ ଦୁଇଶହ ଖଣ୍ଡେ ଟଙ୍କା ଅଛି । ବର୍ତ୍ତମାନ ସେତିକରେ ଆମର ତ ବାଟଖର୍ଚ୍ଚ ଚଳିଯାଇ ପାରିବ । ଚୁପ କରି ରହିଲ ଯେ ? କ'ଣ କହୁଛ ଶୀଘ୍ର ହେଲେ କୁହନା·······

ମହମ ସ୍ତ୍ରୀର ଆଖିକୁ ଚାହିଁ ପାରିଲା ନାହିଁ । କିନ୍ତୁ ଜବାବ ଦେଲା—ତୁମ ଗହଣା ବିକ୍ରୀ କରି ପାରିବ ନାହିଁ ଅଚଳା ।

ହଠାତ୍ ଯେପରି ଗୋଟାଏ ଗୁରୁତର ଧକ୍‌କା ପାଇ ଅଚଳା ପଛେଇ ଗଲା, କିଛି ସମୟ ପରେ କହିଲା କାହିଁକି ପାରିବ ନାହିଁ ଶୁଣି ପାରେ କି ?

ମହମ କିଛି ଉତ୍ତର ଦେଲା ନାହିଁ । କିଛି ସମୟ ପାଇଁ ଉଭୟେ ନୀରବ ରହିଲେ । ହଠାତ୍ ଅଚଳା ଏକ ସଙ୍ଗରେ କେତେଗୁଡ଼ିଏ ପ୍ରଶ୍ନ ପଚାରି ବସିଲା । କହିଲା ପୃଥିବୀରେ ସ୍ୱାମୀ କ'ଣ ତୁମେ ଏକା ? ଦୁଃସମୟରେ ସେମାନେ ସ୍ତ୍ରୀର ଗହଣା ନିଅନ୍ତି କିପରି ? ଏତେ କଷ୍ଟ କରି ଏଗୁଡ଼ାକ ନିଆଁ ଭିତରୁ ଉଦ୍ଧାର କରିବାକୁ ଯାଉଥିଲ ଅବା କାହିଁକି ? କିନ୍ତୁ ସେ ଗ୍ଲେଡ଼ଷ୍ଟୋନ ବାକ୍‌ସଟାକୁ ହାତରେ

ଠେଲି ଦେଇ କହିଲା— ଯଦି ବିପଦ ସମୟରେ କୌଣସି କାମରେ ନ ଲାଗେ ତେବେ ମିଛରେ ବୋଝ ବଢାଇ ଲାଭ କ'ଣ ହେବ ? ନଅାଁ ତ ବର୍ତ୍ତମାନ ସୁଦ୍ଧା କହୁଛ । ମୁଁ ଯାଉଛୁ, ନଅାଁରେ ସେଗୁଡ଼ାକ ଫିଙ୍ଗି ଦେଇ ନିଶ୍ଚିନ୍ତ ହୋଇ ଚାଲିଯିବ । ତୁମ ମନ ଯାହା, ତାହା ତୁମେ କର । କହି ଲୁଗା କାନିରେ ଆଖି ଲୁହକୁ ଚାପି ଧରିଲା ।

ଦୁଇ ମିନିଟ୍ ଚୁପ ରହିବା ପରେ ମହିମ ଧୀରେ ଧୀରେ କହିଲା—ମୁଁ ତୁମର ସମସ୍ତ କଥା ଚିନ୍ତା କରି ଦେଖିଲି ଅଚଳା; କିନ୍ତୁ ତୁମେ ତ ଜାଣ; ମୁଁ କୌଣସି କାମ ଝୁଙ୍କି ଉପରେ କରେ ନାହିଁ ଏବଂ ଆଉ ମଧ୍ୟ କେହି କରୁ, ତାହା ମଧ୍ୟ ଚାହେଁ ନାହିଁ । ତୁମେ ଯାହା ଦେଉଛ, ତାକୁ ନିଜର ବୋଲି ନେଇ ପାରିଥିଲେ ମୋର ଆନନ୍ଦର ସୀମା ନଥାନ୍ତା । କିନ୍ତୁ କୌଣସି ପ୍ରକାରରେ ନେଇ ପାରୁନାହିଁ । ଦୁଃଖ ଦେଖି ତୁମଭଳି ଆଉଜଣେ ଢେର ବେଶୀ ଦେବାକୁ ଚାହିଁଥିଲା କିନ୍ତୁ ତାହା ଯେପରି ଦୟା, ଏହା ମଧ୍ୟ ସେହିପରି ଦୟା । କିନ୍ତୁ ଏହାଦ୍ୱାରା ନା ତୁମର, ନା ମୋର କାହାର ଶେଷ ପର୍ଯ୍ୟନ୍ତ ଭଲ ହେବନାହିଁ ବୋଲି ମୋର ବିଶ୍ୱାସ ।

ଅଚଳା ଆଉ ସହ୍ୟ କରି ପାରିଲା ନାହିଁ । କାନ୍ଦିବା ଭୁଲିଯାଇ ବୋଧହୁଏ ପ୍ରତିବାଦ କରିବା ପାଇଁ ଦୃପ୍ତ ଆଖି ଦୁଇଟି ଉପରକୁ ଟେକି ଚାହୁଁବାମାତ୍ରେ ସ୍ୱାମୀଙ୍କର ଦୃଷ୍ଟି ଅନୁସରଣ କରି ଦେଖିବାକୁ ପାଇଲା—ଅଳ୍ପ ଦୂରରେ ତାଙ୍କର ଯେଉଁ ପୋଖରୀଟା ଅଛି ତାହାର ଘାଟ ପାଖରେ ଜାମଗଛ ତଳେ ସୁରେଶ ମୁଣ୍ଡରେ ହାତ ଦେଇ ଆକାଶକୁ ଚାହିଁ ଚୁପକରି ପଡ଼ିଛି । ଅଚଳାର ମୁହଁର କଥା ମୁହଁରେ ରହିଗଲା ଏବଂ ମୁଣ୍ଡ ଆପେ ଆପେ ତଳକୁ ନଇଁଗଲା ।



ମହିମ ସେହିପରି ଅନ୍ୟ ମନସ୍କ ହୋଇ ଆପଣା ମନକୁ ମନ କହିବାକୁ ଲାଗିଥାଏ କେବଳ ଯେ ଶାନ୍ତି ପାଇବ ନାହିଁ, ତାହା ନୁହେଁ ତୁମକୁ ବାରମ୍ବାର ବଞ୍ଚିତ କରି ପାରିବ ଏଭଳି ଚିନ୍ତା ମୋର କୌଣସି ଦିନ ହୋଇ ନାହିଁ । ଟିକିଏ ଅଟକି ଯାଇ କହିଲା—ବୁଝିଲି ଅଚଳା; ନିଜକୁ ରିକ୍ତ କରି ଦାନ କରିବାରେ ଅନେକ ଦୁଃଖ । କିନ୍ତୁ ଝୁଙ୍କ ଉପରେ ହୁଏତ ତାହା କ୍ଷଣକ ପାଇଁ କରାଯାଇ ପାରେ । କିନ୍ତୁ ତାର ଫଳ ସାରା ଜୀବନ ଧରି ଭୋଗିବାକୁ ହୁଏ । ମୁଁ ଜାଣେ, ଗୋଟିଏ ଭୁଲପାଇଁ ତୁମର ମନସ୍ତାପର ଅନ୍ତ ନାହିଁ । ପୁଣି ଥରେ ଗୋଟାଏ ଭୁଲ ହୋଇଗଲେ ତୁମେ ନିଜକୁ କୌଣସି ଦିନ ନା କ୍ଷମା କରିପାରିବ, ନା ମୋତେ ମାଫ୍ କରି ପାରିବ । ଏହି କ୍ଷତି ସହିବା ଭଳି ବଳ ତୁମର ନାହିଁ । ଏ କଥା ଆଜି ହୁଏତ ବୁଝି ପାରୁ

ନ ଥିଲେ ଆଉ   ଦୁଇଦିନ  ପରେ  ପାରିବ । ତେଣୁ ତୁମ ନିକଟରୁ ମୁଁ କିଛି ନେଇ ପାରିବି ନାହିଁ ।'

କଥାଗୁଡ଼ାକ ଅଚଳା ଗୃହ ଭିତରେ ଛୁଟିପରି ଗଳି ଗଲା । ସ୍ୱାମୀଙ୍କ ଆଖିରେସେ ଯେ କେତେ ପର; ତାହା ଆଜି ଯେପରି ସେ ପ୍ରଥମ କରି ଅନୁଭବ କରି ପାରିଲା । ସଙ୍ଗେ ସଙ୍ଗେ ମୃଣାଳର ସ୍ନେହ ସେହି ଭାବନାକୁ କ୍ରୋଧରେ ପରିଣତ କରି ପକାଇଲା । ସେ କଠିନ ହୋଇ କହି ଉଠିଲା—ତୁମେ ଏତେ ସମସ୍ତ ଧରି ଯାହା କହି ଚାଲିଛ ତାହା ମୁଁ ବୁଝି ପାରୁଛି । ହୁଏତ ତୁମର କଥା ସତ, ହୁଏତ ତୁମ ମୁହଁ ଦେଖି ଦୟା ପରବଶ ହୋଇ ମୁଁ ମୋର ଯଥାସର୍ବସ୍ୱ ଦେବାକୁ ଚାହିଁଥିଲି, ହୁଏତ ଦୁଇଦିନ ପରେ ମୋତେ ସତରେ ଏଥିପାଇଁ ଅନୁତାପ କରିବାକୁ ହୋଇପାରେ, ସବୁ ଠିକ୍ । କିନ୍ତୁ ଦେଖ ଅନ୍ୟ ମନର ଇଚ୍ଛା ବୁଝି ନେବାପାଇଁ ତୁମର ଯେତେ ବୁଦ୍ଧି ଥାଉ ପଛକେ ତୁମକୁ ବୁଝାଇ କହିବା ପାଇଁ କଥା ମଧ୍ୟ ଅଛି । ସ୍ତ୍ରୀର ଜିନଷ ଜୋର କରି ନେବା ତ ଦୂରର କଥା, ହାତ ପାତି ନେବାର ସତ୍ ସାହାସ ତୁମର କ'ଣ ଅଛି ? ଆଉ ତୁମ ସହିତ ମୁଁ ତର୍କ କରିବି ନାହିଁ । ଏଇତକ ବିବେକ ବୁଦ୍ଧି ଯେ ତୁମଠାରେ ଆଉ ଅବଶିଷ୍ଟ ହୋଇ ରହି ଯାଇଛି, ସେତିକି ଆଜିଠାରୁ ମୋର ସାନ୍ତ୍ୱନା । କିନ୍ତୁ ମୁଁ ଯେଉଁଠି ରହେ ନା କାହିଁକି ଦିନେ ନା ଦିନେ ନିଶ୍ଚୟ ତୁମେ ସବୁ ବୁଝି ପାରିବ ହିଁ ପାରିବ । କହି ସେ ଦୁଇ ହାତ ଦେଇ ନିଜର କାନ୍ଦ ବନ୍ଦ କରିବାକୁ ଚେଷ୍ଟାକଲା ।

ନଅଟା ଟ୍ରେନରେ ସୁରେଶ ମଧ୍ୟ ଘରକୁ ଫେରୁଥିଲା । ଗତରାତିର ଅଗ୍ନି କାଣ୍ଡ ତାକୁ ଏକରକମ ମୂକ କରିଦେଇଥିଲା । କାହା ସହିତ କଥା କହିବାର ଶକ୍ତି ଯେପରି ତାହାର ନଥିଲା । ଗାଡ଼ି ଆସିବାକୁ ବର୍ତ୍ତମାନ ଯଥେଷ୍ଟ ବିଳମ୍ବ ଥିଲା । ସୁରେଶ ମହିମକୁ ଷ୍ଟେସନର ଗୋଟିଏ ପାଖକୁ ଡାକିନେଇ କିଛି ସମସ୍ତ ଚୁପ୍ ରହିବା ପରେ କହିଉଠିଲା—ମହିମ, ନିଆଁ ଲଗିବା ପାଇଁ ତୁ ତ ଆଉ ମୋତେ ସନ୍ଦେହ କରୁନାହୁଁ ?

ମହିମ ସୁରେଶର ହାତ ଦୁଇଟା ଧରି ପକାଇ କେବଳ କହିଲା— ଛିଃ !

ସୁରେଶର ଦୁଇଆଖି ଲୁହରେ ଛଳ ଛଳ ହୋଇ ଉଠିଲା । ବାଷ୍ପରୁଦ୍ଧ ସ୍ୱରରେ କହିଲା, କାଲିଠାରୁ ଏହି ଭୟରେ ମୁଁ ଶାନ୍ତି ପାଇନାହିଁ ମହିମ ।

ମହିମ ନୀରବଭାବରେ ତାହା ହାତରେ କେବଳ ମୃଦୁ ଚାପ ଦେଲା । ତାହା ପରେ କହିଲା—ଅନେକ ସତ୍ୟ ଅପରାଧ ସମସ୍ତ ସମୟରେ ଅନେକ ମିଥ୍ୟା

ଅପରାଧର ବୋଝ ବୋହିଆଣେ । ଅନେକ ଦୁଃଖ ପାଇ ତୁ ଯାହା କରନା କାହିଁକି ଯାହାକୁ 'କ୍ରାଇମ୍' କହନ୍ତି, ତୁ କୌଣସି ଦିନ ସେହିଭଳି କାର୍ଯ୍ୟ କରିପାରିବୁ ନାହିଁ ବୋଲି ଏବେ ସୁଦ୍ଧା ମୋର ବିଶ୍ୱାସ ଅଛି । ଟିକିଏ ଅଟକି ଯାଇ ପୁଣି କହିଲା— ସୁରେଶ, ତୁ ଭଗବାନଙ୍କୁ ମାନୁ ନାହୁଁ ସତ, କିନ୍ତୁ ଯିଏ ଯଥାର୍ଥରେ ମାନେ; ସେ ଅହର୍ନିଶି ପ୍ରାର୍ଥନା କରେ, ଏ ବିଶ୍ୱାସ ଯେପରି ସିଏ ତାର ଭାଙ୍ଗି ନ ଦିଅନ୍ତି ।

ଟ୍ରେନ ଆସି ପହଞ୍ଚିଲା । ମହିଳା ଡବାରେ ଅଚଳା ଏବଂ ତାହାର ଦାସୀକୁ ଚଢ଼ାଇଦେଇ ମହିମ ସୁରେଶ ନିକଟକୁ ଫେରି ଆସିବାମାତ୍ରେ ସେ ମହିମର ହାତଟା ଝରକା ଭିତରୁ ଧରିପକାଇ କହିଲା— ଗତକାଲି ତୋର ଯେଉଁ କ୍ଷତି ହେଲା ତାକୁ ପୂରଣ କରିବାର ସୁଯୋଗ ତୁ ମୋତେ ଦେଲୁନାହିଁ । ହଉ, ତୋ ଭଗବାନ ଯେପରି ତୋର ପ୍ରାର୍ଥନାଟା ମଞ୍ଜୁର କରନ୍ତି ଯାଇ । ମୋତେ ସେ ଯେପରି ଆହୁରି ଶ୍ରେଷ୍ଠ ନ କରିଦିଅନ୍ତି । ଏତିକି କହିସାରି ସେ ହାତ ଛଡ଼ାଇନେଇ ମୁହଁ ବୁଲାଇ ନେଲା ।

ଏ ପାଖରେ ଝରକା ଭିତରେ ମୁଣ୍ଡ ଗଳାଇ ଅଚଳା ଯଦୁ ସହିତ କ'ଣ ଚୁପ୍ ଚୁପ୍ କଥା ହେଉଥିଲା । ମହିମ ନିକଟକୁ ଆସିବାମାତ୍ରେ ସେ ପ୍ରଶ୍ନକଲା, ମୃଣାଳ ଅପାଙ୍କର ସ୍ୱାମୀ କ'ଣ ଆଜି ମରିଯାଇଛନ୍ତି କି ?

ମହିମ ମୁଣ୍ଡ ହଲାଇ କହିଲା—ଘଣ୍ଟାଏ ପୂର୍ବେ ମରିଯାଇଛନ୍ତି ବୋଲି ଶୁଣିଲି ।

ଅଚଳା ପ୍ରଶ୍ନକଲା—ପ୍ରାୟ ଦଶ ବାର ଦିନ ଧରି ସେ ନିମୋନିଆ ଭୋଗୁଥିଲେ, ଏ ଖବରଟା ମୋତେ ଜଣାଇବା ପାଇଁ କାହିଁ ତୁମେ କେଉଁଦିନ ତ ଆବଶ୍ୟକ ମନେ କରିନାହଁ ?

ମହିମ ଉତ୍ତର ଦେବାକୁ ଚାହିଁଥିଲା । କିନ୍ତୁ କିପରି କଥାଟାକୁ ସେ ଆରମ୍ଭ କରିବ ଭାବୁ ଭାବୁ ବଂଶୀ ବଜାଇ ଗାଡ଼ି ଷ୍ଟେସନ ଛାଡ଼ିଦେଲା ।

ସେତେବେଳକୁ କେଦାରବାବୁ ପୂର୍ବର ସ୍ୱାସ୍ଥ୍ୟ ଫେରି ପାଇ ନାହାନ୍ତି । ଖାଇ ସାରିବା ପରେ ଦାଣ୍ଡ ବାରଣ୍ଡାରେ ଖଣ୍ଡିଏ ଆରାମ ଚୌକି ଉପରେ ପଡ଼ି ରହି ଖବର କାଗଜ ପଢୁ ପଢୁ ହୁଏତ ସାମାନ୍ୟ ତନ୍ଦ୍ରାଭିଭୂତ ହୋଇ ପଡ଼ୁଥିଲେ ।

ହଠାତ୍ ଦ୍ୱାର ନିକଟରେ ଉଡ଼ାଗାଡ଼ିର କର୍କଶ ଶବ୍ଦ ସ୍ୱର ଶୁଣିପାରି ଆଖିମେଲି ଦେଖିଲେ ସୁରେଶ ଏବଂ ସଙ୍ଗେ ସଙ୍ଗେ ତାଙ୍କର କନ୍ୟା ଏବଂ ଗୃହକର୍ତ୍ରୀ ଗାଡ଼ିରୁ ଓହ୍ଲାଇପଡ଼ିଲେ । କ୍ଷଣକ ଭିତରେ ତାଙ୍କର ନିଦ ଭାଙ୍ଗିଗଲା । କୌଣସି ଏକ ଅଜଣା ଆଶଙ୍କାରେ ବ୍ୟସ୍ତହୋଇ ବସିପଡ଼ି ବଡ଼ ପାଟିରେ ଚିତ୍କାର କରି ଡାକ ପକାଇଲେ—ମା ଅଚଳା ଯେ ! ସୁରେଶ ତୁମେ କେଉଁଠାରୁ ? ପୁଣି ଦାସୀ ? ଆରେ ଘଟଣା କ'ଣ ? ଏ ସବୁ କ କାଣ୍ଡକାରଖାନା ମୁଁ ତ ବୁଝିପାରୁ ନାହିଁ ।

ଅଚଳା ନଇଁପଡ଼ି ବାବାଙ୍କର ପାଦଧୂଳି ନେଲା ।

ସୁରେଶ ପ୍ରଣାମ ଜଣାଇ କହିଲା—ମହିମର ଟେଲିଗ୍ରାମ କ'ଣ ପାଇ ନାହାନ୍ତି ?

କେଦାରବାବୁ ଉଦ୍‌ବିଗ୍ନ ହୋଇ କହିଉଠିଲେ—କାହିଁ ନାଇଁତ ?

ସୁରେଶ ଚୌକି ଟାଣିନେଇ ବସିପଡ଼ି କହିଲା – ତାହାହେଲେ ସେ ହୁଏତ ଟେଲିଗ୍ରାମ କରିବାପାଇଁ ଭୁଲି ଯାଇଛି, ସେଥିପାଇଁ ଏ ପର୍ଯ୍ୟନ୍ତ ବୋଧହୁଏ ଆସି ପହଞ୍ଚି ପାରିନାହିଁ ।

କେଦାରବାବୁ କହିଲେ—ଟେଲିଗ୍ରାମ କଥା ଥାଉ, ଘଟଣା କ'ଣ ଆଗ କହିଲ ? ତୁମେ ଏମାନଙ୍କୁ କେଉଁଠାରୁ ଧରି ଆଣିଲ ?

ସୁରେଶ କହିଲା— ନିଆଁ ଲାଗି ଗତକାଲି ମହିମର ଘର ପୋଡ଼ିଗଲା ।

: ଘର ପୋଡ଼ିଯାଇଛି ! ସର୍ବନାଶ ! କ'ଣ କହୁଛ ? ଘର ପୋଡ଼ିଗଲା ? କପରି ପୋଡ଼ିଗଲା ? ମହିମ କାହିଁ ? ତୁମେ ଏମାନଙ୍କୁ କେଉଁଠାରେ ପାଇଲ ? ଏକ ନିଃଶ୍ୱାସରେ ଏତେଗୁଡ଼ାଏ ପ୍ରଶ୍ନ କରି କେଦାରବାବୁ ଧପ୍ କରି ତାଙ୍କର ଆରାମଚୌକି ଉପରେ ବସିପଡ଼ିଲେ ।

ସୁରେଶ କହିଲା—ଏମାନଙ୍କୁ ମହିମ ଗାଆଁରୁ ନେଇ ଆସିଲି । ମୁଁ ସେଇଠାରେ ଥିଲି ।

କେଦାରବାବୁଙ୍କ ମୁହଁ ଅତ୍ୟନ୍ତ ବିପନ୍ନ ହୋଇ ଉଠିଲା । କହିଲେ—ତୁମେ ସେଠାରେ ଥିଲ ? କେବେଠାରୁ ସେଠାକୁ ଯାଇଥିଲ, ମୁଁ ତ ଆଦୌ ଜାଣେ ନାହିଁ ? କିନ୍ତୁ ସେ କାହିଁ ?

ସୁରେଶ କହିଲା—ମହିମ ତ ଆସି ପାରିଲା ନାହିଁ—ତେଣୁ······

କେଦାରବାବୁଙ୍କର ଗମ୍ଭୀର ମୁହଁରେ ଯେପରି ଅନ୍ଧକାର ଘୋଟି ଗଲା । ମୁଣ୍ଡ ହଲାଇ କହିଲେ—ନା, ନା, ଏସବୁ ଆଦୌ ଭଲ କଥା ନୁହେଁ ।

ନହାତ ଅନ୍ୟାୟ, ଏସବୁକୁତ ମୁଁ କୌଣସି ପ୍ରକାରେ···କହୁ କହୁ ସେ ଆଖି ଟେକ ନଜର ଝିଅ ଆଡ଼କୁ ଗ୍ହିଁଲେ ।

ଅଚଳା ଏତେ ସମସ୍ତ ଧରି ଗୋଟିଏ ଚୌକିର ହାତ ଧରି ମିରବରେ ଠିଆ ହୋଇ ରହିଥିଲା । ବାବାଙ୍କର 'ଏହି ସନ୍ଦେହ ଯାଇ ତାର ମର୍ମ ସ୍ଥଳରେ ଆଘାତ କଲା । ତାର ଏହି ଅକସ୍ମାତ୍ ଆଗମନର କାରଣ ଯେ ସେ ଘଲେ ମାଣ ବିଶ୍ୱାସ କରି ପାରୁ ନାହାନ୍ତି, ତାହା ସୁସ୍ପଷ୍ଟ ଭାବରେ ଉପଲବ୍ଧି କରି ଲଜ୍ଜ୍ୟାରେ; ଘୃଣାରେ ତାର ମୁହଁରେ ଆଉ ରକ୍ତର ଚିହ୍ନ ରହିଲା ନାହିଁ ।

କେଦାର ବାବୁ ଏଠାରେ ମଧ୍ୟ ଭୁଲ କରି ବସିଲେ । ଝିଅ ମୁହଁର ଚେହେରା ଦ୍ୱାରା ତାଙ୍କର ସନ୍ଦେହ ଦୃଢ଼ୀଭୂତ ହେଲା । ଆରାମ ଚୌକି ଉପରେ ଚିତ ହୋଇ ଶୋଇ ପଡ଼ି ହାତର କାଗଜ ଖଣ୍ଡି ମୁହଁ ଉପରକୁ ଟାଣିନେଇ ଗୋଟାଏ ଦୀର୍ଘ ନିଃଶ୍ୱାସ ଟାଣି କହିଲେ—ଯାହା ଭଲ ଭାବୁଛ ତାହା ତୁମେମାନେ କର । ମୁଁ କାଲି ସକାଳୁ ଏ ଘର ଛାଡ଼ି ଆଉ କୁଆଡ଼େ ହେଲେ ଗ୍ଲିଯିବି ।

ସୁରେଶ କ୍ଷୁବ୍ଧ-ବିସ୍ମୟର ସହିତ କହିଲା—ଏସବୁ ଆପଣ କ'ଣ କହୁଛନ୍ତି କେଦାର ବାବୁ ? ଆପଣ ଅବା ଘର ଛାଡ଼ି ବାହାରି ଯିବେ କାହିଁକି । ଆଉ କ'ଣ ଅବା ଭୁଲ ଆମେମାନେ କରି ବସିଛୁ ? କହି ସେ ଥରକ ପାଇଁ ଅଚଳା ଆଡ଼େ ଏବଂ ଥରକ ପାଇଁ ତାର ବାପାଙ୍କ ଆଡ଼େ ଗ୍ହିଁବାକୁ ଲଗିଲା ।

କେଦାର ବାବୁଙ୍କ ଠାରୁ କୌଣସି ଉତ୍ତର ନ ପାଇବା ଫଳରେ ସୁରେଶ ଉଠି ଠିଆହୋଇ କହିଲା ସେ ଯାହାହେଉ, ମୋତେ ମହିମ ଯେଉଁ ଦାୟିତ୍ୱ ଦେଇଥିଲା, ତାହା ମୁଁ ତୁଲାଇ ସାରିଲି, ଏଣିକି ଆପଣ ଯାହା ଭଲ ମନେ କରିବେ ତାହା କରିବେ । ମୋର ଏ ପର୍ଯ୍ୟନ୍ତ ସୁଦ୍ଧା ଖିଆ, ପିଆ, ଗାଧୁଆ, ପାଧୁଆ କିଛି ହୋଇ ନାହିଁ । ମୁଁ ଘରକୁ ଗ୍ଲିଲି କହି । ସେ କେତେ ପାଦ ଦ୍ୱାର ଆଡ଼କୁ ଅଗ୍ରସର ହେବା ବେଳେ କେଦାର ବାବୁ କ୍ଳାନ୍ତ କଣ୍ଠରେ କହିଲେ—ଆହା ! ତୁହନା, ଘଟଣା ଏବେ ସୁଦ୍ଧା ସଂପୂର୍ଣ୍ଣ ରୂପେ ମୁଁ ଶୁଣି ନାହିଁ । ଆଚ୍ଛା ନିଆଁ ଲଗିଲା କପରି ?

ସୁରେଶ ଅଭିମାନ ସ୍ୱରରେ କହିଲା—ଜାଣିନ ।

: ତୁମେ ସେଠାକୁ କେବେ ଗଲ ?

: ପାଞ୍ଚ ଛଅଦିନ ତଳେ । ମୁଁ ଏପର୍ଯ୍ୟନ୍ତ ସୁଦ୍ଧା ଖାଇ ନାହିଁ ତେଣୁ ଆଉ ବିଳମ୍ବ କରି ପାରୁନାହିଁ, କହି ପୁନରାୟ ଯିବାକୁ ଉଦ୍ୟମ କରିବା କ୍ଷଣି କେଦାର ବାବୁ କହି ଉଠିଲେ—ଗାଧୋଇବା, ଆଉ ଖାଇବା ତୁମ କାହାର ସୁଦ୍ଧା ଏପର୍ଯ୍ୟନ୍ତ

ହୋଇ ନାହିଁ । ତୁମେ ତ ଆଉ କେଉଁଠି ନାହଁ । ଏଇଟା ମଧ୍ୟ ଗୋଟାଏ ଘର । ଏଠାରେ ମଧ୍ୟ ଗୃହକର ବାହକର ଅଛନ୍ତି । ଅଚଳା ଠିଆହୋଇ ରହିଲୁ କାହିଁକ ? ତାକ୍ ମା ସେ ବେହେଇଟାକୁ । ବସ, ବସ; ସୁରେଶ । ଘଟଣାଟା କ'ଣ ହେଲା ମୋତେ ଟିକଏ ହେଲେ ଖୋଲି କର କହ । ମୁଁ ସବୁ ଶୁଣେ ।

ସୁରେଶ ଫେରଆସି ବସିଲା । କଛି ସମୟ ନୀରବ ରହିବା ପରେ କହିଲା—ରାତରେ ଶୋଇଛି, ମହିମର ଚତ୍କାର ଶୁଣି ଘର ଭିତରୁ ବାହାରକୁ ଆସି ଦେଖେ ସମସ୍ତ ଘର ଧୂ, ଧୂ, ହୋଇ ଜଳିବାରେ ଲାଗିଛି । ଗ୍ରାମ ଘରତ ! ଲିଭାଇବାର ଉପାୟ ଆଦୌ ନ ଥିଲା । ସେ ବୃଥା ଚେଷ୍ଟା ମଧ୍ୟ କେହି କଲେ ନାହିଁ । ସବୁ ଘର ଗୃହୁଁ ଗୃହୁଁ ପୋଡ଼ି ପାଉଁଶ ହୋଇଗଲା ।

କେଦାରବାବୁ ପାଟିକର କହି ଉଠିଲେ କ'ଣ କହୁଛ ତୁମେ ? ସବୁ ଘର ପୋଡ଼ି ଯାଇଛି ? ଜିନଷପତ୍ର କଛି ରକ୍ଷା କର ହେଲାନାହିଁ । ଅଚଳାର ଗହଣା ପତ୍ର ?

: ସେ ଗୁଡ଼ାକ ରକ୍ଷା ହୋଇଯାଇଛି ।

ଓହୋ ! ତାହାହେଲେ ମଣିଷ ବଞ୍ଚିଗଲା କହି ବୃଦ୍ଧ ଦୀର୍ଘଶ୍ୱାସ ତ୍ୟାଗକର ପୁଣି ଚଉକରେ ପଡ଼ି ରହିଲେ । କଛି ସମୟ ସେହିପର ସ୍ତବ୍ଧଭାବରେ ରହିବା ପରେ ପ୍ରଶ୍ନ କଲେ—ତେବେ ନିଆଁ ଟା ଲାଗିଲା କେମିତ ?

ସୁରେଶ କହିଲା—କହିଲି ତ ଆପଣଙ୍କୁ, ସେ କଥା ଏ ପର୍ଯ୍ୟନ୍ତ ସୁଦ୍ଧା ଜଣା ପଡ଼ିନାହିଁ । ତେବେ ସାହି ଭିତରେ କେହି ଯେ ତାର ମଙ୍ଗଳାଭିଳାଷୀ ନୁହନ୍ତି, ଏକଥା ଜାଣି କର ଆସିଲି ।

: ନୁହଁନ୍ତି ! ମାନେ ?

: ନା, କେହି ଜଣେ ହେଲେ ନୁହନ୍ତି ।

କେଦାରବାବୁ ଆଉ କୌଣସି କଥା କହିଲେ ନାହିଁ । ଅନେକ କ୍ଷଣ ଧର ଚୁପ୍ ହୋଇ ବାହାରକୁ ଗ୍ରହିଁ ରହିବା ପରେ ପରଶେଷରେ ଆଉ ଗୋଟାଏ ଗଭୀର ନିଃଶ୍ୱାସ ତ୍ୟାଗକର ଉଠି ଠିଆ ହୋଇପଡ଼ି କହିଲେ—ଯାଅ, ଗାଧୋଇ ଆସ ସୁରେଶ । ଆଉ ଡେର କରନାହିଁ । ଦେଖେ ଗ୍ରେଷଘରେ କ'ଣ ବ୍ୟବସ୍ଥା ହେଉଛି ? କହି ତାକୁ ସଙ୍ଗରେ ଧର ବାହାରକୁ ଗ୍ଲଲଗଲେ ।

ଖିଆପିଆ ସରବା ପରେ ମଧ୍ୟ ସୁରେଶକୁ ମୁକ୍ତି ମିଳଲା ନାହିଁ । ସେ ଆରାମ ଚୌକ ଉପରେ ଅର୍ଦ୍ଧ ନିଦ୍ରାତାବସ୍ଥାରେ ପଡ଼ି ରହିଲା । ଅଚଳା ମଧ୍ୟ ଖାଇ ସାରବା

ପରେ ତାର ଶୋଇବା ଘରେ ଭିତରୁ କବାଟ ବନ୍ଦକରି ଶୋଇ ପଡ଼ିଲା । କେବଳ ଶୋଇ ପାରିଲେ ନାହିଁ କେଦାରବାବୁ । ବର୍ତ୍ତମାନ ଯଦିଓ ଟେଲିଗ୍ରାମ ଆସିବା ନ ଆସିବାରେ ବିଶେଷ କୌଣସି ସାର୍ଥକତା ନ ଥିଲା, ତଥାପି ସାରା ଦିନଟା ସେଥି ଲାଗି ଛଟ ପଟ ହୋଇ ସନ୍ଧ୍ୟା ସମୟରେ ଶୋଇବା ସ୍ୱାସ୍ଥ୍ୟ ପକ୍ଷରେ କ୍ଷତିକାରକ ଏଇ ଉପଦେଶ ବାଣୀ ଶୁଣାଇ ସେ ଝିଅକୁ ଡକାଇ ପଠାଇଲେ । ଅଚଳା ଆସି ପହଞ୍ଚିବାରୁ ସେ କହିଉଠିଲେ—ତୁମେ ସବୁ କହିଲ ଯେ ସେ ଟ୍ରେଲିଗ୍ରାମ କରିଛି କିନ୍ତୁ ! ଟେଲିଗ୍ରାମ ତ ଏ ପର୍ଯ୍ୟନ୍ତ ହେଲେ ଆସିଲା ନାହିଁ ? ତୁମେମାନେ ସବୁ ଟ୍ରେନରେ ଆସି ଏତେବେଳ ହେଲା ପହଞ୍ଚିଲଣି ଆଉ ଟେଲିଗ୍ରାମ ଏ ପର୍ଯ୍ୟନ୍ତ ପହଞ୍ଚି ପାରିଲା ନାହିଁ । ଆଚ୍ଛା ଠିଆ ହୁଅ ତ । ମୁଁ ଦେଖିଆସେ କହି ଝିଅ ମୁହଁରୁ କୌଣସି ଉତ୍ତର ଶୁଣିବା ପାଇଁ ଅପେକ୍ଷା ନକରି ଯୋଡ଼ା ପିନ୍ଧି ବାହାରକୁ ତରତର ହୋଇ ଚାଲିଗଲେ ଏବଂ କିଛି ସମୟ ପରେ ତଳୁ ତାଙ୍କର ଉତ୍ତେଜିତ କଣ୍ଠସ୍ୱର ପରିଷ୍କାର ଭାବରେ ଶୁଣା ଯିବାକୁ ଲାଗିଲା । ଅଚଳା ସହିତ ଯାଇଥିବା ଦାସୀକୁ ସେ ଅନେକ ପ୍ରକାରରେ ଜେରା କରୁଥିଲେ ଏବଂ ପ୍ରତ୍ୟୁତ୍ତର ଶୁଣି ତାହାଁର ପ୍ରତିବାଦ କରି କହୁଥିଲେ—ଏ କି କଥା, ଘରଦ୍ୱାର ପୋଡ଼ି ପାଉଁଶ ହୋଇଗଲା ଆଉ କେହି କହୁଛୁ ଦେଖି ନାହୁଁ । କିଆଁ ସବୁ ନ ଲାଗିଲା ତେବେ ଘରଦ୍ୱାର ପୋଡ଼ି ଭସ୍ମ ହୋଇଗଲା କପରି ? ଅରେ ମାଇ ଚିନ୍ତା କରି କହ ।

ସୁରେଶ ସମସ୍ତ କଥା ଶୁଣିପାରିଥିଲା । ସେ ଦେଖିଲା, ଅଚଳା ବିଷଣ୍ଣ ମୁହଁରେ ଚୌକାଠ ଧରି ଠିଆ ହୋଇ କାନପାତି ପ୍ରତ୍ୟେକଟି କଥା ଶୁଣି ହଜମ କରୁଛି । ଶୁଷ୍କ ଉପହାସ କରିବା ଭଙ୍ଗୀରେ ସେ କହିଲା—ତୁମ ବାବାଙ୍କର ଏ କଣ ହେଲା ? କହି ପାରିବ ?

ଅଚଳା ଚମକି ପଡ଼ି ମୁହଁଫେରାଇ କହିଲା—ନା,

ସୁରେଶ କହିଲା—ମୁଁ ନିଶ୍ଚିତ ଭାବରେ କହି ପାରିବି ସେ ଆଦୌ ବିଶ୍ୱାସ କରି ପାରୁନାହାନ୍ତି । ତାଙ୍କର ଧାରଣା କିଆଁ ଲଗିବା ଗଳ୍ପଟା ମୋର ମନଗଢ଼ା । କିଛିକ୍ଷଣ ଚୁପ ରହି କହିଲା —ସତ୍ୟ କି ମିଥ୍ୟା ଅବଶ୍ୟ ଦିନେ ନା ଦିନେ ଜଣା-ପଡ଼ିବ । କିନ୍ତୁ ତାଙ୍କର ସନ୍ଦେହଟା ଏପରି ହୋଇ ଉଠିଛି ଯାହାଫଳରେ ମୋର ଏଠାକୁ ଆସିବା ଏକ ପ୍ରକାର ଅସମ୍ଭବ ··· ।

ଅଚଳା ଶୁଖିଲା ମୁହଁରେ ପ୍ରଶ୍ନକଲା---ଆପଣ କ'ଣ ଆଉ ଏଠାକୁ ଆସିବେନି ?

ସୁରେଶ ଉଠିପଡ଼ି ଠିଆହୋଇ କହିଲା—ବୋଧହୁଏ ନୁହେଁ । ମୋର ତ ପୁଣି ଆତ୍ମସମ୍ମାନ ବୋଲି କିଛି ଅଛି । କୌଣସି ଲୋକ ହାତରେ ମୋ ବ୍ୟାଗ୍‌ଟା ଘରକୁ ପଠାଇ ଦେବେ ।

ଅଚଳା ମୁଣ୍ଡ ହଲାଇ କହିଲା—ଆଚ୍ଛା । କିନ୍ତୁ ସୁରେଶର ଏଠାକୁ ଆସିବା ନ ଆସିବା ବିଷୟରେ କୌଣସି ଦ୍ୱିରୁକ୍ତି କଲାନାହିଁ ।

: ତାହାହେଲେ ସକାଳୁ ପଠାଇ ଦେବ । ସେଥିରେ ମୋର ଦରକାରୀ ଜିନିଷ ଅଛି, କହି ସେ କେଦାରବାବୁଙ୍କ ଅପେକ୍ଷା ନ କରି ବାହାରି ଚାଲିଗଲା ।

କେଦାରବାବୁ ଫେରିଆସି ଆଶ୍ଚର୍ଯ୍ୟ ହେଲେ ସତ କିନ୍ତୁ ମନେ ମନେ ଯେ ସେ ସୁଖୀ ନୁହନ୍ତି; ତାହା ଅଜଣା ରହିଲା ନାହିଁ ।

ରାତିରେ ବହୁତ ସମୟ ପର୍ଯ୍ୟନ୍ତ ବିଛଣା ଉପରେ ପଡ଼ି ଛଟ ପଟ ହେବା ପରେ ଅଚଳା ଉଠିବସିଲା । ବାହାର ବାରଣ୍ଡାରେ ଠିଆହୋଇ ସମ୍ମୁଖର ରାଜରାସ୍ତା ଉପରେ ଯାତାୟାତ କରୁଥିବା ଲୋକଙ୍କୁ ଚାହିଁ ଆନମନା ହୋଇ ଉଠିବାପାଇଁ ତାର ଇଚ୍ଛା ହେଲା ।

ସେ ଶୋଇଥିବା ଘରର କବାଟ ଖୋଲି ବାରଣ୍ଡାକୁ ଆସି ଦେଖିଲା; ସେତେବେଳ ପର୍ଯ୍ୟନ୍ତ ବୈଠକଘରେ ଆଲୁଅ ଜଳୁଛି । ପ୍ରଥମେ ମନେ କଲା—ହୁଏତ ଚାକରମାନେ ଗ୍ୟାସ ବନ୍ଦ କରିବାକୁ ଭୁଲି ଯାଇଛନ୍ତି; କିନ୍ତୁ କେତେ ପାଦ ଅଗ୍ରସର ହେବା ପରେ ଭିତରୁ ବାବାଙ୍କର କଣ୍ଠସ୍ୱର ଶୁଣିବା ପରେ ତାର ବିସ୍ମୟର ସୀମା ରହିଲ ନାହିଁ । ସବୁଦିନ ସେ ଦଶଟା ବାଜୁ ନ ବାଜୁଣୁ ଶୋଇ ଥୁଅନ୍ତି କିନ୍ତୁ ଆଜି ସାଢ଼େ ଦଶଟା ବାଜିଗଲାଣି । ପର ମୁହୂର୍ତ୍ତିରେ ଦାସୀର ଗଳା ଶୁଣାଗଲା । ସେ କହୁଛି—ବର୍ତ୍ତିମାନ ସ୍ୱାମୀ ମରିଯାଇଛି । ସେଇ ମୃଣାଳ ଅପା ଯେ ଶ୍ୱଶୁର ଘରେ ରହିବେ ବୋଲି ମୋର କାହିଁକି ମନେ ହେଉନାହିଁ, ଜ୍ୱାଇଁ ବାବୁଙ୍କ ସଙ୍ଗେ ତାଙ୍କର ଯେଉଁ ଅଜା ନାଉଣୀ ଫାର୍ସ । କେଜାଣି ସେମାନଙ୍କ ଭିତରେ କି ସମ୍ପର୍କ ତାହା ସେମାନଙ୍କୁ ଜଣା ।

ପ୍ରତ୍ୟୁତ୍ତରରେ କେଦାର ବାବୁ ଗମ୍ଭୀର ଭାବରେ 'ହୁଁ' କହି ଚୁପ କରି ରହିଲେ ।

ଅଚଳା ବୁଝି ପାରିଲା; ଏହା ପୂର୍ବରୁ ଅନେକ କିଛି କଥାବାର୍ତ୍ତା ସରିଛି । ମୃଣାଳ ଅପା ସମ୍ପର୍କରେ, ମହିମ ସମ୍ବନ୍ଧରେ ଏବଂ ତା ବିଷୟରେ କିଛି କଥା ବାଦ୍ ପଡ଼ିନାହିଁ । କିନ୍ତୁ କାଳେ ନିଜ ସମ୍ବନ୍ଧରେ କୌଣସି ଅପ୍ରିୟ କଥା କାନରେ ପଡ଼ି ଯାଇପାରେ ଏହି ଆଶଙ୍କାରେ ସେ ପାଦ ଚପି ଚପି ସେଠାରୁ ଧୀରେ ଚାଲି

ଆସୁଥିଲା କିନ୍ତୁ କିଏ ସତେ ଯେପରି ତାର ପାଦକୁ ଲୁହା ଶିକୁଳିରେ ସତରେ ବାନ୍ଧି ପକାଇଲା ।

କେଦାରବାବୁ ଅଳ୍ପ ସମୟ ନୀରବ ରହିବା ପରେ କହିଲେ– ତାହାହେଲେ ତୁହିଁଙ୍କ ଭିତରେ ଭଲ ପଡୁ ନଥିଲା ।

ଘରକରଣୀ କହିଲା—ମୋଟେ ନୁହେଁ ବାବୁ । ଦିନକ ପାଇଁ ନୁହେଁ ।

ଏହି ଦାସୀକୁ ଅଚଳା ଆଜି ପର୍ଯ୍ୟନ୍ତ ନିର୍ବୋଧ ବୋଲି ଭାବିଥିଲା । ଆଜି କିନ୍ତୁ ଜାଣିପାରିଲା ତାର ବୁଦ୍ଧି ଆଉ କାହାଠାରୁ ଆଦୌ କମ୍ ନୁହେଁ ।

କେଦାରବାବୁ ଆଉ ମିନିଟିଏ ଚୁପ୍ ରହି କହିଲେ—ଗତକାଲି ରାତିରେ ତାହାହେଲେ କେହି ଖାଇ ନାହାନ୍ତି ? ସୁରେଶ ଯିବା ପର୍ଯ୍ୟନ୍ତ ଏହିପରି କଳି-କଜିଆ କରି ଦିନ କଟୁଥିଲା ?

ଦାସୀର ଉତ୍ତର ସହିତ ଶୁଣାଗଲା ନାହିଁ; କିନ୍ତୁ ବାବାଙ୍କ ମୁହଁରୁ ବାହାରିଥିବା ମନ୍ତବ୍ୟ ଶୁଣି ଅଚଳା ବୁଝିପାରିଲା ଯେ, ସେ କି ରୂପ ଅଭିମତ ପ୍ରକାଶ କରୁଛନ୍ତି । କାରଣ ପରକ୍ଷଣରେ କେଦାରବାବୁ ଗୋଟାଏ ଗଭୀର ନିଃଶ୍ୱାସ ତ୍ୟାଗକରି କହିଲେ—ଏଇପରି ଦିନେ ଯେ ଘଟିବ, ଏହା ମୁଁ ବହୁ ପୂର୍ବରୁ ଜାଣିଥିଲି । ଆଜିକାଲିକାର ପୁଅ ଝିଅ ତ ବାପ ମାଆଙ୍କ କଥାକୁ ଗ୍ରହଣ କରୁ ନାହାନ୍ତି । ନଚେତ୍ ମୁଁ ତ ସବୁ ବିଷୟ ଏକ ପ୍ରକାର ଠିକ୍ କରି ଆଣିଥିଲି । ଆଜି ତାହାହେଲେ ଆଉ ଭାବି ବା ଲାଭ କ'ଣ ? କହି ଆଉ ଗୋଟାଏ ଦୀର୍ଘଶ୍ୱାସ ତ୍ୟାଗ କଲେ ।

ଦାସୀ ପୂର୍ଣ୍ଣ ସହାନୁଭୂତିର ସହିତ କହିଲା—ଯାହା କହିଲେ ସତ ବାବୁ, ନ ହେଲେ ଆଜି ଆଉ ଭାବିବାର କ'ଣ ଅବା ଥିଲା ? କେଉଁ ମଫସଲ ଗାଁର ଗୋଟାଏ ଶ୍ରେଷ୍ଠ କୁଡ଼ିଆ ଘର । ତାହା ଅବା କେଉଁ ରହିଲା ? ଆଉ କାହିଁ ବାବୁ ତ....କହି କଥାଟାକୁ ଶେଷ ନକରି ସେ ମଧ୍ୟ ଗୋଟାଏ ଦୀର୍ଘ ନିଃଶ୍ୱାସ ମାରିଲା ।

: ଏହାକୁ କହନ୍ତି ଭାଗ୍ୟ ! ଏହାପରେ କେଦାରବାବୁ ଦୁଇ ମିନିଟ୍ ନୀରବ ରହି, ଦାସୀକୁ ବିଦାୟ ଦେଇ ଆଲୁଅ ନିଭାଇବା ପାଇଁ ବେହେରାକୁ ଡାକ ପକାଇଲେ ।

ଅଚଳା ପାଦ ଚପି ଚପି ଆସି ତାର ଘରେ ଶୋଇପଡ଼ିଲା ବାବାଙ୍କର ଉଦାରତା ଓ ଭଦ୍ରତାବୋଧ କୌଣସି ଦିନ ତାର ମନରେ ଉଚ୍ଚ ଆସନ ଗ୍ରହଣ କରି ନଥିଲା, କିନ୍ତୁ ସେ ଯେ ଘରର ଘରକରଣୀ ସହିତ ନିଭୃତରେ

ଆଲୋଚନା କରିବା ଭଳି ଏତେ ନୀଚ ହୋଇ ପାରନ୍ତି; ଏହା ସେ କଦାପି କଳ୍ପନା ସୁଦ୍ଧା କରିପାରି ନଥିଲି । ଆଜି ତାର ମନ ଶ୍ରେଷ୍ଠହୋଇ ମାଟିରେ ପଡ଼ିଥିବା ଲତାପରି ପଡ଼ିଯାଇଛି । କିନ୍ତୁ ତାର ସ୍ୱାମୀ, ତାର ପିତା, ତାର ଦାସୀ, ତାର ବନ୍ଧୁ—ସମସ୍ତଙ୍କ ମନ ଯେତେବେଳେ ଶ୍ରେଷ୍ଠ ହୋଇଯିବା ଉପରେ ସେତେବେଳେ କାହାକୁ ଅବଲମ୍ବନ କରି ସେ ଭୂମିତଳ ଶଯ୍ୟାରୁ ଉପରକୁ ଉଠି ଠିଆହୋଇ ପାରିବ ? ଏଇଭଳି କୌଣସି ଭରସା ସେ ଆଉ ଖୋଜି ପାଇପାରୁ ନଥିଲି ।

ସଂସାରରେ ସାଧାରଣ ଦଶଜଣଙ୍କ ପରି କେଦାରବାବୁ ଦୋଷଗୁଣ ମିଶିଥିବା ଜଣେ ମଣିଷ । ଝିଅକୁ ବିବାହ ଦେବାପାଇଁ ଚିନ୍ତାକଲାବେଳେ ସେ ଇଚ୍ଛା କରିଥିଲେ ଜ୍ୱାଇଁ ତାଙ୍କର ବିଦ୍ୱାନ ଏବଂ ଅବସ୍ଥାପନ୍ନ ହେବା ଆବଶ୍ୟକ । ମହିମ ଭଲ ପିଲା, ସେ ଏମ୍ ଏ. ପାଶ୍ କରିଛି, ଗାଆଁରେ ତାର ଅନ୍ନବସ୍ତ୍ର ପାଇଁ ସଂସ୍ଥାନ ଅଛି । ଅତଏବ ତାହା ହାତରେ କନ୍ୟା ସମ୍ପ୍ରଦାନ କରିବାକୁ ସେ ନିଜକୁ ଭାଗ୍ୟବାନ ବୋଲି ମଣୁଥିଲେ । କିନ୍ତୁ ହଠାତ୍ ତାର ଧନାଢ୍ୟ ବନ୍ଧୁ ସୁରେଶ ଯେଉଁଦିନ ଗାଡ଼ି ଧରି ଆସି ଗୋଟାଏ ଓଲଟା ଖବର ଦେଇ ନିଜେ ଜ୍ୱାଇଁ ହେବାପାଇଁ ପ୍ରସ୍ତାବ ବାଢ଼ି ବସିଲା; ସେତେବେଳେ ଉଭୟ ବନ୍ଧୁଙ୍କ ଭିତରେ ଆର୍ଥିକ ସଙ୍ଗତି କଥା ବିଚାରକରି ମହିମର ଦରଖାସ୍ତ ବରଖାସ୍ତ କରିବା ପାଇଁ କେଦାରବାବୁଙ୍କ ମନରେ କୌଣସି ଦ୍ୱିଧା ଦେଖା ଦେଇ ନଥିଲା । ସେ ଭଲ ପାଇବାର ସୂକ୍ଷ୍ମତର ଦର୍ଶନର ଧାର ଧାରନ୍ତି ନାହିଁ, ତାଙ୍କର ବିଶ୍ୱାସ ଥିଲା ପ୍ରତ୍ୟେକ ଝିଅ ଯାହା ପାଖରେ ଗାଡ଼ି କମ୍ବା ପାଲଙ୍କୀ ଚଢ଼ି, ବସ୍ତ୍ର ଅଳଙ୍କାର ମଣ୍ଡିତା ହୋଇ ସୁଖସ୍ୱାଚ୍ଛନ୍ଦ୍ୟରେ ରହି ପାରନ୍ତି, ସ୍ୱାମୀ ହିସାବରେ ତାହାକୁ ହିଁ ଶ୍ରେଷ୍ଠ ବୋଲି ଗଣ୍ୟ କରନ୍ତି । ସୁତରାଂ ଝିଅକୁ ସୁଖୀ କରିବା ଯଦି ପ୍ରତ୍ୟେକ ପିତାଙ୍କର କର୍ତ୍ତବ୍ୟ ହୁଏ ତେବେ ଏତେବଡ଼ ଅଯାଚିତ ସୁଯୋଗ କୌଣସିମତେ ତାଙ୍କର କରିଛଡ଼ା କରିବା ଉଚିତ୍ ହେବନାହିଁ, ଏହା ସ୍ଥିର କରିବା ପାଇଁ ତାଙ୍କୁ ବେଶୀ ଚିନ୍ତା କରିବାକୁ ପଡ଼ି ନଥିଲା ।

ଏପରିକି ଭାବୀ ବଡ଼ଲୋକ ଜ୍ୱାଇଁ ନିକଟରୁ କରଜ କରି ବିବାହ ପୂର୍ବରୁ ପାଞ୍ଚ ହଜାର ଟଙ୍କା ନେବାକୁ କେଦାର ବାବୁ ଦୋଷ ବୋଲି ମନେକରି ନଥିଲେ ଏବଂ ଘରଟା ଯେତେବେଳେ ତାଙ୍କର ରହିବ ସେତେବେଳେ ସେ ପରିଶୋଧ କରିବା ଦୁଶ୍ଚିନ୍ତାରେ ବ୍ୟସ୍ତ ହୋଇ ପଡ଼ି ନଥିଲେ ।

ଅଥଚ ହତଭାଗିନୀ ଝିଅଟା ସବୁ ପଣ୍ଡ କରଦେଲା । କୌଣସି ପ୍ରକାରରେ ବୋଲ ମାନଲା ନାହିଁ । ତେଣୁ ବାଧ ହୋଇ ସେଇ ମହମ ହାତରେ ଝିଅକୁ ଟେକିଦେଇଥିଲେ ସତ । କିନ୍ତୁ ଏହି ଦୁର୍ଘଟଣା ହେତୁ ତାଙ୍କ ମନରେ ଦୁଃଖର ସୀମା ନଥିଲା । ଏହା ବ୍ୟତୀତ ଯେଉଁ କଥାଟା ତାଙ୍କୁ ବର୍ତ୍ତମାନ ନିଜ ପକ୍ଷରୁ ସ୍ୱୀକାର କରିବାକୁ ହେଲା ସେଇଟା ହେଲା ଟଙ୍କାଟା ଏଥର ଫେରାଇ ଦେବା ନିହାତ ଆବଶ୍ୟକ । କିନ୍ତୁ କଥାଟା ଲେଖାପଢ଼ା ଭିତରେ ନହୋଇଥିବାରୁ ଏବଂ ପରିଶୋଧ କରିବାର ରାସ୍ତା ଖୁବ୍ ସୁସ୍ପଷ୍ଟ ଓ ପ୍ରାଞ୍ଜଳ ହୋଇ ଆଖିରେ ନ ପଡ଼ିବାରୁ; ଏହି ଚିନ୍ତାଟାକୁ ସେ ମନ ଭିତରେ ଖୁବ୍ ଉଜ୍ଜ୍ୱଳ ଭାବରେ ଭାବିପାରୁ ନଥିଲେ । ସୁତରାଂ ପ୍ରଶ୍ନଟା ଯଦିଓ ମନ ଭିତରେ ଉଠିଲା; କିନ୍ତୁ ଉତ୍ତରଟା ସେହିପରି ଝାପ୍‌ସା ହୋଇ ରହିଲା ।

ଅଚଳା ଶାଶୁଘରକୁ ଚାଲିଗଲା । ଏହାପରେ ସୁରେଶର ଯିବାଆସିବା ଏବଂ ଘନିଷ୍ଠତାକୁ କେଦାରବାବୁ ପସନ୍ଦ କରୁ ନଥିଲେ । ଘରେ ନାହାନ୍ତି ଏଇ କଥା କୁହାଇ ସେ ଅଧିକାଂଶ ସମୟ ଦେଖାଦେଉନଥିଲେ, କିନ୍ତୁ ଯେହେତୁ ତାକୁ ଭଲ ପାଉଥିଲେ ତେଣୁ ଝିଅର ଦୁର୍ବ୍ୟବହାର ହେତୁ ବୃଦ୍ଧ ମନେ ମନେ ଲଜ୍ଜିତ ଏବଂ ଦୁଃଖିତ ହୋଇ ରହୁଥିଲେ ।

ଏହି ଭାବରେ ଦିନ କଟୁଥିଲା । କିନ୍ତୁ ହଠାତ୍ ଦିନେ ସେ ଭୀଷଣ ଅସୁସ୍ଥ ହୋଇ ଉଠିଲେ । ସୁରେଶ ଆସି ଚିକିତ୍ସା କରାଇ ଏବଂ ନିଜେ ପୁତ୍ରଠାରୁ ଅଧିକ ସେବାଯତ୍ନ କରି ତାଙ୍କୁ ଆରୋଗ୍ୟ କରାଇଲା । ସେ ଆପେ ଋଣ କଥା ଯେତେବେଳେ ଉଠାଇଲାବେଳେ, ସେ ବନ୍ଧୁକୁ ଯୌତୁକ ଦେଇଛି କହି କଥାଟାକୁ ଉଡ଼ାଇ ଦେଉଥିଲା । ଯେତେବେଳେ ଏହି ଯୁବକଟି ଉପରେ ତାଙ୍କର ସ୍ନେହ ଦିନକୁ ଦିନ ଗଭୀର ଓ ଅକୃତ୍ରିମ ହେବାକୁ ଲାଗିଥିଲା, ଏପରିକି ସମୟ ସମୟରେ କନ୍ୟା ବିରୁଦ୍ଧରେ ଏହି ଚିନ୍ତା ଅଭିଶାପ ଭଳି ଉଦୟ ହେଉଥିଲା ଯେ; ହତଭାଗିନୀ ଝିଅଟା ଏହିଭଳି ବରକୁ ଯାହା ଚିହ୍ନି ପାରିଲା ନାହିଁ ଏବଂ ଉପେକ୍ଷା କରି ଚାଲିଗଲା । ସେ ଦିନେ ନା ଦିନେ ଏଥିପାଇଁ ଶାସ୍ତି ନିଶ୍ଚୟ ଭୋଗ କରିବ ।

ଏହି ଘଟଣା ପରେ ପରେ ମହିମ ତାଙ୍କ ଆଖିରେ ବିଷ ହୋଇ ଉଠିଥିଲା ସତ କିନ୍ତୁ ଏହା ବୋଲି ତାଙ୍କର କନ୍ୟା ଯେ ନାରୀ ଧର୍ମକୁ ଜଳାଞ୍ଜଳି ଦେଇ ସ୍ୱାମୀ ତ୍ୟାଗର ସମସ୍ତ ଦୁଷ୍କୃତକୁ ଅଙ୍ଗରେ ବହନ କରି, ତାଙ୍କରି ଘରେ ଆସି ପହଞ୍ଚିବ, ଏହା ସେ କଦାପି ଭାବିନଥିଲେ । କିନ୍ତୁ ଏହି ମହାପାପ ପାଇଁ ଯେଉଁ ବ୍ୟକ୍ତି ସାହାଯ୍ୟ କରିବସିଛି ସେ ଯେତେ ବଡ଼ ହେଉନା କାହିଁକି, ପିତାର ମନୋଭାବ ଯେ

କ ରୂପ ନେଇ ତା'ବରୁଦ୍ଧରେ ଠିଆହେବ, ଏହା ମଧ୍ୟ ତାର ଅନୁମାନ କରିବା ଉଚିତ୍ ଥିଲା ।

ଅନ୍ୟ ପକ୍ଷରେ, ପିତା ପ୍ରଭୃ କନ୍ୟାର ମନୋଭାବ ପୂର୍ବରୁ ଯେପରି ଆଉନା କାହିଁକ, ଯେଉଁଦନ ସେ କେବଳ ଟଙ୍କା ଲୋଭରେ ମହିମକୁ ବର୍ଜ୍ଜନ କରି, ସୁରେଶ ହାତରେ ତାକୁ ସମର୍ପଣ କରିବା ପାଇଁ ବଦ୍ଧ ପରିକର ହୋଇଥିଲେ ଏବଂ ପରିଶୋଧ କରିବାର କୌଣସି ଉପାୟ ନଥିଲେ ମଧ୍ୟ ତାହାଠାରୁ ଋଣ ଗ୍ରହଣ କରିଥିଲେ, ସେହିଦନଠାରୁ ମନୁଷ୍ୟ ହିସାବରେ କେଦାରବାବୁ ଅଚଳା ଆଖିରେ ବହୁତ ଶ୍ରେଷ୍ଠ ହୋଇଗଲେ । କନ୍ତୁ ସେହି ଘୃଣା କାଳ କ୍ରମଠାରୁ ଶହେଗୁଣ ହୋଇ ବଢି ଯାଇଥିଲା, ଯେତେବେଳେ ନିଜେ ଶୁଣିପାରିଲା ଯେ ନିଜ ଝିଅର ଚରିତ୍ର ସମ୍ବନ୍ଧରେ ସେ ଜଣେ ଭୃତ୍ୟାଣୀଠାରୁ ଗୋପନରେ ତଥ୍ୟ ସଂଗ୍ରହ କରିବାକୁ ସଙ୍କୋଚ ସୁଦ୍ଧା ଅନୁଭବ କରୁନାହାନ୍ତି ।

ସଙ୍ଗେ ସଙ୍ଗେ ଅଚଳା ମଧ୍ୟ ନିଜକୁ ବିଶ୍ଲେଷଣ କରିବାକୁ ଲଗିଲା । ତାର ସର୍ବାଙ୍ଗ ରୋମାଞ୍ଚିତ ହୋଇ ଉଠିଲା । ଆଖି ଆଗରେ ଅତୀତ ନାଚି ଉଠିଲା । ଯେଉଁକ୍ଷଣି ସେ ନିଜର ସ୍ୱାମୀଙ୍କୁ କହିଛି ଯେ ସେ ତାକୁ ଭଲ ପାଆନ୍ତି ନାହିଁ ବୋଲି ସେହିକ୍ଷଣି ସାରା ଦୁନିଆରେ ନାରୀର ସର୍ବୋତ୍ତମ ମର୍ଯ୍ୟାଦା ସେ ହରାଇ ବସିଲା । ସେଥିପାଇଁ ସେ ଆଜି ନିଜର ସ୍ୱାମୀଙ୍କ ନିକଟରେ ହୀନ, ଜନ୍ମଦାତା ବାପାଙ୍କ ନିକଟରେ ହୀନ, ନିଜର ଦାସୀ, ଭୃତ୍ୟାଣୀ ଏମାନଙ୍କ ନିକଟରେ ହୀନ, ଏପରିକି ସେହି ସୁରେଶ ଭଳି ଲୋକଙ୍କ ଆଖିରେ ସେ ଏତେ ହୀନହୋଇ ଉଠିଛି ଯେ ତାହାକୁ ଲାଳସାର ସଙ୍ଗିନୀ ପାଇଁ କଳ୍ପନା କରି ବସିବା ମଧ୍ୟ ତାହା ପକ୍ଷରେ ଅସମ୍ଭବ ନୁହେଁ । କନ୍ତୁ ପ୍ରକୃତରେ ସେ କ'ଣ ସେଇଆ ? ସେ କ'ଣ ଏତେ ହୀନ ? ଏଇ ତ ସେ ଦନ ସେ ଯାହାଙ୍କର ଭଲ ପାଇବାକୁ ସର୍ବଜୟୀ କରିବା ପାଇଁ ସମସ୍ତ ବିରୋଧ, ସମସ୍ତ ପ୍ରଲୋଭନକୁ ପାଦରେ ଠେଲିଦେଇ ଉତ୍ତୀର୍ଣ୍ଣ ହୋଇ ପାରିଥିଲା, ଆଜି ଏତିକି ଦନ ଭିତରେ ସେ କଥା କ'ଣ ସମସ୍ତେ ଭୁଲି ଗଲେଣି ? ସୁରେଶ ହାତରେ ତାକୁ ପଠାଇ ଦେଇ ସ୍ୱାମୀ ଏବେ ସୁଦ୍ଧା ତାର କୌଣସି ଖୋଜ ଖବର ନେଲେନାହିଁ । ସ୍ୱାମୀଙ୍କର ଏହି ଉଦାସୀନ ଭାବ; ଅପମାନ ଓ ଲାଞ୍ଛନା ଯେପରି ତାକୁ ସାରା ରାତି ଧରି ନିଆଁରେ ପୋଡ଼ିବାକୁ ଲାଗିଲେ ।

ସକାଳେ ଯେତେବେଳେ ନିଦ ଭାଙ୍ଗିଲା, ସେତେବେଳକୁ ବେଳ ଅନେକ ହୋଇଯାଇଛି । ତରୁଣ ସୂର୍ଯ୍ୟାଲୋକ ଝରକା ଭିତର ଦେଇ ଘରର ଚଟାଣ ସାରା ବିସ୍ତୃତ ହୋଇ ପଡ଼ିଛି । ସେ ଧୀରେ ଧୀରେ ଉଠି ଶେଯ ଉପରେ ବସି ମୁଣ୍ଡ ପାଖର ଦରଜାକୁ ଖୋଲି ବାହାର ରାସ୍ତାକୁ ଚାହିଁ ଚୁପ୍ ହୋଇ ବସିରହିଲା ।

କଲିକତା ରାଜପଥରେ ଜନ ପ୍ରବାହର ବିରାମ ନାହିଁ । କିଏ କାମରେ ଯାଉଛି; କିଏ ଘରକୁ ଫେରୁଛି; କେହି ଅବା ପ୍ରଭାତର ଆଲୋକ ଓ ହାଓ୍ୱା ମଧ୍ୟରେ କେବଳ ଘୁରି ବୁଲୁଛି । ଏହିପରି ଚାହିଁ ରହି ରହି ହଠାତ୍ ତାର ମନ ଭିତରୁ କିଏ କହି ଉଠିଲା ଏ ସମୟରେ କେହିତ ଘରେ ବସି ରହିନାହିଁ, ମୁଁ ଏପରି କି ଗୁରୁତର ଅପରାଧ କରିବସିଛି ଯେ; ଯାହା ଫଳରେ ବାହାରେ ମୁହଁ ଦେଖାଇ ପାରୁନାହିଁ ଏବଂ ନିଜକୁ ନିଜେ ବନ୍ଦିନୀ କରି ରଖିଛି । ସେପରି ଅପରାଧ କିଛି ଯଦି କରିଥାଏ; ତେବେ ତାହା ତାଙ୍କ ନିକଟରେ । ସେଥିପାଇଁ ଦଣ୍ଡ ସେ କେବଳ ହିଁ ଦେଇ ପାରିବେ । କିନ୍ତୁ ନିର୍ବିଚାରରେ ଯେ କେହି ଶାସ୍ତି ଦେବାକୁ ଆସିବେ ଏବଂ ସେଭଳି ଦଣ୍ଡକୁ ସେ ମୁଣ୍ଡପାତି ସହି ନେବ କାହିଁକି ?

ଅଚଳା ତତ୍‌କ୍ଷଣାତ୍ ଠିଆହେଲା । ମନର ସମସ୍ତ ଗ୍ଳାନି ଜୋର କରି ଝାଡ଼ି ପକାଇ ମୁହଁ ହାତ ଧୋଇ, ଲୁଗା ବଦଳାଇ ଆସି ବୈଠକ ଘରେ ବସିଲା ।

କେଦାରବାବୁ ତାଙ୍କର ଆରାମ ଚୌକି ଉପରେ ଶୋଇ ଖବର କାଗଜ ପଢ଼ିବାରେ ଲଗିଥିଲେ । ଥରକ ପାଇଁ ଅଚଳା ଆଡ଼କୁ ଚାହିଁ ଦେଇ ସେ ପୁଣି ପଢ଼ିବାରେ ମନଦେଲେ ।

କିଛି ସମୟ ପରେ ବେହେରା ଆସି ଚାହା ସରଞ୍ଜାମ ଓ କେଟ୍‌ଲିରେ ଗରମ ପାଣି ଆଣି ଥୋଇଦେଇ ଗଲା । କେଦାରବାବୁ ନିଜେ ନିଜ ପାଇଁ କପ୍ ଟିଏ ଚାହା ତିଆରି କଲେ ଏବଂ ସେହି କପ୍‌ଟିକୁ ହାତରେ ଧରି ଚୁପ୍‌ଚାପ୍ ଚୌକିରେ ବସି ପୁଣି ପଢ଼ାରେ ମନଦେଲେ ।

ଅଚଳା ମୁହଁ ତଳକୁ କରି ବସିରହି ବାବାଙ୍କର ଆଚରଣ ସବୁ ଲକ୍ଷ୍ୟ କରିବାରେ ଲଗିଲା । କିନ୍ତୁ ନିଜେ ଯାଚି ହୋଇ କପେ ଚାହା ତିଆରି କରିଦେବା ପାଇଁ କିମ୍ବା କୌଣସି କଥା ପଚାରିବାକୁ ତାହାର ସାହାସ ହେଲାନାହିଁ । ଇଚ୍ଛା ବି ହେଲାନାହିଁ ।

ଘର ଭିତରେ କିନ୍ତୁ ଏପରି କାଠର ପିତୁଳା ଭଳି ବସିରହିବା ମଧ୍ୟ ସମ୍ଭବପର ନୁହେଁ । ଏପରିକି ଗୋଟିଏ ଘରେ ଏକାଠି ବାସ କରିବା ସମ୍ଭବପର ଏବଂ ଉଚିତ୍ କି ନାହିଁ, ଏବଂ ନ ହେଲେ ସେ କି ଉପାୟ କରିବ; ଏହି ଜଟିଳ ସମସ୍ୟାର ସମାଧାନ ନିରୋଳାରେ କରିବା ପାଇଁ ସେ ଯେତେବେଳେ ଉଠୁ ଉଠୁ ହେଉଥିଲା ଏହି ସମୟରେ ଦୁଃସହ ବିସ୍ମୟରେ ଚାହିଁ ଦେଖିଲା ସୁରେଶ ଆସି ଘର ଭିତରେ ପ୍ରବେଶ କରୁଛି ।

ସୁରେଶ ହାତଟୋଳ କେଦାରବାବୁଙ୍କୁ ନମସ୍କାର କଲାକ୍ଷଣି ସେ ମୁହଁଟେକ ଚାହିଁଦେଇ, ପୁଣି ଖବରକାଗଜ ପଢ଼ାରେ ମନଦେଲେ ।

ସୁରେଶ ଚୌକିଟିଏ ଆପେ ଟାଣିନେଇ ବସି ପଡ଼ିଲା । ଚ୍ହା ସରଞ୍ଜାମ-ଗୁଡ଼ାକ ନେବାପାଇଁ ବେହେରା ଯେତେବେଳେ ଘର ଭିତରକୁ ଆସିଲା, ତାକୁ ଲକ୍ଷ୍ୟକରି ସୁରେଶ କହିଲା—ମୋ ବ୍ୟାଗ୍‌ଟା କେଉଁଠି ଅଛି ? ମୋ ଗାଡ଼ିରେ ନେଇ ରଖିଦେଇ ଆସ ତ । ଖିଅର ହେବାର ସମସ୍ତ ଜିନଷ ତାହାରି ଭିତରେ ଅଛି । ଡେରି କରନା, ମୁଁ ବର୍ତ୍ତମାନ ଚାଲିଯିବି ।

ଯେ ଆଜ୍ଞା, କହି ବେହେରା ଚାଲିଯିବା ପରେ ସମସ୍ତ ଘରଟା ପୁଣି ନସ୍ତବ୍ଧ ହୋଇ ରହିଲା । କିଛିକ୍ଷଣ ପରେ ସୁରେଶ ହଠାତ୍ ପ୍ରଶ୍ନ କଲା—ମହିମର ଖବର କ'ଣ କିଛି ପାଇଲେ କି ?

କେଦାରବାବୁ ଖବରକାଗଜ ପୃଷ୍ଠା ଉପରୁ ମୁହଁ ନ ଉଠାଇ କେବଳ କହିଲେ—ନା ।

ସୁରେଶ କହିଲା—ଆଶ୍ଚର୍ଯ୍ୟ !

ତାପରେ ସମସ୍ତେ ଚୁପ୍‌ଚାପ୍ ।

ବେହେରା ଫେରିଆସି କହିଲା—ବ୍ୟାଗ୍ ଗାଡ଼ିରେ ରଖିଦେଇ ଆସିଲି ଆଜ୍ଞା ।

ମୁଁ ତାହାହେଲେ ଯାଉଛି । ମହିମ ନିକଟରୁ ଚିଠି ପାଇଲେ ମୋତେ ଟିକିଏ ଜଣାଇବେ କହି; ସୁରେଶ ଉଠିବା ପାଇଁ ଉପକ୍ରମ କରୁ କରୁ ହଠାତ୍ କେଦାରବାବୁ କାଗଜଖଣ୍ଡ ଫିଙ୍ଗିଦେଇ କହି ଉଠିଲେ—ତୁମେ ଟିକିଏ ଅପେକ୍ଷା କର ସୁରେଶ; ମୁଁ ଆସୁଛି । ଏତିକ କହି ତାହା ମୁହଁକୁ ନ ଚାହିଁ ଯୋତା ପିନ୍ଧି ତରତର ହୋଇ ଘରୁ ବାହାରି ଗଲେ ।

ଏତେ ସମୟ ପର୍ଯ୍ୟନ୍ତ ଅଚଳା ମୁହଁ ତଳକୁ କରି ବସିଥିଲା । କେଦାରବାବୁ ଚାଲିଯିବା ପରେ ସୁରେଶର ଆଖି ଅଚଳାର ତ୍ରସ୍ତ; ପୀଡ଼ିତ ଓ ଏକାନ୍ତ ମଳୀନ ଦୁଇ ଆଖି ଉପରେ ପଡ଼ିଲା । ସେ ପ୍ରଶ୍ନ କରି ଉଠିଲା—ଖବର କ'ଣ ?

ଅଚଳା ମୁହଁ ତଳକୁ କରି କେବଳ ମୁଣ୍ଡ ହଲାଇଲା ।

ସୁରେଶ କହିଲା—ମୁଁ ଯେ କେତେ ଲଜ୍ଜିତ ଏବଂ ଦୁଃଖିତ ହୋଇଛି ତାହା ଭାଷାରେ ପ୍ରକାଶକରି ହେବନାହିଁ ।

ଅଚଳା ମୁହଁ ତଳକୁ କରି ବସିରହିଲା ।

ସେ ପୁଣି କହିଲା—ତୁମ ବାପା ଯେ ମୋତେ ଏପରି ସ୍ୱନ, ଏତେବଡ଼ ପାଷାଣ୍ଡ ଭାବି ପାରନ୍ତି ଏକଥା ମୁଁ ସ୍ୱପ୍ନରେ ସୁଦ୍ଧା କଳ୍ପନା କରିପାରି ନଥିଲି ।

ଅଚଳା ଏପରି ଅଭିଯୋଗର କୌଣସି ଉତ୍ତର ଦେଇନାହିଁ । ସେ ପୂର୍ବପରି ସ୍ଥିର ହୋଇ ବସି ରହିଲା ।

ସୁରେଶ କହିଲା—ମୋର ଏମିତି ଇଚ୍ଛା ହେଉଛି ଯେ ଏହିକ୍ଷଣି ମହିମ ନିକଟକୁ ଯାଇ ତାକୁ···କଥାଟା ଶେଷହୋଇ ପାରିଲା ନାହିଁ । ଏହି ସମୟରେ କେଦାରବାବୁ ଫେରି ଆସିଲେ ।

କେଦାରବାବୁଙ୍କ ହାତରେ ଖଣ୍ଡିଏ ଗ୍ରେଟ କାଗଜ । ସେଖଣ୍ଡ ସୁରେଶ ଆଗରେ ଟେବୁଲ ଉପରେ ରଖିଦେଇ କହିଲେ, ତୁମର ସେହି ଟଙ୍କାର ଗୋଟାଏ ରସିଦ୍ ଦେବାକୁ ମନେ ନଥିଲା, ପାଞ୍ଚହଜାର ଟଙ୍କାର ହ୍ୟାଣ୍ଡନୋଟ୍ ଲେଖିଦେଇଛି । ସୁଧ ବୋଧହୁଏ ଆଉ ଦେଇ ପାରିବିନାହିଁ । ତେବେ ଏଇ ଘରଟା ତ ଅଛି, ଏହାରି ଦେହରୁ ଖଣ୍ଡେ ଭଡ଼ାଦେଇ ଅସଲଟଙ୍କାଟା ବୋଧହୁଏ ଶୁଝିଦେଇ ପାରିବି ।

ସୁରେଶ ସ୍ତମ୍ଭିତ ଭାବରେ ମୁହୂର୍ତ୍ତେ ଠିଆହୋଇ କହିଲା—ମୁଁ ତ ଆପଣଙ୍କଠାରୁ କେବେ ହ୍ୟାଣ୍ଡନୋଟ ଗୃହିଁ ନଥିଲି ?

କେଦାରବାବୁ କହିଲେ—ତୁମେ ଗୃହିଁ ନାହଁ ସତ । କିନ୍ତୁ ମୋର ତ ଦେଇଦେବା ଉଚିତ । ଏତେଦିନ ଧରି ଯେ ଦେଇ ପାରିନାହିଁ, ସେଇଟା ମୋ ପକ୍ଷରେ ଯଥେଷ୍ଟ ଅନ୍ୟାୟ ହୋଇଯାଇଛି, ସୁରେଶ । କାଗଜଖଣ୍ଡ ତୁମେ ଯତ୍ନରେ ପକେଟ ଭିତରେ ରଖ । ବୁଢ଼ା ହେଲିଣି, ହଠାତ୍ ଯଦି ମରିଯାଏ; ଟଙ୍କା ପାଇଁ ତ କିଛି ମାଲିମକଦ୍ଦମା ହେଲେ କରିପାରିବ ।

ସୁରେଶ ଆବେଗର ସହିତ କହିଲା; ସୁରେଶ ଆଉ ଯାହାକରୁ କିନ୍ତୁ ସେ ଟଙ୍କା ପାଇଁ କାହା ସହିତ ମକଦ୍ଦମା କରିବ ନାହିଁ । ଏହାଛଡ଼ା ଆପଣ ମଧ୍ୟ ଭଲଭାବରେ ଜାଣନ୍ତି ଯେ, ଏ ଟଙ୍କା ମୋର ଦରକାର ନାହିଁ ଯେହେତୁ ମୁଁ ଏହାକୁ ମୋର ବନ୍ଧୁକୁ ଯୌତୁକ ରୂପେ ଦେଇଦେଇଛି ବୋଲି ପୂର୍ବରୁ ସ୍ୱୀକାର କରିସାରିଛି ।

କେଦାରବାବୁ କହିଲେ—ତାହାହେଲେ ସେହିବୁ ଟଙ୍କା ବନ୍ଧୁକୁ ଦେଇପାର, କିନ୍ତୁ ମୋତେ ନୁହେଁ । ମୁଁ ଯାହା ନେଇଛି; ସେ ହେଉଛି ମୋର ଋଣ ।

; ବେଶ୍, ମୋର ବନ୍ଧୁଙ୍କୁ ଦେଇଦେବ କହି ସୁରେଶ ଟେବୁଲ ଉପରୁ କାଗଜ ଖଣ୍ଡକ ଉଠାଇ ଦୁଇପାଦ ପଛକୁ ଘୁଞ୍ଚିଯାଇ ଅଚଳା ସମ୍ମୁଖରେ ଠିଆ ହେବା ମାତ୍ରେ କେଦାରବାବୁ ଅଗ୍ନ୍ୟୁତ୍ପାତ ଭଳି ପ୍ରଜ୍ୱଳିତ ହୋଇ ଉଠିଲେ । ଚିତ୍କାର କରି କହିଉଠିଲେ—ଖବରଦାର ସୁରେଶ, କାଲିଠାରୁ ଅନେକ ଅପମାନ ମୁଁ ନୀରବରେ ସହ୍ୟ କରି ଆସିଛି କିନ୍ତୁ ମୋ ଝିଅକୁ ତୁମେ ମୋ ଆଗରେ ଟଙ୍କା ଦେଇଯିବ ତାହା ମୁଁ କଦାପି ସହ୍ୟ କରି ପାରିବି ନାହିଁ କହି ଥରି ଥରି ତାଙ୍କର ଆରାମ ଚୌକି ଉପରେ ଲଥ୍‌କରି ବସିପଡ଼ିଲେ ।

ପ୍ରଥମେ ସୁରେଶ ଚମକି ଉଠି କେଦାରବାବୁଙ୍କ ଆଡ଼କୁ ନିର୍ନିମେଷ ଦୃଷ୍ଟିରେ ଚାହିଁ ରହିଲା । ସେ ଏପରି ଭାବରେ ବସିପଡ଼ିଲେ ଯେ ଜଣାଗଲା ସତେ ଯେପରି ସେ ପାଷାଣ ହୋଇ ଯାଇଛନ୍ତି । ପ୍ରବଳ ଚେଷ୍ଟାକରି ସୁରେଶ କିଛି କହିବାକୁ ଇଚ୍ଛା କରୁଥିଲା କିନ୍ତୁ ତାର କଣ୍ଠରୁ ଗୋଟାଏ ଅବ୍ୟକ୍ତ ଧ୍ୱନି ବ୍ୟତୀତ ଆଉ ପଦେ ହେଲେ କଥା ବାହାରି ପାରିଲା ନାହିଁ । ପୁଣି ସେ ଫେରି ଚାହିଁଦେଖିଲା, କେଦାରବାବୁ ଦୁଇ-ହାତରେ ମୁଣ୍ଡକୁ ଚିପିଧରି ସେହିପରି ପଡ଼ିଛନ୍ତି । ତେଣୁ ସେ କୌଣସି କଥା କହିବାକୁ ଚେଷ୍ଟା ମଧ୍ୟ କଲାନାହିଁ । କେବଳ ଆଉ ମିନିଟିଏଖଣ୍ଡେ ସ୍ତବ୍ଧ ହୋଇ ଠିଆ ହୋଇ ରହିବା ପରେ ନୀରବରେ ଘରଭିତରୁ ବାହାରି ଚାଲିଗଲା ।

ସୁରେଶ ସିନା ଚାଲିଗଲା କିନ୍ତୁ କନ୍ୟା ଓ କନ୍ୟାପିତା ଠିକ୍ ସେହିପରି ବସିରହିଲେ । କାନ୍ଥଘଣ୍ଟାରେ ଟିକ୍‌ଟିକ୍ ଶବ୍ଦ ବ୍ୟତୀତ ଘରସାରା ନୀରବତା ରାଜୁତି କରିବାକୁ ଲାଗିଲା ।

ତଳେ ସୁରେଶର ଗାଡ଼ିଖଣ୍ଡିକ ଯେ ଫାଟକ ପାର ହୋଇଗଲା, ତାହା ଘୋଡ଼ା ଟାପୁ ଶବ୍ଦରୁ ବୁଝା ପଡ଼ିଲା ଏବଂ ପରକ୍ଷଣରେ ଘରଭିତରକୁ ବେହେରା ପଶି ଆସି ଡାକଦେଲା— ବାବୁ !

କେଦାରବାବୁ ଆଖିଖୋଲି ଦେଖିଲେ ବେହେରା ହାତରେ ଖଣ୍ଡିଏ ଚିଠି କାଗଜ । ଆଉ କିଛି କହିବାକୁ ହେଲା ନାହିଁ; ସେ ଉଠିପଡ଼ି ତାହା ଆଡ଼କୁ ଚାହିଁ ଚିତ୍କାର କରି ଉଠିଲେ—ନେଇଯା କହୁଛି, ସେଇଟା ମୋ ମୁହଁ ଆଗରୁ ନେଇଯା, ବାହାରିଯାଅ କହୁଛି······

ଆବା କାବା ହୋଇ ବେହେରାଟା କେଦାରବାବୁଙ୍କର ଏହିଭଳି କାଣ୍ଡ ଦେଖି ଦଉଡ଼ି ପଳାଇଲା ।

ତାହାପରେ କେଦାରବାବୁ କନ୍ୟାପ୍ରତି ଅଗ୍ନି ଦୃଷ୍ଟି ନିକ୍ଷେପ କରି କଣ୍ଠ ସ୍ୱର ଆହୁରି ତୀବ୍ରକରି କହିଲେ—ହାରାମଜାଦା, ଯଦି କେଉଁଦିନ ପୁଣି କୌଣସି ଆଳ କରି ମୋ ଘରେ ପଶିବାର ଚେଷ୍ଟା କରେ ତ ତାକୁ ସେହିଦିନ ମୁଁ ଥାନାରେ ଦେଇଦେବି; ଏ କଥା ତୋତେ ଆଗରୁ ଜଣାଇ ରଖିଲି ଅଚଳା।

ନିଜ ନାଆଁ ଶୁଣି ଅଚଳା ପାଣ୍ଡୁର ମୁହଁଟି ଧୀରେ ଧୀରେ ଉଚ୍ଚ ଉଠାଇ ତାର ବ୍ୟଥିତ, ମ୍ଳାନ ଚକ୍ଷୁ ଦୁଇଟିରେ ବାବାଙ୍କ ମୁହଁକୁ ନୀରବରେ ଚାହିଁ ରହିଲି ।

କେଦାରବାବୁ କହିଲେ—ଟଙ୍କା ଫୋପାଡି ବାପ ଆଖିକୁ କଦାପି ବନ୍ଦ କରାଯାଇ ପାରେ ନାହିଁ, ପାଷାଣ୍ଡ ଯେପରି ଏ କଥା ମନେ ରଖେ ।

ଅଚଳା ତଥାପି ନିରୁତ୍ତର ହୋଇ ରହିଲି। କିନ୍ତୁ ତାର ମଳିନ ଦୃଷ୍ଟି ଯେ ଉତ୍ତରୋତ୍ତର ପ୍ରଖର ହେବାକୁ ଲାଗିଲା; ପିତାଙ୍କ ଦୃଷ୍ଟିରେ ତାହା ପଡ଼ି ପାରିଲା ନାହିଁ । ସେ ତର୍ଜ୍ଜନୀ କମ୍ପିତ କରି କହିଉଠିଲେ—ହ୍ୟାଣ୍ଡ୍‌ନୋଟ୍ ଛଣ୍ଡାଇ ପକାଇ ବାପକୁ ଘୁଷ ଦିଆଯାଏ ନାହିଁ, ଏକଥା ଭଲଭାବରେ ବୁଝାଇ ସାରିଲା ପରେ ଯାଇ ତାକୁ ମୁଁ ଛାଡ଼ିବି । ଏ ଘର ମୁଁ ନିଜେ ବନ୍ଧକୀ କରିଦେଇ—ଋଣ ପରିଶୋଧ କରି ଦେଣିକି ଯୁଆଡ଼େ ଇଚ୍ଛା ମୁଁ ଚାଲିଯିବି—ମୋତେ କେହି ଅଟକାଇ ରଖି ପାରିବେ ନାହିଁ ।

ଏତେ ସମୟ ପରେ ଅଚଳା କଥା କହିଲା। ପ୍ରଥମେ ବାଧା ପାଇଲା ସତ କିନ୍ତୁ ତା ପରେ ସ୍ଥିର, ଅବିଚଳିତ କଣ୍ଠରେ କହିଲା—ଋଣ ପରିଶୋଧ ନ କରି, ଘରଟା ମୋ ପାଇଁ ରଖିଯିବେ ଏ କଥା ମୁଁ କଣ କେବେ ପ୍ରତ୍ୟାଶା କରିଛି ବାବା ? ତୁମେ ଏହା ନ କରିଲେ ଦିନେ ନା ଦିନେ ମୋତେ ହିଁ କରିବାକୁ ପଡ଼ିବ ।

କେଦାରବାବୁ ଆହୁରି ଉତ୍ତେଜିତ ହୋଇ କହି ଉଠିଲେ—ତୁ ଯାହା ଏପର୍ଯ୍ୟନ୍ତ କରି ଆସିଲୁଣି ସେଥିରେ ଭଦ୍ର ସମାଜରେ ମୁଁ ମୁହଁ ଦେଖାଇ ପାରୁନାହିଁ । ଏହା ବୋଧହୁଏ ତୁ ଜାଣୁ ?

ଅଚଳା ସେହିପରି ଶାନ୍ତ ଅଥଚ ଦୃଢ଼ ସ୍ୱରରେ ପ୍ରତ୍ୟୁତ୍ତର ଦେଲା—ନା, ମୁଁ ଜାଣିନି । ମୁଁ ଏପରି ଯଦି କିଛି କରି ବସିଥାନ୍ତି ଯାହା ଫଳରେ ତୁମେ ମୁହଁ ଦେଖାଇ ନ ପାରନ୍ତ ତାହାହେଲେ ସକାଳ ହେବା ପୂର୍ବରୁ ମୋ ମୁହଁ ତୁମେମାନେ କେହି ଦେଖି ପାରି ନ ଥାନ୍ତ । ସେ ଗାଆଁରେ ଆଉ ଯାହା ଅଭାବ ଥାଉ ନା

କାହିଁକି କିନ୍ତୁ ବୁଢ଼ା ମରିବା ଭଳି ପାଣିର ଅଭାବ ନ ଥିଲା । କାନ୍ଦି ଉଠି ପୁଣି କହିଲା— କାଲିଠାରୁ ତୁମେ ମୋତେ ଯେପରି ଭାବରେ ଅପମାନିତ କରିଚାଲିଛ କେବଳ ସେସବୁ ମିଛ ବୋଲି ମୁଁ ସହି ନେଇ ପାରିଛି । ନଚେତ୍......

ଏଥର ଯେପରି ଅଚଳାର କଣ୍ଠ ରୁଦ୍ଧ ହୋଇ ଉଠିଲା । ସେ ମୁହଁରେ ଲୁଗା ଚାପିଧରି ଉଚ୍ଛ୍ୱସିତ କ୍ରନ୍ଦନକୁ କୌଣସି ମତେ ସମ୍ବରଣ କରି ଦ୍ରୁତପଦରେ ଘରୁ ବାହାରି ଚାଲିଗଲା ।

କେଦାରବାବୁ ଏକ ପ୍ରକାର ସ୍ତବ୍ଧ ହୋଇଗଲେ । କ୍ରୋଧ କରିବା ପାଇଁ, ଆଘାତ କରିବା ପାଇଁ, ଶୋକ କରିବାପାଇଁ, ଅଚଳାର କଥିତ ଆଚରଣ ଯେ ସର୍ବପ୍ରକାରର ଗଭୀର ବିଷାଦର କାରଣ ଏହା ତାଙ୍କର ବିଶ୍ୱାସ ଥିଲା । କିନ୍ତୁ ଅପର ପକ୍ଷରେ ହଠାତ୍ ସେ ଯେ ପୁଣି ତାର ଆଚରଣକୁ ଅଧିକ ଗର୍ହିତ କରି ମୁହଁ ଉପରେ ଖୋଲିଖୋଲି ତିରସ୍କାର କରି ତୀବ୍ର ଅଭିମାନରେ କାନ୍ଦି ଚାଲିଯାଇ ପାରେ, ଏହି କଥା ସେ ସ୍ୱପ୍ନରେ ସୁଦ୍ଧା କଳ୍ପନା କରି ପାରି ନଥିଲେ । ସେଥିପାଇଁ ସେ ଅଭିଭୂତ ହୋଇ କିଛି ସମୟ ଠିଆ ହୋଇ ରହିବା ପରେ ଆସ୍ତେ ଆସ୍ତେ ବସିପଡ଼ିଲେ ଏବଂ ମୁଣ୍ଡ ଉପରେ ହାତ ବୁଲାଉ ବୁଲାଉ ବାରମ୍ବାର କହିବାକୁ ଲାଗିଲେ—ଏଇ ଦେଖ୍, ଏ ପୁଣି ଆଉ ଏକ ନୂଆ ନାଟକ ଆରମ୍ଭ ହେଲାଣି......

ଏହାପରେ ଆଠ ଦଶଦିନ ବାପ-ଝିଅଙ୍କର ଯେ କିପରି ଭାବରେ କଟିଲା ତାହା କେବଳ ଅନ୍ତର୍ଯାମୀ ହିଁ ଦେଖିଲେ ଦେଖି ପାରିଥିବେ । ଅଚଳା ନିଜ ଘରୁ ଆଦୌ ବାହାରକୁ ବାହାରିଲା ନାହିଁ । ଏପରିକି ଦାସଦାସୀଙ୍କ ମୁହଁକୁ ଚାହିଁବା ତାହା ପକ୍ଷରେ ଯେପରି ଅସମ୍ଭବ ହୋଇଉଠିଲା । ଗତ ଏଇ କେତେଦିନ ଭଳି ଆଜି ମଧ୍ୟ ସେ ଖୋଲା ଝରକା ପାଖରେ ରାଜରାସ୍ତାକୁ ଚାହିଁ ଠିଆ ହୋଇ ରହିଥିଲା ।

ଶୀତ ଦିନ । ମଧ୍ୟାହ୍ନ ସଙ୍ଗେ ସଙ୍ଗେ ମ୍ଳାନ ଛାୟା ଯେପରି ଆକାଶରୁ ମାଟି ଉପରକୁ ଝରି ପଡୁଥିଲା ଏବଂ ସେହି ମଳିନତାର ସହିତ ଅଚଳା ଜୀବନର ଏକପ୍ରକାର ଅଜ୍ଞାତ ସମ୍ବନ୍ଧ ଥିଲା ପରି ସେ ମନେ ମନେ ଅନୁଭବ କରି ପାରୁଥିଲା । ତାର ସମସ୍ତ ମନ ଯେପରି ଏହି ସ୍ୱଳ୍ପାୟୁ ବେଳ ଭଳି ଅବସନ୍ନ ହୋଇ ପଡ଼ିଥିଲା । ତାର ଆଖି ଯେ ଠିକ୍ କିଛି ଦେଖୁଥିଲା ତାହାନୁହେଁ, ଅଥଚ ଅଭ୍ୟାସ ମତେ, ଆଖି ପାଖରେ କେବଳ ଘୂରି ବୁଲୁଥିଲା । ଏହିପରି ଭାବରେ ବସି ବସି

ଯେଉଁବେଳେ ଆଉ ବେଳ ବାଙ୍କି ନାହିଁ ସେ ଦେଖିବାକୁ ପାଇଲା, ହଠାତ୍ ସେହିକ୍ଷଣବେଳେ ସୁରେଶର ଗାଡ଼ି ତାଙ୍କ ଫାଟକ ଭିତରେ ପ୍ରବେଶ କଲା । ପଲକମାନେ ତା'ର ମୁହଁ ବିବର୍ଣ୍ଣ ହୋଇଉଠିଲା ଏବଂ ପୋଲିସ ଦେଖି ଚୋର ଯେପରି ଊର୍ଦ୍ଧ୍ୱଶ୍ୱାସରେ ଦଉଡ଼ି ପଳାଏ ଠିକ୍ ସେହିପରି ସେ ଝରକା ନିକଟରୁ ଚାଲିଯାଇ ଖଟ ଉପରେ ଚୁପ୍ ଚାପ୍ ହୋଇ ଶୋଇ ପଡ଼ିଲା ।

କୋଡ଼ିଏ ମିନିଟ୍ ପରେ ତାର ବନ୍ଦ କବାଟ ଉପରେ ଆଘାତ ଜଣାଗଲା । ବାହାରୁ ବାପା କୋମଳ ସ୍ୱରରେ ଡାକୁଥିଲେ—ମା ଅଚଳା, ଶୋଇଛୁ କି ?

ଉତ୍ତର କିଛି ନ ପାଇ ଅଧିକତର କୋମଳ କଣ୍ଠରେ କେଦାରବାବୁ କହିବାକୁ ଲାଗିଲେ—ବେଳ ହୋଇଯାଇଛି ମା, ଉଠ୍, ସୁରେଶର ପିଉସୀ ତୋତେ ନେବାକୁ ଆସିଛନ୍ତି ମାଆ, ମହିମ କୁଆଡ଼େ ଭୀଷଣ ଅସୁସ୍ଥ ।

ଅଚଳା ଶେଯରୁ ଉଠି ନୀରବରେ ଦ୍ୱାର ଖୋଲିଦେବା କ୍ଷଣି ସୁରେଶର ପିଉସୀ ମାଆ ଆସି ଘରେ ପ୍ରବେଶ କଲେ ।

ଅଚଳା ମୁଣ୍ଡ ନୁଆଁଇ ତାହାଙ୍କର ପାଦଧୂଳି ନେଇ ପ୍ରଣାମ ଜଣାଇଲା ।

କେଦାରବାବୁ ସମସ୍ତଙ୍କ ପଛରେ ଘରଭିତରେ ପ୍ରବେଶ କରି ଶେଯରେ ଗୋଟିଏ କଣରେ ବସିପଡ଼ି ଝିଅକୁ ସମ୍ବୋଧନ କରି କହିଲେ—ତୁମେମାନେ ଚାଲି-ଆସିବା ପରେ ପରେ ମହିମକୁ ଭୀଷଣ ଜ୍ୱର । ସମ୍ଭବତଃ ରାତ୍ରିରେ ଥଣ୍ଡାଲାଗି, ଦୁଃଶ୍ଚିନ୍ତା, ଅତ୍ୟଧିକ ପରିଶ୍ରମ ପ୍ରଭୃତି ବିଭିନ୍ନ କାରଣରୁ ଏହି ଅସୁସ୍ଥତା ସିଏ ଅର୍ଜ୍ଜି-ବସିଛି; କହି ସେ ସୁରେଶର ପିଉସୀମାଆଙ୍କୁ ଉଦ୍ଦେଶ୍ୟ କରି ପୁଣି କହିଲେ—ମୁଁ ଭାବି ଭାବି ଏଣେ ଅସ୍ଥିର ହୋଇଯାଉଛି ଯେ ଏମାନଙ୍କୁ ପଠାଇ ଦେଇ ସେ କାହିଁକି କିଛି ଖବର ଦେଲା ନାହିଁ ? ସୁରେଶ ଆମର ଚିରଂଜୀବୀ ହେଉ, ସେ ଯଦି ବୁଦ୍ଧି ଖଟାଇ'କରି ଯାଇ ତାକୁ ଏଠାକୁ ସଙ୍ଗରେ ଧରି ଆସି ନଥାନ୍ତା ତେବେ କ'ଣ ଯେ ହୋଇଥାନ୍ତା ତାହା କେବଳ ଭଗବାନ ହିଁ ଜାଣନ୍ତି । ବୃଦ୍ଧଙ୍କର ଗଳା ସ୍ନେହରେ ଓ ଅନୁତାପରେ ରୁଦ୍ଧ ହୋଇ ଉଠୁଥିଲା ।

ଅଚଳା ନୀରବରେ ମୁହଁ ତଳକୁ କରି ସବୁ ଶୁଣିଲା କୌଣସି ପ୍ରଶ୍ନ କଲାନାହିଁ କିମ୍ବା ସାମାନ୍ୟ ବିଚଳିତା ହୋଇ ଉଠିଲା ନାହିଁ ।

ସୁରେଶର ପିଉସୀ ମାଆ, ଅଚଳାର ବାହୁ ଉପରେ ନଜର ତାହାଣ ହାତଟା ରଖି ଶାନ୍ତ ଓ ମୃଦୁ କଣ୍ଠରେ କହିଲେ—ଭୟ କରିବାର କିଛି ନାହିଁ ମାଆ, ସେ ଦିନ ଦୁଇଟା ଭିତରେ ନିଶ୍ଚୟ ଭଲ ହୋଇଯିବ ।

ଅଚଳା କୌଣସି କଥା ନ କହି ଆଉ ଥରେ ନଇଁପଡ଼ି ତାହାଙ୍କୁ ପ୍ରଣାମ କରି ଆଲଣାରୁ କେବଳ ନଜର ପିନ୍ଧା ଶାଢ଼ୀ ଖଣ୍ଡିଏ ଟାଣିନେଇ ଯିବାପାଇଁ ପ୍ରସ୍ତୁତ ହୋଇ ଅପେକ୍ଷା କରି ରହିଲା ।

ଏହି ଶୀତ ଅପରାହ୍ନ ସମୟରେ, ଏତେ ବଡ଼ ଅଣ୍ଡାରେ ଖଣ୍ଡିଏ ବୋଲି ଗରମ ଶାଲ ସୁଦ୍ଧା ନ ନେଇ ଅଚଳାକୁ ଖାଲି ପାଦରେ ଅନଭ୍ୟସ୍ତ ସାଜ ସଜ୍ଜାରେ ବାହାରକୁ ଯାଉଥିବାର ଦେଖି ବୃଦ୍ଧ କେଦାରବାବୁଙ୍କ ହୃଦୟରେ ବଡ଼ ଆଘାତ ଲଗିଲା । କିନ୍ତୁ ପାଖରେ ଠିଆ ହୋଇଥିବା ବିଧବା ପ୍ରତି ଦୃଷ୍ଟି ପଡ଼ିବା ମାତ୍ରେ ତାକୁ ବାଧା ଦେବାପାଇଁ ତାଙ୍କର ପ୍ରବୃତ୍ତି ହେଲାନାହିଁ, ସେ କେବଳ କହିଲେ— ଚାଲ୍ ମାଆ, ମୁଁ ମଧ୍ୟ ସଙ୍ଗରେ ଯାଉଛି; କହି ଯୋଡା ପାଦରେ ଗଳାଇ ସମସ୍ତଙ୍କ ଆଗରେ ସିଡ଼ି ଦେଇ ତଳକୁ ଓହ୍ଲାଇବାକୁ ଲଗିଲେ ।

ମହିମ ପ୍ରତି ଅଚଳାର ସବୁଠାରୁ ବଡ଼ ଅଭିମାନ ଏଇଆ ଥିଲା ଯେ, ସେ ସ୍ତ୍ରୀ ହୋଇ ସୁଦ୍ଧା ଦିନକ ପାଇଁ ସ୍ୱାମୀର ଦୁଃଖ, ଦୁଃଶ୍ଚିନ୍ତାରେ ଅଂଶ ଗ୍ରହଣ କରି ପାରିଲା ନାହିଁ । ଏଥିପାଇଁ ସୁରେଶ ତାର ବନ୍ଧୁ ସହିତ ପିଲାଦିନେ ବହୁତ ବିବାଦ କରିଛି କିନ୍ତୁ କୌଣସି ଫଳ ହୋଇନାହିଁ । କୃପଣର ଧନ ପରି ମହିମ ସେହି ବସ୍ତୁଟି ସମଗ୍ର ସଂସାରଠାରୁ ଏପରି ଏକାନ୍ତ କରି ଅଲଗା କରି ରଖିଛି ଯେ ତାହାକୁ ଦୁଃଖ ଓ ଦୁଃସମୟରେ କେହି ସାହାଯ୍ୟ କରିବାର ଦୂରେଥାଉ, କ'ଣ ଯେ ତାର ଅଭାବ, କେଉଁଠାରେ ଯେ ତାର କଷ୍ଟ, ଏହାକୁ କେହି ଦିନକପାଇଁ ଜାଣିପାରି ନାହାନ୍ତି ।

ସୁତରାଂ ଘର ଯେତେବେଳେ ପୋଡ଼ିଗଲା, ସେତେବେଳେ ସେହି ପିତୃ ପିତାମହଙ୍କର ଭସ୍ମୀଭୂତ ଭଗ୍ନ ସ୍ତୂପ ଆଡ଼େ ଚାହିଁରହି ମହିମ ବୁକୁରେ ଯେଉଁ ଦାରୁଣ ଆଘାତ ହେଲା, ତାର ମୁହଁଦେଖି ଅଚଳା ଆଦୌ ଅନୁମାନ କରିପାରି

ନଥିଲା । ମୃଣାଳର ବୈଧବ୍ୟ ଖବର ପାଇଲକ୍ଷ୍ମୀ ସ୍ୱାମୀଙ୍କର ଦୁଃଖର ପରିମାଣ ମଧ୍ୟ ବୁଝିପାରିବା ସେହିପରି ତାହା ପକ୍ଷରେ ଅସାଧ୍ୟ ଥିଲା । ଯେଉଁଦିନ ମୁହେଁମୁହେଁ ଶୁଣାଇ ଦେଇଥିଲାଯେ ସେ ତାକୁ ଭଲ ପାଆନ୍ତି ବୋଲି, ସେହିଦିନ ସେହି ଆଘାତର ଗୁରୁତ୍ୱ ସମ୍ବନ୍ଧରେ ସେ ଏହିପରି ଅନ୍ଧକାରରେ ଥିଲା । ଅଥଚ ଏତେବଡ଼ ନିର୍ବୋଧ ସେ ନୁହେଁ ଯେ, ସମସ୍ତ ପ୍ରକାର ଦୁର୍ଭାଗ୍ୟ ସମୟରେ ସ୍ୱାମୀଙ୍କର ନିର୍ବିକାର ଔଦାସୀନ୍ୟକୁ ଯଥାର୍ଥ ସତ୍ୟ ବୋଲି ଗ୍ରହଣ କରିବାବେଳେ ତାର ମନରେ କ'ଣ ସନ୍ଦେହ ଉଙ୍କିମାରି ନଥିଲା ? ସେଥିପାଇଁ ସେଦିନ ଷ୍ଟେସନ ପ୍ଲାଟ୍ ଫର୍ମ ଉପରେ ସ୍ୱାମୀଙ୍କର ଅବିଚଳିତ ଶାନ୍ତ ମୁହଁକୁ ବାରମ୍ବାର ଚାହିଁ ବାଟସାରା କେବଳ ଏଇ କଥା ଭାବି ଭାବି ଆସିଥିଲା ଯେ, ସହିଷ୍ଣୁତାର ଏହି ମିଥ୍ୟା ଆବରଣ ତଳେ ତାଙ୍କର ମୁହଁର ପ୍ରକୃତ ଚେହେରାଟା ନଜାଣେ କିପରି ହୋଇଥିବ ?

ଆଜି ମହିମର ଅସୁସ୍ଥତା ସମ୍ବାଦଟାକୁ ନିହାତି ସାଧାରଣ ଓ ସ୍ୱାଭାବିକ ଘଟଣା ରୂପରେ ବର୍ଣ୍ଣନା କରିବାକୁ ଯାଇ କେଦାରବାବୁ ଯେତେବେଳେ ସହଜ ଓ ସରଳ କଣ୍ଠରେ କହିଲେ ଯେ—ସେ ଆଦୌ ଆଶ୍ଚର୍ଯ୍ୟ ହୋଇ ନାହାନ୍ତି ବରଂଚ ଏତେବଡ଼ ଦୁର୍ଘଟଣା ପରେ ଏହିପରି କିଛି ଘଟିପାରେ ବୋଲି ମନେ ମନେ ଆଶଙ୍କା କରି ସାରିଥିଲେ ସେତେବେଳେ ଅଚଳାର ନିଜର ଅନ୍ତରରେ ଯେଉଁ ଭାବ ଆତ୍ମ ପ୍ରକାଶ କରିଥିଲା ତାହାକୁ ଅବିଶ୍ରାନ୍ତ ଉତ୍କଣ୍ଠା ବୋଲି କହିବା ଶୋଭା ପାଏନାହିଁ ।

ସୁରେଶର ଗାଡ଼ି ଦ୍ରୁତବେଗରେ ଗଡ଼ି ଚାଲିଥିଲା । ପିଉସୀ ମାଆ ଗୋଟିଏ ପାଖର ଦରଜାକୁ ଆଉଜି ଚୁପ୍ ହୋଇ ବସିଥିଲେ ଏବଂ ତାଙ୍କର ପାଖରେ ଅଚଳା ପଥର ମୂର୍ତ୍ତିଭଳି ସ୍ଥିରହୋଇ ବସିଥିଲା । କେବଳ କେଦାରବାବୁ କାହାଠାରୁ କୌଣସି ଉତ୍ସାହ ନ ପାଇବାରୁ ରାଜପଥ ଉପରକୁ ଶୂନ୍ୟ ଦୃଷ୍ଟିରେ ଚାହିଁ ରହି ଅନର୍ଗଳ ଗପି ଚାଲିଥିଲେ—ସୁରେଶ ଭଳି ବୁଦ୍ଧିମାନ, ଦୟାଳୁ, ବିଚକ୍ଷଣ ପିଲା ଭୂଭାରତରେ ନାହାନ୍ତି । ମହିମର ଜିଦ୍‌ଖୋର ପ୍ରକୃତି ପାଇଁ ସେ ମନେ ମନେ ବିରକ୍ତ ହୋଇ ଉଠିଥିଲେ, ତେଣୁ କହି ଚାଲିଥିଲେ ଯେଉଁ ଦେଶରେ ମନୁଷ୍ୟ ନାହାନ୍ତି, ଡାକ୍ତର ବୈଦ୍ୟ ନାହାନ୍ତି, କେବଳ ଗ୍ୱେର ଉକାୟତ ଏବଂ ବିଲୁଆ କୁକୁର ବାସ କରନ୍ତି, ସେହି ମଫସଲ ଗାଆଁରେ ବାସ କରିବାର ଶାସ୍ତି ଦିନେ ନା ଦିନେତାକୁ ନିଶ୍ଚୟ ଭୋଗ କରିବାକୁ ହେବ । ଏହିଭଳି ସମସ୍ତ ସଂଲଗ୍ନ, ଅସଂଲଗ୍ନ ମନ୍ତବ୍ୟ ସେ ନିରନ୍ତର ଏହି ନିର୍ବାକ ରମଣୀ ଦୁଇଟିଙ୍କର କର୍ଣ୍ଣରେ ନିର୍ବିଘ୍ନରେ ଢାଳି ଚାଲିଥିଲେ ।

ଏହାର କାରଣ ମଧ୍ୟ ଥିଲା । କେଦାରବାବୁ ଯେ ସ୍ୱଭାବତଃ ଏତେଟା ହାଲ୍‌କା ପ୍ରକୃତିର ଲୋକ ଥିଲେ, ତାହାନୁହେଁ । କିନ୍ତୁ ଆଜି ତାଙ୍କ ହୃଦୟର ଗୂଢ଼ ଆନନ୍ଦ କୌଣସି ସଂଯମର ଶାସନ ମାନିବାକୁ ପ୍ରସ୍ତୁତ ନଥିଲା । ତାଙ୍କର ପରମ ମିତ୍ର ସୁରେଶ ସହିତ ପ୍ରକାଶ୍ୟ ବିବାଦ, ଏକମାତ୍ର କନ୍ୟାର, ନୀରବ ବିଦ୍ରୋହ, ଏବଂ ସର୍ବୋପରି ଏକାନ୍ତ କୁତ୍ସିତ ଓ କଦର୍ଯ୍ୟ ସନ୍ଦେହର ଗୋପନ ଗୁରୁଭାର ବିଗତ କେତେଦିନ ହେବ ତାଙ୍କ ଭିତରେ ଯନ୍ତ୍ରାଭଳି ଗୁପିହୋଇ ରହିଥିଲା, ଆଜି ପିଉସୀ ମାଆଙ୍କର ଅପ୍ରତ୍ୟାଶିତ ଆଗମନ ଫଳରେ ସେହି ଭାରଟା ହଠାତ୍ ଅନ୍ତର୍ହିତ ହୋଇ ଯାଇଥିଲା । ମହିମର ଅସୁସ୍ଥତାର ଖବରଟାକୁ ସେ ମନ ଭିତରେ ଗୁରୁତ୍ୱ ଦେଉ ନଥିଲେ । ଯଦି ସେଦିନ ରାତିର ଦୈବୀ ଦୁର୍ବିପାକ ହେତୁ ସାମାନ୍ୟ ଜ୍ୱର ହୋଇଥାଏ ତ ସେ କିଛି ନୁହେଁ । ପିଉସୀ ମାଆ ଦୁଇ ତିନିଦିନ ମଧ୍ୟରେ ଆରୋଗ୍ୟ ହୋଇଯିବାର ଆଶା ଦେଇଛନ୍ତି, ହୁଏତ ଏତେ ସମୟ ମଧ୍ୟ ଲାଗି ନପାରେ, ଏବଂ କାଲି ସକାଳୁ ମଧ୍ୟ କମିଯାଇ ପାରେ । ଅସୁସ୍ଥତା ସମ୍ବନ୍ଧରେ ସେ ଏହା ହିଁ ଭାବି ସ୍ଥିରକରି ରଖିଥିଲେ । କିନ୍ତୁ ଅସଲ କଥା ହେଉଛି ଯେ, ସୁରେଶ ନିଜେ ଯାଇ ତାକୁ ନିଜ ଘରକୁ ଧରି ଆଣିଛି ଏବଂ ଯେ କୌଣସି ଆଳରେ ତାର ସ୍ତ୍ରୀକୁ ନିକଟରେ ଆଣି ପହଞ୍ଚାଇ ଦେବାପାଇଁ ନିଜର ପିଉସୀକୁ ମଧ୍ୟ ପଠାଇ ଦେଇ ପାରିଛି । କନ୍ୟା ଏବଂ ଜ୍ୱାଇଁଙ୍କ ଭିତରେ ଯେ କିଛିକାଳ ଧରି ମନୋମାଳିନ୍ୟ ଚାଲି ଆସିଥିଲା ଦାସୀ ମୁହଁରୁ ଶୁଣିଥିବା ଏହି ତଥ୍ୟଟିକୁ ସେ ଭୁଲିପାରି ନାହାନ୍ତି । ଏବଂ ସମସ୍ତ ହିଁ ସେହି ଦାମ୍ପତ୍ୟ କଳହର ଫଳ, ଆଜି ଏହି ସତ୍ୟ ପ୍ରକାଶିତ ହେବାକ୍ଷଣି, ଏହି ଅବଶ୍ରାନ୍ତ ଗାଳିମନ୍ଦ ଭିତରେ ସେ ନିରତିଶୟ ଆତ୍ମଗ୍ଳାନି ସହିତ ମନେ କରିବାକୁ ଲାଗିଲେ ଯେ, ସେଠାରେ ପହଞ୍ଚି ସେହି ନିରପରାଧ, ଭଦ୍ର ଯୁବକ ମୁହଁକୁ ଚାହିଁ ପାରିବେ କିପରି ? କିନ୍ତୁ ଏଣେ ତାଙ୍କର କନ୍ୟା ମୁହଁରେ ଯେପରି ଏକ କଠିନ ନୀରବତା ବିରାଜୁଥିଲା । ଅସୁସ୍ଥତା ଯେ ସେପରି କିଛି ବଡ଼ ଧରଣର ନୁହେଁ ତାହା ମଧ୍ୟ ସେ ମନେ ମନେ ବୁଝି ପାରିଥିଲା, କେବଳ ବୁଝିପାରୁ ନଥିଲା ସୁରେଶ ତାଙ୍କୁ ଧରି ଆଣିଲେ କିପରି ? ସ୍ୱାମୀଙ୍କୁ ସେ ଏତିକି ପର୍ଯ୍ୟନ୍ତ ଚିହ୍ନି ପାରିଥିଲା ।

ସନ୍ଧ୍ୟା ହୋଇ ଯାଇଛି । ରାସ୍ତାରେ ଗ୍ୟାସ୍ ଆଲୁଅ ଜଳି ଉଠିଛି । ଗାଡ଼ି ସୁରେଶର ଫାଟକ ଭିତରେ ପ୍ରବେଶ କଲା ଏବଂ ବାରଣ୍ଡାର ଅନତି ଦୂରରେ ବନ୍ଦ ହୋଇଗଲା । କେଦାର ବାବୁ ଗାଡ଼ି ଭିତରେ ଥାଇ ହଠାତ୍ ପାଟି କରି ଉଦ୍‌ବିଗ୍ନ ସ୍ୱରରେ କହି ଉଠିଲେ—ଦୁଇ ଖଣ୍ଡ ଗାଡ଼ି କାହିଁକି ଠିଆ ହୋଇଛି ?

ସଙ୍ଗେ ସଙ୍ଗେ ଅଚଳାର ଚକିତ ଦୃଷ୍ଟି ଯାଇ ଗାଡ଼ି ଦୁଇଟି ଉପରେ ପଡ଼ିଲା ଏବଂ ଲଣ୍ଠନଆଲୁଅରେ ସେ ସ୍ପଷ୍ଟ ଦେଖି ପାରିଲା, ସୁରେଶ ଜଣେ ପ୍ରବୀଣ ଇଂରେଜଙ୍କୁ ସମ୍ଭ୍ରମରେ ଗାଡ଼ିରେ ବସାଇ ଦେଉଛି ଏବଂ ତାଙ୍କ ପାଖରେ ଆଉ ଜଣେ ସାହେବ ପୋଷାକ ପିନ୍ଧା ବଙ୍ଗାଳୀ ଭଦ୍ରବ୍ୟକ୍ତି ଠିଆ ହୋଇଛନ୍ତି । ଏମାନେ ଦୁହେଁ ଯେ ଡ଼ାକ୍ତର ଅବିଳମ୍ବେ ସମସ୍ତେ ବୁଝି ପାରିଲେ ।

ସେମାନେ ଚାଲିଗଲେ । ଏମାନଙ୍କର ଗାଡ଼ି ଆସି ବାରଣ୍ଡା ନିକଟରେ ପହଞ୍ଚିଲା । ସୁରେଶ ଠିଆ ହୋଇଥିଲା । କେଦାରବାବୁ ଚିତ୍କାର କରି ପ୍ରଶ୍ନ କଲେ ମହିମ କିପରି ଅଛି; ସୁରେଶ ?

ସୁରେଶ କହିଲା—ଭଲ ଅଛି । ଆସନ୍ତୁ ।

କେଦାରବାବୁ ବ୍ୟଗ୍ର କଣ୍ଠରେ ପଚାରିଲେ—ବେମାରି କ'ଣ ସେ କଥା କୁହନା, ଶୁଣେ ?

ସୁରେଶ କହିଲା—ରୋଗର ନାମ କହିଲେ ଆପଣ ଜାଣି ପାରିବେ ନାହିଁ । ଜ୍ୱର, ଗୁଡ଼ରେ ଥଣ୍ଡା ଧରିଛି । ଆପଣ ଓହ୍ଲାଇ ଆସନ୍ତୁ । ସେମାନଙ୍କୁ ଓହ୍ଲାଇବାକୁ ଦିଅନ୍ତୁ ।

କେଦାର ବାବୁ ଓହ୍ଲାଇବାର ଚେଷ୍ଟାମାତ୍ର ନକରି କହିଲେ—ସାମାନ୍ୟ ସର୍ଦ୍ଦି ହୋଇଛି ତା'ର । ଚକ୍ରାନ୍ତ ତୁମେ ନିଜେବି କରି ପାରିଥାନ୍ତ । ମୁଁ ପିଲାଲୋକ ନୁହେଁ ସୁରେଶ, ଦୁଇ ଦୁଇଜଣ ଡ଼ାକ୍ତର ତେବେ କାହିଁକି ; ସାହେବ ଡ଼ାକ୍ତରଙ୍କର ଅବା କ'ଣ ପ୍ରୟୋଜନ ଥିଲା ? କହୁ କହୁ ତାଙ୍କର ଗଳା ଥରି ଉଠୁଥିଲା ।

ସୁରେଶ ଅଚଳା ନିକଟକୁ ଆସି ହାତଧରି ତାକୁ ଓହ୍ଲାଇ ଦେଇ କହିଲା— ପିଉସୀମାଆ, ଅଚଳାକୁ ଭିତରକୁ ନେଇଯାଅ । ମୁଁ ପଛରେ ଯାଉଛି ।

ଅଚଳା କାହାକୁ କୌଣସି ପ୍ରଶ୍ନ କଲାନାହିଁ । ତାର ମୁହଁର ଚେହେରା ମଧ୍ୟ ଅନ୍ଧାରରେ ଦେଖା ଗଲା ନାହିଁ । ଗାଡ଼ିରୁ ଓହ୍ଲାଇବା ବେଳେ ଫୁଟ୍ ବୋର୍ଡ଼ ଉପରେ ଯେ ତାର ଗୋଡ଼ କମ୍ପିବାକୁ ଲାଗୁଥିଲା ତାହା କାହା ଆଖିରେ ପଡ଼ି ନଥିଲା । ସେ ଯେପରି ନୀରବରେ ଆସିଥିଲା, ସେହିପରି ନୀରବରେ ଓହ୍ଲାଇ ପିଉସୀମାଆଙ୍କ ପଛେ ପଛେ ଘର ଭିତରକୁ ଚାଲିଗଲା ।

କେତେ ମିନଟ୍ ପରେ ସେ ଯେତେବେଳେ ଦ୍ୱାରର ପର୍ଦ୍ଦା ଆଡ଼େଇ ରୋଗୀଘରେ ପ୍ରବେଶ କଲା—ମଧ୍ୟମ ଯେତେବେଳେ ତାର ଘର ବିଷୟରେ କ'ଣ ବୋଧହୁଏ ଗପିଯାଉଥିଲା । ସେହି ଜଡ଼ିତ କଣ୍ଠରୁ ଯେଉଁ ପଦେ, ଦୁଇପଦ କଥା ତାର କାନରେ ଆସି ପଡ଼ୁଥିଲା । ସେଥିରୁ ବୁଝିବାକୁ ବାକି ରହିଲା ନାହିଁ ଯେ ଏଇ ପ୍ରଳାପ କେତେ ଅର୍ଥହୀନ ଏବଂ ରୋଗ କେତେ ଦୂର ଆଗେଇ ଯାଇଛି ! ମୁହୂର୍ତ୍ତିକ ପାଇଁ ସେ କାନ୍ଥରେ ଆଉଜି ପଡ଼ି ନିଜକୁ ସମ୍ଭାଳି ନେଲା ।

ଯେଉଁ ଝିଅଟି ମୁଣ୍ଡ ଉପରେ ବସି ବରଫ ଦେଉଥିଲା ସେ ଫେରି ଚାହିଁଲା ଏବଂ ଧୀର ପଦରେ ଉଠି ଆସି ଅଚଳାକୁ ପ୍ରଣାମ କରି ଠିଆ ହୋଇ ରହିଲା । ତାର ବିଧବା ବେଶ । କେଶଗୁଡ଼ିକ ଖୁବ୍ ଗ୍ରେଟ କରି କଟା ହୋଇଛି । ତାର ମୁହଁରେ ବୈଧବ୍ୟର ବୈରାଗ୍ୟ ଚିହ୍ନ ସୁସ୍ପଷ୍ଟ । ମ୍ଲାନ ଆଲୋକରେ ପ୍ରଥମେ ତାକୁ ସେ ମୃଣାଳ ବୋଲି ଚିହ୍ନି ପାରିଲା ନାହିଁ । ଏଥର ମୁହାଁମୁହିଁ ସ୍ଥିର ହୋଇ ଠିଆ ହେବା ପରେ କ୍ଷଣକାଳ ପାଇଁ ଉଭୟେ ଯେପରି ସ୍ତମ୍ଭିତ ହୋଇ ରହିଲେ । ତାହାପରେ ଅଚଳାର ଓଠ କମ୍ପି ଉଠିଲା । କିନ୍ତୁ କୌଣସି କଥା ତା ତୁଣ୍ଡରୁ ଫିଟି ବାହାରି ଆସି ପାରିଲା ନାହିଁ ଏବଂ ପରକ୍ଷଣରେ ତାର ଚେତାଶୂନ୍ୟ ଶରୀରଟି ମୃଣାଳର ପାଦତଳେ ଲୋଟି ପଡ଼ିଲା ।

କିଛିକ୍ଷଣ ପରେ ଚେତନା ଫେରି ପାଇ ଅଚଳା ଚାହିଁ ଦେଖିଲା ସେ ଗୋଟିଏ କୋଚ ଉପରେ ବାବାଙ୍କ କୋଳରେ ମୁଣ୍ଡରଖି ଶୋଇଛି । ଜଣେ ଦାସୀ ତାର ମୁହଁରେ ଗୋଲାପ ଜଳ ସିଞ୍ଚୁଛି ଏବଂ ପାଖରେ ସୁରେଶ ଠିଆ ହୋଇ ପଙ୍ଖାଟିଏ ଧରି ବିଞ୍ଚିବାକୁ ଲାଗିଛି ।

କ'ଣ କିପରି ଘଟିଗଲା ମନେ ପକାଇବାକୁ ତାକୁ କିଛି ସମୟ ଲାଗିଲା; କିନ୍ତୁ ମନେ ପଡ଼ିବା ପରେ ଅଚଳା ଲଜ୍ଜାରେ ବ୍ୟସ୍ତ ହୋଇ ଉଠିବାକୁ ଚେଷ୍ଟା କରୁଥିଲା ବେଳେ କେଦାର ବାବୁ ବାଧା ଦେଇ କହିଲେ—ଟିକିଏ ବିଶ୍ରାମ କର ମାଆ । ବର୍ତ୍ତମାନ ଉଠିବାର ଆବଶ୍ୟକତା କିଛି ନାହିଁ ।

ଅଚଳା ମୃଦୁ କଣ୍ଠରେ କହିଲା ନା, ବାବା, ମୁଁ ବର୍ତ୍ତମାନ ବେଶ୍ ଭଲ ଅଛି । ଏତିକ କହି ସେ ବସିବାକୁ ଚେଷ୍ଟା କରିବା କ୍ଷଣି କେଦାରବାବୁ ତାହାକୁ ଜୋର କରି ଧରି ଉଦ୍‌ବେଗର ସହିତ କହିଲେ—ବର୍ତ୍ତମାନ ଉଠିବାର କୌଣସି ଦରକାର ନାହିଁ ମାଆ, ବରଂ ଟିକିଏ ଶୋଇବାକୁ ଚେଷ୍ଟା କର ।

ସୁରେଶ ଅସ୍ପଷ୍ଟ ସ୍ୱରରେ ଏହିକଥାକୁ ଅନୁମୋଦନ କଲା ।

ଅଚଳା ନୀରବରେ ଥରକ ପାଇଁ ସୁରେଶ ମୁହଁକୁ ଚାହିଁଦେଇ ପ୍ରତ୍ୟୁତ୍ତରରେ କେବଳ ବାପାଙ୍କ ହାତଟି ଠେଲି ଦେଇ ସିଧା ଠିଆ ହୋଇ କହିଲା ଶୋଇବା ପାଇଁ ତ ଏଠାକୁ ଆସିନି ବାବା, ମୋର କିଛି ହୋଇ ନାହିଁ । ମୁଁ ଆଉ ଘରକୁ ଯାଉଛି କହି ପ୍ରତିବାଦକୁ ଅପେକ୍ଷା ନକରି ବାହାରି ଚାଲିଗଲା ।

ଏହି ଘରର ପ୍ରତ୍ୟେକ ବିଷୟ ସେ ମନେରଖି ପାରିଛି । ରୋଗୀ କେଉଁ-ଘରେ ଅଛି ତେଣୁ ଖୋଜି ବାହାର କରିବାକୁ ତାହାକୁ ବେଶୀ ସମୟ ଲାଗିଲା ନାହିଁ । ସେ ପ୍ରବେଶ କରିବାମାତ୍ରେ ମୃଣାଳ କହିଲା—ତୁମେ ଆସି ଟିକିଏ ଏଠାରେ ବସ ନୂଆବୋଉ, ମୁଁ ସନ୍ଧ୍ୟାବେଳର ଜପ ସାରି ଦେଇ ଆସେ । ଟିକିଏ ନଜର ରଖିବ ଯେପରି ବରଫ ମୁଣିଟା ପଡ଼ି ନଯାଏ—କହି ସେ ଅଚଳାକୁ ନିଜ ସ୍ଥାନ ଛାଡ଼ିଦେଇ ଚାଲିଗଲା ।

କଠିନ ନିମୋନିଆ ରୋଗ ଭଲ ହେବାକୁ ସମୟ ଲାଗିବ । କିନ୍ତୁ ମହିମ ଯେ କ୍ରମେ କ୍ରମେ ଆରୋଗ୍ୟ ପଥରେ ଆଗେଇ ଚାଲିଛି ଏବଂ ଏହି ଯାତ୍ରା ପଥରେ ଆଉ ଯେ ଭୟ ନାହିଁ ଏକଥା ସମସ୍ତଙ୍କ ନିକଟରେ ସୁସ୍ପଷ୍ଟ ହୋଇ ଉଠିଲା । ମହିମ ମୁହଁର ଅର୍ଥହୀନ ପ୍ରଳାପ, ଆଖିର ଉଦ୍‌ଭ୍ରାନ୍ତ ଦୃଷ୍ଟି କ୍ରମଶଃ ଶାନ୍ତ ଏବଂ ସ୍ୱାଭାବିକ ହୋଇ ଆସିଲା ।

ଦଶଦିନ ପରେ ଆଜି ଅପରାହ୍ଣ ସମୟରେ ମହିମ ଶାନ୍ତଭାବରେ ଶୋଇଥିଲା । ଏ ବର୍ଷ ଶୀତଟା ସବୁ ବର୍ଷଠାରୁ ଟିକିଏ ଅଧିକ ପଡ଼ିଥିଲା । ଏହା ବ୍ୟତୀତ ବାହାରେ ମଧ୍ୟ ଅସରାଏ ବର୍ଷା ହୋଇ ଯାଇଛି । ରୋଗୀ ଶଯ୍ୟା ନିକଟରେ ଆଉ ଗୋଟିଏ ଖଟ ଯୋଡ଼ି ଦିଆ ଯାଇ ବିଛଣା କରାଯାଇଥିଲା ଏବଂ ତାହା ଉପରେ ସମସ୍ତେ ବସିଥିଲେ । ସମସ୍ତଙ୍କ ମୁହଁରେ ଏବଂ ଆଖିରେ ନିରୁଦ୍‌ବିଗ୍ନ ତୃପ୍ତିର ପ୍ରକାଶ । କେବଳ ପିଉସୀ ମାଆ ଘରକାମରେ ଅନ୍ୟତ୍ର ନିଯୁକ୍ତ । କେଦାର ବାବୁ ସେତେବେଳ ପର୍ଯ୍ୟନ୍ତ ତାଙ୍କ ନିଜଘରୁ ଆସି ପହଞ୍ଚି ପାରି ନାହାନ୍ତି ।

ସୁରେଶ ଆଡ଼କୁ ଚାହିଁ ମୃଣାଳ ହଠାତ୍ ହାତଯୋଡ଼ି କହିଲା—ଏଥର ମୋର ଛୁଟିପତ୍ର ମଞ୍ଜୁର କରିବାକୁ ହୁକୁମ ହେଉ ସୁରେଶ ବାବୁ । ମୁଁ ଗାଆଁକୁ ଯାଏ । ଏଇ ଭୟଙ୍କର ଶୀତରେ ଯଦି ଶାଶୁ ବୁଢ଼ୀ ମରିଯାନ୍ତି ନା···

ସୁରେଶ କହିଲ—-ବର୍ତ୍ତମାନ କ'ଣ ତାଙ୍କର ବଞ୍ଚି ରହିବା ନିହାତି ଦରକାର ? ନା, ତାଙ୍କ ପାଇଁ ତୁମେ ଯାଇ ପାରିବ ନାହିଁ ।

ମୃଣାଳ ପଲକ ମାତ୍ରେ ମୁହଁ ଫେରାଇ ନେଇ ବୋଧହୁଏ ଗୋଟାଏ ଦୀର୍ଘ ନିଃଶ୍ୱାସକୁ ଚାପି ନେଲା । ତାହାପରେ ସୁରେଶ ମୁହଁକୁ ଚାହିଁ କହିଲା—କେବଳ ଆପଣ ନୁହନ୍ତି ସୁରେଶ ବାବୁ; ଏ ପ୍ରଶ୍ନ ପୂର୍ବରୁ ଅନେକଥର ମୁଁ ନିଜକୁ ମଧ୍ୟ କରି ବସିଛି । ମନେ ହୁଏ ଏଥର ତାଙ୍କର ଚାଲିଯିବା ମଙ୍ଗଳ । କିନ୍ତୁ ବଞ୍ଚାଇବା ଏବଂ ମାରିବାର ଯିଏ କର୍ତ୍ତା; ତାଙ୍କର ତ ସେତିକ ଖିଆଲ ନାହିଁ । ଯଦି ଥାଆନ୍ତା; ସଂସାରର ଅନେକ ଦୁଃଖ କଷ୍ଟରୁ ମଣିଷ ମୁକ୍ତି ପାଆନ୍ତା ।

ଅଚଳା ଏତେକ୍ଷଣ ଧରି ଚୁପ୍ ହୋଇ ରହିଥିଲା । ମୃଣାଳ ବୋଧହୁଏ ତାର ନିଜ ସ୍ୱାମୀ କଥା ମନେ ପକାଇ ଏକଥା କହିଲା ଭାବି ସେ କହିଲା—ଯିଏ ଅନ୍ତର୍ଯ୍ୟାମୀ ସେ ଜାଣନ୍ତି ଯେ ମନୁଷ୍ୟ ଶତ ଦୁଃଖ କଷ୍ଟ ପାଉଥିଲେ ମଧ୍ୟ ନିଜର ମୃତ୍ୟୁ କାମନା କରେ ନାହିଁ ।

ମୃଣାଳ ମୁହଁ ଉପରେ ଗୋପନ ବେଦନାର ଚିହ୍ନ ପ୍ରକାଶ ପାଇଲା । ମୁଣ୍ଡ ହଲାଇ ସେ କହିଲା—ନା, ନୂଆବୋଉ, ତାହା ନୁହେଁ । ଏପରି ସମୟ ସତରେ ଆସେ ଯେତେବେଳେ ମଣିଷ ଯଥାର୍ଥ ହିଁ ମରଣକୁ କାମନା କରେ । ସେଦିନ ଅନେକ ରାତିରେ ହଠାତ୍ ମୋର ନିଦ ଭାଙ୍ଗିଯିବାରୁ ଦେଖିଲି ଶାଶୁ ମୋର ବିଛଣାରେ ନାହାନ୍ତି । ତରତର ହୋଇ ବାହାରକୁ ଆସି ଦେଖେତ ସେ ଗଳାରେ ବସନ ଗୁଡ଼ାଇ ଠାକୁରଙ୍କ ପାଖରେ ହାତ ଯୋଡ଼ି ମୃତ୍ୟୁ ପାଇଁ ଭିକ୍ଷା ମାଗୁଛନ୍ତି । କହୁଛନ୍ତି—ହେ ଠାକୁର । ଯଦି ଦିନକ ପାଇଁ ତୁମର ସେବା କାୟମନୋବାକ୍ୟରେ କରି ପାରିଥାଏ ତେବେ ଆଜି ମୋର ଲଜ୍ଜ୍ୟା ନିବାରଣ କର । ମୁଁ ମୁକ୍ତି ଚାହୁଁ ନାହିଁ, ସ୍ୱର୍ଗ ଚାହୁଁ ନାହିଁ, କେବଳ ଏତିକି ଚାହେଁ ଠାକୁର ତୁମେ ମୋତେ ଆଉ ଲଜ୍ଜ୍ୟା ଦିଅ ନାହିଁ । ମୁଁ ମୋର ଏହି ମୁହଁ ଆଉ ମୋ ଦୋହି ମାଆ ଆଗରେ ଦେଖାଇପାରୁନାହିଁ । କହୁ କହୁ ମୃଣାଳ ଝର ଝର କରି କାନ୍ଦିବାକୁ ଲାଗିଲା ।

ଏହି ପ୍ରାର୍ଥନା ଭିତରେ ମାତୃ ହୃଦୟର କେତେ ବଡ଼ ସୁଗଭୀର ବେଦନା ଯେ ନିହିତ ଥିଲା, ତାହା ଅନୁଭବ କରିବାକୁ କାହା ପକ୍ଷରେ ବିଳମ୍ବ ହେଲା ନାହିଁ । ସୁରେଶର ଦୁଇ ଚକ୍ଷୁ ଅଶ୍ରୁପୂର୍ଣ୍ଣ ହୋଇ ଉଠିଲା । ଯେ କୌଣସି ଲୋକର ସାମାନ୍ୟ ଦୁଃଖରେ ସେ କାତର ହୋଇପଡ଼େ । ଆଜି କିନ୍ତୁ ଏହି ସନ୍ତାନହରା ବୃଦ୍ଧା

ଜନମାଙ୍କର ମର୍ମାନ୍ତିକ ଦୁଃଖ କାହାଣୀ ଶୁଣିବା ପରେ ଗୁରୁତତଳେ ଝଡ଼ ହୋଇବା ତ ସ୍ୱାଭାବିକ । ସେ ସ୍ତବ୍ଧ ଭାବରେ କିଛିକ୍ଷଣ ତଳକୁ ଚାହିଁ ରହି ହଠାତ୍ ଉଚ୍ଛ୍ୱସିତ କଣ୍ଠରେ କହି ଉଠିଲା—ଆଚ୍ଛା ତୁମେ ଯାଇପାର ଅପା, ତୁମ ବୁଢ଼ୀ ଶାଶୁଙ୍କର ସେବା କରିବା ନିହାତି ଦରକାର । ମୁଁ ଆଉ କୌଣସିମତେ ତୁମକୁ ଅଟକାଇ ରଖିବାକୁ ଚାହେଁ ନାହିଁ । ଏହି ହତଭାଗା ଦେଶର ଯଦି କିଛି ଗର୍ବ କରିବାର ଥାଏ, ତେବେ ତାହା ହେଉଛି ତୁମ ଭଳି ଝିଅଙ୍କ ପାଇଁ । ଏଭଳି ଆଦର୍ଶ ବୋଧହୁଏ ଅନ୍ୟ କୌଣସି ଦେଶରେ ଦେଖିବାକୁ ମିଳିବ ନାହିଁ କହି ସେ ଜିଜ୍ଞାସୁ ଦୃଷ୍ଟିରେ ଥରକ ପାଇଁ ଅଚଳା ମୁହଁକୁ ଚାହିଁ ରହିଲା । କିନ୍ତୁ ଅଚଳା ସେତେବେଳକୁ ଝରକା ଫାଙ୍କ ଦେଇ ଆକାଶରେ ଭାସି ଯାଉଥିବା ଖଣ୍ଡେ ଧୂସର ମେଘ ଆଡ଼େ ନିବଷ୍ଟ ଚିତ୍ତରେ ଚାହିଁ ରହିଥିବାରୁ, କୌଣସି ଉତ୍ତର ଦେଇ ପାରିଲା ନାହିଁ ।

ମୃଣାଳ କିନ୍ତୁ ଲଜ୍ଜ୍ୟା ପାଇ ଆଲୋଚନାଟାର ମୋଡ଼ ଅନ୍ୟ ଦିଗକୁ ପରିବର୍ତ୍ତନ କରିବା ପାଇଁ ହଠାତ୍ ସାମାନ୍ୟ ହସି ଦେଇ କହିଲା—ନା, ସେପରି କିଛି ନୁହେଁ । ଆପଣ ସବୁ ଦେଶର ଖବର ଜାଣନ୍ତି କିନା ? ଆଚ୍ଛା ଭାଇଙ୍କ ଠାରୁ ଆପଣ ବଡ଼ ନା ଶ୍ରେଷ୍ଠ ?

ଏହି ଅଦ୍ଭୁତ ପ୍ରଶ୍ନରେ ସୁରେଶ ହସି ହସି ପଚାରିଲା କାହିଁକି କୁହନ୍ତୁ ତ ?

ମୃଣାଳ ବାଧା ଦେଇ କହିଲା—ନା, ଆଉ ମୋତେ ଆପଣ କହିବେ ନାହିଁ । ମୁଁ ଅପା ହେଲେ ମଧ୍ୟ ଯେତେବେଳେ ବୟସରେ ଶ୍ରେଷ୍ଠ ସେତେବେଳେ ବଡ଼ ଭାଇ, ମଝିଆ ଭାଇ, ପରି ମୋ ସାଙ୍ଗରେ କଥା ହୁଅନ୍ତୁ । କହନ୍ତୁ; ଶୀଘ୍ର କହନ୍ତୁ ତୁମେ କ'ଣ ହେବ ?

ଅଚଳା ଆକାଶ ଆଡ଼ୁ ଦୃଷ୍ଟି ଫେରାଇ ଏଥର ମୃଣାଳ ଆଡ଼କୁ ଚାହିଁଲା । ଅନେକ ଦିନ ତଳେ ଏହି ଝିଅଟି ଏହିପରି ଅବଲୀଳା କ୍ରମେ ତାହା ସହିତ ନୂଆବୋଉ ସମ୍ବନ୍ଧ ସ୍ଥାପନ କରି ପାରିଥିଲା । ସେ କଥା ତା'ର ମନେ ପଡ଼ିଲା । କିନ୍ତୁ ମୃଣାଳର ଚରିତ୍ରର ଏହି ଦିଗଟା ପ୍ରତି ସୁରେଶର ଜ୍ଞାନ ନଥିଲା ବୋଲି ସେ ତାର ମୁହଁକୁ ଚାହିଁ ରହି କୌତୁକରେ ହସି ହସି କହି ପକାଇଲା— ସାନଭାଇ, ସାନଭାଇ । ତୋର ମହିମ ଭାଇଙ୍କ ଠାରୁ ମୁଁ ହେଉଛି ବୟସରେ ଦେଢ଼ ବର୍ଷ ସାନ ।

ମୃଣାଳ କହିଲା—ତାହେଲେ ସାନଭାଇ, ଦୟାକରି ଗୋଟିଏ ଲୋକ ଠିକ୍ କରି ଦିଅନ୍ତୁ ଯିଏ ମୋତେ ନେଇ ସକାଳ ଗାଡ଼ିରେ ମୋ ଶାଶୁ ଘରେ ଛାଡ଼ି ଦେଇ ଆସି ପାରିବ ।

ଯିବାପାଇଁ ସୁରେଶ ବର୍ତ୍ତମାନ ଅନୁମତ ଦେଇଥିଲେ ସୁଦ୍ଧା ମୃଣାଳ ଯେ କାଲି ସକାଳୁ ଯିବା ପାଇଁ କହି ବସିବ ତାହା ସେ ଭାବି ନଥିଲା । ତାପରେ କିଛିକ୍ଷଣ ଅଟକ ଯାଇଁ ସାମାନ୍ୟ ଗମ୍ଭୀର ହୋଇ କହିଲା—ଆଉ ଦୁଇଟା ଦିନ ରହି ପାରିବ ନାହିଁ, ଅପା ? ତୁମ ଉପରେ ଭାର ଦେଇ ମୁଁ ମହିମ ପାଇଁ ଏକ ପ୍ରକାର ନିର୍ଶ୍ଚିନ୍ତ ଥିଲି । ଏପରି ଅହର୍ନିଶ ସତର୍କ ହୋଇ ମନପ୍ରାଣ ଦେଇ ସେବା କରିବାର ମୁଁ ହସପିଟାଲରେ କାହାକୁ ସୁଦ୍ଧା ଦେଖି ଥିବାର ମନେ ହେଉ ନାହିଁ । କ'ଣ କହୁଛ ଅଚଳା ?

ପ୍ରତ୍ୟୁତ୍ତରରେ ଅଚଳା କେବଳ ମୁଣ୍ଡ ହଲାଇଲା ।

ଅଚଳାର ଚିନ୍ତିତ ଭାବକୁ ଲକ୍ଷ୍ୟ କରି ହସି ଦେଇ ମୃଣାଳ କହିଲା -- ଆପଣ ସେଥିପାଇଁ ଏତେ ଟିକିଏ ଚିନ୍ତା କରିବେ ନାହିଁ । ଯାହାର ଜିନିଷ ତାଙ୍କର ହାତରେ ଦେଇ ଯାଉଛି । ନଚେତ ମୁଁ ଯାଇ ପାରନ୍ତି ନାହିଁ । ଆପଣଙ୍କର ତ ମନେ ଥିବ, ଜଞ୍ଜାଳ ସବୁ ଛାଡ଼ି ଛୁଡ଼ି ମୁଁ ଶୀଘ୍ର ପଳାଇ ଆସିଲି । କାହା ପାଇଁ କିଛି ବ୍ୟବସ୍ଥା କରି ପାରିନାହିଁ । କାଲି ମତେ ଛୁଟି ଦେଇ ଦିଅ ଭାଇ । ପୁଣି ଯେତେବେଳେ ହୁକୁମ କରିବ, ସେତେବେଳେ ସଙ୍ଗେ ସଙ୍ଗେ ଚାଲି ଆସିବ ।

ସୁରେଶ କିଛି ସମୟ ପାଇଁ ଚୁପ୍ ରହିବା ପରେ ହଠାତ୍ କହି ଉଠିଲା- ଆଚ୍ଛା ମୃଣାଳ, ମୁଁ କେବଳ ଭାବୁଛି ସେହି ପଡ଼ା ଗାଆଁରେ କେବଳ ବୁଢ଼ୀ ଶାଶୁର ସେବା କରି ଆଉ ପୂଜାପୂଜି କରି ତୋର ସମସ୍ତ ସମୟଟା କଟିବ କିପରି ?

ମୃଣାଳ ମୁହଁ ଉପରେ ପୁଣି ବ୍ୟଥାର ଚିହ୍ନ ପ୍ରକାଶ ପାଇଲି । କିନ୍ତୁ ସେ ହସି କରି କହିଲି— ସମୟ କଟାଇବାର ଭାର ତ ମୋ ଉପରେ ନାହିଁ ଭାଇ । ଯିଏ ସମୟ ସୃଷ୍ଟି କରିଛନ୍ତି ସେ ହିଁ କେବଳ ତାର ବ୍ୟବସ୍ଥା କରିବେ ।

ସୁରେଶ କହିଲା—ଆଚ୍ଛା ସେ କଥା ସେ ବ୍ୟବସ୍ଥା କଲେ । କିନ୍ତୁ ତୋ ଶାଶୁଟି ବେଶୀ ଦିନ ବଞ୍ଚିବେ ନାହିଁ, ଆଉ ମହିମକୁ ମଧ୍ୟ ଡାକ୍ତରଙ୍କ ପରାମର୍ଶ ଅନୁସାରେ କୌଣସି ଏକ ସ୍ୱାସ୍ଥ୍ୟକର ସ୍ଥାନରେ କିଛିଦିନ ବାସ କରିବାକୁ ହେବ । ସେତେବେଳେ ତୁ ଏକୁଟିଆ ସେଠାରେ ରହିବୁ କିପରି ?

ମୃଣାଳ ଉପରକୁ ଟିକେ ଚାହିଁ ଦେଇ ଆଉ ଟିକିଏ ହସି ଦେଇ କହିଲା— ସେ କଥା ତାଙ୍କୁ ହିଁ ଜଣା ।

ସମସ୍ତଙ୍କ ଅଜାଣତରେ ସୁରେଶ ମୁହଁ ଫେରାଇ ନେଇ ଗୋଟାଏ ଦୀର୍ଘଶ୍ୱାସ ଛାଡ଼ିଲା ।

ମୃଣାଳ କହିଲା ସାନଭାଇ, ତୁମେ ବୋଧହୁଏ ଏସବୁ ମାନ ନାହିଁ ?

: କଣ ସବୁ ?

: ଏଇ, ଭଗବାନଙ୍କ୍ ।

ନା ।

: ସେଥିପାଇଁ ବୋଧହୁଏ ମୋ ପାଇଁ ଦୀର୍ଘ ନିଶ୍ୱାସଟିଏ ତ୍ୟାଗ କଲ ।

ସୁରେଶ ହଠାତ୍ ଏ ପ୍ରଶ୍ନର କୌଣସି ଉତ୍ତର ଦେଲାନାହିଁ । ଅନ୍ୟମନସ୍କ ହୋଇ କିଛିକ୍ଷଣ ପାଇଁ ତାହା ମୁହଁକୁ ଚାହିଁ ରହି ହଠାତ୍ ମୁଣ୍ଡ ହଲାଇ କହି ଉଠିଲା—ନା, ମୃଣାଳ ତାହା ନୁହେ । ଗୋଟାଏ ଅଜଣା ଭବିଷ୍ୟତ ଭାର ସେହିପରି ଅଜଣା ଗୋଟିଏ ଈଶ୍ୱର ଉପରେ ରଖି ଦେଇ ଯେଉଁମାନେ ମୋ ଠାରୁ ଅଧିକ ସଫଳକାମୀ ହୋଇଛନ୍ତି ସେହିଭଳି ଲୋକ ମଧ୍ୟ ଅନେକ ଦେଖିଛି କିନ୍ତୁ ବର୍ତ୍ତମାନ ପାଇଁ ଏ ସବୁ ଆଲୋଚନା ଥାଉ । ହୁଏତ ଏହି ଆଲୋଚନା ଫଳରେ ମୋ ପ୍ରତି ତୋ ମନରେ ଗୋଟାଏ ଘୃଣା ଭାବ ଜନ୍ମିପାରେ ।

ମୃଣାଳ ହଠାତ୍ ନଇଁପଡ଼ି ସୁରେଶର ପାଦଧୂଳି ନେଇ ମଥାରେ ଘେନିଲା ।

ସୁରେଶ ଆଶ୍ଚର୍ଯ୍ୟ ହୋଇ କହିଲା—ଏଇଟା ପୁଣି କ'ଣ ହେଲା ମୃଣାଳ ?

: କେଉଁଟା ସାନ ଭାଇ ?

: କେଉଁଠି କିଛି ନାହିଁ ହଠାତ୍ ଏଇ ପାଦଧୂଳି ନେବାଟା ।

ମୃଣାଳ କହିଲା—ବଡ଼ ଭାଇର ପାଦଧୂଳି ନେବା ପାଇଁ କ'ଣ ଦିନ, ବାର, ତିଥି ଦେଖିବା ଦରକାର ପଡ଼େ କି ? କହି ହସି ଉଠି ଚାଲିଗଲା ।

ବଡ଼ ଆଶ୍ଚର୍ଯ୍ୟ ଝିଅଟ ସ୍ନେହ ଓ ଆଶ୍ଚର୍ଯ୍ୟ ମିଶା ଦୃଷ୍ଟିରେ ଅଚଳା ଆଡ଼କୁ ଚାହିଁ ସୁରେଶ ଏତିକ କହିଲା । କିନ୍ତୁ ଅଚଳା ମୁହଁକୁ ଦେଖିବାମାତ୍ରେ ସେ ବିସ୍ମୟରେ ଅଭିଭୂତ ହୋଇ ପଡ଼ିଲା । ତାର ମୁହଁଟି ଠିକ୍ ଶ୍ରାବଣ ମାସର ଆକାଶ ମେଘଦ୍ୱାରା ଆଚ୍ଛାଦିତ ହେଲାପରି ମନେହେଲା । କିନ୍ତୁ ବିସ୍ମୟର ଧକ୍କା ସମ୍ଭାଳି ନେଇ, ଏ ସମ୍ବନ୍ଧରେ କୌଣସି ପ୍ରକାର ପ୍ରଶ୍ନର ଆହ୍ୱାନ ଦେବା ପୂର୍ବରୁ ଅଚଳା ନିର୍ବୋଧ ସୁରେଶକୁ ଆକାଶ ପାତାଳ ଭାବିବାକୁ ଅଜସ୍ର ଅବକାଶ ଦେଇ ମୃଣାଳ ଯିବା ପଛେ ପଛେ ତରତର ହୋଇ ଘର ଭିତରକୁ ଚାଲିଗଲା ।

ସେହିଠାରେ ସ୍ତବ୍ଧଭାବରେ ବସିରହି ସୁରେଶ କେବଳ ଆପଣାକୁ ଆପେ ପ୍ରଶ୍ନ ପଚାରିବାକୁ ଲାଗିଲା ଏପରି କାହିଁକି ହେଲା ? ମୃଣାଳର ପ୍ରଣାମ ସଙ୍ଗେ ଏହି

ସ୍ୱାମୀରର ନିଶ୍ଚୟ କିଛି ନିଗୂଢ଼ ସମ୍ପର୍କ ଅଛି । ଏକଥା ସେ ମନେ ମନେ ଅନୁମାନ କରିବାକୁ ଲାଗିଲା । କିନ୍ତୁ ଏ ସମ୍ପର୍କର ସୂତ୍ର କେଉଁଠି ? କାହିଁକି ମୃଣାଳ ତାର ପାଦଧୂଳି ନେଇ ଚାଲିଗଲା ଏବଂ ପଲକ ନ ପଡୁଣୁ ଅଚଳା ବିମର୍ଷ ମୁହଁରେ କାହିଁକି ଅବା ତାର ପଛେ ପଛେ ଉଠି ଚାଲିଗଲା ? ଏଥିପାଇଁ ନିଜର ବ୍ୟବହାରକୁ ସେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ବିଶ୍ଳେଷଣ କରି ମଧ୍ୟ କୌଣସି କୂଳ କିନାରା ପାଇ ପାରିଲା ନାହିଁ । ଅଥଚ ପାଖରେ ଏପରି ଦୁଇଟା ଘଟଣା ଯେ ସେମିତି ଘଟିଯାଇଛି ତାହା ମଧ୍ୟ ନୁହେ । ସୁତରାଂ ତାର କୌଣସି ଅଜ୍ଞାତ ଆଚରଣ ଯେ ଏହି ଅନର୍ଥର ମୂଳ, ଏହି ସନ୍ଦେହ ତାହା ମନରେ କଣ୍ଟା ଭଳି ବିନ୍ଧିବାକୁ ଲାଗିଲା ।

ଅଚଳାକୁ କିନ୍ତୁ ଏ ସମ୍ବନ୍ଧରେ କୌଣସି ପ୍ରକାର ପ୍ରଶ୍ନ ପଚାରିବା ଅସମ୍ଭବ । ରାତିଟା କୌଣସି ମତେ କଟିଗଲା । ସକାଳେ ଅଚଳାକୁ ଏକାକିନୀ ଦେଖି କହିଲା—ତୁମକୁ ଗୋଟିଏ କଥାର ଉତ୍ତର ଦେବାକୁ ହେବ !

ଅଚଳାର ମୁହଁ ଲଜ୍ୟାରେ ଲାଲ ହୋଇ ଉଠିଲା । ପ୍ରଶ୍ନଟା ଯେ କ'ଣ ତାକୁ ଅଜଣା ନଥିଲା । ଗତ ରାତିର ତାର ସେଇ ଅଦ୍ଭୁତ ଆଚରଣ ପାଇଁ ଏ କୈଫିୟତ ଯେ ଦେବାକୁ ହେବ, ବୁଝିପାରି ସେ ମୃଦୁ କଣ୍ଠରେ କହିଲା—କ' କଥା ?

ସୁରେଶ ଆସ୍ତେ ଆସ୍ତେ କହିଲା—କାଲି ମୃଣାଳ ହଠାତ୍ ମୋର ପାଦ ଧୂଳି ନେଇ ଚାଲିଗଲା । ତୁମେ ମଧ୍ୟ ମୁହଁ ଏଡ଼େ କରି ଉଠି ଚାଲିଗଲ । କ'ଣ ତାର ଶାଶୁଙ୍କର ମରଣ କଥା କହିଲି ବୋଲି ?

ଏହି ଅପ୍ରତ୍ୟାଶିତ ପ୍ରଶ୍ନ ହେତୁ ଅଚଳା ଯେପରି ଗୋଟିଏ ବାଟ ଦେଖିବାକୁ ପାଇ ମନେ ମନେ ଖୁସି ହୋଇ କହିଲା—ଏପରି କଥା କ'ଣ ତୁମର କହିବା ଉଚିତ୍ ଥିଲା ? ସେ ବିଚାରୀର ସ୍ୱାମୀ ନାହିଁ । ଶାଶୁଙ୍କର ମୃତ୍ୟୁ ପରେ ପରେ ତାର ନିଃସହାୟ ଅବସ୍ଥା କଥା ଥରକ ପାଇଁ ଭାବି ଦେଖିଛ କି ?

ସୁରେଶ ଅତିଶୟ ଦୁଃଖିତ ହୋଇ କହିଲା—ମୋର ବଡ଼ ଅନ୍ୟାୟ ହୋଇଯାଇଛି । କିନ୍ତୁ ସେ ଯେ ବେଶୀ ଦିନ ଆଉ ବଞ୍ଚିପାରିବେ ନାହିଁ । ଏ କଥା ମୃଣାଳ ତ ନିଜେ ଜାଣେ, ତାଛଡ଼ା ସେ ନିଃସହାୟା ଅବା ହେବ ବାହିଁକି ?

ଅଚଳା ଉତ୍ତର ଦେବାକୁ ଯାଇ କହିଲା—ମୁଁ ମଧ୍ୟ ଏକଥା ଥରକ ପାଇଁ ତାକୁ କହିନାହିଁ । ବରଞ୍ଚ ତୁମେ ତାକୁ ଗାଆଁରେ ସେ ଏକୁଟିଆ ରହିବ କିପରି କହି ନାନାପ୍ରକାର ଭୟ ଦେଖାଇଲ ।

ସୁରେଶ ଅତ୍ୟନ୍ତ ଅନୁତପ୍ତ ହୋଇ ପଚାରିଲା ତାହେଲେ ସେ ଯିବା ପୂର୍ବରୁ ତାକୁ ମୋର ସାହସ ଦେବା ଉଚିତ ଥିଲା ? ତାର ଯେ କୌଣସି ଭୟ ନାହିଁ···ଏକଥା କହୁଥିଲାବେଳେ ତାର କଣ୍ଠ ଅକୃତ୍ରିମ କରୁଣତାରେ ସଜଳ ହୋଇ ଉଠୁଥିଲା ।

ଅଚଳା ତାର ମୁହଁକୁ ଚାହିଁ ହସିଲା । ଏହି ପରଦୁଃଖକାତର ସହୃଦୟ ଯୁବକର ସହସ୍ର ଦୟାର କାହାଣୀ ତାର ଆଖିଆଗରେ ନାଚି ଉଠିଲା । ମୁଣ୍ଡ ହଲାଇ କହିଲା—ନା, ତୁମକୁ ସାହାସ ଦେବାକୁ ହେବନାହିଁ, ଭୟ ଦେଖାଇବାର ମଧ୍ୟ ଆବଶ୍ୟକତା ନାହିଁ । ଯେତେବେଳେ ସେ ସମୟ ଆସିବ ସେତେବେଳେ ମୁଁ ଚୁପ୍ ହୋଇ ବସି ରହିପାରିବ ନାହିଁ ।

ସୁରେଶ ଆତ୍ମବିସ୍ମୃତ ହୋଇ ଅଚଳାର ହାତ ଧରି ପକାଇ କହିଲା — ଏହା ହିଁ ହେଉଛି ତୁମପାଇଁ ଉପଯୁକ୍ତ କର୍ତ୍ତବ୍ୟ । ଆଉ ମୁଁ ମଧ୍ୟ ତୁମଠାରୁ ଏଇଆ ହିଁ ଆଶା କରୁଥିଲି । ଅଚଳା ହଠାତ୍ ଆତ୍ମସ୍ଥ ହୋଇପଡ଼ି ତାର ହାତ ଛଡ଼ାଇ ନେଇ ଲଜ୍ଜାରେ ଦଉଡ଼ି ପଳାଇଲା ।

ଅଚଳାର ଯେଉଁ ଆଗ୍ରହ ମୁହୂର୍ତ୍ତିପୂର୍ବେ ପର ସେବାପାଇଁ ନିର୍ମଳ ଆନନ୍ଦ ଭିତରେ ଜନ୍ମଲାଭ କରିଥିଲା, ଏପରି ଲଜ୍ଜିତ ହୋଇ ପଳାଇଯିବା ହେତୁ ତାହା ଦଣ୍ଡକ ଭିତରେ କଦର୍ଯ୍ୟ, କଳୁଷିତ ହୋଇ ଦେଖାଦେଲା । ଅଚଳାର ଦେହର ରକ୍ତ ବିଦ୍ୟୁତ୍ ବେଗରେ ପ୍ରବାହିତ ହୋଇ ବିନ୍ଦୁ ବିନ୍ଦୁ ହୋଇ ଯେପରି କପାଳରେ ଜମି ଉଠିଲା । ତାର ସର୍ବାଙ୍ଗ ବାରମ୍ବାର ଶିହରି ଉଠିଲା । ପାଖରେ ଥିବା ଚୌକିରେ ସେ ନିର୍ଜ୍ଜୀବପରି ବସିପଡ଼ିଲା । କିଛିକ୍ଷଣ ପରେ ତାର ସେ ଭାବଟା କଟିଗଲା ସତ, କିନ୍ତୁ ପୀଡ଼ିତ ସ୍ୱାମୀଙ୍କର ଶଯ୍ୟା ନିକଟରେ ବସିବାକୁ ଆଜି ସକାଳୁ ସେ ଯେପରି ମନେ ମନେ ଭୟ କରିବାକୁ ଲାଗିଲା ।

ଯିବ ଯିବ ହେଉ ହେଉ ମୃଣାଳର ଆଉ ଦୁଇଦିନ କଟିଗଲା । ମହିମ ପାଖରୁ ବିଦାୟ ନେବାପାଇଁ ଯାଇ ଦେଖିଲା ଆଜି ସେ କରି ଲେଉଟାଇ ବଡ଼ ଅସମୟରେ ଶୋଇ ପଡ଼ିଛି । ସେ କିନ୍ତୁ ଏଇ ମିଥ୍ୟା ନିଦ୍ରାର କାରଣ ନିଶ୍ଚିତ ଭାବରେ ଅନୁମାନ କରି ଚୁପ୍ ଚୁପ କରି କହିଲା—ତାଙ୍କୁ ଆଉ ଉଠାଇବା ଆବଶ୍ୟକ ନାହିଁ । କ'ଣ କହୁଛ; କହିଲ ନୂଆ'ଭଉ ।

ପ୍ରତ୍ୟୁତ୍ତରରେ ଅଚଳାର ଓଠରେ କେବଳ ସାମାନ୍ୟ ବଙ୍କା ହସଟିଏ ଧାରେ ଦେଖାଦେଲା ।

ମୃଣାଳ ମନେ ମନେ ବୁଝିପାରିଲା; ଏ ଛଳନା ତା ବ୍ୟତୀତ ଆଉ ଜଣେ ନାରୀ ମଧ୍ୟ ବୁଝିପାରିଛି । ତାର ବିରୁଦ୍ଧରେ ଅଚଳା ଯେ ଗୋପନ ଈର୍ଷା ପୋଷଣ

କରଛୁ, ଏହାର ଇଙ୍ଗିତ କେଉଁଦିନ ସେ ମହିମକୁ ନ ଦେଇଥିଲେ ସୁଦ୍ଧା ସେ ଅନୁଭବ କରିବାକୁ ଲାଗିଲା ଏହି ଅମୂଳକ ଈର୍ଷା ତାହା ମନକୁ ଯେପରି କଣ୍ଟାଭଳି ବିନ୍ଧିବାକୁ ଲାଗିଛି । ଅତଲା ତଥାପି ଯେ ପୀଡ଼ିତ ଲୋକଟିର ପବିତ୍ର ଦୁର୍ବଳତାକୁ ବିକୃତ କରି ଦେଖିବ, ତାହା ସେ କଳ୍ପନା କରି ପାରିନଥିଲା । ମୁହୂର୍ତ୍ତିକ ପାଇଁ ଅସହ୍ୟ ଜ୍ୱାଳାରେ ତାର ମନ ଅସ୍ଥିର ହୋଇ ଉଠିଲା । କିନ୍ତୁ ସଙ୍ଗେ ସଙ୍ଗେ ନିଜକୁ ସମ୍ଭାଳି ନେଇ ଅତଲା କାନରେ ଚୁପ ଚୁପ କରି କହିଲା- ତୁମେ ତ ସବୁ ଜାଣ ନୂଆଁଉ, ମୋର ହୋଇ ତାଙ୍କଠାରୁ କ୍ଷମା ମାଗିନେବ । କହିବ ଭଲ ହେଲା ପରେ ଯେତେବେଳେ ଗାଆଁକୁ ଫେରିବେ, ମୁଁ ବଞ୍ଚିଥିଲେ ପୁଣି ତାଙ୍କ ସଙ୍ଗେ ଦେଖା କରିପାରିବ ।

ତଳେ କେଦାରବାବୁ ବସିଥିଲେ । ମୃଣାଳ ପ୍ରଣାମ କରି ଠିଆ ହେବାକ୍ଷଣି ତାଙ୍କ ଆଖିରେ ଲୁହ ଦେଖାଦେଲା । ଏହି ଅଳ୍ପ ସମୟ ଭିତରେ ସେ ମଧ୍ୟ ସମସ୍ତଙ୍କ ପରି ଏହି ବିଧବା ଝିଅଟିକୁ ଭଲପାଇ ବସିଥିଲେ । ପିନ୍ଧିଥିବା ଜାମାଦ୍ୱାରା ଲୁହ ପୋଛି ନେଇ କହିଲେ—ମାଆ, ତୋର କରୁଣାରୁ ମୁଁ ମହିମକୁ ଯମ ମୁହଁରୁ ଫେରି ପାଇ ପାରିଛି । ଯେତେବେଳେ ଇଚ୍ଛା ହେବ, ବୁଲିବାକୁ ଆସିବାଭଳି ଏ ବୁଢ଼ା ପୁଅଟିକୁ ଟିକିଏ ଦେଖି ଯିବୁ । ମୋ ଘର ତୋ ପାଇଁ ସଦାବେଳେ ଖୋଲା ରହିଛି ।

ଅତଲା ଅଳ୍ପଦୂରରେ ଠିଆ ହୋଇଥିଲା । ମୃଣାଳ ତାକୁ ଉଦ୍ଦେଶ୍ୟ କରି ହସି ହସି କହିଲା— ଯମ ବାପାର କ'ଣ ସାଧ୍ୟ ଅଛି ତାଙ୍କଠାରୁ ଛଡ଼ାଇ ନେଇ ପାରିବା ପାଇଁ ? ଯେଉଁଦିନ ନୂଆବୋଉଙ୍କ ହାତରେ ତାଙ୍କ ଜିନିଷକୁ ପହଞ୍ଚାଇ ଦେଇ ପାରିଛି, ସେହିଦିନ ଜାଣ ମୋର କାମ ସରିଯାଇଛି ।

କେଦାରବାବୁଙ୍କ ମୁହଁ ସାମାନ୍ୟ ଗମ୍ଭୀର ହୋଇଗଲା । କିନ୍ତୁ ସେ ଆଉ କିଛି କହିଲେ ନାହିଁ ।

ଦୁଇଜଣ ପୁରୁଣା ବୁଢ଼ା କର୍ମଚାରୀ ଓ ଜଣେ ଦାସୀ ମୃଣାଳକୁ ନେଇ ତାର ଶାଶୁଘରେ ପହଞ୍ଚାଇ ଦେବାପାଇଁ ଆଗରୁ ଠିକ୍ ହୋଇ ସାରିଥିଲେ । ଯେତେବେଳେ ସମସ୍ତଙ୍କୁ ନେଇ ଘୋଡ଼ାଗାଡ଼ି ଫାଟକ ପାରହୋଇ ଷ୍ଟେସନ ଅଭିମୁଖରେ ବାହାରି ପଡ଼ିଲା; ସେତେବେଳେ କେଦାରବାବୁଙ୍କ ଅନ୍ତର ଭିତରୁ ଗୋଟାଏ ଦୀର୍ଘ ଶ୍ୱାସ ବାହାରି ଆସିଲା । ଧୀରେ ଧୀରେ ସେ କେବଳ ଏତିକି କହିଲେ—ଅଦ୍ଭୁତ ' ଅପୂର୍ବ ଝିଅଟିଏ !

ସୁରେଶ ମନରେ ବୋଧହୁଏ ଏହି ଭାବନାରେ ପରିପୂର୍ଣ୍ଣ ହୋଇଥିଲା । ସେ କୌଣସି ଆଡ଼କୁ ଲକ୍ଷ୍ୟ ନକରି ଆବେଗରେ ସହସା କହିଉଠିଲା—ମୁଁ କେଉଁ-ଠାରେ ଏପରି ଝିଅଟିଏ ଦେଖିନାହିଁ କେଦାରବାବୁ । ଏପରି ମଧୁର କଥା ମଧ୍ୟ ଶୁଣିନାହିଁ, ଏପରି ନିଖୁଣ ଭାବରେ କାମ କରିବା ମଧ୍ୟ ଦେଖିନାହିଁ । ଯେଉଁ କାମ ତାକୁ ଦିଅ ସେ ଏପରି ଭାବରେ କରି ବସିବ ଯେ ମନେହେବ ଯେପରି ତାର ଏହିପରି ଅଭ୍ୟାସ ଚିରଦିନ ରହି ଆସିଛି । ଅଥଚ ଆଶ୍ଚର୍ଯ୍ୟ ହେବାକୁ ହୁଏ ଯେ ସେ ଗାଆଁ ବାହାରକୁ କେବେ ଦିନକପାଇଁ ସୁଦ୍ଧା ଯାଇନାହିଁ ।

କେଦାରବାବୁ ଏହା ସତ ବୋଲି ଜାଣିଥିଲେ ସୁଦ୍ଧା ଅଶ୍ଚର୍ଯ୍ୟ ହେଲା ପରି କହିଲେ—କ'ଣ କହୁଛ ସୁରେଶ ?

ସୁରେଶ କହିଲା—ପ୍ରକୃତରେ ହିଁ ସେଇଆ । ତାର ମୁହଁକୁ ଚାହିଁ ଚାହିଁ ବେଳେ ବେଳେ ମୋର ମନେହୁଏ ଏଇ ଯେ ଜନ୍ମ ଜନ୍ମାନ୍ତର ସଂସ୍କାର ବୋଲି ଗୋଟାଏ ପ୍ରବାଦ ଅଛି କେଜାଣି ତାହା ବୋଧହୁଏ ସତ; କହି ହସିବାକୁ ଲାଗିଲା ।

ପରକାଳ ସମ୍ବନ୍ଧୀୟ ପ୍ରସଙ୍ଗ ବିଷୟରେ କେଦାରବାବୁ ଚନ୍ତାକରି କିଛିକ୍ଷଣ ଅଟକି ଯାଇ କହିଉଠିଲେ, ସେ ଯାହାହେଉ, ଏ ଝିଅଟି ସ୍ତ୍ରୀଲୋକମାନଙ୍କ ଭିତରେ ଗୋଟିଏ ଅମୂଲ୍ୟ ରତ୍ନ । ଏହାକୁ ସାରାଜୀବନ ଏପରି ଜୀବନ୍ମୃତ କରି ରଖିବା କେବଳ ପାପ ନୁହେଁ; ମହାପାପ । ଏ ମୋର ଝିଅ ହୋଇଥିଲେ ମୁଁ କୌଣସିମତେ ନିଶ୍ଚେଷ୍ଟ ହୋଇ ରହି ପାରି ନଥାନ୍ତି ।

ସୁରେଶ ଆଶ୍ଚର୍ଯ୍ୟ ହୋଇ ପଚାରିଲା—କ'ଣ କରିଥାନ୍ତେ ?

ବୃଦ୍ଧ ଦୃଢ଼ କଣ୍ଠରେ କହିଲେ—ମୁଁ ଆଉଥରେ ବିବାହ ଦିଆଇ ଦେଇଥାନ୍ତି । ଗୋଟାଏ ବୁଢ଼ା ସଙ୍ଗେ ବିବାହ ଦେଇ ଉପେକ୍ଷିଣୀ; କୋଡ଼ିଏ ବର୍ଷରେ ଝିଅକୁ ଯିଏ ସନ୍ନ୍ୟାସିନୀ ସଜାଇଛି, ସେମାନେ ତାହାର ମିତ୍ର ନୁହଁନ୍ତି । ଶତ୍ରୁ । ଶତ୍ରୁର କାର୍ଯ୍ୟକୁ ମୁଁ କୌଣସି ମତେ ନ୍ୟାୟ ସଙ୍ଗତ ବୋଲି ସ୍ୱୀକାର କରି ନଥାନ୍ତି ନାହିଁ ।

କିଛିକ୍ଷଣ ନୀରବ ରହିବା ପରେ ପୁଣି ସେ କହିବାକୁ ଲାଗିଲେ—ଏହା ବ୍ୟତୀତ ତାର ସ୍ୱାମୀର ବୁଦ୍ଧିକୁ ଟିକିଏ ବିଚାର କରି ଦେଖିତ ସୁରେଶ, ଯେଉଁ ଲୋକଟାର ଦୁଇ ଦୁଇଟା ସ୍ତ୍ରୀ ମରିଯିବା ପରେ ପଚାଶ ବର୍ଷ ବୟସରେ ଯେତେବେଳେ ବିବାହ କରିବାକୁ ରାଜି ହେଲା ସେତେବେଳେ ନିଜର ସୁଖ ସୁବିଧା ବ୍ୟତୀତ ସ୍ତ୍ରୀର ଭବିଷ୍ୟତ ପ୍ରତି ସେ ପାଷାଣ୍ଡ କ'ଣ ତିଳେମାତ୍ର ଦୃଷ୍ଟିପାତ କରି ପାରିଥିଲା କି ?

ସୁରେଶକୁ ନୀରବ ରହୁଥିବାର ଦେଖି ବୃଦ୍ଧ ଅଧିକ ଉତ୍ତେଜିତ ହୋଇ ଉଠିଲେ । କହିଲେ, ନା ସୁରେଶ, ମୁଁ ବିଧବା ବିବାହର ଭଲ-ମନ୍ଦ ବିଷୟରେ ତର୍କ କରିବାକୁ ଚାହେଁ ନାହିଁ । କିନ୍ତୁ ଏ କ୍ଷେତ୍ରରେ ତୁମର ସମସ୍ତ ହିନ୍ଦୁ ସମାଜ "ନା" କହି ଚିତ୍କାର କରିଲେ ସୁଦ୍ଧା ମାନିବାକୁ ପ୍ରସ୍ତୁତ ନୁହେ ଯେ ଏଭଳି ଗ୍ରେଟ ଝିଅଟା ପ୍ରତି ଉଚିତ୍ ବିଚାର କରାହୋଇଛି । ତାର ଏପରି କେହି ନାହାଁନ୍ତି ଯାହା ମୁହଁକୁ ଚାହିଁ ସେ ଗୋଟାଏ ଦିନ ସୁଦ୍ଧା କଟାଇ ଦେଇ ପାରିବ । ଜୀବନଟାକୁ ତୁମେମାନେ କ'ଣ ଗୋଟାଏ ଖେଳ ବୋଲି ମନେ କରିଛ ସୁରେଶ ? ବ୍ରହ୍ମଚର୍ଯ୍ୟ, ବ୍ରହ୍ମଚର୍ଯ୍ୟ ବୋଲି ଚିତ୍କାର କରି ଉଠିଲେ ସାରା ଦୁନିଆଁଟା କଦାପି ଏଥିରେ ରାତାରାତି ବଦଳି ଯାଇ ତପୋବନ ପାଲଟି ଯିବ ନାହିଁ । ଝିଅଟାର ପିନ୍ଧା ଶାଢ଼ୀଟାକୁ ଦେଖିଲେ ମୋର ହୃଦୟ ଫାଟି ଯାଉଛି ।

ସୁରେଶ ଉତ୍ତର ଦେଲନାହିଁ କି ମୁହଁଟେକି ସୁଦ୍ଧା ଚାହିଁଲା ନାହିଁ । କିନ୍ତୁ କଣେଇ କରି ଚାହିଁ ଦେଖିଲା ଦ୍ୱାରବନ୍ଧ ନିକଟରେ ଭରଦେଇ ଅଚଳା ଏତେ ସମୟ ଧରି ଗୋଟିଏ ମୂର୍ତ୍ତିପରି ଠିଆହୋଇ ରହିଥିଲା । ସେ ଆଉ ସେଠାରେ ନାହିଁ । କେତେବେଳେ ଚୁପ୍ କରି ଖସି ଚାଲିଯାଇଛି ।

ମୃଣାଳ ଚାଲିଗଲା ପରେ ଅଚଳା ଯେତେବେଳେ ସୁରେଶ ମୁହଁକୁ ଚାହିଁଦିଏ ସେତେବେଳେ ତାର କିପରି ମନେ ହେଲା, ସୁରେଶ ଅନ୍ୟମନସ୍କ ହୋଇ ଉଠିଛି ଏବଂ କାହାପାଇଁ ଯେପରି ତାର ଅନ୍ତର ଅନବରତ କାନ୍ଦି ଉଠୁଛି......

ଦୁଇଦିନ ପରେ ଦିନେ ଅପରାହ୍ନ ସମୟରେ ସୁରେଶ ତଳ ବାରଣ୍ଡାର କୋଣରେ ଖରାରେ ଚୌକି ଉପରେ ବସି କ'ଣ ବହି ଖଣ୍ଡିଏ ଧରି ପଢୁଥିଲା । ହଠାତ୍ ପାଦଶବ୍ଦ ଶୁଣିପାରି ଚାହିଁ ଦେଖିଲା; ଅଚଳା ତାପାଇଁ ଚା ଧରି ନିଜେ ଆସୁଛି । ଏପରି ଘଟଣା ଏହାପୂର୍ବରୁ କେବେ ଘଟିନାହିଁ । ସେଥିପାଇଁ ସେ ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନକଲା—ବେହେରା କୁଆଡ଼େ ଗଲା କି ? ଆଜି ତୁମେ କଣ ଚାହା ନେଇ ଆସିଲ ?

ଅଚଳା ଏ ପ୍ରଶ୍ନର କୌଣସି ଉତ୍ତର ନ ଦେଇ ଗୋଟିଏ ଗ୍ରେଟ ଟିପଇ ଚୌକି ନିକଟକୁ ଟାଣି ଆଣି ଚାହା କପ୍‌ଟି ଥୋଇଦେଲା ଏବଂ ଆଉ ଖଣ୍ଡିଏ ଚୌକି ଟାଣିନେଇ ନିଜେ ବସିପଡ଼ିଲା ।

ଏହି ଅଭିନବ ଆଚରଣ ହେତୁ ଅଚଳାକୁ ଦ୍ୱିତୀୟଥର ପାଇଁ ପ୍ରଶ୍ନ ପଚାରିବା ପାଇଁ ସୁରେଶର ସାହାସ ହେଲାନାହିଁ । କେବଳ ଚାହା କପ୍‌ଟି ହାତରେ ତୋଳି ଧରିଲା ।

କିଛି ସମୟ ସ୍ତବ୍ଧ ଭାବରେ ବସି ରହିବା ପରେ ଅଚଳା ମୃଦୁ ସ୍ୱରରେ ପ୍ରଶ୍ନ କଲା—ଆଚ୍ଛା ସୁରେଶବାବୁ, ଆପଣ କ'ଣ ବିଧବା ବିବାହକୁ ଭଲ ବୋଲି ମନେ କରନ୍ତି ନାହିଁ ?

ସୁରେଶ ଗୁହା କପ୍‌ଟାକୁ ଓଠକୁ ନ ନେଇ ଉତ୍ତର ଦେଲା—କରେ । ତାର କାରଣ, ଆଜିପର୍ଯ୍ୟନ୍ତ ଆମ ସମାଜରୁ କୁସଂସ୍କାର ଦୂର ହୋଇ ପାରିନାହିଁ ।

ଅଚଳା ଆଉ ମୁହୂର୍ତ୍ତେ ମାତ୍ର ବିଳମ୍ବ ନକରି କହିଉଠିଲା ତାହାହେଲେ ମୃଣାଳ ଭଳି ଝିଅକୁ ବିବାହ କରିବାପାଇଁ ଆପଣଙ୍କର ତ ଛଳେମାତ୍ର ଆପତ୍ତି ରହିବା ଉଚିତ୍ ନୁହେଁ ।

ସୁରେଶ ଗୁହା କପ୍‌ଟା ହାତରେ ଧରି, ଦୃଢ଼ ହୋଇ ବସି କହିଲା—ଏ କଥାର ଅର୍ଥ ?

ଅଚଳାର ମୁହଁରେ କିମ୍ବା କଣ୍ଠସ୍ୱରରେ କୌଣସି ପ୍ରକାର ଉତ୍ତେଜନା ପ୍ରକାଶ ପାଇଲା ନାହିଁ । ବେଶ୍ ସହଜ ଭାବରେ ସେ କହିଲା—ଆପଣଙ୍କ ନିକଟରେ ମୁଁ ଅନେକ ଋଣରେ ଋଣୀ । ଏହା ବ୍ୟତୀତ ମୁଁ ଆପଣଙ୍କର ମଙ୍ଗଳାଭିଳାଷିଣୀ । ଆପଣଙ୍କୁ ମୁଁ ଜଣେ ସରଳ, ସହଜ ଏବଂ ସ୍ୱାଭାବିକ ସଂସାରୀ ରୂପେ ଦେଖିବାକୁ ଇଚ୍ଛାକରେ । ଯଦି ଆପଣ ବିବାହ କରିବାକୁ ରାଜି ଥିଲେ । ଆଜି ମୋର ଏଇ ଏକାନ୍ତ ଅନୁରୋଧକୁ ଆପଣ ଗ୍ରହଣ କରନ୍ତୁ ।

ଏକ ନିଃଶ୍ୱାସରେ ମୁଖସ୍ଥ କଲାଭଳି ଏତେ ଗୁଡ଼ାଏ କଥା କହି ସାରି ଅଚଳା ଦମ୍ ନେଲା ।

ସୁରେଶ ପଥର ଗଢ଼ା ମୂର୍ତ୍ତିପରି ଅନେକ କ୍ଷଣ ଧରି ସ୍ଥିର ହୋଇ ବସି ରହିବା ପରେ କହିଲା—ଏଥିରେ କ'ଣ ସତରେ ତୁମେ ଖୁସି ହେବ ?

ଅଚଳା କହିଲା—ହଁ ।

: ସେ ରାଜି ହେବ ?

: ମୋର ତ ବିଶ୍ୱାସ ଅଛି ।

ସୁରେଶ ମଳିନ ଭାବରେ ହସଟିଏ ହସିଦେଇ କହିଲା—ମୋର କିନ୍ତୁ ସେଥିରେ ବିଶ୍ୱାସ ନାହିଁ । ବହିରେ ପଢ଼ିଛ ତ ସହି ମରଣ ଯଦି କେଉଁ କେଉଁ ସତୀ ହସି ହସି ପୋଡ଼ିହୋଇମରିଛନ୍ତି । ମୃଣାଳ ହେଉଛି ସେହି ଶ୍ରେଣୀର । ଏମାନଙ୍କର ହାତ ଗୋଡ଼ ଗୋଟାକ ପରେ ଗୋଟାଏ କାଟି ପକାଇଲେ ସୁଦ୍ଧା ଏମାନଙ୍କୁ ଆଉଥରେ ବିବାହ କରିବା ପାଇଁ ରାଜି କରାଇବା

ମୁସ୍କିଲ ବ୍ୟାପାର । ଏଭଳି ଅସାଧ୍ୟ ସାଧନ କରିବାକୁ ଯାଇ ମୋତେ ତାହା ନିକଟରେ ଖ୍ରେଟକରି ହେବା ନାହିଁ ଅଚଳା । ସେ ମୋତେ ଭଲ ବୋଲି ଭାବନ୍ତୁ । ତାର ନିକଟରେ ମୋର ଏଇ ଟିକକ ସମ୍ମାନ ବଜାୟ ରଖିବାକୁ ମୁଁ ଚାହେଁ ।

ସ୍ୱହୁଁ ଗୃହ୍ମୁଁ ଅଚଳାର ସାରା ମୁହଁଟା ରାଗରେ ନାଲି ହୋଇ ଉଠିଲା । ସୁରେଶର କଥା ଶେଷହେବାମାତ୍ରେ କଠିନ କଣ୍ଠରେ ସେ କହି ଉଠିଲା— ସଂସାରରେ କେବଳ ମୃଣାଳ ହିଁ ସତୀ ନୁହେଁ, ସୁରେଶବାବୁ । ଏପରି ସତୀ ମଧ୍ୟ ଅଛନ୍ତି ଯେଉଁମାନେ ମନେ ମନେ ଯାହାକୁ ସ୍ୱାମୀ ରୂପେ ଥରକପାଇଁ ବରଣ କରି ବସିଲେ, ସହସ୍ର କୋଟି ପ୍ରଲୋଭନ ଦେଖାଇଲେ ସୁଦ୍ଧା ସେମାନଙ୍କୁ ସେ…ାନଙ୍କର ନିଷ୍ଠାରୁ ଟଳାଇ ହୁଏ ନାହିଁ । ଏହି ବିଷୟ ଆପଣ ଗ୍ରନ୍ଥ ବହିରେ ନ ପଢ଼ିଲେ ମଧ୍ୟ ସତ ବୋଲି ମନେ ରଖିବାକୁ ମୋର ଅନୁରୋଧ ସୁରେଶବାବୁ, କହି ସ୍ତମ୍ଭିତ, ଅଭିଭୂତ ସୁରେଶ ପ୍ରତି ଥରେ ମାତ୍ର ନ ଚାହିଁ ଏକ ଗର୍ବିତା ରମଣୀ ପରି ସେଠାରୁ ବାହାରି ଚାଲିଗଲା ।

ଜଣଙ୍କର ଉଚ୍ଛ୍ୱସିତ ଅକପଟ ପ୍ରଶଂସା ମଧ୍ୟରେ ଆଉ ଜଣଙ୍କର କେତେବଡ଼ କଠୋର ଆଘାତ ଓ ଅପମାନ ଲୁଚି ରହିପାରେ ତାହା ବକ୍ତା ଓ ଶ୍ରୋତା ଉଭୟେ ବୋଧହୁଏ କ୍ଷଣକ ପୂର୍ବରୁ ଜାଣି ନ ଥିଲେ । ସୁରେଶ ଚାହା କପ୍ ହାତରେ ଧରି ଅନ୍ୟମନସ୍କ ହୋଇ ବସିରହିଲା । ଅଚଳା ତେବେ ତାର ଶୋଇବା ଘରେ ଆସ୍ତେ କରି କବାଟ ବନ୍ଦକରି ତକିଆରେ ମୁହଁ ଗୁଞ୍ଜି ମର୍ମାନ୍ତିକ କ୍ରନ୍ଦନର ଦୁର୍ନିବାର ବେଗକୁ ବନ୍ଦ କରିବାରେ ଲାଗିଲା । ପାଖରେ ମହିମର ଶୋଇବା ଘର । କାଜେ ସେ ମଧ୍ୟ ଏହି କ୍ରନ୍ଦନର କୌଣସି ସୋର ଶବ୍ଦ ଶୁଣିପାରିଲା ନାହିଁ ! ପ୍ରକୃତ ପକ୍ଷରେ ଅନ୍ତର୍ଯାମୀ ଭଗବାନଙ୍କ ବ୍ୟତୀତ ସେ କାନ୍ଦର ଇତିହାସ ଆଉ ଦ୍ୱିତୀୟବ୍ୟକ୍ତି କେହି ହେଲେ ଜାଣିପାରିଲେ ନାହିଁ ।

ଅଚଳା କିନ୍ତୁ ଏହି ଗଭୀର ଦୁଃଖ ମଧ୍ୟରେ ଏକ ନୂତନତତ୍ତ୍ୱର ସନ୍ଧାନ ପାଇ ପାରିଲା । ନାରୀ ଜୀବନରେ ସତୀତ୍ୱ ଯେ କେତେବଡ଼ ସମ୍ପଦ, ଏତେଦିନ ପରେ ତାହାର ପରିପୂର୍ଣ୍ଣ ମହିମା ଆଜି ଯେପରି ତାର ଆଖି ଆଗରେ ପରିଷ୍କାର ଭାବରେ ଦେଖାଦେଲା । ସେଦିନ ସୁରେଶ ସହିତ ଆସିବା ହେତୁ ବାବାଙ୍କର ସନ୍ଦିଗ୍ଧ ଦୃଷ୍ଟିକୁ ସେ ଅନ୍ୟାୟ ଉପଦ୍ରବ ବୋଲି ମନେକରି

ସତ୍ୱପରେନାସ୍ତି କ୍ଷୁବ୍ଧ ଓ ବ୍ୟଥିତ ହୋଇଥିଲା । କିନ୍ତୁ ଆଜି ହଠାତ୍ ସେହି ଧର୍ମଛଡ଼ା ପରସ୍ତ୍ରୀ ଲୁବ୍‌ଧ ସୁରେଶଙ୍କୁ ଯେତେବେଳେ ସତୀତ୍ୱର ପାଦ ପଦ୍ମତଳେ ଏପରି ମୁଣ୍ଡ ନୁଆଁଇ ପ୍ରଣାମ କରିବାର ଦେଖିଲା, ସେତେବେଳେ ନିଜର ପ୍ରକୃତ ସ୍ଥାନଟା ଆଉ ତାର ନିଜ ଦୃଷ୍ଟିରେ ଲୁଚି ରହିପାରିଲା ନାହିଁ ।

ଏହାଛଡ଼ା ସୁସ୍ପଷ୍ଟ ବାକ୍ୟର ଶକ୍ତିଯେ କେତେ ବିରାଟ, ଆଜି ଏହି ସତ୍ୟ ସେ ପ୍ରଥମେ ଉପଲବ୍ଧି କରିପାରିଲା । ସେ ଶିକ୍ଷିତା ରମଣୀ । ସ୍ୱାମୀଙ୍କ ପ୍ରତି କାୟ ମନ ନିଷ୍ଠାର ସହିତ ଯେଉଁ ସତୀତ୍ୱ, ଏକଥା ତାହାକୁ ଅଜଣା ନଥିଲା । କେବଳ ଦେହ, କିମ୍ବା କେବଳ ମନ କୌଣସିଟାରେ ସେ ଯେ ସଂପୂର୍ଣ୍ଣ ନୁହେଁ ଏହା ସେ ଭଲକରି ଜାଣିଥିଲା । ତଥାପି ମନ ତାହାର ଯେତେବେଳେ ବିଚଳିତ ହୋଇ ଉଠି ସ୍ୱାମୀଙ୍କୁ ଭଲ ନପାଏ, କିମ୍ବା ଯେତେବେଳେ ଏକଥା ଉଚ୍ଚାରଣ କରିବାକୁ ସଂକୋଚ ବୋଧ କରେ. ସେତେବେଳେ କିନ୍ତୁ କୌଣସି ଦିନ ତାହା ପ୍ରତି ହୋଇଥିବା ଅପମାନକୁ ସେ ଶ୍ରେଷ୍ଠ ବୋଲି ମନେ କରେ ନାହିଁ । କିନ୍ତୁ ଆଜି ସୁରେଶ ମୁହଁର ସ୍ପଷ୍ଟବାଣୀ ଯେତେବେଳେ ତାର ନାମ ସଙ୍ଗେ ଅସତୀ ଶବ୍ଦଟା ଯୋଗ କରିବାକୁ ଗ୍ରହିଲା ସେତେବେଳେ ତାର ଅନ୍ତରାତ୍ମା ଯେପରି ଏକ ବୁକୁ ଫଟା ବେଦନାର ଆର୍ତ୍ତିସ୍ୱରରେ ଚିତ୍କାର କରି କାନ୍ଦି ଉଠିଲା ।

ତାହା ବୋଲି ଯେ ମୃଣାଳ ପ୍ରତି ତାର ଶ୍ରଦ୍ଧା ବଢ଼ିଲା, ତାହାନୁହେଁ । କିନ୍ତୁ ଏହି ଝିଅଟି ହେତୁ ସେ ଯେଉଁ ସୁଜ୍ଞାନ ଫେରି ପାଇଲା, ଏହାକୁ ଆଉ ଜୀବନରେ କଦାପି ଭୁଲି ପାରିବ ନାହିଁ, ଏକଥାକୁ ନିଜ ପାଖରେ ନିଜେ ବାରମ୍ବାର ପ୍ରତିଜ୍ଞା କରିବାକୁ ଲାଗିଲା ।

ବାହାରେ ବାପାଙ୍କର ହାତ ବାଡ଼ିର ଠକ୍ ଠକ୍ ଶବ୍ଦ, ଏବଂ ପଛରେ ସୁରେଶର ପାଦ ଶବ୍ଦ ସେ ଶୁଣି ପାରିଲା । ଜାଣି ପାରିଲା ମହିମଙ୍କୁ ଦେଖିବାକୁ ସେମାନେ ଯାଉଛନ୍ତି । ଅଳ୍ପ ସମୟ ପରେ ବାବାଙ୍କ ମୁହଁରେ ତାର ନାମ ଶୁଣି ସେ ଭଲ କରି ଆଖି ଆଉ ମୁହଁକୁ ଲୁଗାରେ ପୋଛିପୋଛି କରି ମହିମ ଘରେ ଯାଇ ପହଞ୍ଚିଲା ।

କେଦାର ବାବୁ ତାର ମୁହଁକୁ ଗ୍ରହିଁଦେଇ ବ୍ୟସ୍ତ ହୋଇ କହି ଉଠିଲେ—ଆଜି ପୁଣି କ'ଣ ହେଲା ? ଦୁଇଟା ବେଳେ ମହିମକୁ ସୋରୁଆ ଖାଇବାକୁ ଦେବାର କଥା । ବର୍ତ୍ତମାନ ଆସି ତିନି ଗୁରିଟା ବାଜିଲାଣି । ଏ କ'ଣ ତୋ ଆଖି ମୁହଁ ଏପରି ଦିଶୁଛି କାହିଁକି ? କ'ଣ ଶୋଇ ପଡ଼ିଥିଲୁ କି ?

ଅଚଳା କୌଣସି ଉତ୍ତର ନ ଦେଇ ସେଠାରୁ ଚାଲିଗଲା । ରୋଗୀକୁ ସୋରୁଆ ଖୁଆଇବାକୁ ଦେବାର ବ୍ୟବସ୍ଥା ହେବାପରେ ଏହି କାମ ମୃଣାଳ କରି ଆସୁଥିଲା । ସେ ଚାଲିଯିବା ପରେ ଏହି ଦାୟିତ୍ୱଟା ଅଚଳା ଉପରେ ନ୍ୟସ୍ତ କରାଯାଇଥିଲା । ସବୁଦିନ ଚାକର ସୋରୁଆ ଚୂଲିରେ ବସାଇ ଦିଏ ଏବଂ ସେ ଅନୁମାନକରି କିଛି ସମୟ ପରେ ଚୂଲିରୁ ଓହ୍ଲାଇ ଦିଏ । କିନ୍ତୁ ଆଜି ତାର ସେ କଥା ଆଦୌ ମନେ ନାହିଁ । ରୋଷଘରେ ପହଞ୍ଚି ଦେଖିଲା, ନିଆଁ ବହୁତ ବେଳୁ ଲିଭି ଗଲାଣି ଏବଂ ମାଂସ ତରକାରୀ ପୋଡ଼ିଯାଇ ଡେକ୍‌ଚିରେ ଶୁଖିଲାଗି ରହିଛି ।

ବହୁ ସମୟ ଧରି ସେହି ସ୍ଥାନରେ ସ୍ତବ୍ଧ ହୋଇ ଠିଆ ହୋଇ ରହି ଯେତେବେଳେ ସେ ଫେରି ଆସିଲା ସେତେବେଳେ ଏକଥା ଶୁଣି କେଦାରବାବୁ ଅଚଳାକୁ କିଛି ନକହି କେବଳ ସୁରେଶକୁ ଲକ୍ଷ୍ୟ କରି କହିଲେ ସେତେବେଳେ ତ ତୁମକୁ କହିଥିଲି ସୁରେଶ, ବର୍ତ୍ତମାନ ଜଣେ ଭଲ ନର୍ସ ନରଖିଲେ ମହିମକୁ ଆମେ ବଞ୍ଚାଇ ପାରିବା ନାହିଁ । ମୋ ଅପେକ୍ଷା ମୋ ଝିଅକୁ ତୁମେ କଣ ବେଶୀ ଜାଣିଥିଲ ?

ସୁରେଶ ନୀରବ ହୋଇ ବସି ରହିଲା । କିନ୍ତୁ ମହିମ ଯେ ଏତେ ସମୟ ଧରି ସ୍ତ୍ରୀର ମଳୀନ ଏବଂ ଲଜ୍ଜିତ ମୁହଁକୁ ଚାହିଁ ରହିଥିଲା, ତାହା କେହି ଦେଖି ପାରି ନ ଥିଲେ । ସେ ଧୀରେ ଧୀରେ କହିଲା—ନର୍ସ ହାତରୁ ଔଷଧ ଖାଇବାକୁ ମୋତେ ଭଲ ଲାଗେ ନାହିଁ । ତଥାପି ଅଚଳାକୁ ସାହାଯ୍ୟ କରିବା ପାଇଁ ଜଣେ ଲୋକ ଦିଅନ୍ତୁ । କାଲି, ପରଶିଦିନ ଦୁଇରାତି ସେ ଅନିଦ୍ରା ହୋଇ ରହିଛି । ଦିନବେଳେ ସାମାନ୍ୟ ବିଶ୍ରାମ ନ ପାଇଲେ କଳର ମଣିଷଠାରୁ କଣ ଠିକ୍ କାମ ଆଶା କରିହେବ ?

କଥାଟା ଅକ୍ଷରେ ଅକ୍ଷରେ ସତ ନ ହେଲେ ମଧ୍ୟ ମିଛ ନୁହେଁ । ସୁରେଶ ଖୁସି ହୋଇ ଅଚଳାକୁ ଚାହିଁବା ସମୟରେ କେଦାର ବାବୁ ନିଜର କର୍କଶ ବଚନ ହେତୁ ଲଜ୍ଜ୍ୟା ପାଇ ଆଉ କିଛି କହିବାକୁ ଉପକ୍ରମ କରିବା ଦେଖି ଅଚଳା ସେ ସ୍ଥାନ ଛାଡ଼ି ଚାଲିଗଲା ।

ରାତିରେ ଅଚଳାର ବହୁତ ଥର ଇଚ୍ଛା ହୋଇଛି ରୁଗ୍‌ଣ ସ୍ୱାମୀଙ୍କ ନିକଟରେ ବହୁ ଅପରାଧ ପାଇଁ କାନ୍ଦି କାନ୍ଦି କ୍ଷମା ମାଗିନେଇ ଥରକ ପାଇଁ ପଚାରି ବସିବ ଯେ ତାହାଭଳି ପାପୀଷ୍ଠାକୁ ଚିରସ୍ମାର ମୂହଁରୁ ସେ ବଞ୍ଚାଇଲେ କାହିଁକି ? କିନ୍ତୁ ନିଦାରୁଣ ଲଜ୍ଜ୍ୟା ହେତୁ କୌଣସି ମତେ ଏହି ପ୍ରଶ୍ନ ତାର ତୁଣ୍ଡରୁ ବାହାରି ପାରିଲା ନାହିଁ ।

ସୁରେଶର ପ୍ରତ୍ୟହ କାର୍ଯ୍ୟ ଥିଲା ରାତିରେ ଶୋଇବାକୁ ଯିବା ସମୟରେ ଥରକ ପାଇଁ ମଧୁମ ଘରକୁ ପଶିଆସି ତାର ପ୍ରୟୋଜନୀୟ ସମସ୍ତ ଜିନିଷ ଠିକ୍ ଅଛିକି ନାହିଁ ତଦାରଖ କରିବା । ମୃଣାଳ ଥିଲା ବେଳେ ସେ ଘର ଭିତରେ ଅନେକ ଥର ଯିବା ଆସିବା କରୁଥିଲା ଏବଂ ଏହା ତା ପକ୍ଷରେ ସେତେବେଳେ ଆବଶ୍ୟକ ଥିଲା । କିନ୍ତୁ କେତେଦିନ ପରେ ଦେଖାଗଲା, ସେ ଆଉ ସହଜରେ ସେ ଘରକୁ ଯାଉନାହିଁ । ଆବଶ୍ୟକ ହେଲେ ଦାସୀକୁ ପଠାଇ ଖବର ନିଏ । କେବଳ ସନ୍ଧ୍ୟା ପରେ ଥରକ ପାଇଁ ମଧୁମ ନିକଟକୁ ଯାଇ ଖବର ବୁଝି ଆସେ । ତାର ଏହି ନୂତନ ଆଚରଣ ସମସ୍ତଙ୍କ ଭିତରେ ପ୍ରଥମେ ଅଚଳାର ଦୃଷ୍ଟି ଆକର୍ଷଣ କରିଥିଲା । କିନ୍ତୁ ଏହି ବିଷୟରେ ସାମାନ୍ୟ ମନ୍ତବ୍ୟ ପ୍ରକାଶ କରିବା ତାହା ପକ୍ଷରେ ସମ୍ଭବ-ପର ନଥିଲା । ସେଥିପାଇଁ ସେ ଚୁପ୍ ହୋଇଥିଲା । ମଧୁମ କିନ୍ତୁ ଯେତେବେଳେ ଏ ବିଷୟ ସେଦିନ ଉଲ୍ଲେଖ କଲା, ସେତେବେଳେ ତାକୁ ବାଧ୍ୟ ହୋଇ କହିବାକୁ ପଡ଼ିଥିଲା ଯେ—ଆଜିକାଲି ସେ ଆଉ ଅଧିକାଂଶ ସମୟ ଘରେ ରହୁ ନାହାନ୍ତି ଏବଂ ଏହାର କାରଣ ମଧ୍ୟ ତାକୁ ଜଣା ନାହିଁ ।

ମଧୁମ ଚୁପ୍ ହୋଇ ଶୁଣିଲା କିନ୍ତୁ କୌଣସି ମତାମତ ପ୍ରକାଶ କଲା ନାହିଁ ।

ପରଦିନ ସକାଳେ ଅଚଳା ସିଡ଼ିରେ ତଳକୁ ଓହ୍ଲାଉଥିଲା ଏବଂ ସୁରେଶ ମଧ୍ୟ କୌଣସି ଏକ କାମରେ ଉପରକୁ ଯାଉଥିଲା ମୁହାମୁହିଁ ହୋଇଯିବାକ୍ଷଣି ସୁରେଶ ଅନ୍ୟ ଦିଗକୁ ମୁହଁ ବୁଲାଇ ନେଲା । ସେ ଯେ ସଦାବେଳେ ଅଚଳାକୁ ଏଡ଼େଇ କରି ବୁଲୁଛି ଏଥିରେ ତାର କୌଣସି ସନ୍ଦେହ ରହିଲା ନାହିଁ । ଦିନେ ଯେଉଁ ମନ ଅଚଳାର ସର୍ବୋତ ଭାବରେ କାମନା କରିଥିଲା ଆଜି ସେହି ମନ ସୁରେଶର ଏଇଭଳି ଆଚରଣରେ ବ୍ୟଥିତ ହୋଇ ଉଠିଲା ।

ସମସ୍ତ କାମଦାମ ଉଠାବସା, ମଧ୍ୟରେ ଅଚଳାର ନିଭୃତ ହୃଦୟ ତଳେ ଯେଉଁ କଥାଟା ଅନୁକ୍ଷଣ ଜ୍ୱାଳା କରିବାକୁ ଲାଗିଲା, ତାହା ହେଉଛି; ସୁରେଶ ମନ ଭିତରେ ଯେ ଗୋଟାଏ ପରିବର୍ତ୍ତନ କାର୍ଯ୍ୟ କରି ବୁଲୁଛି, ଯାହା ସହିତ ତା ନିଜର କୌଣସି ସମ୍ପର୍କ ନାହିଁ । ଯେଉଁ ଉଦ୍ଦାମ ଭଲ ପାଇବା ଦିନେ ତାହା ଭିତରେ ଜନ୍ମଲାଭ କରି ବଡ଼ି ହୋଇ ଉଠିଥିଲା, ସେ ଆଜି ଜୀର୍ଣ୍ଣ ଆଶ୍ରୟ ଭଳି

ତାକୁ ତ୍ୟାଗ କରି ଅନ୍ୟତ୍ର ଚାଲିଯାଇଛି । ନିଜକୁ ନିଜେ ସେ ସହସ୍ର ଧିକ୍କାର, ସହସ୍ର କଟୂକ୍ତି କରି ଲାଞ୍ଛନା ଦେଉଥିଲେ ସୁଦ୍ଧା ତଥାପି ଏହି ବିଦାୟ ବେଦନାକୁ କିନ୍ତୁ କୌଣସି ମତେ ମନରୁ ଦୂର କରି ପାରିଲା ନାହିଁ । ଏପରିକି ମଝିରେ ମଝିରେ ବିକଟ ଭୟରେ ସର୍ବାଙ୍ଗ କଣ୍ଟକିତ କରି ଏହିଭଳି ସନ୍ଦେହ ଉଙ୍କି ମାରିବାକୁ ଲାଗିଲା ଯେ; ନିଜର ଅଜ୍ଞାତସାରରେ ସେ ଗୋପନରେ ସୁରେଶଙ୍କୁ ଭଲ ପାଇ ବସିଛି କି ନାହିଁ ? ପ୍ରତ୍ୟେକ ଥର ଏହି ଆଶଙ୍କାକୁ ସେ ଅସଙ୍ଗତ, ଅମୂଳକ କହି ଉପହାସ କରି ଉଡ଼ାଇ ଦେବାକୁ ଲାଗିଲା । ଆପଣାକୁ ଆପେ ବିଦ୍ରୂପ କରି କହିବାକୁ ଲାଗିଲା—ଏହି ଅସମ୍ଭବ, ସମ୍ଭବ ହେବା ପୂର୍ବରୁ ସେ ଗଳାରେ ଦଉଡ଼ି ଦେଇ ମରିବ; ତଥାପି ଗ୍ରୁଇ ଭଳି ଯେପରି ଏହିକଥା ତାର ମନ ପଛରେ ଲାଗି ରହିଲା । ଚଲାବୁଲା କଲାବେଳେ ସତେ ଯେପରି ସେ ଏହାର ସ୍ୱରୂପ ଦେଖିବାକୁ ପାଇଲା । ବୋଧହୁଏ ଏହି ବିଭୀଷିକାଠାରୁ ଆତ୍ମରକ୍ଷା ପାଇଁ ସେ ଗାଧୋଇବା ଓ ଖାଇବା ସମୟ ବ୍ୟତୀତ ଦିନରାତି ଏତେ ଟିକିଏ ସମୟ ପାଇଁ ସ୍ୱାମୀଙ୍କ ଶଯ୍ୟା କେଉଁଆଡ଼େ ଯିବା ପାଇଁ ସାହାସ କରି ପାରିଲା ନାହିଁ । ପାଖରେ ଯେଉଁ ଘରଟା ତାର ନିଜର ବ୍ୟବହାର ପାଇଁ ନିର୍ଦ୍ଦିଷ୍ଟ ଥିଲା, କେତେଦିନ ପରେ ସେ ଘରକୁ ଯିବା ପାଇଁ ତାର ମନ ବଳିଲା ନାହିଁ । ଏହିପରି ଭାବରେ କିଛିଦିନ ବିତିବାକୁ ଲାଗିଲା ।

ମହିମ ପ୍ରାୟ ଆରୋଗ୍ୟ ହୋଇ ଉଠୁଛି । ଶୀଘ୍ର ଜବଲପୁର ସ୍ଥାନ ପରିବର୍ତ୍ତନ କରିବା ଉଦ୍ଦେଶ୍ୟରେ ଯିବାପାଇଁ କଥାବାର୍ତ୍ତା ଚାଲିଛି । ସେଦିନ ସକାଳ ବେଳା ଅଚଳା ମେଜ ଉପରେ ବସି ସ୍ୱାମୀଙ୍କପାଇଁ ଷ୍ଟୋଭରେ ଦୁଧ ଗରମ କରୁଥିଲା । ଦୁଧ ବାରମ୍ବାର ଉତୁରି ଉଠୁଥିଲା । କୌଣସି ଦିଗକୁ ଚାହିଁବାକୁ ସେଥିପାଇଁ ତାକୁ ଟିକିଏ ଅବସର ନଥିଲା । ମହିମ ଏକ ଦୃଷ୍ଟିରେ ଏତେ ସମୟ ଧରି ତାହାରି ଆଡ଼େ ଚାହିଁ ରହିଥିଲା; ଏ କଥା ସେ ଆଦୌ ଜାଣି ନଥିଲା । ହଠାତ୍ ସ୍ୱାମୀଙ୍କ ଦୀର୍ଘ ନିଃଶ୍ୱାସ କାନରେ ବାଜିବାକ୍ଷଣି ସେ ଥରକ ପାଇଁ ମୁହଁଫେରାଇ ଚାହିଁ ଦେଇ ପୁଣି କାମରେ ମନଦେଲା ।

ମହିମ କୌଣସି ଦିନ ବେଶୀ କଥା କହେନାହିଁ । କିନ୍ତୁ ଆଜି ହଠାତ୍ ଦୀର୍ଘ ନିଃଶ୍ୱାସ ମାରି କହି ଉଠିଲା—ବାସ୍ତବିକ୍ ଅଚଳା, ଦୁଃଖ ବିନା କୌଣସି ଦିନ କୌଣସି ବଡ଼ ଜିନିଷ ମଣିଷ ପାଇ ନଥାଏ । ମୋର ଘର ପୁଣି ତିଆରି ହେବ, ରୋଗ ମଧ୍ୟ ଦିନେ ଭଲ ହୋଇଯିବ, କିନ୍ତୁ ଏ ଭିତରେ ଯେଉଁ ଅମୂଲ୍ୟ ଜିନିଷଟିକୁ ମୁଁ ପାଇ ପାରିଲି—ସେ ହେଉଛି "ତୁମେ" । ଆଜିକାଲି ମୋର ମନେହୁଏ ତୁମ ବ୍ୟତୀତ ବୋଧହୁଏ ମୁଁ ଗୋଟିଏ ଦିନ ବି ବିତାଇ ପାରିବି ନାହିଁ ।

ଅଚଳା ନୀରବରେ ଗରମ ଦୁଧ ଗିନାରେ ଢାଳି ଥଣ୍ଡା କରିବାକୁ ଲାଗିଲା । ମଧୁମ ଟିକିଏ ଅଟକିଯାଇ ପୁଣି କହିଲା—ମୃଣାଳ ଓ ସୁରେଶ ଏ ଦୁହେଁ ମଧ୍ୟ ମୋର କମ୍ ସେବା କରି ନାହାନ୍ତି । କିନ୍ତୁ କେଜାଣି ଯେତେବେଳେ ହୋସ୍ ଫେରି ପାଇଲି, ସେତେବେଳଠାରୁ କିପରି ଅସ୍ୱସ୍ତି ବୋଧ କରୁଥିଲି । କେବଳ ମନେ ମନେ ଭାବୁଥାଏ ଏମାନଙ୍କର ଏତେ କଷ୍ଟ, ଏତେ ଅସୁବିଧା ହେଉଛି ଏସବୁ ଦୟାର ଋଣ ମୁଁ ଜୀବନରେ ସୁଝିବି କିପରି ? କିନ୍ତୁ ଭଗବାନ ଏପରି ସମ୍ପର୍କ ବାନ୍ଧି ଦେଇଛନ୍ତି ଯାହା ଫଳରେ ତୁମ ବିଷୟରେ ଚିନ୍ତା କଲାବେଳେ ଜୀବନରେ ତୁମ ସେବାର ଋଣ ଶୁଝିବା କଥା ମନକୁ ଆସେ ନାହିଁ । ମୋତେ ବଞ୍ଚାଇ ରଖିବା ଯେପରି ତୁମ ନିଜର ଗରଜ, କହି ମଧୁମ ସାମାନ୍ୟ ହସିଦେଲା ।

ଅଚଳା ମୁଣ୍ଡ ତଳକୁ କରି ଦୁଧ ଥଣ୍ଡା କରିବାରେ ଯିନା ଲାଗିଥାଏ, କିନ୍ତୁ କୌଣସି କଥା ସେ କହିଲା ନାହିଁ ।

ମଧୁମ କହିଲା—ଥାଉ, ଆଉ କେତେ ବେଳଯାଏ ଥଣ୍ଡା କରୁଥିବ ? ଦିଅ ।

ତଥାପି ଅଚଳା ଜବାବ୍ ଦେଲାନାହିଁ । ସେହିପରି ମୁହଁ ତଳକୁ କରି ବସି ରହିଲା । ପ୍ରଥମେ ମଧୁମ ସାମାନ୍ୟ ବିସ୍ମିତ ହେଲା । କିନ୍ତୁ ପରକ୍ଷଣରେ ବୁଝି ପାରିଲା ଯେ ସ୍ୱାମୀଙ୍କ ନିକଟରେ ଆଖିର ଲୁହକୁ ଗୋପନ କରିବାପାଇଁ ଏପରି ଭାବରେ ସେ ମୁହଁ ତଳକୁ ପୋତି ବସିରହିଛି ।

କାହିଁକି ଯେ ସୁରେଶ ଆଜିକାଲି ଆଗଭଳି ଏତେ ଆସୁନାହିଁ ତାହାର ପ୍ରକୃତ କାରଣ ମଧୁମ ବୁଝି ନ ପାରିଲେ ସୁଦ୍ଧା ଅନୁମାନ କରି କେତେଟା ଜାଣି ପାରିଛି । ଏଥିପାଇଁ କ୍ଷୋଭ-ମିଶ୍ରିତ ଏକପ୍ରକାର ଆନନ୍ଦ ସେ ମନେ ମନେ ଅନୁଭବ କରୁଥିଲା । କାରଣ ଅଚଳା ଯେ ସତର୍କ ହୋଇ ପାରିଛି, ନିର୍ଜନରେ ଅକସ୍ମାତ୍ କାଳେ ଦେଖା ହୋଇପାରେ, ଏହି ଭୟରେ ସେ ଘର ଛାଡ଼ି ଅନ୍ୟତ୍ର ଯିବା ପାଇଁ ଚାହୁଁ ନାହିଁ, ଏକଥା ମଧ୍ୟ ମନେ ମନେ ଜାଣିପାରିଛି । ସେଥିପାଇଁ ସାରା ଦିନ ଆଜି ତାର ମନ ସତେ ଯେପରି ବସନ୍ତ ପବନରେ ଉଡ଼ି ବୁଲୁଛି । ତାର ଶଯ୍ୟାର କିଛି ଦୂରରେ ଗୋଟାଏ ଆରାମ ଚୌକି ଥିଲା । ସେ ଦିନ ତାର ଉପରେ ବସି ଅନେକ ରାତି ପର୍ଯ୍ୟନ୍ତ ଅଚଳା କ'ଣ ଖଣ୍ଡେ ବହି ପଢ଼ୁଥିଲା, ଏବଂ କ୍ଲାନ୍ତ ବଶତଃ ଅବଶିଷ୍ଟ ସମୟତକ ସେହିଠାରେ ଶୋଇ ପଡ଼ିଥିଲା । ପରଦିନ ମଧୁମର ଡାକ ଶୁଣି ବ୍ୟସ୍ତ ହୋଇ ଉଠିପଡ଼ିଥିଲା, ଏବଂ ଝରକା ଦେଇ ଦେଖିଲା ବେଳ ଅନେକ ହୋଇ ଯାଇଛି ।

ମଧୁମ କ'ଣ ଗୋଟାଏ କାମର ବର୍ଣ୍ଣନା କରିବାକୁ ଯାଇ ହଠାତ୍ ଚୁପ୍ ହୋଇଗଲା, ଏବଂ ସ୍ତ୍ରୀର ଆପାଦମସ୍ତକ ବାରମ୍ବାର ନିରୀକ୍ଷଣ କରି ବିସ୍ମୟ ସ୍ୱରରେ ପ୍ରଶ୍ନକଲା—ତୁମ ଦେହର ଚାଦର କ'ଣ ହେଲା ?

ଅଚଳା ତତୋଧିକ ଆଶ୍ଚର୍ଯ୍ୟ ହୋଇ ଦେହକୁ ଚାହିଁ ଦେଖିଲା; ବର୍ତ୍ତମାନ ସେ ନିଦରୁ ଉଠି ଯେଉଁ ଲୁଗାଟା ଦେହରେ ଭଲ ଭଲ ହୋଇ ଘୋଡ଼େଇ ହୋଇ ପକାଇଛି ସେଇଟା ହେଉଛି ସୁରେଶର । ସ୍ୱାମୀଙ୍କର ପ୍ରଶ୍ନ ଯେପରି ତାକୁ ଚାବୁକରେ ପିଟିଲା ପରି ଲାଗିଲା । ଲଜ୍ୟାରେ ତାର ମୁହଁ ବିବର୍ଣ୍ଣ ହୋଇ ଉଠିଲା । କିନ୍ତୁ ଏହା କିପରି ଘଟିଲା ତାହା ସେ ଆଦୌ ଭାବି ସ୍ଥିର କରି ପାରିଲାନାହିଁ । କେତେ ବେଳକୁ ତାର ମନେହେଲା—ଗତ ରାତିରେ ସେ ନିଜର ଶାଲ ଖଣ୍ଡି ଚଉକି ପାଦତଳେ ରଖି, କେବଳ ଦେହରେ ଶାଢ଼ୀ ଖଣ୍ଡ ଗୁଡ଼ାଇ ହୋଇ ଶୋଇ ପଡ଼ିଥିଲା । ଶୋଇଥିଲାବେଳେ ମଝିରେ ମଝିରେ ତାକୁ ଭୀଷଣ ଶୀତ ହୋଇଥିବାର ମନେ ପଡୁଛି କିନ୍ତୁ ବର୍ତ୍ତମାନ ନିଦରୁ ଉଠି ଏ କାଣ୍ଡ ଦେଖି ପାରୁଛି ।

ସ୍ତ୍ରୀର ଏକାନ୍ତ ଲଜ୍ଜିତ ବିପର୍ଣ୍ଣ ମୁହଁକୁ ଚାହିଁ ଦେଇ ମହିମ କିନ୍ତୁ କୌତୁକ ସହକାରେ ହସିଲା । କହିଲା—ଏଥିରେ ଲଜ୍ଜିତ ହେବାର କଣ ଅଛି ଅଚଳା ? ଚାକର ବୋଧହୁଏ ଓଲଟ ପାଲଟ, କରି ତୁମଟା ତାହାଘରେ ଏବଂ ତାହାର ଲୁଗାଟା ତୁମ ଶେଯ ପାଖରେ ରଖି ଦେଇଛି । ନଚେତ୍ ହୁଏତ ସୁରେଶ କାଲି ଓପର ଓଳି ପକାଇ ଦେଇଛି, ଆଉ ତୁମେ ରାତିରେ ସେଇଟା ଚିହ୍ନି ନପାରି ଘୋଡ଼େଇ ହୋଇ ପଡ଼ିଛ । ବେହେରାକୁ ଡାକି ବଦଳାଇ ଆଣିବାକୁ କହ ।

—ଡାକି ଦେଉଛି, କହି ସେ ଲୁଗାଟି ହାତରେ ଧରି ଅଚଳା ବାହାରକୁ ଚାଲି ଆସିଲା ଏବଂ ପାଖ ଘରେ ପଶିଯାଇ ଯେତେବେଳେ ଅବସନ୍ନ ହୋଇ ବସି-ପଡ଼ିଲା ସେତେବେଳେ ତାହା ପକ୍ଷରେ ବୁଝିବାକୁ ଆଉ କିଛି ବାକି ନଥିଲା । ବହୁତ ରାତିରେ ସମସ୍ତେ ଶୋଇ ପଡ଼ିବା ପରେ ସୁରେଶ ଯେ ନିଃଶବ୍ଦରେ ସେ ଘରେ ପ୍ରବେଶ କରିଥିଲା ଏବଂ ଶୀତରେ ଶୋଇ ଏପରି ଥରୁଥିବାର ଦେଖି ନିଜର ଲୁଗାଟି ତାହା ଉପରେ ଯତ୍ନର ସହିତ ସ୍ନେହରେ ଘୋଡ଼ାଇ ଦେଇ ନୀରବରେ ଚାଲିଯାଇଛି, ଏଥିରେ ତାର ଲେଶ ମାତ୍ର ସନ୍ଦେହ ରହିଲା ନାହିଁ । ସେ ଆଖି ବୁଜି ସୁରେଶର ସେହି ଆନତ ସତୃଷ୍ଣ ଦୃଷ୍ଟି ଯେପରି ଦେଖିବାକୁ ପାଇ ରୋମାଞ୍ଚିତ ହୋଇ ଉଠିଲା ।

ଅଚଳା ମନେ ମନେ ଭାବିବାକୁ ଲାଗିଲା, କେବଳ ତାକୁ ହିଁ ଦେଖିବା ପାଇଁ ଏବଂ ଭଲକରି ନିରୋଳାରେ ଦେଖିନେବାପାଇଁ ସେ ଏପରି ଭାବରେ

ଆସିଥିଲା ଏବଂ ହୁଏତ ପ୍ରତିଦିନ ରାତିରେ ସମସ୍ତେ ପୂର୍ଣ୍ଣ ନିଦରେ ଅଚେତନ ଥିଲାବେଳେ ଆସୁଥାଇ ପାରେ ।

ଏହି କଦାଗ୍ଣିର ପାଇଁ ଅଚଳାର ଲଜ୍ଜାର ସୀମା ରହିଲା ନାହିଁ ଏବଂ ଏହାକୁ ସେ କୁତ୍ସିତ କହି, ଗର୍ହିତ କହି, ଅଭଦ୍ର କହି ପୁରେଶକୁ ମନେମନେ ଗାଳିକରିବାକୁ ଲାଗିଲା ଏବଂ ଅତିଥିଙ୍କ ପ୍ରତି ଗୃହସ୍ୱାମୀଙ୍କର ଏଇ ଚୌର୍ଯ୍ୟ ବୃତ୍ତିକୁ ସେ କୌଣସି ପ୍ରକାରରେ କ୍ଷମା କରି ପାରିବ ନାହିଁ ବୋଲି ନିଜ ନିକଟରେ ବାରମ୍ବାର ପ୍ରତିଜ୍ଞା କରିବାକୁ ଲାଗିଲା । ତଥାପି କିନ୍ତୁ ସେ ତାର ମନଟା କୌଣସି ରୂପେ ଏସବୁ ଅଭିଯୋଗର କୌଣସି ଯଥାଯଥ ଉତ୍ତର ଦେଇ ପାରୁ ନଥିଲା, ଏକଥା ମଧ୍ୟ ତାକୁ ଅଜଣା ରହିଲା ନାହିଁ । ଏତେଦିନ ଧରି ଉଠିବା, ବସିବା, ଖାଇବାରେ ସେ ଯେଉଁ ଅସ୍ୱସ୍ତି ଅନୁଭବ କରୁଥିଲା ତାହାର କାରଣ ଆଜି ସୁସ୍ପଷ୍ଟ ହୋଇ ଉଠିଲା ।

କେଦାରବାବୁଙ୍କର ଜଣେ ବାଲ୍ୟବନ୍ଧୁ ଜବଲପୁର ସହରରେ ବାସ କରୁଥିଲେ । ସେ ଉତ୍ତର ଦେଇ ଲେଖିଥିଲେ ଯେ ଜଳବାୟୁ ଓ ପ୍ରାକୃତିକ ଦୃଶ୍ୟରାଜିରେ ଏ ସ୍ଥାନଟି ଅତି ଉତ୍କୃଷ୍ଟ । ତାଙ୍କ ନିଜ ଘର ମଧ୍ୟ ଖୁବ୍ ପ୍ରଶସ୍ତ । ଅତଏବ ମହିମର ଯଦି ଆସିବାର ହେଉଥାଏ ତେବେ ସେ ସ୍ୱଚ୍ଛନ୍ଦରେ ତାଙ୍କ ନିକଟରେ ରହିପାରିବ ।

ପରଦିନ ସକାଳେ ଆସି କେଦାରବାବୁ ଏହି ସମ୍ବାଦ ଜଣାଇ ଦେଲେ । ମାଘମାସ ଯେତେବେଳେ ଶେଷ ହେବାକୁ ବସିଛି ଏବଂ ବାଟରେ ଯିବା ସମୟର ଅଳ୍ପ କଷ୍ଟ ଯେତେବେଳେ ସହ୍ୟ କରିବାକୁ ମହିମ ସମର୍ଥ ସେତେବେଳେ ଆଉ କାଳ-ବିଳମ୍ବ ନକରି ଯାତ୍ରା କରିବାଟା ଉଚିତ ହେବ । ଯୁବକ ଥିଲାବେଳେ ସେ ଥରେ ଜବଲପୁର ଯାଇଥିଲେ । ସେହି ସ୍ମୃତି ତାଙ୍କର ମନେ ଥିଲା । ମହାଉଲ୍ଲାସରେ ସେ ସକଳ ସ୍ମୃତିକୁ ବର୍ଣ୍ଣନା କରି କହିବାକୁ ଲାଗିଲେ ଜଗଦୀଶର ସ୍ତ୍ରୀ ବର୍ତ୍ତମାନ ସୁଦ୍ଧା ଜୀବିତ ଅଛି । ସେ ମାଆଭଳି ମହିମର ଯତ୍ନ ନେବ । ଏବଂ ଆହୁରି ଆନନ୍ଦର କଥା ଯେ ଏହି ଉପଲକ୍ଷରେ ଆଉ ଗୋଟାଏ ସ୍ଥାନ ତ ଦେଖା ହୋଇପାରିବ । ମହିମ ଚୁପ୍ ହୋଇ ଏ ସବୁ ଶୁଣିଲା । କିନ୍ତୁ ଟିକିଏ ମାତ୍ର ଆଗ୍ରହ ପ୍ରକାଶ କଲା ନାହିଁ । ତାର ଏହି ଆଗ୍ରହସ୍ୱଳ୍ପତା କେବଳ ଅଚଳା ହିଁ ଲକ୍ଷ୍ୟ କରିପାରିଲା । ବାପା ଚାଲିଯିବା ପରେ ସେ ଆସ୍ତେ ଆସ୍ତେ ପଚାରିଲା— କ'ଣ ? ଜବଲପୁର ତ ଭଲ ଯାଗା, ତୁମର ଯିବାପାଇଁ କ'ଣ ଇଚ୍ଛା ନାହିଁ ?

ମହିମ କହିଲା—ତୁମେମାନେ ସମସ୍ତେ ମୋତେ ଯେତେଟା ସୁସ୍ଥ ସବଳ ଭାବୁଛ, ସେତେଟା ବର୍ତ୍ତମାନ ସୁଦ୍ଧା ମୁଁ ହୋଇ ପାରିନାହିଁ । ଦିନେ ଯେ ସୁସ୍ଥ ହୋଇପାରିବ, ଏ ଆଶା ମଧ୍ୟ ମୁଁ କରି ପାରୁନାହିଁ ।

ଅଚଳା କହିଲା—ସେଥିପାଇଁ ତ ଡାକ୍ତର ତୁମ ଲାଗି ଚେଞ୍ଜର ବ୍ୟବସ୍ଥା କରିଛନ୍ତି । ଥରେ ମାତ୍ର ବୁଲି ଆସିଲେ ସବୁ ଅସୁସ୍ଥତା ଦୂର ହୋଇଯିବ ।

ମହିମ କିଛି ସମୟ ପାଇଁ ନୀରବ ରହିଲା । ତାପରେ କହିଲା କେଜାଣି, ଏ ଅବସ୍ଥାରେ ମୁଁ ନିଜ ଉପରେ କମ୍ବା ପର ଉପରେ ନିର୍ଭର କରି ସ୍ୱର୍ଗକୁ ଯିବାପାଇଁ ଭରସା କରି ପାରୁନାହିଁ । ଅଚଳା, ଭିତରେ ଭିତରେ ମୁଁ ବଡ଼ ଅସୁସ୍ଥ । ବଡ଼ ଦୁର୍ବଳ । ତୁମେ ପାଖରେ ନ ରହିଲେ ହୁଏତ ମୁଁ ବେଶୀଦିନ ବଞ୍ଚିବି ନାହିଁ । କହୁ କହୁ ତାର କଣ୍ଠସ୍ୱର ଯେପରି ଥରି ଉଠିଲା ।

ଯେଉଁ ତୁଣ୍ଡ କେବେବେଳେ କିଛି ମାଗି ନଥିଲା, କେବେବେଳେ ନିଜର ଦୁଃଖ, ଅଭାବ, ଅସୁବିଧା ସୂଚାଇ ନଥିଲା, ସେହି ତୁଣ୍ଡରୁ ଏହି ଆକୁଳ ଭିକ୍ଷା ଯେପରି ଠିକ ଶୂଳ ପରି ଅଚଳା ହୃଦୟରେ ଭେଦ କରି, ଅଚଳା ହୃଦୟର ଯେତେ ସ୍ନେହ, ଯେତେ କରୁଣା, ଯେତେ ମାଧୁର୍ଯ୍ୟ ଏତେଦିନ ଧରି ରୁଦ୍ଧ ହୋଇ ରହି ଆସିଥିଲା ସେ ସବୁକୁ ଯେପରି ମୁହୂର୍ତ୍ତକ ଭିତରେ ବାହାରି ଆସିବାପାଇଁ ବାଟ ଫିଟାଇ ଦେଲା । ସେ ନିଜକୁ ଆଉ ସମ୍ଭାଳି ପାରିଲା ନାହିଁ । ନିଜ ଆଖିର ଲୁହକୁ ପଣତ କାନରେ ଲୁଚିଧରି ବାହାରକୁ ଦୌଡ଼ିକରି ଚାଲିଗଲା । ମହିମ ନିର୍ବୋଧଙ୍କ ଭଳି ଅନେକ ସମୟ ପର୍ଯ୍ୟନ୍ତ ଅପଲକ ଆଖିରେ ଖୋଲା ଦୁଆର ଆଡ଼େ ଚାହିଁ ରହି ରହି ଆସ୍ତେ ଆସ୍ତେ ଶୋଇ ପଡ଼ିଲା ।

ପୁଣି ଯେତେବେଳେ ଦୁହିଙ୍କ ଭିତରେ ଦେଖାହେଲା, ସେତେବେଳେ ସ୍ୱାମୀ–ସ୍ତ୍ରୀ କେହି ଏ ସମ୍ବନ୍ଧରେ କୌଣସି କଥାବାର୍ତ୍ତା ହେଲେ ନାହିଁ ।

ପରଦିନ ଅଚଳା ଗୋଟିଏ ଟେଲିଗ୍ରାମ ହାତରେ ଧରି ହସି ହସି ଘର ଭିତରକୁ ପଶିଆସି କହିଲା—ଜଗଦୀଶବାବୁ ଟେଲିଗ୍ରାମର ଜବାବ୍ ଦେଇଛନ୍ତି । ସେ ତାଙ୍କ ଘର ନିକଟରେ ଆମ ପାଇଁ ଗୋଟିଏ ଛୋଟିଆ ଘର ବ୍ୟବସ୍ଥା କରି ରଖିଛନ୍ତି ।

ମହିମ କଥାଟାର ଅର୍ଥ ଠିକ ବୁଝି ନପାରି ପଚାରିଲା, ତାର ମାନେ ?

ଅଚଳା କହିଲା— ବାବାଙ୍କର ବାଲ୍ୟବନ୍ଧୁ ବୋଲି ହୁଏତ ସେ ତୁମକୁ ଘରେ ସ୍ଥାନ ଦେଇ ପାରନ୍ତି କିନ୍ତୁ ଦୁଇଜଣ ଯାଇ ତାଙ୍କ ଉପରେ ଭାର ହେବାଟା କ'ଣ ସୁନ୍ଦର ହେବ ? ସେଥିପାଇଁ ଗୋଟାଏ ଅଲଗା ଭଡ଼ାଘର ବୁଝି ଠିକ୍ କରିଦେବା ପାଇଁ ବାବାଙ୍କୁ କହି ଟେଲିଗ୍ରାମ କରାଇଥିଲି । ଏହି ତାର ଜବାବ କହି, ସେ ହଳଦିଆ ଲଫାପାଟାକୁ ସ୍ୱାମୀଙ୍କର ବିଛଣା ଉପରେ ଥୋଇଦେଲା ।

ମହିମ ସେଇଟା ହାତରେ ଧରି ଆମୂଳଚୂଳ ପଢ଼ି ସାରିବା ପରେ କେବଳ କହିଲା—ଆଚ୍ଛା ! ଅଚଳା ଯେ ସ୍ୱଇଚ୍ଛାରେ ସାଙ୍ଗରେ ଯିବାକୁ ଚାହେଁ,

ଏ କଥା ସେ ବୁଝି ପାରିଲା । କିନ୍ତୁ ଗତ କାଲିର ଆଚରଣ, ଯାହା ଏ ପର୍ଯ୍ୟନ୍ତ ତାର ନିକଟରେ ସେହିପରି ଅବୋଧ, ସେହିପରି ଦୁର୍ଜ୍ଞେୟ, ତାହା ମନରୁ ପକାଇ କୌଣସି ପ୍ରକାର ଶୃଙ୍ଖଳା ସୃଷ୍ଟି କରିବାକୁ ତାର ଇଚ୍ଛା ହେଲା-ନାହିଁ ।

ଅଚଳା ପକ୍ଷରୁ କିନ୍ତୁ ଯାତ୍ରାର ପ୍ରସ୍ତୁତି ପୁରା ମାତ୍ରାରେ ଚାଲିଲା । ସେଦିନ ଓପର ଓଳି ସେ ଘର ଭିତରେ ବସି ନିଜର ଜିନିଷପତ୍ର ସଜାଡୁଥିଲାବେଳେ ଦ୍ୱାରବନ୍ଧ ବାହାରେ ଥାଇ କେଦାରବାବୁ କହି ଉଠିଲେ—ତୁ ନ ଗଲେ କ'ଣ ଚଳନ୍ତା ନାହିଁ ମାଆ ?

ଅଚଳା ହଠାତ୍ ଚମକି ପଡ଼ି ମୁହଁ ଫେରାଇ କହିଲା—କାହିଁକି ବାବା ?

ସ୍ୱାସ୍ଥ୍ୟ ଓ ଚିକିତ୍ସା ଉଭୟ ଦିଗରୁ ବିଗ୍ଚର କଲେ ତାର ମହିମ ସଙ୍ଗେ ରହିବାଟା ଠିକ୍ ହେବନାହିଁ ବୋଲି ବୋଧହୁଏ ପିତା ହିସାବରେ କେଦାରବାବୁ ଚିନ୍ତା କରିଥିଲେ । ସେଥିପାଇଁ କନ୍ୟାକୁ ସେ ଏ କଥା ଜଣାଇ ଦେବାକୁ ଲଜ୍ଜ୍ୟା ବୋଧ କଲେ ନାହିଁ । ତେଣୁ ସେ ମହିମର ବର୍ତ୍ତମାନର ଆର୍ଥିକ ଅବସ୍ଥାର ସୂଚନା ଦେଇ କହିଲେ—ବେଶୀ ଦିନ ତ ନୁହେଁ, ତା ଛଡ଼ା ଜଗଦୀଶ ପାଖରେ ରହିଲେ ମହିମର ମଧ୍ୟ ବିଶେଷ କିଛି ଅସୁବିଧା ହେବ ନାହିଁ । ସେଥିପାଇଁ ଅଳ୍ପଦିନ କେତେଟା ପାଇଁ ଏତେ ଗୁଡ଼ାଏ ଖର୍ଚ୍ଚବାର୍ଚ୍ଚ ନ କରି......

ଅସଲ କଥାଟା ଅଚଳା ବୁଝି ପାରିଲା ନାହିଁ । ସେ ବାପାଙ୍କ ମୁହଁକୁ ଚାହିଁ ପ୍ରଶ୍ନକଲା---ସେ ବୋଧହୁଏ କହୁଥିଲେ ?

: ନାହିଁ, ନାହିଁ, ମହିମ ସେପରି କିଛି କହିନାହିଁ । କେବଳ ମୁଁ ଭାବୁଥିଲି....

: ତୁମେ କିଛି ଭାବନାହିଁ ବାବା, ସବୁକଥା ମୁଁ ଠିକ୍ କରିନେବି କହି ଅଚଳା ପୁଣି ତାର କାମରେ ଲାଗିପଡ଼ିଲା । ଏବଂ ପରଦିନ ଗୋପନରେ ତାର ଦୁଇଖଣ୍ଡ ଅଳଙ୍କାର ବିକ୍ରୟ କରି ଟଙ୍କା ସଂଗ୍ରହ କରି ପାଖରେ ରଖିଲା ।

ଫାଲ୍‌ଗୁନ ମାସର ମଝିରେ ଯାତ୍ରା କରିବା ପାଇଁ ପ୍ରସ୍ତାବ ଥିଲା କିନ୍ତୁ ସୁରେଶର ପିଉସୀ ମାଆ ପୁରୋହିତ ଡାକି ଆଣି ପାଞ୍ଜି ଦେଖି ମାସର ପ୍ରଥମ ସପ୍ତାହଟିକୁ ସ୍ଥିର କରିଦେଲେ । ସେହି ମତକୁ ସମସ୍ତଙ୍କୁ ଶେଷରେ ମାନି ନେବାକୁ ହେଲା ।

ଯିବାର ଦୁଇଦିନ ଆଗରୁ ଅଚଳାର ମନ ଯେପରି ପବନରେ ଉଡ଼ି ବୁଲୁଥିଲା । ଏଇ କଲିକତା ଛାଡ଼ି କେତେଦିନ ପାଇଁ ସ୍ୱାମୀଙ୍କ ଗୃହ ବ୍ୟତୀତ ତାକୁ ଅନ୍ୟତ୍ର କେବେ ଯିବାକୁ ହୋଇନାହିଁ । ଆଜି ପୁଣି ସେ ପଶ୍ଚିମ ଆଡ଼ର ମୁହଁ ଦେଖିନାହିଁ । ସେହିଠାରେ କେତେ ପ୍ରାଚୀନ କୀର୍ତ୍ତି, କେତେ ବଣ ଜଙ୍ଗଲ, କେତେ ନଦନଦୀ, କେତେ ଜଳପ୍ରପାତ ଏପରି କେତେ କ'ଣ ଅଛି ଯେଉଁ ଗୁଡ଼ିକ ବିଷୟରେ ଲୋକମାନଙ୍କ ମୁହଁରୁ ଗଳ୍ପ ଆକାରରେ ଶୁଣିବା ବ୍ୟତୀତ କଦାପି ଭିନ୍ନ ଭିନ୍ନ କରି ନିଜ ଆଖିରେ ଦେଖିବା ପାଇଁ କଳ୍ପନା ନିଜ ମନରେ ସ୍ଥାନ ପାଇ ପାରି ନଥିଲା । ଏହିଥର ସେହିସବୁ ଆଶ୍ଚର୍ଯ୍ୟ ଜିନିଷଗୁଡ଼ିକ ସ୍ୱଚକ୍ଷୁରେ ଦେଖିବାପାଇଁ ସୁଯୋଗ ଆସିଛି । ଏହା ବ୍ୟତୀତ ସେହିଠାରେ ତାର ସ୍ୱାମୀ ଭଗ୍ନସ୍ୱାସ୍ଥ୍ୟ ଫେରି ପାଇବେ ଏବଂ ଏକାକୀ ହିଁ ସେ ସେହିଠାରେ ଗୃହିଣୀ; ଘରଣୀ, ସବୁ କାମରେ ସ୍ୱାମୀଙ୍କର ସାହାଯ୍ୟକାରିଣୀ ହୋଇ ପାରିବ । ସେଠିକାର ଜଳବାୟୁ ସ୍ୱାସ୍ଥ୍ୟକର । ସେଠିକାର ଜୀବନଯାତ୍ରାର ପଥ ସହଜ ଓ ସୁଗମ । ସେ ଭଲ ରହିଲେ ହୁଏତ ସେମାନେ ସେହିଠାରେ ଚିରେ ଘରସଂସାର କରିବସିବେ ଏବଂ ଅଦୂର ଭବିଷ୍ୟତରେ ଯେଉଁ ସମସ୍ତ ଅପରିଚିତ ଅତିଥିମାନେ ଜଣ ଜଣ ହୋଇ ଆସି ତାଙ୍କର ଗୃହସ୍ଥଳୀକୁ ପରିପୂର୍ଣ୍ଣ କରି ତୋଳିବେ, ସେମାନଙ୍କର ନୂଆ ନୂଆ ଅପରିଚିତ ମୁହଁ ଗୁଡ଼ିକ ପରିଚିତ ଭଳି ସ୍ପଷ୍ଟରୂପେ ଦେଖାଦେବାକୁ ଲାଗିଲା । ଏହିପରି କେତେ କେତେ ଯେ ସୁଖସ୍ୱପ୍ନ ଦିନରାତି ସେ ଦେଖିବାକୁ ଲାଗିଲା ତାହାର ଇୟତ୍ତା ରହିଲା ନାହିଁ । ଆଉ ଏ ସମସ୍ତ କଥା ଭିତରେ ସ୍ୱାମୀ ଯେ ତାକୁ ଛାଡ଼ି ଆଉ ସ୍ୱର୍ଗକୁ ପୁଣି ଯିବାକୁ ଇଚ୍ଛା କରନ୍ତି ନାହିଁ, ଏହି ଚିନ୍ତା ମିଶିବା କ୍ଷଣି ଯେପରି ତାହାର ସମସ୍ତ ଭାବନାକୁ ମଧୁମୟ କରି ଗଢ଼ିଲା । ଆଉ ତାର କାହା ବିରୁଦ୍ଧରେ କ୍ଷୋଭ, କିମ୍ବା ଅଭିଯୋଗ ରହିଲା ନାହିଁ । ଅନ୍ତରର ଯେତେକ ଗ୍ଲାନି, ଧୋଇହୋଇ ହୃଦୟଟା ଯେପରି ଗଙ୍ଗାଜଳ ପରି ସ୍ୱଚ୍ଛ ଓ ପବିତ୍ର ହୋଇ ଉଠିଲା । ଆଜି ତାହାର ବେଶୀ ଇଚ୍ଛା ହେଲା ଯିବା ପୂର୍ବରୁ ଥରେ ପାଇଁ ମୃଣାଳକୁ ଘରଭିତରର ଭିତ୍ତିଧରି ଜଣା ଅଜଣା ସବୁ ଅପରାଧ ପାଇଁ କ୍ଷମା ମାଗିନେବ । ଆଜି ସୁରେଶ ପାଇଁ ମଧ୍ୟ ତାର ପ୍ରାଣ କାନ୍ଦିବାକୁ ଲାଗିଲା । ସେ ମଧ୍ୟ ପରମ ବନ୍ଧୁ ହୋଇ ଲଜ୍ୟା ଓ ସଙ୍କୋଚରେ ତାହାକୁ ଦେଖାଦେଇ ପାରୁନାହିଁ, ତାର ଏହି ଦୁର୍ଭାଗ୍ୟର ଗୋପନ ବେଦନା ଆଜି ଯେପରି ସେ ଅନୁଭବ କରିପାରିଲା । ଏପରି ବୋଧହୁଏ ଆଉ କେବେ ଜାଣିପାରି ନଥିଲା । ତାହାଠାରୁ ମଧ୍ୟ ସର୍ବାନ୍ତକରଣରେ କ୍ଷମା ମାଗିନେଇ ଯିବାକୁ ହେବ । କିନ୍ତୁ ଅନୁସନ୍ଧାନ କରି ଜାଣିପାରିଲା ଯେ ସେ ଗତକାଲିଠାରୁ ଘରେ ନାହିଁ ।

ଯିବାଦିନ ସକାଳ ପହରରୁ ଆକାଶରୁ ମେଘ ଝିପିଝିପି ହୋଇ ପଡ଼ିବାକୁ ଆରମ୍ଭ କରିଥାଏ । ଜିନିଷପତ୍ର ସବୁ ବନ୍ଧାବନ୍ଧି ସରିଛି । କିଛି କିଛି ଷ୍ଟେସନକୁ ମଧ୍ୟ ପଠାଇ ଦିଆ ହୋଇଛି । ଟିକଟ ପର୍ଯ୍ୟନ୍ତ କଣା ସରିଛି । ଅଚଳା ପାଇଁ ସେକେଣ୍ଡ କ୍ଲାସ ଟିକଟ କିଣିବାପାଇଁ ପ୍ରସ୍ତାବ ହୋଇଥିଲା କିନ୍ତୁ ସେ ଘୋର ଆପତ୍ତି କରି ମହିମକୁ କହିଲା—ଟଙ୍କା ଅଯଥା ଖର୍ଚ୍ଚ କରିବାକୁ ଯଦି ଇଚ୍ଛା କରୁଥାଅ ତେବେ କିଣିପାର କିନ୍ତୁ ମୁଁ ସୁସ୍ଥ, ସବଳ । ତାଛଡ଼ା କେତେକେତେ ବଡ଼ ଲୋକଙ୍କର ଝିଅ ବୋହୂ ଇଣ୍ଟର କ୍ଲାସ ମହିଳା ଡବାରେ ବସି ଯାଉଛନ୍ତି; ଆଉ ମୁଁ ପାରିବି ନାହିଁ କାହିଁକି ? ମୁଁ ଦେଢ଼ା ଭଡ଼ାରୁ ବେଶୀ ଦେଇ କୌଣସି ମତେ ଯିବିନାହିଁ ।

ସୁତରାଂ ସେହିଭଳି ବ୍ୟବସ୍ଥା ମଧ୍ୟ ହେଲା ।

ପୂରା ଦୁଇଦିନ ଧରି ସୁରେଶକୁ ଦେଖିବାକୁ ମିଳି ନଥିଲା । କିନ୍ତୁ ସୁଯୋଗକୁ ସେ ଆଜି ତାର ପଢ଼ାଘରେ ଥିଲା । ଏହି ଆନନ୍ଦହୀନ କକ୍ଷ ଭିତରେ ବସନ୍ତ କାଳର ଦମକାଏ ମଳୟ ଭଳି ଅଚଳା ପ୍ରବେଶ କଲା । ତାର କଣ୍ଠରୁ ଆନନ୍ଦାତିଶଯ୍ୟରେ ଉଚ୍ଚାରିତ ହୋଇ ପଡିଲା ସୁରେଶବାବୁ, ଏ ଜନ୍ମରେ ଆଉ କଣ ଆମକୁ ମୁହଁ ଦେଖାଇବେ ନାହିଁ ବୋଲି ନିଷ୍ପତ୍ତି କରିଛନ୍ତି ? ଏତେବେଡ଼ ଅପରାଧ କ'ଣ ମୁଁ କରିବସିଛି ଦୟାକରି କହିବେ କି ?

ସୁରେଶ ଚିଠି ଲେଖୁଥିଲା । ମୁହଁ ଟେକି ଚାହିଁଲା । ତାର ଘର ପୋଡ଼ିଗଲାବେଳେ ଆଖପାଖରେ ଥିବା ଗଛଗୁଡ଼ାକର ଯେଉଁ ଚେହେରା ଅଚଳା ଆସିବା ଦିନ ଦେଖି ଆସିଥିଲା, ସୁରେଶର ଏହି ମୁହଁ ଟିକିକ ତାହାକୁ ଯେପରି ସେହି ଦୃଶ୍ୟ ସ୍ମରଣ କରାଇଦେଲା । ସେ ମନେ ମନେ ଶିହରି ଉଠିଲା । ବସନ୍ତର ହାଓ୍ୱା ବଦଳିଗଲା । ସେ କ'ଣ କହିବାକୁ ଆସିଥିଲା ସବୁ ଭୁଲିଗଲା । ପାଖକୁ ଲାଗି-ଯାଇ ଉଦ୍‌ବିଗ୍ନ କଣ୍ଠରେ ପ୍ରଶ୍ନ କଲା—ତୁମ ଦେହ କ'ଣ ଭଲ ନାହିଁ ସୁରେଶବାବୁ କାହିଁ ! ମୋତେ ତ ଏକଥା ଆଦୌ କହିନାହିଁ ?

କେବଳ ନିମିଷକ ପାଇଁ ସୁରେଶ ମୁହଁ ଟେକି ଚାହିଁଲା । ସଙ୍ଗେ ସଙ୍ଗେ ମୁହଁ ତଳକୁ କରି କହିଲା—ମୋର କୌଣସି ଅସୁବିଧା ନାହିଁ । ମୁଁ ଭଲ ଅଛି କହି ସେ ବହି ଖଣ୍ଡିକର ପୃଷ୍ଠା ଓଲଟାଉ ଓଲଟାଉ ପୁନର୍ବାର କହିଲା—ତୁମେମାନେ ତ ଆଜି ଯିବ । ସବୁ ଠିକ୍ ଠାକ୍ ହୋଇଛି ତ ? କେତେକାଳ ହୁଏତ ଆଉ ଦେଖା ସାକ୍ଷାତ ନ ହୋଇପାରେ ।

କେତେ ମିନିଟ୍ ପର୍ଯ୍ୟନ୍ତ ଅଚଳାଠାରୁ କୌଣସି ଉତ୍ତର ନ ପାଇ ସୁରେଶ ମୁହଁ ଟେକି ଚାହିଁଲା । ଅଚଳାର ଦୁଇଆଖି ଲୁହରେ ଛଳ ଛଳ ହୋଇ

ଉଠିଥିଲି, ଆଖି ସହିତ ଆଖି ପଡ଼ିବା କ୍ଷଣି ଲୁହ ଟୋପା ଟପ୍ ଟପ୍ କରି ପଡ଼ିବାକୁ ଲାଗିଲା ।

ସୁରେଶର ଧମନୀରେ ଉଷ୍ଣ ରକ୍ତସ୍ରୋତ ଉନ୍ମତ୍ତ ହୋଇ ଛୁଟିଲା । କିନ୍ତୁ ସେ ଆଜି ତାର ସମସ୍ତ ଶକ୍ତି ସଂଗ୍ରହ କରି, ନିଜକୁ ସଙ୍ଗତ କରି ଆଖି ପୁଣି ତଳକୁ କଲା ।

ଅଚଳା ପଣତ କାନିରେ ଆଖିର ଲୁହ ପୋଛିସାରି କହିଲା—ତୁମର ମଧ୍ୟ ଦେହ କେତେବେଳେ ଭଲ ରହୁନାହିଁ । ସୁରେଶବାବୁ, ତେଣୁ ତୁମେ ମଧ୍ୟ ଆମମାନଙ୍କ ସହିତ ଚାଲ ।

ସୁରେଶ ମୁଣ୍ଡ ହଲାଇ କେବଳ କହିଲା—ନା ।

ନା, କାହିଁକି ?

ତୁମର ପାଇଁ······କଥାଟା ଶେଷ ହୋଇପାରିଲା ନାହିଁ । ଦ୍ୱାର ବାହାରେ ଆସି ବେହେରା ଡାକଗୁଡ଼ି କହିଲା—ବାବୁ ଆପଣଙ୍କ ଗୃହ... ଏହାପରେ ସେ ପର୍ଦ୍ଦା ଆଡ଼େଇ ଘର ଭିତରେ ପ୍ରବେଶ କଲା ଏବଂ ପରକ୍ଷଣରେ ଅଚଳା ଅନ୍ୟ ଦିଗରେ ମୁହଁ କରି ବାହାର ହୋଇଗଲା ।

ଘଣ୍ଟାଏ ପରେ ସେ ତାର ସ୍ୱାମୀଙ୍କ ଶୋଇବା ଘରେ ପ୍ରବେଶ କଲା । ମହିମ ପଚାରିଲା—ସୁରେଶ କେତେଦିନ ହେବ କୁଆଡ଼େ ଯାଇଛି ତୁମେ ଜାଣ କି ? ପିଉସୀ ମାଆଙ୍କୁ କିଛି କହି ଯାଇନି ? ସେ କ'ଣ ଆଜି ମୋ ସଙ୍ଗରେ ଦେଖା ବି କରିବ ନାହିଁ ?

ଅଚଳା ଧୀରେ ଧୀରେ କହିଲା—ଆଜି ସେ ତ ଘରେ ଅଛନ୍ତି ।

ମହିମ କହିଲା—ନା, ଏଇକ୍ଷଣି ଗୃହକର୍ତ୍ତ୍ରୀ ମୋତେ କହିଗଲା ଯେ ସେ ସକାଳୁ କୁଆଡ଼େ ବାହାରି ଯାଇଛି······

ଅଚଳା ଚୁପ୍ ହୋଇଗଲା । କ୍ଷଣକାଳ ପୂର୍ବେ ଯେ ତାଙ୍କ ସହିତ ସାକ୍ଷାତ୍ ହୋଇଥିଲା, ସେ ଯେ ଅତିଶୟ ଅସୁସ୍ଥ, ସେ ଯେ ପିଲାବେଳ ଭଳି ଏଥର ମଧ୍ୟ ତୁମର ଜୀବନ ରକ୍ଷା କରି ପାରିଛନ୍ତି; କେବଳ ଏତିକି ମାତ୍ର କୃତଜ୍ଞତା ପାଇଁ ଥରକଲାଗି ତାହାଙ୍କୁ ଏଠାକୁ ଆମର ଡାକିବା ଉଚିତ୍, ଆଉ ତାଙ୍କୁ ଲଜ୍ଜ୍ୟା କରିବାର କିଛି ନାହିଁ । ଲଜ୍ଜିତକୁ ସନ୍ଦେହ ଆଖିରେ ଦେଖି ଆଉ ଲଜ୍ଜ୍ୟା ଦିଅନାହିଁ, ଏହିଭଳି ତାହା ଅନ୍ତର ଭିତରେ ଗୋଟିକ ପରେ ଗୋଟିଏ ଭାବନା ଉଠୁଥିଲେ ମଧ୍ୟ ଜିଭ ଲେଉଟାଇ ଉଚ୍ଚାରିତ ହୋଇପାରିଲା ନାହିଁ । ସେ ସ୍ୱାମୀଙ୍କର ମୁହଁକୁ ଭଲକରି ଚାହିଁ ପାରିଲା ନାହିଁ । କୌଣସି ଉତ୍ତର ନ ଦେଇ ହାତ ପାଖରେ କିଛି ଗୋଟାଏ କାମରେ ନିଜକୁ ହଜାଇ ଦେଲା ।

କ୍ରମଶଃ ଷ୍ଟେସନ ଯିବାର ସମୟ ପାଖେଇ ଆସିଲା । ତଳେ କେଦାର-ବାବୁଙ୍କର ପାଟି ଶୁଭିଲା ଏବଂ ପିଉସୀ ମାଆ ପୂର୍ଣ୍ଣକୁମ୍ଭ ସଜାଡ଼ିବା ପାଇଁ ବ୍ୟସ୍ତ ହୋଇ ଉଠିଲେ । ଚାକରମାନେ ଜିନିଷପତ୍ର ନେଇ ଗାଡ଼ି ଉପରେ ଲଦିଦେଲେ । କେବଳ ଯିଏ ଗୃହସ୍ୱାମୀ ତାଙ୍କୁ ହିଁ କିଛି କରୁଥିବାର କେହି ଦେଖିଲେ ନାହିଁ, ଅଥଚ ଏଥିପାଇଁ ଖୋଲାଖୋଲି ଭାବରେ କିଛି ଆଲୋଚନା କରିବାକୁ କେହି ସାହାସ କରିପାରିଲେ ନାହିଁ । ସମସ୍ତଙ୍କୁ ଯେପରି ଘଟଣାଟା କମିତି କମିତି ଲାଗୁଥାଏ ।

କେଦାରବାବୁ ବାରୋଣ୍ଡାରେ କନ୍ୟାକୁ ଦେଖିପାରି, ତାର ମୁଣ୍ଡରେ ହାତ ରଖି ସ୍ନେହାର୍ଦ୍ର କଣ୍ଠରେ କହିଲେ—ସଉଭାଗ୍ୟବତୀ ହୁଅ ମାଆ, ଠିକ୍ ତୋ ମାଆ ଭଳି । ବୁଢ଼ା ବୟସରେ ନ ବୁଝିପାରି ଅନେକ ଖରାପ କଥା କହିପକାଇଛି ମାଆ, ରାଗ କରିବୁ ନାହିଁ, କହି ତରତର ହୋଇ ଚାଲିଗଲେ ।

ମହିମ ଗାଡ଼ିରେ ଉଠିବାକୁ ଯିବା ସମୟରେ ଅତି କ୍ଷୁଣ୍ଣ ସ୍ୱରରେ ଅଚଳାକୁ କହିଲା —ସୁରେଶ ଏଥର ଥରେ ସୁଦ୍ଧା ମୋ ସଙ୍ଗରେ ଦେଖାକଲା ନାହିଁ । ଗୋଟାଏ କଥା କହିବା ପାଇଁ ମୁଁ ଦୁଇଦିନ ଧରି ତାକୁ ଅପେକ୍ଷା କରି ଚାହିଁ ବସିଥିଲି ।

ବାବାଙ୍କ କଥା ଶୁଣିବା ପରେ ଅଚଳା ଆଖିରୁ କେବଳ ଅଶ୍ରୁର ଝରଣା ଫିଟି ଚାଲିଥିଲା । ସେ ମୁଣ୍ଡ ହଲାଇ ଜଣାଇ ଦେଲା—ନା ।

ଘର ଭିତରେ ପିଉସୀମାଆ ଠିଆ ହୋଇଥିଲେ । ଅଚଳା ପ୍ରଗାଢ଼ ଭକ୍ତିଭରେ ତାହାଙ୍କୁ ପ୍ରଣାମ କରିବା କ୍ଷଣି ସେ ଗଦ୍ ଗଦ୍ କଣ୍ଠରେ ଅସଂଖ୍ୟ ଆଶୀର୍ବାଦ କରି କହିବାକୁ ଲାଗିଲେ—ହାତ କାଚ ତୋର ବଜ୍ର ହେଉ ମାଆ, ସ୍ୱାମୀଙ୍କୁ ନିରୋଗ କରି ଶୀଘ୍ର ଫେରିଆସ; ଏତିକି ମୋର ଭଗବାନଙ୍କ ନିକଟରେ ପ୍ରାର୍ଥନା ।

: ଏହା ହେଉଛି ମୋ ପକ୍ଷରେ ସବୁଠାରୁ ବଡ଼ ଆଶୀର୍ବାଦ, ପିଉସୀ ମାଆ; କହି ଆଖିର ଲୁହ ପୋଛୁ ପୋଛୁ ଅଚଳା ଗାଡ଼ିରେ ବସିଲା । କଥାଟା କେଦାରବାବୁଙ୍କ କାନକୁ ମଧ୍ୟ ଗଲା । ସେ ନିଜେ କରିଥିବା ଅମାନୁଷିକ ସନ୍ଦେହ ପାଇଁ ମନେ ମନେ ଯେପରି ମରି ଯାଉଥିଲେ ।

ହାବଡ଼ା ଷ୍ଟେସନରୁ ପଶ୍ଚିମ ଗାଡ଼ି ଛାଡ଼ିବା ପାଇଁ ମାତ୍ର ଦଶ ମିନିଟ୍ ବିଳମ୍ବ ଅଛି । ବାହାରେ ମେଘାଚ୍ଛନ୍ନ ଆକାଶ । ଝିପିଝିପି ବର୍ଷାର ଆଉ ବିରାମ ନାହିଁ । ଲୋକମାନଙ୍କ ପାଦରେ ସାରା ପ୍ଲାଟଫର୍ମର କାଦୁଅ ଘାଣ୍ଟି ହୋଇଯାଇଛି । ଯାତ୍ରୀମାନେ ଭିଡ଼ ଠେଲି, କାଦୁଅରୁ ରକ୍ଷା ପାଇବା ପାଇଁ କୌଣସିମତେ ଯାଗା ଖୋଜି ବସିବା ଲାଗି ଚେଷ୍ଟାକରି ଚାଲିଛନ୍ତି । ଏହିପରି ସମୟରେ ଅଚଳା ଚାହିଁ ଦେଖିଲା- ଗୋଟାଏ ପ୍ରକାଣ୍ଡ ବ୍ୟାଗ ହାତରେ ଧରି ସୁରେଶ ଆସି ପହଞ୍ଚି ଯାଇଛି ।

ଆଶ୍ଚର୍ଯ୍ୟ ଏବଂ ଦୁଶ୍ଚିନ୍ତାରେ କେଦାରବାବୁଙ୍କ ମୁହଁ ମଳିନ ହୋଇ ପଡ଼ିଲା । ସୁରେଶ ନିକଟକୁ ଆସୁ ନ ଆସୁଣୁ ସେ ଚିତ୍କାର କରି ଉଠିଲେ—ଘଟଣା କ'ଣ ସୁରେଶ ? ତୁମେ କୁଆଡ଼େ ଯାଉଛ ?

ଜବାବଟା ସୁରେଶ ଅଚଳାକୁ ଦେଲା । ତାର ମୁହଁକୁ ଚାହିଁ ଶୁଖିଲା ହସଟିଏ ହସିଦେଇ କହିଲା—ନା, ଦେଖିଲି ତୁମର ଉପଦେଶ ଏବଂ ନିମନ୍ତ୍ରଣ କୌଣସିଟାକୁ ଅବହେଳା କଲେ ଚଳିବ ନାହିଁ । ଆଜି ସକାଳବେଳା ଆଖିରେ ଆଙ୍ଗୁଠି ଗେଞ୍ଜି ତୁମେ ଦେଖାଇ ଦେଇ ନ ଥିଲେ ହୁଏତ ମୁଁ ଜାଣିପାରି ନଥାନ୍ତି ଯେ ମୋର ସ୍ୱାସ୍ଥ୍ୟ କେତେ ଦୂର ଖରାପ ଅଛି । ହଉ ଚାଲ, ଦିନ କେତେଟା ତୁମ ମାନଙ୍କର ଅତିଥି ହୋଇ ରୋଗଟା ଭଲ ହୋଉଛି କି ନାହିଁ ପରୀକ୍ଷା କରେ । ପ୍ରକୃତରେ କହୁଥିଲି କି···

: ଭଲ, ଭଲ କଥା । ତାହା ବ୍ୟତୀତ ନୂଆଯାଗାରେ ଆମର ମଧ୍ୟ ଖୁବ୍ ଦରକାରରେ ଆସିପାରିବ କହି ମହିମ ଅଚଳା ଆଡ଼କୁ ଚାହିଁଲା ମୁହୂର୍ତ୍ତିକ ଭିତରେ ତାର ନୀରବ ବ୍ୟଥିତ ଦୃଷ୍ଟି ଯେପରି ସମସ୍ତଙ୍କୁ ଜଣାଇଲା ପରି ଉଚ୍ଚ କଣ୍ଠରେ କହି ଉଠିଲା—ମୋତେ କହିଲ ନାହିଁ କାହିଁକି ତାର ସ୍ୱାସ୍ଥ୍ୟ ପାଇଁ ମନରେ ଏତେ ଉତ୍କଣ୍ଠା ଥିଲା ? ଆଜି ସକାଳବେଳା ପର୍ଯ୍ୟନ୍ତ ଢଭେଙ୍ଗେ ଆଲୋଚନା କଲାଭଳି ଲୁଚକାଳି ଖେଳିବାର କଅଣ ପ୍ରୟୋଜନ ଥିଲା ଅଚଳା ?

ଅଚଳା କିନ୍ତୁ ଅନ୍ୟ ଦିଗକୁ ମୁହଁ ଫେରାଇ ନେଇ ଚାହିଁ ରହିଲା । ଏବଂ ସୁରେଶ କ୍ଷଣକାଳ ପାଇଁ ବିମୂଢ଼ ହେଲାପରି ଅଟକି ଯାଇ ହଠାତ୍ ଭିତରର ଉତ୍ତେଜନାକୁ ବାହାରକୁ ଠେଲି ଆଣି, ଅକାରଣ ବ୍ୟସ୍ତତାର ସହିତ କହି ଉଠିଲା—ଚାଲ, ଚାଲ, ଭିତରକୁ ଚାଲ । ଆଉ ଡେରି କରି ଲାଭ ନାହିଁ । ଯାହା କଥା

ଗାଡ଼ି ଭିତରେ ହେବା । ଗୁଲନ୍ତି କେଦାରବାବୁ; କହି ସମସ୍ତଙ୍କୁ ଠେଲି ଦେଇ ସେ ଭିତରକୁ ପଶିଗଲି ।

କେଦାରବାବୁ ବହୁତ ସମୟ ପର୍ଯ୍ୟନ୍ତ କିଛି କହି ପାରିଲେ ନାହିଁ । ମହିମକୁ ଗାଡ଼ିରେ ବସାଇ ଦେଇ ଅଚଳାକୁ ମହିଳାମାନଙ୍କ ପାଇଁ ଥିବା ସ୍ୱତନ୍ତ୍ର ବଗିରେ ଉଠାଇ ଦେଲେ । କେବଳ ଗାଡ଼ି ଗୁଡ଼ିବା ସମୟରେ ସୁରେଶ ମୁଣ୍ଡ ନୁଆଁଇ ନମସ୍କାର କରି ଯେତେବେଳେ ମହିମ ନିକଟରେ ବସିଲି, ସେତେବେଳେ ଯାଇ ତାକୁ କହିଲେ, ତୁମେ ଯେତେବେଳେ ସଙ୍ଗରେ ଅଛ, ଆଶା କରୁଛି ବାଟରେ କିଛି ଅସୁବିଧା ହେବ ନାହିଁ । ମହିଳା କମ୍ପାର୍ଟମେଣ୍ଟଟା ଟିକିଏ ଦୂରରେ ରହିଲି । ମଝିରେ ମଝିରେ ଯାଇ ଖବର ବୁଝି ଆସୁଥିବ ସୁରେଶ; ଏବଂ ମହିମକୁ ଆଉଥରେ ସତର୍କ କରିଦେଇ କହିଲେ—ପହଞ୍ଚିବା ପରେ ଚିଠି ଦେବାକୁ ଯେପରି ଭୁଲି ନ ଯାଅ । ନଚେତ୍ ମୁଁ ଅତ୍ୟନ୍ତ ଉଦ୍‌ବିଗ୍ନ ହୋଇ ରହିବି, କହି ଆଖିର ଲୁହକୁ ରୁମାଲରେ ଗୁପିଧରି ଗୁଲିଗଲେ । ତାଙ୍କର ବିଷଣ୍ଣ ମୁହଁର ସ୍ନେହାର୍ଦ୍ର କଣ୍ଠସ୍ୱର ବହୁକ୍ଷଣ ପାଇଁ ଦୁଇ ବନ୍ଧୁଙ୍କର କାନକୁ ଶୁଣା ଯାଉଥିଲି ।

ଗାଡ଼ି ଗୁଡ଼ିବା ମାତ୍ରେ କାଳେ ଥଣ୍ଡା ଲାଗିବ ଏଇ ଭୟରେ ମହିମ କମ୍ବଳ ଘୋଡ଼ି ହୋଇ ଶୋଇ ପଡ଼ିଲା । କିନ୍ତୁ ସୁରେଶ ସେହିଠାରେ ସେହିପରି ବସି ରହିଲା । ତାର ମୁହଁକୁ ଗୁହିଁ ଦେଖିବା ପାଇଁ ସେଠାରେ କେହି ଲୋକ ନଥିଲେ । ଥିଲେ ସେ କେହି କହିପାରନ୍ତା ଏ ଦୁଇଟା ଆଖିର ଦୃଷ୍ଟି କୌଣସି ମତେ ସ୍ୱାଭାବିକ୍ ନୁହେଁ ଏବଂ ଭିତରେ ଅତିବଡ଼ ଅଗ୍ନିକାଣ୍ଡ ନ ଘଟିଲେ ମନୁଷ୍ୟର ଆଖି ମଧ୍ୟରୁ କଦାପି ଏପରି ତୀବ୍ର ଆଲୋକ ଛୁଟି ଆସିପାରିବ ନାହିଁ ।

ଗ୍ରେଟ ପ୍ୟାସେଞ୍ଜର ଗାଡ଼ିଟି ସାନ ବଡ଼ ପ୍ରତ୍ୟେକ ଷ୍ଟେସନରେ ରହି ରହି ଆଗେଇ ଚାଲିଲା । ଗୋଟାଏ ବଡ଼ ଷ୍ଟେସନରେ ଗାଡ଼ି ରହିବାର ଉପକ୍ରମ କଲାକ୍ଷଣି ମହିମ କମ୍ବଳ ଭିତରୁ ମୁହଟି କାଢ଼ି କହି ଉଠିଲା—ବର୍ତ୍ତମାନ ତ ଭିଡ଼ ନାହିଁ । ଟିକିଏ ଶୋଇ ପଡ଼ିଲୁ ନାହିଁ ସୁରେଶ । ବାଟରେ ଏପରି ସୁବିଧା ହୁଏତ ଆଉ ମିଳି ନ ପାରେ ।

ସୁରେଶ ଚମକି ପଡ଼ି କହିଲା—ହଁ, ଏଇ ଯାଉଛି ମୁଁ ଶୋଇ ପଡ଼ିବି ।

ଏହି ଚମକଟା ଏପରି ଅସଙ୍ଗତ ମନେ ହେଲା ଯାହା ଫଳରେ ମହିମ ବିସ୍ମୟରେ ଅବାକ୍ ହୋଇ ଉଠିଲା । ସେ ହୁଏତ ତାର ଅଜାଣତରେ କିଛି ଅପରାଧ କରି ବସିଥିଲା, ଧରା ପଡ଼ିବା ଭୟରେ ଏପରି ତ୍ରସ୍ତ ହୋଇ ପଡ଼ିଛି, ଏହି

ଭାବନା ଅନେକ କ୍ଷଣ ପର୍ଯ୍ୟନ୍ତ ମଧୁମ ମନରୁ ଦୂର ହୋଇ ପାରିଲା ନାହିଁ ।

ଗାଡ଼ି ଆସି ଷ୍ଟେସନରେ ଅଟକି ଗଲା ।

ସୁରେଶ ନିଜର ଅବସ୍ଥାଟା ଜାଣିପାରି ସାମାନ୍ୟ ହସର ଆଭା ଉକୁଟାଇ କହିଲା—ମୁଁ ଭାବିଲି ତୁ ବୋଧହୁଏ ଶୋଇଛୁ । ସେଥିପାଇଁ ଏପରି ଚମକି ପଡ଼ିଲି ।

ମଧୁମ କେବଳ କହିଲା—ହୁଁ । କିନ୍ତୁ ଏ ଅନାବଶ୍ୟକ କୈଫିୟତଟା ତାକୁ ଆଦୌ ଭଲ ଲାଗିଲା ନାହିଁ ।

ସୁରେଶ କହିଲା—ଅଚଳାର କ'ଣ ଦରକାର କି ନାହିଁ ଥରେ ପାଇଁ ବୁଝି ଆସି ପାରିଲେ···

: କିନ୍ତୁ ବର୍ଷା ହେଉଛି ଯେ···

: ଏ କିଛି ନୁହେଁ । ମୁଁ ଚଟ୍ କରି ଦେଖି ଆସୁଛି କହି ସୁରେଶ ଦରଜା ଖୋଲି ଓହ୍ଲାଇ ଗଲା । ସେ ମହିଳା ବଗି ନିକଟରେ ଆସି ଦେଖିଲା—ଅଚଳା ଇତି ମଧ୍ୟରେ ଜଣେ ସମବୟସ୍କ ସଙ୍ଗୀ ପାଇ ତାହାସହିତ ଗପ ଜମେଇଦେଇଛି । ସେଇ ସଙ୍ଗୀନିହିଁ ଆଗେ ସୁରେଶକୁ ଦେଖି ପାରି ଅଚଳାକୁ ଚିମୁଟିଦେଇ ଅନ୍ୟ ଆଡ଼କୁ ମୁହଁ ଫେରାଇ ବସିଲା । ଅଚଳା ଚାହିଁବା କ୍ଷଣି ସୁରେଶ କ'ଣ ଦରକାର ବୋଲି ପ୍ରଶ୍ନକଲା ।

ଅଚଳା ମୁଣ୍ଡ ହଲାଇ କହିଲା—ନା । ତୁମକୁ ବର୍ଷାରେ ଓଦା ହେବାକୁ ପଡ଼ିବ ନାହିଁ । ଯାଅ, କହି କିନ୍ତୁ ନିଜେ ଝରକା ନିକଟକୁ ଉଠି ଆସି ମୃଦୁ କଣ୍ଠରେ କହିଲା—ମୋ ପାଇଁ ତୁମକୁ ଚିନ୍ତା କରିବାକୁ ପଡ଼ିବ ନାହିଁ । କିନ୍ତୁ ଯାହା ପାଇଁ ସମସ୍ତଙ୍କର ଭାବନା; ତାଙ୍କ ପ୍ରତି ଦୃଷ୍ଟି ରଖିବ ।

ସୁରେଶ କହିଲା—ସେ କଥା ଠିକ୍ ଅଛି । କିନ୍ତୁ ତୁମର କିଛି ଜଳଖିଆ, ଚାହା, ଏପରିକି ଥଣ୍ଡା ପାଣି ଗ୍ଲାସଟାଏ···

ଅଚଳା ହସି କରି କହିଲା—ନା ନା, ମୁଁ କିଛି ଚାହେଁ ନାହିଁ । କିନ୍ତୁ ତୁମେ ନିଜେ କଣ ଏଇମିତି ବର୍ଷାରେ ଭିଜି ନିଜ ଦେହକୁ ଅସୁସ୍ଥ କରିବାକୁ ଚାହୁଁଛ କି ?

ସୁରେଶ ପଲକ ମାତ୍ରକ ପାଇଁ ଅଚଳା ମୁହଁକୁ ଚାହିଁ ଦେଇ ଦୃଷ୍ଟି ତଳକୁ କଲା । କହିଲା—ଅନେକ ଦିନ ହେଲା ଚାହୁଁଛିତ । କିନ୍ତୁ ହତଭାଗ୍ୟ କପାଳକୁ ବେମାରି ଆସି ଜୁଟୁଛି କେତେବେଳେ ?

ଏକଥା ଶୁଣି ଅଚଳାର କାନମୂଳ ପର୍ଯ୍ୟନ୍ତ ଲଜ୍ଜ୍ୟାରେ ନାଲି ହୋଇ ଉଠିଲା । କିନ୍ତୁ କାଳେ ସୁରେଶ ମୁହଁ ଠେକ ଦେଖିନେଇପାରେ, ଏହି ଆଶଙ୍କା ହେତୁ ସେ କୌଣସି ମତେ ଏହାକୁ ପରିହାସର ରଙ୍ଗ ଦେବା ପାଇଁ ଜୋର କରି ହସି ଦେଇ କହିଲା—ଆଚ୍ଛା ଯାଉଛତ । ଚାଲ , ସେଠାରେ ଏପରି ଖଟଣି ତୁମକୁ ଖଟାଇବ ଯେ···

କଥାଟାକୁ କିନ୍ତୁ ଅଚଳା ଶେଷ କରିପାରିଲା ନାହିଁ । ତାର ଅଦୃଶ୍ୟ ଲଜ୍ଜ୍ୟା, ଏହି ଛଦ୍ମ ଅଛାର ବାହ୍ୟ ପ୍ରକାଶକୁ ଯେପରି ଅଧା ବାଟରୁ ଧିକ୍କାର କରି ଫେରାଇ ଦେଲା ।

ଗାଡ଼ି ଛାଡ଼ିବାର ଘଣ୍ଟା ବାଜିଲା । ସୁରେଶ କ'ଣ କହିବ ବୋଲି ମୁହଁ ଉଠାଉ ଉଠାଉ କିନ୍ତୁ ଅବଶେଷରେ କିଛି କହି ନପାରି ଚାଲି ଯାଉଥିଲା ବେଳେ ହଠାତ୍ ବାଧାପାଇ ଫେରି ଦେଖିଲା; ତାର ଚଦରର ଗୋଟାଏ କାନି ଅଚଳାର ହାତ ମୁଠା ଭିତରେ ରହି ଯାଇଛି । ଅଚଳା ଚୂପ୍ ଚୂପ କରି ରାଗିଲା ପରି ଭଙ୍ଗୀ କରି କହି ଉଠିଲା—ତୁମକୁ ଯେ ମୁଁ ସାଙ୍ଗରେ ଆସିବା ପାଇଁ ଡ଼ାକଛି, ଏକଥା ସମସ୍ତଙ୍କ ଆଗରେ ପ୍ରକାଶ କରି ଦେଲ କାହିଁକ ? ମୋତେ କାହିଁକି ଏପରି ଅପ୍ରସ୍ତୁତ କରାଇଲ ?·

ଏଇ କଥାଟାହିଁ ସୁରେଶ ସେତେବେଳେ ମନେ ମନେ ଗୁଡ଼େଇ-ଗୁଡ଼େଇ ହୋଇ ଭାବି ଭାବି ଅନୁଶୋଚନାରେ ଦଗ୍ଧ ହେଉଥିଲା । ସେଥିପାଇଁ କରୁଣ ସ୍ୱରରେ କହିଲା—ମୁଁ ନବୁଝି ଅପରାଧ କରି ପକାଇଛି, ଅଚଳା ।

ଅଚଳା ତଥାପି ମାତ୍ର ଶାନ୍ତ ନ ହୋଇ ସେହିଭଳି କଣ୍ଠରେ କହିଲା—ବୁଝି ନାହଁ କଣ ? ସମସ୍ତଙ୍କ ଆଗରେ ମୋ ମୁଣ୍ଡ ତଳକୁ କରିବା ପାଇଁ ତୁମେ ଇଚ୍ଛାକରି ଏପରି କହିଛ ।

ଟ୍ରେନ ଚାଲିବାକୁ ଆରମ୍ଭ କରିଥିଲା । ସୁରେଶ ଆଉ କଥା କହିବା ପାଇଁ ଅବକାଶ ପାଇଲା ନାହିଁ । ଅଚଳା ଚଦରର କାନି ଛାଡ଼ିଦେବା କ୍ଷଣି ସେ ଥରଥର ଗୋଡ଼ରେ ତରତର ହୋଇ ଚାଲିଯିବାକୁ ଲାଗିଲା । କୌଣସି ଦିଗ ପ୍ରତି ଲକ୍ଷ୍ୟ ନରଖି ସେ ସିଧା ଚାଲିଗଲା; କିନ୍ତୁ ତାକୁ ଆଖି ଦ୍ୱାରା ଅନୁସରଣ କରିବାକୁ ଯାଇ ଆଉ ଜଣଙ୍କର ହୃତ୍ସ୍ପନ୍ଦନ ସମ୍ପୂର୍ଣ୍ଣ ଭାବରେ ବନ୍ଦ ହୋଇଯିବା ପରି ଲାଗିଲା । ଅଚଳାର ଆଖି ଯାଇ ସିଧା ପଡ଼ିଲା ଆଉ ଗୋଟାଏ ଝରକା ଭିତରେ ମୁହଁ ଗଳାଇ ଏକ ଦୃଷ୍ଟିରେ ସେମାନଙ୍କୁ ଚାହିଁ ରହିଥିବା ମହିମ ଉପରେ । ସେ

ସେତେବେଳେ ଫେର ଆସି ନିଜ ସ୍ଥାନରେ ବସି ପଡ଼ିଲା, ସେଇ ଝିଅଟି ପ୍ରଶ୍ନକଲା—ଇଏ ବୋଧହୁଏ ହେଉଛନ୍ତି ଆପଣଙ୍କର ସ୍ୱାମୀ ?

ଅନ୍ୟମନସ୍କ ଅଚଳା କେବଳ ହୁଁଟିଏ ମାତ୍ର ଆଉ ଗୋଟିଏ ଝରକା ବାହାରେ ଦଉଡ଼ିଗଲାପରି ଗଛ, ପଡ଼ିଆ ଓ ଧାନ କ୍ଷେତକୁ ଦେଖିବାରେ ଲାଗିଲା । ଯେଉଁ ଗଳ୍ପଟି ଅସମାପ୍ତରଖି ସୁରେଶ ନିକଟକୁ ସେ ଯାଇଥିଲା, ଫେର ଆସି ତାକୁ ସମ୍ପୂର୍ଣ୍ଣ କରିବା ପାଇଁ ତାର ଆଉ ଇଚ୍ଛା ହେଲାନାହିଁ ।

ପୁଣି ଗ୍ରାମ ପରେ ଗ୍ରାମ, ସହର ପରେ ସହର ପାରି ହୋଇ ଗାଡ଼ି ଆଗେଇ ଚାଲିଲା । ଅଚଳାର ମନ ମଧ୍ୟ ସେହିପରି ପୂର୍ବର କ୍ଷୋଭ ଓ ଅନୁଶୋଚନାକୁ ବାଦ୍ ଦେଇ ନିର୍ମଳ ଓ ପ୍ରଶାନ୍ତ ହୋଇ ଉଠିଲା । ପୁଣି ସେ ନିଜର ସଙ୍ଗିନୀ ସହିତ ଖୁସି ହୋଇ କଥାବାର୍ତ୍ତାରେ ଯୋଗଦେଲା । ଯେଉଁ ଲଜ୍ଜା କେତେ ମୁହୂର୍ତ୍ତ ପୂର୍ବେ ତାକୁ ଘେରି ରହିଥିଲା; ତାହା ଆଉ ତାର ମନରେ ରହିଲା ନାହିଁ ।

ଗୋଟାଏ ବଡ଼ ଷ୍ଟେସନରେ ସୁରେଶ କ୍ୟାଣ୍ଟିନର ଖାନସାମା ହାତରେ ଚାହା ଓ ଅନ୍ୟାନ୍ୟ ଖାଦ୍ୟ ସାମଗ୍ରୀ ଧରି ପହଞ୍ଚିଲା । ଅଚଳା ସେଗୁଡ଼ିକ ଗ୍ରହଣ କରି ସାରି ସ୍ନେହରେ କହିଲା—ତୁମକୁ ଏତେ ଜଞ୍ଜାଳ କରିବାକୁ କିଏ କହୁଛି ? ତୁମ ବନ୍ଧୁଙ୍କର ବୋଧହୁଏ ଏହା....

ଏ ବିଷୟରେ ସୁରେଶ ଯେ କାହାର କହିବାକୁ ଅପେକ୍ଷା ରଖେ ନାହିଁ ଏକଥା ଅଚଳା ଆଗରୁ ଭଲ ଭାବରେ ଜାଣେ; ତଥାପି ଅଯାଚିତ ଯତ୍ନ ଟିକିକ ବଦଳରେ ସେ ଏଇ କୋମଳ ଅଭିଯୋଗଟାକୁ ଯେପରି ଗ୍ରହଣ ନକରି ରହି ପାରିଲା ନାହିଁ ।

ସୁରେଶ ଚୁପି ଚୁପି ହସି କରି ଚାଲିଯାଉଥିଲା । ଅଚଳା ପଛରୁ ଫେର୍ ଡ଼ାକିଲା । ସେହି ଚାପା ହସରୁ ଧାରେ ଏବେ ସୁଦ୍ଧା ତାର ଓଠରେ ଲାଗି ରହିଥିଲା । ତା ପ୍ରତି ଦୃଷ୍ଟି ପଡ଼ିବାମାତ୍ରେ ଅଚଳା ହଠାତ୍ ମୁରୁକି ହସି ପକାଇ ଲଜ୍ଜାରେ ରଙ୍ଗ ପଡ଼ିଗଲା । ଏହି ଆରକ୍ତ ଆକୃତିକୁ ସୁରେଶ ଦୁଇ ଆଖି ଦ୍ୱାରା ଯେପରି ଆକଣ୍ଠ ପାନ କରିବାକୁ ଲାଗିଲା ।

ଅଚଳା ସ୍ୱାମୀଙ୍କର ସମ୍ବାଦ ଜାଣିବା ପାଇଁ ସୁରେଶକୁ ଡ଼ାକିଥିଲା । ତାଙ୍କର କୌଣସି ପ୍ରକାର ଅସୁବିଧା କିମ୍ବା କଷ୍ଟ ହେଉଛି କି ନାହିଁ, କିମ୍ବା କଣ ଦରକାର ଅଛି କି ନାହିଁ, କିମ୍ବା ସେ ଥରକ ପାଇଁ ତାଙ୍କ ପାଖକୁ ଯିବାକୁ କହୁଥିଲେ କି ନାହିଁ ? ଏହି ସବୁ ପ୍ରଶ୍ନର ଉତ୍ତର ସେ ଜାଣିବା ପାଇଁ ଚାହିଁଥିଲା । କିନ୍ତୁ

ଏହାପରେ ଆଉ ଗୋଟିଏ ପ୍ରଶ୍ନ ପଚାରିବାକୁ ଯେପରି ତାର ଶକ୍ତି ନଥିଲା । ସେ ଅସଙ୍ଗତ ଗାମ୍ଭୀର୍ଯ୍ୟର ସହିତ ପ୍ରଶ୍ନକଲା—ଆମକୁ ବୋଧହୁଏ ଆଲାହାବାଦ ଠାରେ ଗାଡ଼ି ବଦଳ କରିବାକୁ ହେବ । କେତେ ରାତିରେ ସେଠାରେ ପହଞ୍ଚିବା ? ଟିକିଏ ବୁଝିଆସି ମୋତେ ଖବର ଦେଇଯିବେ ।

: ଆଚ୍ଛା, କହି ସୁରେଶ ବ୍ୟସ୍ତ ହୋଇ ଚାଲିଗଲା ।

ଅଚଲା ଫେରିଆସି ଦେଖିଲା, ସେହି ସ୍ତ୍ରୀ ଲୋକଟି ନିଜ ଯାଗା ଛାଡ଼ି ଅଳ୍ପ ଦୂରରେ ଯାଇ ବସିଛି । ଅଚଲା ମନ ଭିତରର ବିରକ୍ତି ଗୋପନ କରି ନ ପାରି କହିଲା—ବୋଧହୁଏ ଆପଣଙ୍କ ଘରେ କେହି ଚାହା କିମ୍ବା ପାଉଁରୁଟି ଖାଆନ୍ତି ନାହିଁ ?

ସ୍ତ୍ରୀ ଲୋକଟି ବିନୟର ସହିତ ହସିଉଠି କହିଲା—ହାଯ୍ଁ ! ହାଯ୍ଁ ! ଏ ଦୌରାତ୍ମ୍ୟରୁ ଆଜିକାଲି ବୋଧହୁଏ କୌଣସି ଘର ନିସ୍ତାର ପାଇଯାଇଛି ବୋଲି ଆପଣ ଭାବୁଛନ୍ତି ? ଏହାକୁ ତ ସମସ୍ତେ ଖାଆନ୍ତି ।

ଅଚଲା କହିଲା—କିନ୍ତୁ ବଡ଼ ଘୃଣାରେ ଦୂରେଇ ହୋଇ ବସି ପଡ଼ିଛ ଯେ ?

ସ୍ତ୍ରୀ ଲୋକଟି ଲଜ୍ଜିତ ହୋଇ କହିଲା—ନାହିଁ ଭଉଣୀ; ଘୃଣାରେ ଆଦୌ ନୁହଁ । ପୁରୁଷମାନେ ସମସ୍ତେ ତ ଖାଆନ୍ତି କିନ୍ତୁ ମୋ ଶଶୁର ଏସବୁ ପସନ୍ଦ କରନ୍ତି ନାହିଁ ଆଉ ଆମେମାନେ ତ ସହଜରେ ସ୍ତ୍ରୀ ଲୋକ······

ଦିନେ ଏହିପରି ଖାଇବା ଓ ଛୁଆଁ ଅଛୁଆଁ ଘଟଣା ନେଇ ମୃଣାଳ ସହିତ ତାର ବିଚ୍ଛେଦ ଘଟିଥିଲା । ସେଦିନ ସେ ଯେଉଁକାରଣରୁ ନିଜକୁ ସଂଯତ କରିପାରି ନଥିଲା, ଆଜି ମଧ୍ୟ ସେହିପରି ଗୋଟାଏ ଅନ୍ତର୍ଜ୍ୱାଳାରେ ଆତ୍ମବିସ୍ମୃତ ହୋଇ ଉଠିଲା ଏବଂ ସ୍ତ୍ରୀ ଲୋକଟି କଥା ଶେଷ କରିବା ଆଗରୁ ରୁକ୍ଷ ସ୍ୱରରେ କହି ଉଠିଲା—ଆପଣଙ୍କୁ ହଇରାଣ କରିବାକୁ ମୁଁ ଚାହେଁ ନାହିଁ । ଆପଣ ସ୍ୱଚ୍ଛନ୍ଦରେ ଫେରି ଆସି ଆପଣଙ୍କର ଯାଗାରେ ବସି ପାରନ୍ତି କହି ଆଖିର ପଲକ ମାତ୍ରେ ଚାହା ଏବଂ ସବୁତକ ଖାଦ୍ୟଦ୍ରବ୍ୟ ଝରକାବାଟେ ବାହାରକୁ ଫିଙ୍ଗିଦେଲା । ସ୍ତ୍ରୀ ଲୋକଟି ଅନେକ ସମୟ ପର୍ଯ୍ୟନ୍ତ କାଠଟିପରି ଚୁପ ହୋଇ ବସି ଚାହିଁ ରହିଲା । ତାହାପରେ ମୁହଁବୁଲାଇ ନେଇ ଆଖିର ଲୁହ ପୋଛିବାକୁ ଲାଗିଲା । ମନରେ ତାର ଆଶଙ୍କା ହେଲା ବୋଧହୁଏ ଆଖିର ଲୁହ ଦେଖିଲେ ସେ ଆଉ କଣ କରିବସିବେ ?

କିଛୁକ୍ଷଣ ପରେ ବର୍ଷା କମିଗଲେ ସୁଦ୍ଧା, ମେଘ ଉତ୍ତରୋତ୍ତର ଜମା ହେବାକୁ ଲାଗିଥିଲା । ଅପରାହ୍ନ ପାଖାପାଖି ପୁଣି ବର୍ଷା ମାଡ଼ିଆସିଲା । ଏହି ବର୍ଷା ଭିତରେ ସ୍ତ୍ରୀ ଲୋକଟି ଓହ୍ଲାଇ ଯିବାପାଇଁ ତାର ଜିନିଷପତ୍ର ଏକାଠି କରିବା ଆୟୋଜନରେ ଲାଗିପଡ଼ିଲା ।

ଅଚଳା ଆଉ ନିଜକୁ ସଂଯତ ହୋଇ ରହି ପାରିଲାନାହିଁ । ନିଜେ ଯାଇ ତାହା ପାଖରେ ବସିପଡ଼ିଲା । ତାର ହାତକୁ ନିଜ ହାତମୁଠା ଭିତରକୁ ଟାଣିନେଇ କୋମଳ କଣ୍ଠରେ କହିଲା—ନିଜର ବ୍ୟବହାର ପାଇଁ ମୁଁ ଅତ୍ୟନ୍ତ ଲଜ୍ଜିତ । ମୋତେ ମାଫ୍‌କରନ୍ତୁ ।

ସ୍ତ୍ରୀ ଲୋକଟି ହସିଲା । କିନ୍ତୁ ହଠାତ୍ କୌଣସି ଉତ୍ତର ଦେଇପାରିଲା ନାହିଁ ।

ଅଚଳା ପୁନର୍ବାର କହିଲା ମୋ ମନ ଖରାପ ଥିଲେ ମୁଁ କଣ ଯେ କରିବସେ ତାର କୌଣସି ଠିକ୍‌ଠିକଣା ରହେ ନାହିଁ । ସ୍ୱାମୀ ମୋର ଅସୁସ୍ଥ । ତାଙ୍କୁ ସଙ୍ଗରେ ଧରି ଜଳବାୟୁ ପରିବର୍ତ୍ତନ କରିବା ପାଇଁ ଯାଉଛି । ଭଲ ଯଦି ହୁଅନ୍ତି ତ ଭଲ । ନହେଲେ ବିଦେଶ ଯାଗାରେ କ'ଣ ଯେ ଅବସ୍ଥା ହେବ ସେ କଥା କେବଳ ଭଗବାନ ହିଁ ଜାଣନ୍ତି, କହୁ କହୁ ତାର କଣ୍ଠସ୍ୱର ଆର୍ଦ୍ର ହୋଇଉଠିଲା ।

ସ୍ତ୍ରୀ ଲୋକଟି ଆଶ୍ଚର୍ଯ୍ୟ ହୋଇ କହିଲା—କିନ୍ତୁ ଆପଣଙ୍କର ସ୍ୱାମୀଙ୍କୁ ଦେଖିଲେ ସେ'ତ ଅସୁସ୍ଥ ଥିଲାପରି ମନେ ହୁଅନ୍ତି ନାହିଁ !

ଅଚଳା କହିଲା—ମୋ ସ୍ୱାମୀ ଏଇ ଗାଡ଼ିରେ ଅଛନ୍ତି । କିନ୍ତୁ ଆପଣ ତାଙ୍କୁ ଦେଖି ନାହାନ୍ତି । ଏ ହେଉଛନ୍ତି ମୋ ସ୍ୱାମୀଙ୍କର ବନ୍ଧୁ ।

ସ୍ତ୍ରୀ ଲୋକଟି ଅଧିକ ବିସ୍ମିତ ହୋଇ ଚୁପ୍ ହୋଇଗଲା ।

ଏହି ବନ୍ଧୁଟି ତାର ସ୍ୱାମୀ କି ନାହିଁ ପଚାରିବା ବେଳେ ସେ ଯେ ହୁଁ କହି ଉତ୍ତର ଦେଇଥିଲା, ଏକଥା ଅଚଳାର ଆଦୌ ମନେ ନଥିଲା । କିନ୍ତୁ ସ୍ତ୍ରୀ ଲୋକଟି ସେକଥା ଆଦୌ ପାଶୋରି ପାରିନାହିଁ । କିନ୍ତୁ ତାର ବିସ୍ମୟକୁ ଅଚଳା ଅନ୍ୟ ରୂପରେ ଗ୍ରହଣ କଲା । ସୁତରାଂ ସହିତ ତାହାର ଆଚରଣ ଏବଂ ବାକ୍ୟାଳାପ ଯେ ଜଣେ ସାଧାରଣ ହିନ୍ଦୁ ନାରୀ ଆଖିରେ ବିଷ ସଦୃଶ ଦେଖା ଯାଇଛି, ଭାବିବାକ୍ଷଣି ସେ ଲଜ୍ଜାରେ ମରିଗଲା ଏବଂ ଏକାନ୍ତ ନିରର୍ଥକ ଏବଂ ବିଚିତ୍ର କୈଫିୟତ ଦେବାକୁ ଯାଇ କହି ବସିଲା—ମୁଁ ହିନ୍ଦୁ ନୁହେଁ । ବ୍ରାହ୍ମ ।

ସ୍ତ୍ରୀ ଲୋକଟି ତଥାପି ନୀରବ ରହିବାର ଦେଖି ଅଚଳା ସଙ୍କୋଚରେ ତାର ହାତଟି ଘୁଞ୍ଚେଇଦେଇ କହିଲା, ମୋର ଆଗ୍ରହବ୍ୟବହାରକୁ ତୁମେ ଭଲ ଭାବରେ ବୁଝି ନପାରିଲେ ସୁଦ୍ଧା ମୋତେ ଅଭଦ୍ର ବୋଲି ଭାବବ ନାହିଁ ।

ଏଇଥର ଜାଣ ସ୍ତ୍ରୀ ଲୋକଟି ହସିଲା । କହିଲା, କିନ୍ତୁ ମୁଁ ଭାବୁଥିଲି ଯେ ଆପଣ ଯେ କୌଣସି କାରଣରୁ ହେଉ ମୋ ଠାରୁ ଦୂରରେ ରହିବାକୁ ଚାହାଁନ୍ତି ।

: କିପରି ଜାଣିଲେ ?

ମୋର ମଧ୍ୟ ଜଣେ, ଦୁଇଜଣ ଆତ୍ମୀୟ ଆପଣଙ୍କ ଧର୍ମର ଅଛନ୍ତି । ସେମାନଙ୍କଠାରୁ ମୁଁ ଏହା ଜାଣି ପାରିଛି କହି ସେ ହସିବାକୁ ଲାଗିଲା ।

ଅଚଳା ପ୍ରଶ୍ନ କଲା—ସେ କାରଣଟି କ'ଣ ?

ସ୍ତ୍ରୀ ଲୋକଟି କହିଲା—ଆପଣ ନିଶ୍ଚୟ ଜାଣିଛନ୍ତି । ଯଦି ଜାଣି ନଥାନ୍ତି ତେବେ ଆପଣଙ୍କ ବ୍ରାହ୍ମ ସମାଜର କାହାକୁ ପଚାରି ନେବେ । ହସି ହସି ଏତକ କହି ପ୍ରସଙ୍ଗଟାକୁ ଚାପିଦେଇ କହିଲା—ଆଚ୍ଛା, ଏତେ ଦୂରବାଟ ନ ଯାଇ, ଆପଣଙ୍କ ସ୍ୱାମୀଙ୍କୁ ଧରି ଆମ ଆଡ଼େ ଆସୁନାହାଁନ୍ତି ।

: କେଉଁଠାକୁ ?

: ଆରାସ୍କୁ ?

—ମାଆଲୋ ! ସେଠାରେ କ'ଣ ମଣିଷ ରହନ୍ତି ? ଆମର ଇଏ ଠିକାଦାରୀ କାମ କରନ୍ତି ବୋଲି ମୋତେ ମଝିରେ ମଝିରେ ସେଠାକୁ ଯାଇ ରହିବାକୁ ପଡ଼େ । ମୁଁ ଡିହିରୀର କଥା କହୁଥିଲି । ଶୋଣ ନଦୀକୂଳରେ ଆମର ଘରଟିଏ ଅଛି । ଶୁଣିଲି, ଚାରିଦିନ ସେହିଠାରେ ରହିଲେ ଆପଣଙ୍କର ସ୍ୱାମୀ ନିଶ୍ଚୟ ଭଲ ହୋଇଯିବେ । ଯିବେ କି ସେଠାକୁ ? କହି ସ୍ତ୍ରୀ ଲୋକଟି ଅଚଳାର ହାତଟି ଟାଣି ନେଇ ଉତ୍ତର ଆଶାରେ ତାର ମୁହଁକୁ ଚାହିଁ ରହିଲା ।

ଏହି ଅପରିଚିତାଟିର ଆଗ୍ରହ ଏବଂ ଆନ୍ତରିକତା ଦେଖି ଅଚଳା ମୁଗ୍ଧ ହୋଇ କହି ଉଠିଲା । ଏଥିପାଇଁ ଆପଣଙ୍କ ସ୍ୱାମୀଙ୍କର ଅନୁମତି ଲୋଡ଼ା । ସେ ନ କହିଲେ ତ ଆମେ ଯାଇ ନପାରୁ ।

ସ୍ତ୍ରୀ ଲୋକଟି ମୁଣ୍ଡ ହଲାଇ କହିଲା—ଇସ୍, ଇଏ ଗୋଟାଏ କଥା ନା କ'ଣ ? ଆମେମାନେ ତାଙ୍କର ସେବା କରିବା ପାଇଁ ଆସିଛୁ ବୋଲି ସବୁ କାମରେ କ'ଣ ଦାସୀହୋଇ କାମ କରିବୁ ? ସେ କଥା ଆଦୌ ଭାବିବେ ନାହିଁ ।

ହୁକୁମ ଦେବାବେଳେ କିନ୍ତୁ ଆମେମାନେ ହେଉଛୁ ଅସଲ୍‌କର୍ତ୍ତା । ଯେଉଁଠାକୁ ଯାଉଛନ୍ତି ତାହା ଯଦି ପସନ୍ଦ ନ ହୁଏ ତେବେ ସିଧା ଡିହ୍ରୁଗଡ଼କୁ ଚାଲି ଆସିବେ । ଏତେ ଚିନ୍ତା ଏ ଚନ୍ତା ବ କରିବେ ନାହିଁ । ଅନୁମତି ନେବାର ହେଲେ ମୁଁ ନେବି । ସେଥିରେ ଆପଣଙ୍କର ଯାଏ କେତେ ଆସେ କେତେ ? ଏତିକି କହି ଏହି ସ୍ୱାମୀ ସୋହାଗିନୀ ଝିଅଟି ଅତିଶୟ ଆନନ୍ଦରେ ଅଚଳାକୁ କୁଣ୍ଢାଇ ଧରିଲା ।

ଟ୍ରେନର ମନ୍ଥର ଗତିରୁ ଆଗ ଷ୍ଟେସନ ନିକଟବର୍ତ୍ତୀ ବୋଲି ଜଣା ପଡ଼ିଲାଣି । ସେ ଅଚଳାର ହାତ ଦୁଇଟି କୋଳ ଭିତରକୁ ଟାଣିନେଇ ଆବେଗଭରା କଣ୍ଠରେ କହିଲା—ମୋର ଷ୍ଟେସନ ଆସି ଗଲାଣି । ମୁଁ ଯାଉଛୁ । କିନ୍ତୁ ଆପଣ ଆଉ ଏଣୁ ତେଣୁ ଭାବି ଭାବି ଯେପରି ମନ ଖରାପ ନ କରନ୍ତି ଏକଥା ଆଗରୁ କହି ରଖୁଛୁ । ଆପଣଙ୍କର ଭୟ କରିବାର କିଛି ନାହିଁ । ଆପଣଙ୍କ ସ୍ୱାମୀ ଖୁବ୍ ଶୀଘ୍ର ଭଲ ହୋଇଯିବେ । କିନ୍ତୁ କଥାଦିଅ ଭଉଣୀ, ଫେରିବା ବାଟରେ ଥରକ ପାଇଁ ଆମର ଏ ଘରେ ପାଦଧୂଳି ଦେଇ ଯିବ ତ ?

ଅଚଳା ଆଖିର ଲୁହ ପୋଛି କହିଲା ସେ ସୁଯୋଗ ଯଦି ପାଏ, ନିଶ୍ଚୟ ଆପଣଙ୍କୁ ଥରକ ପାଇଁ ଦେଖା କରି ଯିବି ।

ସ୍ତ୍ରୀ ଲୋକଟି କହିଲା—ପାଇବେ କ'ଣ ? ନିଶ୍ଚୟ ପାଇବେ । ଏଇ ମୁଁ କହି ଯାଉଛୁ ଆପଣଙ୍କର ଏତେ ଭକ୍ତି ଓ ଭଲ ପାଇବାକୁ ଭଗବାନ କେବେ ତୁଚ୍ଛ କରିଦେବେ ନାହିଁ । ଏହା କଦାପି ହୋଇ ପାରେନାହିଁ ।

ଅଚଳା କିଛି ଉତ୍ତର ଦେଇ ପାରିଲା ନାହିଁ; କେବଳ ଭିତରୁ ଉଚ୍ଛୁଳି ଆସୁଥିବା ଗୋଟାଏ କୋହକୁ ଚାପି ରଖିବାକୁ ଚେଷ୍ଟା କରୁଥିଲା ।

ବର୍ଷା ଭିତରେ ଗାଡ଼ି ଆସି ଷ୍ଟେସନରେ ରହିଲା । ଝିଅଟିର ଗ୍ରେଟ ଦାଦା ଅନ୍ୟ ଡବାରେ ଥିଲା । ସେ ଆସି ଗାଡ଼ିର ଦରଜା ଖୋଲି ଠିଆ ହେଲା । ଅଚଳା ତାର କାନପାଖକୁ ମୁହଁ ଆଣି ଚୁପ ଚୁପ କରି କହିଲା—ସ୍ୱାମୀ ନାମ ସିନା ମୁହଁରେ ଧରିବେ ନାହିଁ କିନ୍ତୁ ଆପଣଙ୍କର ନାମଟି କ'ଣ ? ଯଦି କେବେ ଆସିବି; କ'ଣ କହି ଆପଣଙ୍କର ଠିକଣା ପଚାରି ବୁଝିବି ?

ଝିଅଟି ଅଳ୍ପ ଅଳ୍ପ ହସି କହିଲା—ମୋ ନାଁ ହେଉଛି ରାକ୍ଷସୀ । ଡିହ୍ରୀରେ ଯେ କୌଣସି ବଙ୍ଗାଳୀ ଝିଅକୁ ପଚାରିଲେ ସେ ବତାଇ ଦେବ । କିନ୍ତୁ ଦୁଇଜଣ ଥରକ ପାଇଁ ଯେପରି ଆସିବେ । ଆପଣଙ୍କୁ ମୋ ମୁଣ୍ଡରାଣ । ମୁଁ ବାଟଚାହିଁ ବସିରହି-

ଥିବ । ଶୋଣ ନଦୀକୂଳରେ ଆମର ଘର; ଏହା କହି ଦୁଇହାତ ଯୋଡ଼ି ହଠାତ୍ ଗୋଟାଏ ନମସ୍କାର କରି ବର୍ଷାରେ ଭିଜି ଭିଜି ଝିଅଟି ଚାଲିଗଲା ।

ବାଷ୍ପୀୟ ଶକଟ ପୁଣି ଧୀରେ ଧୀରେ ଯାତ୍ରା ଆରମ୍ଭ କଲା । ଏଇ ମାତ୍ର ସନ୍ଧ୍ୟା ହେବାକୁ ଆରମ୍ଭ କରିଛି । କିନ୍ତୁ ଅବିଶ୍ରାନ୍ତ ବର୍ଷା ସହିତ ଝଡ଼ ବତାସ ଯୋଗ ଦେଇ ଅନ୍ଧାରକୁ ଯେପରି ଭୟଙ୍କର ରାତ୍ରିରେ ପରିଣତ କରି ପକାଉଛି । ଝରକା କାଚଖାଟେ ବାହାରକୁ ଚାହିଁ ଚାହିଁ ତାର ଆଖି ଅସୁସ୍ଥତା ଅନୁଭବ କଲା । ତାର ମନେ ହେଲା, ଏହି ସୂଚୀଭେଦ୍ୟ ଅନ୍ଧକାର ଯେପରି ତାର ଆଦିଅନ୍ତକୁ ଗ୍ରାସ କରି ଚାଲିଛି । ଆଲୋକର ମୁହଁ, ଆନନ୍ଦର ମୁହଁ, ଆଉ ସେ କଦାପି ଦେଖି ପାରିବ ନାହିଁ ଏବଂ ଏହି ଅନ୍ଧକାରରୁ ଏ ଜୀବନରେ ତାକୁ ମୁକ୍ତି ମିଳିବ ନାହିଁ । ସଙ୍ଗବିହୀନ ନିର୍ଜନ ମହିଳା ବଗିର ଗୋଟିଏ କଣରେ ସେ ଆଖିବୁଜି ଶୋଇବାକୁ ଚେଷ୍ଟାକଲା । କିନ୍ତୁ ନିଦ ହେବା ବଦଳରେ ତାର ଦୁଇ ଆଖିରୁ ଝର ଝର ହୋଇ ଲୁହ ବହିବାକୁ ଲାଗିଲା । କାହିଁକି ଆଖିରେ ଏତେ ଲୁହ ? ଆହୁରି ଦୁଃଖ କ'ଣ ତାକୁ ଜୀବନରେ ଭୋଗିବାକୁ ହେବ ? ତେଣିକି ଆଉ ସେ ଭାବି ପାରିଲା ନାହିଁ । କୌଣସି ମତେ ଆଖିର ଲୁହକୁ ବନ୍ଦ କରି ହେଲା ନାହିଁ । ଅଦମ୍ୟ ତରଙ୍ଗ ଭଳି ଯେପରି ତାର ମନକୁ ଚୂର୍ଣ୍ଣ ବିଚୂର୍ଣ୍ଣ କରି ଏହି ଲୁହ ଲହରୀ ଆକାରରେ ବହି ଚାଲିଛି । ବାପା ମନେ ପଡ଼ିଲେ । ତାର ସ୍କୁଲ ବେଳର ସାଙ୍ଗସାଥୀମାନେ ମନେ ପଡ଼ିଲେ । ପିଉସୀ ମନେ ପଡ଼ିଲେ । ମୃଣାଳ ମନେ ପଡ଼ିଲା । ଏଇମାତ୍ର ଯେଉଁ ଝିଅଟା ନିଜକୁ ରାକ୍ଷସୀ ବୋଲି ପରିଚୟ ଦେଇ ଚାଲିଗଲା ସେ ମଧ୍ୟ ମନେ ପଡ଼ିଲା । ଯଦୁ ଚାକରଟା ପର୍ଯ୍ୟନ୍ତ ସମସ୍ତେ ଯେପରି ତାର ଆଖି ଆଗରେ ଯିବା ଆସିବା କରିବାକୁ ଲାଗିଲେ । ସମସ୍ତଙ୍କଠାରୁ ଯେପରି ସେ ବିଦାୟ ମାଗି କୌଣସି ଏକ ନିରୁଦ୍ଦେଶ୍ୟ ପଥରେ ଯାତ୍ରା କରିବାକୁ ବାହାରି ପଡ଼ିଲା ଭଳି ତାକୁ ଲାଗିଲା ।

ନିରନ୍ତର ଏହି ଭାବରେ ଅଶ୍ରୁ ବିସର୍ଜନ କରିବା ପରେ ଗାଡ଼ି ଯେତେବେଳେ ପର ଷ୍ଟେସନରେ ପହଞ୍ଚିଲା ସେତେବେଳେ ତାର ବେଦନାତୁର ହୃଦୟ ଅନେକାଂଶରେ ଶାନ୍ତ ହୋଇ ଉଠିଥିଲା । ସେ ଉଠିପଡ଼ି ବ୍ୟାକୁଳ ଦୃଷ୍ଟିରେ ଦେଖିବାକୁ ଲାଗିଲା; ଯଦି ଏହି ଦୁର୍ଯୋଗରେ ଅନ୍ୟ କୌଣସି ମହିଳା ଯାତ୍ରୀ ସେ ବସିଥିବା ଡବାରେ ଉଠିପଡ଼ନ୍ତି ତେବେ ଅନେକ ଅଂଶରେ ନିଃସଙ୍ଗତାରୁ ସେ ତ ମୁକ୍ତି ପାଇ ପାରିବ । ଭିଜି ଭିଜି କେତେକ ଓହ୍ଲାଇଗଲେ, କେତେକ ଅନ୍ୟ ଡ଼ବାରେ ଚଢ଼ିଲେ ସିନା କିନ୍ତୁ କେହି ସେ ବସିଥିବା ଡବାକୁ ଆସିଲେ ନାହିଁ ।

ଗାଡ଼ି ଛାଡ଼ିଦେଲା । କେବଳ ଗୋଟାଏ ଦୀର୍ଘଶ୍ୱାସ ପକାଇ ସେ ତାର ଯାଗାକୁ ଫେରି ଆସିଲା; ଏବଂ ଆପାଦ ମସ୍ତକ ଆଚ୍ଛାଦିତ ହୋଇ ପୂର୍ବବତ୍ ଶୋଇ

ପଡ଼ିବା କ୍ଷଣି ଏଥର କୌଣସି ଅଚନ୍ତ୍ୟମୀୟ କାରଣ ହେତୁ ତାର ଦୁଃଖାର୍ତ୍ତି ଚିତ୍ତ ହଠାତ୍ ସୁଖର କଳ୍ପନାରେ ଆନନ୍ଦିତ ହୋଇ ଉଠିଲା । କିନ୍ତୁ ଏପରି ଭାବନା ତାର ନୂଆ ନୁହେଁ । ଯେଉଁଦିନ ଜଳବାୟୁ ପରିବର୍ତ୍ତନ କରିବାର ପ୍ରସ୍ତାବ ପ୍ରଥମେ ଉପସ୍ଥାପିତ ହୋଇଥିଲା, ସେ ଦିନ ସେ ଏହିପରି ସ୍ୱପ୍ନ ମଧ୍ୟ ଦେଖିଥିଲା । ଆଜି ମଧ୍ୟ ତାର ରୁଗ୍ଣ ସ୍ୱାମୀଙ୍କୁ ମନେ ପକାଇ ତାଙ୍କର ଦୀର୍ଘ ନିରାମୟ ଜୀବନ କାମନା କରି ଏକ ଅପରିଚିତ ସ୍ଥାନରେ ଆନନ୍ଦ ଓ ସୁଖଶାନ୍ତିର ଜାଲ ବୁଣି ବୁଣି ବିଭୋର ହୋଇ ଉଠିଲା ।

କେତେବେଳେ ଏବଂ କେତେ ସମୟ ଧରି ସେ ଯେ ଶୋଇ ପଡ଼ିଥିଲା, ତାର ମନେ ନାହିଁ । ହଠାତ୍ ନିଜର ନାମ କାନରେ ବାଜିବା କ୍ଷଣି ସେ ଧଡ଼ ପଡ଼ ହୋଇ ଉଠି; ବସି ପଡ଼ି ଦେଖିଲା; ଦ୍ୱାର ନିକଟରେ ସୁରେଶ ଠିଆ ହୋଇଛି ଏବଂ ଖୋଲା ଝରକା ଭିତର ଦେଇ ଅଜସ୍ର ବର୍ଷା ପାଣି ଡବା ଭିତରେ ପଶି ପ୍ଲାବନ ସୃଷ୍ଟି କରିଛି ।

ସୁରେଶ ଚିତ୍କାର କରି କହି ଉଠିଲା—ଶୀଘ୍ର ଓହ୍ଲାଇପଡ଼ । ପ୍ଲାଟଫର୍ମରେ ଗାଡ଼ି ଠିଆ ହୋଇଛି । ତୁମର ବ୍ୟାଗଟା କେଉଁଠି ?

ଅଚଳାର ଦୁଇ ଆଖିରେ ଏବେ ସୁଦ୍ଧା ନିଦ ଜମି ରହିଥିଲା । କିନ୍ତୁ ତାର ମନେ ପଡ଼ିଲା ଆଲ୍ଲାହାବାଦ ଷ୍ଟେସନରେ ଜବଲପୁରକୁ ଗାଡ଼ି ବଦଳାଇବାକୁ ପଡ଼ିବ । ସେ ବ୍ୟାଗ୍‌ଟା ଦେଖାଇ ଦେଇ ବ୍ୟସ୍ତହୋଇ ଓହ୍ଲାଇ ପଡ଼ି କହିଲା—କିନ୍ତୁ ଏତେ ପାଣି ଭିତରେ ତାଙ୍କୁ ଓହ୍ଲାଇବି କିପରି ? ଏଠାରେ ଗାଡ଼ି କିମ୍ବା ଟ୍ୟାକ୍‌ସି କିଛି କ'ଣ ମିଳି ପାରିବ ନାହିଁ ? ନହେଲେ ତାଙ୍କର ଅସୁସ୍ଥତା ଯେ ବଢିଯିବ ସୁରେଶ ବାବୁ ।

ସୁରେଶ କ'ଣ ବୋଧହୁଏ ଉତ୍ତର ଦେଲା । କିନ୍ତୁ ବର୍ଷାଶବ୍ଦରେ ତାହା ଆଦୌ ଶୁଣାଗଲା ନାହିଁ । ସେ ଗୋଟାଏ ହାତରେ ବ୍ୟାଗ୍ ଏବଂ ଆର ହାତରେ ଅଚଳାର ଗୋଟାଏ ହାତ ଜୋର କରି ମୁଠାଇ ଧରି ସେ ପାଖର ପ୍ଲାଟଫର୍ମକୁ ଟାଣି ନେଇ ଚାଲିଗଲା । ଟ୍ରେନଟା ଛାଡ଼ିବା ପାଇଁ ପ୍ରସ୍ତୁତ ହୋଇ ଠିଆ ହୋଇଥିଲା । ତାହାର ମଧ୍ୟରେ ଗୋଟାଏ ନିରୋଳା ଡବାରେ ଅଚଳାକୁ ଠେଲି ଭର୍ତ୍ତି କରି ଦେଇ ସୁରେଶ ତରତର ହୋଇ କହିଲା ତୁମେ ସ୍ଥିର ହୋଇ ବସ । ମୁଁ ଯାଉଛି ତାଙ୍କୁ ଓହ୍ଲାଇ ଆଣିବି ।

—ତାହା ହେଲେ ମୋର ଏଇ ମୋଟା ଘୋଡ଼େଇ ହେଲା ଚଦରଟା ନେଇ ଯାଅ; ତାଙ୍କୁ ଭଲକରି ଢାଙ୍କି କରି ଆଣିବ, କହି ଅଚଳା ହାତ ବଢ଼ାଇ

ତାର ଗୃଦରଟା ସୁରେଶ ଉପରକୁ ଫିଙ୍ଗି ଦେବା ବେଳକୁ ସେ ତରତର ହୋଇ ଚ୍ଲି ଯାଇଥିଲା ।

ଅନ୍ଧକାର ଭିତରେ ଯେତେଦୂର ପର୍ଯ୍ୟନ୍ତ ଆଖି ପାଏ, ଅଚଳା ଗୃହିଁ ଦେଖିବାକୁ ପାଇଲା, ଲାଇଟ୍ ପୋଷ୍ଟ ଉପରେ ଲଣ୍ଠନ ଆଲୁଅ ଜଳୁଛି । କିନ୍ତୁ ଏତେ ପ୍ରଚଣ୍ଡ ବର୍ଷାରେ ସେ ଆଲୋକ ଏପରି ଅସ୍ପଷ୍ଟ ଏବଂ ସ୍ୱଳ୍ପ ଯେ ତାହା ସାହାଯ୍ୟରେ କିଛି ଦେଖି ହେଉ ନାହିଁ । ପାଣିରେ ଭିଜି ଭିଜି ଯାତ୍ରୀମାନେ ଏଣେତେଣେ ଦଉଡ଼ା ଦଉଡ଼ି କରୁଛନ୍ତି । କୁଲିମାନେ ମାଲପତ୍ର ନେବା ଆଣିବା କରୁଛନ୍ତି । କର୍ମଗୃରୀମାନେ ବ୍ୟସ୍ତ ହୋଇ ରେଲ ଗାଡ଼ି ଭିତରେ ଚଢ଼ିବାକୁ ଉପକ୍ରମ କରୁଛନ୍ତି—ଏ ସବୁ ଝାପ୍‌ସା ଗ୍ଲାୟା ଭଳି ଦେଖା ଯାଉଥିଲା ମାତ୍ର । କ୍ରମଶଃ ସେସବୁ ମଧ୍ୟ ଅଦୃଶ୍ୟ ହୋଇ ଆସିଲା । ଷ୍ଟେସନର ଘଣ୍ଟା ଠନ୍ ଠନ୍ ହୋଇ ବାଜି ଉଠିଲା ଏବଂ ଯେଉଁ ଟ୍ରେନରୁ ଅଚଳା ଏଇମାତ୍ର ଓହ୍ଲାଇ ଆସିଥିଲା ତାହା ଭୀଷଣ ଅଜଗର ସାପଭଳି ଫଁ ଫଁ ଶବ୍ଦ କରି ଆକାଶ ବତାସ ପ୍ରକମ୍ପିତ କରି ପ୍ଲାଟଫର୍ମ ଛାଡ଼ି ବାହାରି ହୋଇଗଲା । ଏହାପରେ ଅଖଣ୍ଡ ଅନ୍ଧକାର ଷ୍ଟେସନ ଉପରେ ଜମାଟ ବାନ୍ଧି ରହିଲା ।

ପୁଣି ଘଣ୍ଟା ବାଜି ଉଠିଲା । ଏହା ଯେ ଏ ଗାଡ଼ି ପାଇଁ; ଅଚଳା ବୁଝି ପାରିଲା । କିନ୍ତୁ ସେମାନେ ଉଠିଲେ କି ନାହିଁ; କେଉଁଠାରେ ରହିଲେ, ଜିନଷ ପତ୍ର ସବୁ ଠିକ୍ ଠାକ୍ ଉଠି ପାରିଲା କି ନାହିଁ; ନା କିଛି ଗ୍ଲାଡ଼ି ଆସିଲେ ଏସବୁ ଜାଣି ନ ପାରି ସେ ଉଦବଗ୍ନ ହୋଇ ଉଠିଲା ।

ଜଣେ ପିଆଦା ଦେହସାରା କମ୍ବଳ ଢାଙ୍କି ହୋଇ ନୀଳ ଲଣ୍ଠନ ହାତରେ ଧରି ତରତର ହୋଇ ଗ୍ଲଲି ଯାଉଥିବାର ଦେଖି ଅଚଳା ତାକୁ ଡ଼ାକି ପଗ୍ଚରିଲା କ'ଣ ସବୁ ପାସେଞ୍ଜର ଉଠିଲେତ ? ପ୍ରଥମ ଶ୍ରେଣୀ ଜ୍ଵବା ଦେଖି ଲୋକଟା ଅଟକି ଯାଇ ଠିଆ ହୋଇ କହିଲା—ହଁ, ମେମ ସାହେବ ।

ଅଚଳା ପୁଣି ପ୍ରଶ୍ନ କଲା --ସମସ୍ତ କେତେ ହେବ ?

ଲୋକଟା କହିଲା—ନଅଟା ବାଜିବ ।

ନଅ ବାଜିଛି ! ଅଚଳା ଚମକି ପଡ଼ିଲା । କିନ୍ତୁ ଆଲାହାବାଦରେ ପହଞ୍ଚିବାକୁ ତ ରାତି ପାହିଯିବା କଥା । ବ୍ୟାକୁଳ ହୋଇ ପ୍ରଶ୍ନ କଲା --ଏଇଟା ଆଲାହାବାଦ ନା ?

କିନ୍ତୁ ଲୋକଟା ଆଉ ଠିଆ ହୋଇ ପାରୁ ନ ଥିଲା । ଉପରେ ଛାତ ନ ଥିଲା । ଏହା ବ୍ୟତୀତ ଆକାଶର ବର୍ଷା । ବ୍ୟତୀତ ଛାତ ଉପରେ ପଡ଼ୁଥିବା ପାଣି ଛିଟିକି ପଡ଼ି ତାର ଦେହରେ ଛୁଞ୍ଚିପରି ଗଳି ଯାଉଥିଲା । ସେ ହାତର ଆଲୁଅଟା ଜୋରରେ ହଲାଇ ଦେଇ ମୋଗଲ ସରାଇ, ମୋଗଲ ସରାଇ କହି ତର ତର ହୋଇ ଚାଲିଗଲା ।

ବଂଶୀ ବଜାଇ ଗାଡ଼ି ଛାଡ଼ି ଦେଲା । ଏପରି ସମୟରେ ସୁରେଶ ଧାଇଁ ଧାଇଁ କହି ଚାଲିଗଲା—ଭୟ କରିବାର କିଛି ନାହିଁ । ପାଖ ଡବାରେ ମୁଁ ଅଛି ।

ସୁରେଶ ପାଖ ଡବାରେ ଉଠିଲା ସତ କିନ୍ତୁ ସେ ? ଏଇ ତ ସେ ଅନବରତ ଚାହିଁ ରହିଛି । ତାଙ୍କର ଚେହେରା ଯେତେ ଅସ୍ପଷ୍ଟ ହେଉ ନା କାହିଁକି ଥରକ ପାଇଁ କାହିଁ ତାର ଆଖିରେ ଦେଖାଗଲା ନାହିଁ ତ ? ଆଉ ଆଲାହାବାଦ ପରିବର୍ତ୍ତିରେ ଏହି ଷ୍ଟେସନରେ ଅବା ଗାଡ଼ି ବଦଳା ହେଲା କାହିଁକି ? ପାଣିଛିଟାରେ ତାର ଲୁଗା ବ୍ଲାଉଜ ସବୁ ଭିଜିବାକୁ ଲାଗିଥାଏ, ତଥାପି ଅଚଳା ଖୋଲା ଝରକା ଭିତରେ ବାରମ୍ବାର ମୁହଁ ବାହାର କରି ଆଗକୁ ଓ ପଛକୁ ଚାହିଁ କ'ଣ ଦେଖିବାକୁ ଚେଷ୍ଟା କରୁଥାଏ ତାହା କେବଳ ତାକୁ ହିଁ ଜଣା । କିନ୍ତୁ ଏ କଥା ତାର ମନ କେବେ ସ୍ୱୀକାର କରିବାକୁ ଚାହିଁଲା ନାହିଁ ଯେ ଏ ଗାଡ଼ିରେ ତାର ସ୍ୱାମୀ ନାହାନ୍ତି । ସେ ସମ୍ପୂର୍ଣ୍ଣ ଭାବରେ ନିର୍ଭରଶୀଳ ହୋଇ, ଏକାନ୍ତ ଓ ଏକାକୀ ସୁରେଶ ସହିତ କୌଣସି ଏକ ଦିଗହୀନ ନିରୁଦ୍ଦେଶ୍ୟ ପଥରେ ବାହାରି ପଡ଼ିଛି । ତା ମନରୁ ଯେପରି ଦୃଢ଼ ଭାବରେ ଏ କହି ଉଠିଲା—ଏହା କଦାପି ହୋଇ ପାରିବ ନାହିଁ । ଏ ଗାଡ଼ିରେ ସେ ନିଶ୍ଚୟ କେଉଁଠି ଅଛନ୍ତି ଓ ଥିବେ ।

ପୁଣି ଅଚଳା ମନକୁ ମନ ଭାବିବାକୁ ଲାଗିଲା—ସୁରେଶ ଆଉ ଯାହା ହେଉ, ସେ ଯାହା କରୁ ପଛକେ ଜଣେ ନିରପରାଧ ରମଣୀକୁ ତାର ସମାଜରୁ, ଧର୍ମରୁ, ନାରୀତ୍ୱର ସମସ୍ତ ଗୌରବରୁ ଭୁଲାଇ ଆଣି ଏପରି ଭାବରେ ମରଣ ମୁହଁକୁ ଠେଲି ଦେବା ଭଳି ପାଗଳ ସେ ନୁହେଁ । ବିଶେଷତଃ ଏଥିରେ ତାର ଲାଭ ଅବା କ'ଣ ? ଅଚଳାର ଯେଉଁ ଦେହଟା ପ୍ରତି ତାର ଏତେ ଲୋଭ, ସେଇ ଦେହଟାକୁ ଗୋଟାଏ ବେଶ୍ୟାର ଦେହରେ ପରିଣତ କରାଇ ଦେବାକୁ ଅଚଳା ଯେ ବଞ୍ଚି ରହି ପାରିବ ନାହିଁ, ସବୁ ଏହି ସରଳ

କଥାଟିକିକ ସେ ନ ବୁଝି ପାରୁଥାଏ ତେବେ ଭଲ ପାଇଁକୀ କଥା ମେ କେଉଁ ମୁହଁରେ କହୁଥିଲ ? ନା, ନା, ଏହା ହୋଇ ପାରିବ ନାହିଁ । ହୁଏତ ଇଞ୍ଜିନ ପାଖର କେଉଁ ଡ଼ବାରେ ତାଙ୍କୁ ଉଠାଇ ଦେଇଛୁ ଏବଂ ସେ ଦେଖି ପାରି ନାହିଁ ।

ହଠାତ୍ ଗୋଟାଏ ପ୍ରବଳ ବର୍ଷା ଛିଟା ତାର ଆଖି ଓ ମୁହଁରେ ଜୋର କରି ପଡ଼ିବାରୁ ସେ ସଙ୍କୁଚିତ ହୋଇ ଗାଡ଼ି ଭିତରକୁ ମୁହଁ ଫେରାଇ ଆଣି ଦେଖିଲା ତା ଦେହର ସବୁ ଲୁଗାପଟା ସମ୍ପୂର୍ଣ୍ଣ ଭିଜି ଯାଇ ଅମ୍ ଅପ୍ କରି ପାଣି ବହିବାରେ ଲାଗିଛି । ଏହି ଶୀତ ରାତିରେ ସେ କଜାଣି ଯାହା ଭୋଗି ମାରଲାଣି ସେଥିରୁ ମୁକ୍ତି ପାଇବା ପାଇଁ ସେ କମ୍ପିତ ହସ୍ତରେ ବ୍ୟାଗଟା ଟାଣି ଆଣି ଯେତେବେଳେ ଗୃହ ଖୋଲି ବଦଳାଇବା ପାଇଁ ଶାଢ଼ୀ ଆଣିବାର ଆୟୋଜନ କରୁଥିଲା ସେତିକି ବେଳେ ଟ୍ରେନର ଗତି ମନ୍ଥର ହୋଇ ଆସିଲା ଏବଂ ଅଳ୍ପ ସମୟପରେ ତାହା ଆସି ଷ୍ଟେସନରେ ଠିଆ ହେଲା । ଆଗରେ ବର୍ଷା ପାଣି ଜୋରରେ ପଡୁଥିଲା । ତେଣୁ ଷ୍ଟେସନର ନାଁ ଜାଣିବା ସମ୍ଭବପର ନ ଥିଲା । ତଥାପି ବ୍ୟାଗ ଖୋଲା ପଡ଼ିଲା । ସେ ଅନ୍ତରର ଅଦମ୍ୟ ଉଦ୍‌ବେଗର ତାଡ଼ନା ସହି ନ ପାରି ଦ୍ୱାର ଖୋଲି ବାହାରକୁ ଓହ୍ଲାଇପଡ଼ି ଅନ୍ଧାରରେ ଅନ୍ଦାଜ କରି ଭିଜି ଭିଜି ସୁରେଶ ବସିଥିବା ଡ଼ବାର ଝରକା ନିକଟରେ ଠିଆ ହୋଇ ଚିତ୍କାର କରି ଉଠିଲା—ସୁରେଶବାବୁ !

ଏହି ଡ଼ବାରେ ଜଣେ, ଦୁଇ ଜଣ ବଙ୍ଗାଳୀ ଭଦ୍ର ଲୋକ ଓ ଜଣେ ଇଂରେଜ ଯାତ୍ରୀ ଥିଲେ । ସୁରେଶ ଗୋଟାଏ କଣରେ ସିଡ଼ ସଡ଼ ହୋଇ ଆଉଜି କରି ବସି ରହିଥିଲା । ଅଚଳାର ମନରେ ଭୟ ଥିଲା ହୁଏତ ତାର ଗଳାରୁ ସହଜରେ ଶବ୍ଦ ବାହାରି ପାରିବ କି ନାହିଁ ? ସେଥିପାଇଁ ତାର ପ୍ରବଳ ଉଦ୍ୟମର କଣ୍ଠସ୍ୱର ଠିକ୍ ଯେପରି ଆହତ ଜନ୍ତୁ ଭଳି ତୀବ୍ର ଆର୍ତ୍ତନାଦ ସଦୃଶ କେବଳ ସୁରେଶ ନୁହଁ, ଉପସ୍ଥିତ ସମସ୍ତଙ୍କୁ ଚକିତ କରି ଦେଲା । ଅଭିଭୂତ ସୁରେଶ ଆଖି ମେଲି ଦେଖିଲା, ତଳେ ଅଚଳା ଠିଆ ହୋଇଛି । ତାର ଅନାବୃତ ମୁହଁ ଉପରେ ଏକ ସମୟରେ ଅଜସ୍ର ଜଳଧାର ଉପରେ ଗାଡ଼ିର ଉଜ୍ଜ୍ୱଳ ଆଲୋକ ପଡ଼ି ଏପରି ଏକ ଇନ୍ଦ୍ରଜାଲ ରଚନା କରି ବସିଛି ଯେ, ସମସ୍ତ ଯାତ୍ରୀଙ୍କର ମୁଗ୍ଧ ଦୃଷ୍ଟି ଆଶ୍ଚର୍ଯ୍ୟରେ ସେଠାରେ ଏକାନ୍ତ ହୋଇ ପଡ଼ିଛି । ସେ ଉଠି ପାଖକୁ ଯିବା ମାତ୍ରେ ଅଚଳା ପ୍ରଶ୍ନ କଲା ତାଙ୍କୁ ଦେଖୁନ ତ ? କାହାନ୍ତି ସେ ? କେଉଁ ଗାଡ଼ିରେ ତାଙ୍କୁ ଉଠାଇଛ ?

: ଚାଲ, ଦେଖାଇ ଦେଉଛି କହି ସୁରେଶ ବର୍ଷା ଭିତରେ ତଳକୁ ଓହ୍ଲାଇ ପଡ଼ିଲା ଏବଂ ଯେଉଁ ଆଡୁ ଅଚଳା ଆସିଥିଲା, ସେହି ଦିଗ ଆଡ଼େ ତାହାର ହାତ ଧରି ଟାଣି ଟାଣି ନେଇଗଲା ।

ବଙ୍ଗାଳୀ ଭଦ୍ରବ୍ୟକ୍ତି ଦୁଇଜଣ ପରସ୍ପର ମୁହଁ ଚାହିଁ ହସିବାକୁ ଲାଗିଲେ । ଇଂରେଜ ଯାତ୍ରୀ ଜଣକ କିଛି ବୁଝି ନ ପାରିଲେ ସୁଦ୍ଧା ନାରୀ କଣ୍ଠର ଆକୁଳ ପ୍ରଶ୍ନ ତାଙ୍କର ମର୍ମ ସ୍ଥଳରେ ଆଘାତ କରିଥିଲା, ସେଥିପାଇଁ ସେ ତଳେ ପଡ଼ିଥିବା କମ୍ବଳକୁ ପାଦ ଉପରକୁ ଟାଣି ନେଇ ଝରକା ଭିତରେ ମୁଣ୍ଡ ଗଳାଇ ସ୍ତବ୍ଧ ଆଖିରେ ବାହାରକୁ ଚାହିଁ ରହିଲେ ।

ଅଚଳାର ଡ଼ବା ସମ୍ମୁଖରେ ପହଞ୍ଚି ସୁରେଶ ଟିକିଏ ଅଟକି ଯାଇ ଠିଆ ହେଲା । ଭିତରକୁ ଆଖି ପକାଇ ଭୟରେ ପ୍ରଶ୍ନ କଲା—ତୁମ ବ୍ୟାଗ୍ ଖୋଲା ପଡ଼ିଛି କିପରି ? ଏବଂ ପ୍ରତ୍ୟୁତ୍ତର ପାଇଁ ଏକ ମିନିଟ ଅପେକ୍ଷା ନ କରି ଅଚଳାକୁ ଜୋର କରି ଡ଼ବା ଭିତରକୁ ଟାଣି ନେଇ କବାଟ ବନ୍ଦ କରିଦେଲା ।

ସୁରେଶ ଅଙ୍ଗୁଳି ନିର୍ଦ୍ଦେଶ କରି ପ୍ରଶ୍ନ କଲା—ଏଇଟା ଖୋଲିଲା କିଏ ?

ଅଚଳା କହିଲା—ମୁଁ । କିନ୍ତୁ ସେ ସବୁ ସେଢକରେ ଥାଉ । ସେ କେଉଁଠି ଅଛନ୍ତି ଆଗ ମୋତେ ଦେଖାଇ ଦିଅ । ନଚେତ୍ କହି ଦିଅ କେଉଁ ଦିଗରେ, ତାହା ହେଲେ ମୁଁ ନିଜେ ନ ହେଲେ ଖୋଜି ବାହାର କରିଦେବି, କହି କହି ସେ ଦ୍ୱାର ଆଡ଼କୁ ପାଦ ବଢ଼ାଇବା କ୍ଷଣି ସୁରେଶ ତାର ହାତ ଧରି ପକାଇ କହିଲା—ଏତେ ବ୍ୟସ୍ତ କାହିଁକି ? ଗାଡ଼ି ଛାଡ଼ି ଦେଉଛି, ଦେଖିପାରୁଛ ତ ?

ଅଚଳା ବାହାରର ଅନ୍ଧକାରକୁ ଚାହିଁ ଦେଖିଲା, କଥାଟା ସତ । ଗାଡ଼ି ଚାଲିବାକୁ ଆରମ୍ଭ କରିଛି । ତାର ଦୁଇ ଆଖିରେ ନିରାଶା ଯେପରି ମୂର୍ତ୍ତି ଧରି ଦେଖାଦେଲା । ସେ ଫେରିପଡ଼ି ସେହି ଦୃଷ୍ଟି ଦ୍ୱାରା କେବଳ ଥରକ ପାଇଁ ସୁରେଶର ପାଣ୍ଡୁର ଶ୍ରୀହୀନ ମୁହଁକୁ ଚାହିଁ ନେଲା, ଏବଂ ପରକ୍ଷଣରେ ଗଛ କାଟିଲା ପରି ତଳେ ପଡ଼ିଯାଇ ସୁରେଶର ପାଦ ଦୁଇଟା ଧରି କାନ୍ଦି ଉଠି କହିଲା—କେଉଁଠି ସେ ? ତାଙ୍କୁ କ'ଣ ତୁମେ ଶୋଇଥିବା ଅବସ୍ଥାରେ ଗାଡ଼ିରୁ ପେଲି ଦେଇଛ ? ବୈରୀ ମଣିଷଟାକୁ ଖୁନ କରି ତୁମର·····

ଏତେ ବଡ଼ ଭୀଷଣ ଅଭିଯୋଗ ଅଚଳାର କିନ୍ତୁ ସମାପ୍ତି ହୋଇ ପାରିଲା ନାହିଁ, ହଠାତ୍ ତାର ବୁକୁ ଫାଟା କ୍ରନ୍ଦନ ଯେପରି ସୁରେଶକୁ ପାଷାଣ କରିଦେଲା । ସେ ସ୍ତବ୍ଧ ହୋଇ ବେଞ୍ଚ ଉପରେ ବସି ରହିଲା । ତା ପରେ ତାର ପାଦ ତଳେ କ'ଣ ଯେ ଘଟି ଯାଉଛି ଯେପରି କିଛିକ୍ଷଣ ପାଇଁ ସେ ଆଦୌ ଜାଣି ପାରିଲା ନାହିଁ, ଅନେକ ସମୟ ପରେ ସେ ପାଦ ଦୁଇଟା ଟାଣି ନେବାପାଇଁ ଚେଷ୍ଟାକରି

ଧୀରେ ଧୀରେ କହିଲା ଏପରି କାମ ମୁଁ କରିପାରିବ ବୋଲି ତୁମର ବିଶ୍ୱାସ ହୋଇପାରୁଛି ?

ଅଚଳା ସେହିପରି କାନ୍ଦି କାନ୍ଦି ଜବାବ ଦେଲା, ତୁମେ ସବୁ କରିପାର । ଆମଘରେ ନିଆଁ ଲଗାଇ ତୁମେ ତାଙ୍କୁ ପୋଡ଼ି ମାରିବାପାଇଁ ଚାହିଁଥିଲ । ତୁମେ ତାଙ୍କୁ କେଉଁଠି କ'ଣ କରିଛ, ତୁମ ପାଦତଳେ ପଡୁଛି, ଦୟାକରି ମୋତେ କୁହ; କହି ସେ ଆଉଥରେ ଜୋରରେ ତାର ପାଦ ଦୁଇଟା ଜାବୁଡ଼ି ଧରି ତାହାରି ଉପରେ ମୁଣ୍ଡ ପିଟିବାକୁ ଲାଗିଲା । କିନ୍ତୁ ପାଦ ଦୁଇଟା ଯାହାର ସେ କିନ୍ତୁ ସଙ୍ଜ୍ଞାହୀନ ଭଳି କେବଳ ନୀରବରେ ଆଖିମେଲି ଚାହିଁ ରହିଥିଲା ।

ବାହାରେ ରାତ୍ରି ପ୍ରମତ୍ତ ହୋଇ ଉଠିଥାଏ । ଆକାଶରେ ବିଜୁଳି ଘନ ଘନ ଦେଖା ଦେଇ ତାଣ୍ଡବ ଜଣାଇବାରେ ଲାଗିଥାଏ । ଉଚ୍ଛୃଙ୍ଖଳ ଝଡ଼ ଓ ବର୍ଷା ସମଗ୍ର ପୃଥିବୀକୁ ଲଣ୍ଡ ଭଣ୍ଡ କରିବାରେ ଲାଗିପଡ଼ିଲେ । କିନ୍ତୁ ଏ ଦୁଇଟି ଅଭିଶପ୍ତ ନର-ନାରୀଙ୍କ ଅନ୍ଧ ହୃଦୟ ତଳେ ଯେଉଁ ପ୍ରଳୟ ଗର୍ଜି ଉଠୁଥିଲା ତାହା ନିକଟରେ ଏସବୁ ନିହାତି ତୁଚ୍ଛ ଏବଂ ଅକିଞ୍ଚିତକର ହୋଇ ପଡୁଥିଲା ।

ହଠାତ୍ ଅଚଳା ତାହାର ଭୂ-ଶଯ୍ୟା ଛାଡ଼ି ଶୀଘ୍ର ଉଠିପଡ଼ିବା କ୍ଷଣି ଯେପରି ସୁରେଶର ସ୍ୱପ୍ନ ଭାଙ୍ଗିଗଲା । ସେ ଚାହିଁ ଦେଖିଲା ଷ୍ଟେସନ ପାଖେଇ ଆସିବାରୁ ଗାଡ଼ିର ଗତି ମନ୍ଥର ହୋଇ ପଡ଼ିଛି । ଅଚଳା କାହିଁକି ଯେ ଏପରି ଠିଆ ହୋଇ-ପଡ଼ିଲା, ତାହା ବୁଝିବାକୁ ବିଳମ୍ବ ହେଲାନାହିଁ । ପ୍ରବଳ ଚେଷ୍ଟାକରି ନିଜକୁ ସଂଯତ କରି ନେଇ ସୁରେଶ ଡ଼ାହାଣ ହାତ ବଢ଼ାଇ ତାଙ୍କୁ ବାଧାଦେଇ କହିଲା—ବସ । ମହିମ ଏ ଗାଡ଼ିରେ ନାହିଁ ।

ନାହାନ୍ତି !! ତେବେ କେଉଁଠାରେ ସେ ? କହୁ କହୁ ଅଚଳା ବେଞ୍ଚଉପରେ ଲଥ୍‌କରି ବସି ପଡ଼ିଲା ।

ସୁରେଶ ଲକ୍ଷ୍ୟକରି ଦେଖିଲା ତାର ମୁହଁରୁ ରକ୍ତର ଶେଷ ଚିହ୍ନ ଟିକକ ଲିଭି ଯାଇଛି । ବୋଧହୁଏ ଏତେ କ୍ଷଣ ଧରି ଯେଉଁ କନ୍ଦାକଟା, ଏତେ ମୁଣ୍ଡ କଚଡ଼ା ମଧ୍ୟରେ ତାର ହୃଦୟରେ ସମସ୍ତ ପ୍ରତିକୂଳ ଯୁକ୍ତିର ବିରୁଦ୍ଧ ସତ୍ତ୍ୱେ ଏକ-ପ୍ରକାର ଅନ୍ତର୍ନିହିତ ଆଶା ଥିଲା ଯେ, ଏ ସକଳ ଆଶଙ୍କା ସତ୍ୟ ନୁହେଁ । ପ୍ରଚଣ୍ଡ ଦୁଃସ୍ୱପ୍ନର ଦୁଃସହ ବେଦନା ନିଦ ଭାଙ୍ଗିବା ସଙ୍ଗେ ସଙ୍ଗେ ସାମାନ୍ୟ ଦୀର୍ଘ ନିଃଶ୍ୱାସରେ ଅବସାନ ହୋଇଗଲାପରି କ୍ଷଣକ ଭିତରେ ପୁଲକରେ ତାର ମନ ରଙ୍ଗୀନ ହୋଇ ଉଠିବ, ଏହିପରି କିଛି ଗୋଟାଏ ଅଚିନ୍ତନୀୟ ଭାବନା ସେତେବେଳ ପର୍ଯ୍ୟନ୍ତ ହୁଏତ ତାର ହୃଦୟରୁ ବିଦାୟ ନେଇ ପାରି ନଥିଲା । କାହିଁକି ନା, ଏଇତ

ସେ ପର୍ଯ୍ୟନ୍ତ ତାର ସଂସାରରେ ଯାହା କିଛି କାମନା ସବୁ ଅକ୍ଷୁର୍ଣ୍ଣ ହୋଇ ରହି-ଆସିଥିଲା । ହାୟ ! ଗୋଟାଏ ରାତି ସୁଦ୍ଧା ବିତିଲା ନାହିଁ । ଆଉ ତାର କିଛି ନାହିଁ । —ଏକବାରେ କିଛି ନାହିଁ । ଆଖିର ପଲକ ପଡ଼ୁ ନ ପଡୁଣୁ ଜୀବନଟା ଦୁର୍ଭୋଗର ଶେଷସୀମା ଡେଇଁ ପାର ହୋଇଗଲା । ଏତେବଡ଼ ବିପତ୍ତି ମଧ୍ୟରେ ସେ ବଞ୍ଚି ରହିଥିଲା ପରି କୌଣସି ମତେ ବିଶ୍ୱାସ କରି ପାରୁ ନଥିଲା । ଉଭୟେ ସ୍ଥିର ହୋଇ ବସି ରହିଲେ । ଗାଡ଼ି ଆସି ଗୋଟାଏ ଅଜଣା ଷ୍ଟେସନରେ ପହଞ୍ଚିଲା; ଏବଂ ଅଳ୍ପକାଳ ଭିତରେ ଛାଡ଼ି ଚାଲିଗଲା ।

ସୁରେଶ କିଛି କହିବାକୁ ଚେଷ୍ଟାକରି ପୁଣି ଚୁପ ହୋଇ ଠିଆ ହେଲା । ଝରକାର କାଚ ଟେକି କିଛି ସମୟ ପଦଚାରଣା କରିବା ପରେ ଅଚଳା ଆଗରେ ସ୍ଥିର ହୋଇ ଠିଆ ହୋଇପଡ଼ି କହିଲା - ମହିମ ଭଲ ଅଛି । ଏ ଭିତରେ ସେ ବୋଧହୁଏ ଆଲାହାବାଦରେ ପହଞ୍ଚି ସାରିଥିବ । ପୁଣି ଟିକିଏ ଅଟକି ଯାଇ କହିଲା—ସେଠାରୁ ସେ ଜବଲପୁର ଯାଇପାରେ, କଲିକତା ମଧ୍ୟ ଫେରି ଆସି ପାରେ ।

ଅଚଳା ଧୀରେ ଧୀରେ ମୁହଁ ଉଠାଇ ପ୍ରଶ୍ନକଲା—ଆମେ କୁଆଡ଼େ ଯାଉଛେ ?

ସେଇ ଅଶ୍ରୁ-କଳଙ୍କିତ ମୁହଁ ଉପରେ ଦୁଃଖ, ନିରାଶାର ଚରମ ପ୍ରତିମୂର୍ତ୍ତି ଆଉ ଥରକ ପାଇଁ ସୁରେଶ ଆଖିରେ ପଡ଼ିଲା । ତାର ଭୁଲ ଯେ କେତେ ବିରାଟ ହୋଇ ପାରିଛି ଏହା ତାର ଆଉ ଅଗୋଚର ରହିଲା ନାହିଁ । ଏଥିପାଇଁ ଦରକାର ପଡ଼ିଲେ ସେ ନିଜକୁ ମଧ୍ୟ ହତ୍ୟା କରିବାକୁ ପଛାଇବ ନାହିଁ । କିନ୍ତୁ ଯାହାର ସହସ୍ର ଛଳନା ଆଜି ତାର ସତ୍ୟ ଦୃଷ୍ଟିକୁ ଏପରି ଭାବରେ ଏତେ ଭୁଲ କାମ କରିବା ପାଇଁ ମଧ୍ୟ ବାରମ୍ବାର ଅଙ୍ଗୁଳିଦ୍ୱାରା ନିର୍ଦ୍ଦେଶଦେଇଅଛି ସେହି ଛଳନାମୟୀ ବିରୁଦ୍ଧରେ ତାର ସମଗ୍ର ଅନ୍ତର ଏକପ୍ରକାର ବିଷାକ୍ତ ହୋଇ ଉଠିଥିଲା । ସେଥି-ପାଇଁ ଆଜି ସେ ଅଚଳା ପ୍ରଶ୍ନର ଉତ୍ତର ଦେବାକୁ ଯାଇ ତିକ୍ତ ସ୍ୱରରେ କହିଉଠିଲା —ବୋଧହୁଏ ଆମେ ଦୁହେଁ ସଂସାରରେ ନର୍କକୁ ଯାଉଛେ । ଯେଉଁ ଅଧଃପତନ ପାଇଁ ବାଟ ଦେଖାଇ ଏତେଦୂର ପର୍ଯ୍ୟନ୍ତ ଟାଣି ଆଣିଛି; ସେଠାରେ ମଝିରେ ତ ଆଉ ଇଚ୍ଛା କରି ରହି ହେବ ନାହିଁ । ବର୍ତ୍ତମାନ ଶେଷ ପର୍ଯ୍ୟନ୍ତ ତୁ ମୋତେ ସିବାକୁ ହେବ ।

ଏ କଥା ଶୁଣିବା ପରେ ଅଚଳାର ଆପାଦ ମସ୍ତକ କମ୍ପି ଉଠିଲା । ତା ପରେ ସେ ନୀରବ ରହି ମୁଣ୍ଡ ତଳକୁ କରି ବସି ରହିଲା । ଯେଉଁ ମିଥ୍ୟାଗ୍ଳାନି,

କାପୁରୁଷ ପର ସ୍ତ୍ରୀକୁ ଏପରି ଭାବରେ ବିପଥରେ ଭୁଲାଇ ଆଣି ପୁଣି ନାଃଫକୋଚ ଭାବରେ ଏତେବଡ଼ ଜଘନ୍ୟ ଅପବାଦ ତୁଣ୍ଡ ଫିଟାଇ ଉଚ୍ଚାରଣ କରିପାରେ ତାହାକୁ ସେ ଅବା କ'ଣ କହିପାରିବ ?

ସୁରେଶ ପୁଣି ପଦଗ୍ଭରଣା କରିବାକୁ ଲାଗିଲା । ବୋଧହୁଏ ଏହି ପାଷାଣ ପ୍ରତିମାର ଆଗରେ ଠିଆହୋଇ କଥା କହିବାର ଶକ୍ତି ତାର ନ ଥିଲା । କହିବାକୁ ଲାଗିଲା—ତୁମେ ଏପରି ଭାବ ଦେଖାଉଛ ଯେପରି ତୁମର ଏକାକୀ ସର୍ବନାଶ ହୋଇ ଯାଇଛି କିନ୍ତୁ ସର୍ବନାଶ କହିଲେ ଯାହା ବୁଝାଏ, ତାହା ମୋ ପକ୍ଷରେ କେତେଦୂର ପର୍ଯ୍ୟନ୍ତ ଯାଇ ପହଞ୍ଚିଛି ସେ କଥା କ'ଣ ତୁମେ ବୁଝି ପାରିଛ ? ମୁଁ ତୁମ ଭଳି ଜ୍ଞାନୀ ନୁହେଁ । ନାସ୍ତିକ । ପାପ ପୁଣ୍ୟର ଫାଙ୍କା ଆଓ୍ୱାଜ କରେନାହିଁ । ମୁଁ ପ୍ରକୃତ ସର୍ବନାଶ କଥା ହିଁ ଭାବୁଛି । ତୁମର ରୂପ ଅଛି, ଆଖିରେ ଲୁହ ଅଛି, କୌଣସି ତରୁଣୀର ଯେଉଁ ସବୁ ଅସ୍ତ୍ର ଶସ୍ତ୍ର ଦରକାର ତାହାଠାରୁ ଅଧିକା ତୁମ ତୂଣୀରରେ ଅଛି । ସେଥିପାଇଁ ତୁମର କୌଣସି ବାଧାବିଘ୍ନ ନାହିଁ । କିନ୍ତୁ ମୋ କଥା ଥରେ କଳ୍ପନା କରି ଦେଖି ପାରୁଛ ତ ? ମୁଁ ପୁରୁଷ ପିଲା···ସେଥିପାଇଁ ଜେଲଯିବା ଅପେକ୍ଷା ମୋତେ ଏହି-ଠାରେ ଗୁଳି କରିବାକୁ ହେବ କହି ସୁରେଶ ଅଟକି ଯାଇ ଠିଆ ହୋଇ ନିଜ ଗ୍ରୀବା ମଝିରେ ଅଙ୍ଗୁଳି ଦେଇ ଦେଖାଇ ଦେଲା ।

ଅଚଳା କ'ଣ କିଛି କହିବାକୁ ଉଦ୍ୟତ ହୋଇ ପୁଣି ମୁହଁ ଟେକି ମାରିବାରେ ମୁହଁ ଫେରାଇ ନେଲା । କିନ୍ତୁ ତାହାର ଚାହାଣୀରେ ଯେଉଁ ଘୃଣା ଫୁଟି ଉଠିଥିଲା ତାହା ଦେଖିପାରି ସୁରେଶ କ୍ରୋଧରେ ଜଳି ଉଠି କହିଲା—ମୟୂରପୁଚ୍ଛ ଡେଣାରେ ଗୁଞ୍ଜି କୁଆ କଦାପି ମୟୂର ହୋଇ ପାରେନାହିଁ ଅଚଳା । ଏ ଚାହାଣୀକୁ ମୁଁ ଭଲ କରି ଚିହ୍ନେ । କିନ୍ତୁ ତାହା ତୁମଠାରେ ଶୋଭା ପାଏ ନାହିଁ । ଯାହା ନିକଟରେ ଶୋଭାପାଏ ସେ ହେଉଛି ମୃଣାଳ, କିନ୍ତୁ ତୁମେ ନୁହେଁ । ତୁମେ ଅସୂର୍ଯ୍ୟପଶ୍ୟା ହିନ୍ଦୁ ଜାତିର କୂଳବଧୂ ନୁହଁ । ତେଣୁ ଏତେ ଟିକିଏ ପୁଣି ତୁମର ଜାତି ଯିବ ନାହିଁ । ତୁମର ଯେଉଁଠାରେ ଖୁସି ସେଠାରେ ଓହ୍ଲାଇ ପାର । ମୁଁ ଚିଠି ଲେଖି ଦେଉଛି । ନେଇ ମହିମକୁ ଦେଖାଇବ । ସେ ତୁମକୁ ଘରେ ପୂରାଇବାକୁ ଆଦୌ ନାରାଜ ହେବ ନାହିଁ । ଟଙ୍କା ଦେଉଛି । ତୁମର ଆଉ କ'ଣ ଚିନ୍ତା ଅଛି ଅଚଳା ?

ସୁରେଶ ପୁଣି ପଦଗ୍ଭରଣ କରିବାକୁ ଲାଗିଲା । ସେ ଫିଙ୍ଗିଥିବା ବାକ୍ୟବାଣ କିପରି କାମ କରୁଛି ଜାଣିବା ପାଇଁ ଥରକ ପାଇଁ ଚାହିଁ ଦେଖିଲା ନାହିଁ । ଖାଇବା ଲୋଭରେ ବଣ୍ୟ ପଶୁ ଜାଲରେ ପଡ଼ି କ୍ରୋଧରେ ଅନ୍ଧ ହୋଇ ଯାହା ପାଏ ତାକୁ

ଯେପରି ନିଷ୍ଠୁର ଗ୍ରାବରେ କାମୁଡ଼ି ଛିଣ୍ଡାଇ ପକାଏ, ଠିକ୍ ସେହିଭଳି ସୁରେଶ ଅଚଳାକୁ ଖଣ୍ଡ ଖଣ୍ଡ କରି କାଟି ଫିଙ୍ଗିଦେବାକୁ ଚାହୁଁଥିଲା । ହଠାତ୍ ମଝିରେ ଠିଆ ହୋଇ ପଚ୍ଚାରି କହିଲା—ଏହା ଏପରି କି ଭୟାନକ ଅପରାଧ ଯେ ? ସ୍ୱାମୀଙ୍କ ଘରେ ଠିଆ ହୋଇ ତାଙ୍କର ମୁହଁ ଆଗରେ କହିଥିଲନା—ଜଣେ ପରପୁରୁଷକୁ ଭଲ ପାଅ ବୋଲି ? ଯେଉଁ ଲୋକ ତୁମ ଘରେ ନିଆଁ ଲଗାଇ ତୁମ ସ୍ୱାମୀକୁ ପୋଡ଼ିବାକୁ ଯାଉଥିଲା ବୋଲି ତୁମର ବିଶ୍ୱାସ, ତାହା ସଙ୍ଗରେ ଚାଲି ଆସିବାକୁ ଚାହିଁଥିଲ ନା ? କେବଳ ଚାହିଁ ନଥିଲ: ଆସିଲ ମଧ୍ୟ । ସେକଥା କ'ଣ ତୁମର ମନେ ପଡୁନାହିଁ ? ତାହାର ପରେ, ତାହାର ଆଶ୍ରୟରେ ବାସ କରି, ଗୋପନରେ କାନ୍ଦି ଉଠି ତାହାକୁ ସାଙ୍ଗରେ ଆଣିବାକୁ ଅନୁରୋଧ କରିଥିଲନା ? ଏ ସବୁ କ'ଣ ମନେ ପଡେ ନାହିଁ ? ତାହା ଅପେକ୍ଷା ଏଇଟା କ'ଣ ବଡ଼ ଅପରାଧ ? ଏହିପରି ପ୍ରତିଦିନର କେତେ ନା କେତେ ଟିକିନିଖି ଘଟଣା ଅଛି । ସେଥିପାଇଁ ଆଜି ମୋର ଏ ଦୁଃସାହସ । ପ୍ରକୃତରେ ତୁମେ ଗୋଟାଏ ବେଶ୍ୟା । ସେଥିପାଇଁ ତୁମକୁ ଭୁଲାଇ ଆଣି ପାରିଛି । ଭାବିଥିଲି ହୁଏତ ପ୍ରଥମେ ଟିକିଏ ଚମକି ଉଠିବ । ତାହାଠାରୁ ଅଧିକା ତୁମଠାରୁ ବି ଆଶା କରି ନଥିଲି । କିନ୍ତୁ ଦେଖିଲି ସେହିଭଳି ପ୍ରତିକିସ୍ମାର ଲେଶମାତ୍ର ତୁମଠାରେ ନାହିଁ । ସେଥିପାଇଁ ତୁମକୁ ବାରମ୍ବାର କହି ଦେଉଛି ଅଚଳା, ତୁମେ ସତୀ ସାବିତ୍ରୀ ନୁହଁ । ସେହି ତେଜ, ସେହି ଦର୍ପ ଆଦୌ ତୁମକୁ ଶୋଭାପାଏ ନାହିଁ । ତେଣୁ ସେ ସବୁ ତୁମର ଏକାନ୍ତ ଅନଧିକାର ଚର୍ଚ୍ଚା କହିଲେ ଅତ୍ୟୁକ୍ତି ହେବ ନାହିଁ । କହି ସୁରେଶ ଦମ୍ ନେବା କ୍ଷଣି ଅଚଳା ମୁହଁ ଟେକି ଭଗ୍ନ କଣ୍ଠରେ ଚିତ୍କାର କରି ଉଠିଲା—ଆପଣ ଅଟକନ୍ତୁ ନାହିଁ ସୁରେଶ ବାବୁ, ଆହୁରି କହି ଚାଲନ୍ତୁ । ମୋତେ ଦୁଇ ପଦରେ ଦଳି ଦଳି ସଂସାରରେ ଯେତେ କୁତ୍ସିତ, କଟୁ କଥା, ବ୍ୟଙ୍ଗ, ବିଦ୍ରୁପ, ଯେତେ ଅପମାନ ଅଛି ସବୁ କହନ୍ତୁ କହି ବେଞ୍ଚ ଉପରେ ଚିତ୍ ହୋଇ ଶୋଇ ପଡ଼ି ଅସହ୍ୟ ବେଦନାରେ କାନ୍ଦି ଉଠିଲା । ସେ କାନ୍ଦି କାନ୍ଦି କହିବାକୁ ଲାଗିଥାଏ—ଏହାହିଁ ମୋର କାମନା, ଏଇଆ ହିଁ ମୁଁ ଖୋଜେ, ଏହାହିଁ ଆମର ପ୍ରକୃତ ସମ୍ବନ୍ଧ । ପୃଥିବୀ ନିକଟରୁ, ଭଗବାନଙ୍କ ନିକଟରୁ ଏବଂ ଆପଣଙ୍କ ନିକଟରୁ ଏହାହିଁ ମୋର ପ୍ରାପ୍ୟ ।

ସୁରେଶ କାଠକୁ ଆଉଜି ରହି କାଠ ପରି ଚାହିଁ ରହିଲା । ଅଚଳାର ସୁଦୀର୍ଘ କେଶଗୁଚ୍ଛ ବିପର୍ଯ୍ୟସ୍ତ ହୋଇ ମାଟିରେ ଲୋଟିବାକୁ ଲାଗିଲା, ତାହାର ସିକ୍ତ ବସନ ଧୂଳିରେ ମାଟିରେ ଲୋଟି କଦର୍ଯ୍ୟ ଦେଖାଗଲା । କିନ୍ତୁ ସେ ଉଡକୁ ସୁରେଶ ଆଦୌ ଭ୍ରୂକ୍ଷେପ କଲା ନାହିଁ । ନୂତନ ଶିକାରୀ ତାର ପ୍ରଥମ ଭୂପତିତ ପକ୍ଷୀର ମୃତ୍ୟୁ ଯନ୍ତ୍ରଣାକୁ ଯେପରି ଅବାକ ହୋଇ ଚାହିଁ

ଦେଖେ, ସେହିପରି ଦୁଇ ମୁଗ୍ଧ ଚକ୍ଷୁର ଅପଲକ ଦୃଷ୍ଟିରେ ସେ ଯେପରି ଏକ ମରଣାହତ ନାରୀର ଶେଷ ମୁହୂର୍ତ୍ତର ସାକ୍ଷ୍ୟ ନେବା ପାଇଁ ଠିଆ ହୋଇ ରହିଲା ।

ପୁଣି ଗାଡ଼ିର ଗତି ମନ୍ଥର ହୋଇ ଆସିଲା । ଧୀରେ ଧୀରେ ତାହା ଆସି ଷ୍ଟେସନରେ ଅଟକି ଗଲା । ସୁରେଶ ଶାନ୍ତ ସରଳ କ ରେ କହିଲା—ଲୋକମାନେ ତୁମକୁ ଏପରି ଅବସ୍ଥାରେ ଦେଖିଲେ ଆଶ୍ଚର୍ଯ୍ୟ ହୋଇ ଉଠିବେ । ତୁମେ ଉଠ, ମୁଁ ପୁଣି ମୋ ଡ଼ବାକୁ ଯାଉଛି । ସକାଳ ହେବା କ୍ଷଣି ତୁମେ ଯେଉଁଠାରେ ଚାହିଁବ ମୁଁ ସେହିଠାରେ ହିଁ ତୁମକୁ ଓହ୍ଲାଇ ଦେବି ଏବଂ ଯେଉଁଠାକୁ ଯିବାକୁ ଚାହିଁବ ସେଠାକୁ ମଧ୍ୟ ପଠାଇଦେବି; ଇତି ମଧ୍ୟରେ ଭୟଙ୍କର କାଣ୍ଡ କିଛି କରିବା ପାଇଁ ଚେଷ୍ଟା କର ନାହିଁ । ସେଥିରେ ତୁମର କୌଣସି ଉପକାର ହେବ ନାହିଁ କହି ସୁରେଶ କବାଟ ଖୋଲି ତଳକୁ ଓହ୍ଲାଇ ଗଲା । ସାବଧାନରେ କବାଟକୁ ବନ୍ଦ କରି ସାରି କଣ କିଛି ଭାବି ପୁଣି ସେହିଠାରେ ଠିଆ ହୋଇ ରହିଲା । ତାହାପରେ ମୁହଁ ବଢ଼ାଇ କହିଲା—ତୁମେ ମୋ କଥା ଆଦୌ ବୁଝିବାକୁ ଚେଷ୍ଟାକର ନାହିଁ । କିନ୍ତୁ ଏତିକ ଶୁଣିରଖ ଯେ ଏ ସମସ୍ୟାର ସମାଧାନ ଭାର ମୁଁ ନେଲି । ଆଉ ତୁମର କୌଣସି ଅମଙ୍ଗଳ ଘଟିବାକୁ ସୁଯୋଗ ଦେବି ନାହିଁ । ଏ ସମସ୍ତ ଋଣ ମୁଁ କଡ଼ା ଗଣ୍ଡାରେ ପରିଶୋଧ କରିସାରି ତାପରେ ଯିବି, କହି ସେ ଧୀରେ ଧୀରେ ତାର ନିଜର ଡ଼ବା ଆଡ଼କୁ ଆଗେଇ ଚାଲିଲା ।

ଟ୍ରେନର ଝାଙ୍କୁଣୀ ଏବଂ ଅପ୍ରାକୃତିକ ଶବ୍ଦ ସଙ୍ଗେ ସଙ୍ଗେ ପ୍ରତ୍ୟେକ ଥର ସୁରେଶର ନିଦ୍ରା ଭାଙ୍ଗି ଯାଉଥିଲା ସତ କିନ୍ତୁ ଆଖି ଖୋଲି ଚାହିଁବାପାଇଁ ଯେପରି ତାର ଆଉ ଶକ୍ତି ନଥିଲା । ଓଦା ଲୁଗା ପିନ୍ଧିଥିବା ହେତୁ ତାକୁ ଭୀଷଣ ଶୀତ କରୁଥିଲା । ଫଳରେ ସେ ଯେ ଅସୁସ୍ଥ ହୋଇପାରେ ଏବଂ ବର୍ତ୍ତମାନ ଅବସ୍ଥା ଯେ କି ଭୀଷଣ ହୋଇଛି, ଏହା ଭିତରେ ଭିତରେ ଅନୁଭବ କରୁଥିଲେ ମଧ୍ୟ ବ୍ୟାଗ ଖୋଲି ଲୁଗା ବଦଳାଇବାର ଉଦ୍ୟମ ଗୋଟାଏ ଅସାଧ୍ୟ ଅଭିଳାଷ ଭଳି ତାର ମନେ ହେଉଥିଲା । ଠିକ ଏହି ସମୟରେ ତାର କାନରେ ଏକ ସୁପରିଚିତ ଡ଼ାକ ଶୁଭିଲା—କୁଲି । କୁଲି । ସେ ଅର୍ଦ୍ଧ ଜାଗ୍ରତ ଅବସ୍ଥାରେ ଆଖିମେଲି ଦେଖିଲା ଗାଡ଼ି କୌଣସି ଏକ ଷ୍ଟେସନରେ ଠିଆ ହୋଇଛି ଏବଂ କେତେବେଳେ ଅନ୍ଧକାର କାଟି ସକାଳର ସୂର୍ଯ୍ୟ ଉଦୟ ହୋଇ ସାରିଛନ୍ତି । ବର୍ଷା ସମ୍ପୂର୍ଣ୍ଣ ଛାଡ଼ି ଯାଇଛି । ସେ ଦେଖିବାକୁ ପାଇଲା ଅନେକ ଯାତ୍ରୀ ଓହ୍ଲାଉଛନ୍ତି । ଅନେକ ଚଢ଼ୁଛନ୍ତି ଏବଂ ସେମାନଙ୍କ ମଝିରେ ଗୋଟିଏ ଶୋକାକୁଳା ରମଣୀ ଠିଆହୋଇ ସତେ ଯେପରି କାହାକୁ ପ୍ରତୀକ୍ଷା କରିଛି ।

ସେ ହେଉଚ୍ଛ ଅଚଳା । ଜଣେ କୁଲି ମୁଣ୍ଡରେ ଗୋଟାଏ ମସ୍ତବଡ଼ ଚମଡ଼ା ବ୍ୟାଗଧରି ଓହ୍ଲାଇବା କ୍ଷଣି; ତାହାକୁ କ’ଣ ପଚାରି ସେ ଆସ୍ତେ ଆସ୍ତେ ଷ୍ଟେସନର ଗେଟ୍‌ ଆଡ଼କୁ ଅଗ୍ରସର ହେଲା ।

ଏତେକ୍ଷଣ ପର୍ଯ୍ୟନ୍ତ ସୁରେଶ ନିଶ୍ଚେଷ୍ଟ ଭାବରେ ପଡ଼ିରହି କେବଳ ଚାହିଁ ରହିଥିଲା । କିନ୍ତୁ ହଠାତ୍ ଗାଡ଼ି ଛାଡୁଥିବାର ଜାଣି ପାରିବା ପରେ ତାର ଦେହରୁ ଯେପରି ସବୁ ଆଳସ୍ୟ କ୍ଷଣକ ଭିତରେ କୁଆଡ଼େ ଉଭାଇ ଗଲା ଏବଂ ନିମିଷକ ଭିତରେ ନିଜର ବ୍ୟାଗ୍‌ଟା ଟାଣିଆଣି ଓହ୍ଲାଇ ପଡ଼ିଲା ।

ଟିକଟ କଥା ଅଚଳାର ମନେ ନଥିଲା । ଗେଟ୍‌ ପାଖରେ ଟିକଟ ବାବୁ (ଟି ଟି ଆଇ)ଙ୍କୁ ଦେଖି ଅଟକି ଠିଆ ହେବା କ୍ଷଣି ସୁରେଶ ପଛରେ ଥାଇ କୋମଳ କଣ୍ଠରେ କହି ଉଠିଲା - ଠିଆ ହୁଅ ନାହିଁ—ଚାଲ—ଆଗକୁ ଚାଲ— ମୁଁ ଟିକେଟ ଦେଉଚ୍ଛି ।

ସୁରେଶ ଆସିବାର ଇଙ୍ଗିତ ଅଚଳା ପାଇ ନ ଥିଲା । ମୁହୂର୍ତ୍ତିକ ପାଇଁ କୁଣ୍ଠାରେ ତାର ପାଦ ଆଗକୁ ବଢିଲା ନାହିଁ । କିନ୍ତୁ ସଙ୍କୋଚରେ ଅନ୍ୟର ସନ୍ଦେହୀ ଦୃଷ୍ଟିକୁ ଏଡ଼ାଇବାକୁ ଯାଇ ସେ ଆସ୍ତେ ଆସ୍ତେ ଗେଟ୍‌ ପାର ହୋଇଗଲା ।

ବାହାରକୁ ଆସିବା ପରେ ଉଭୟଙ୍କ ଭିତରେ ନିମ୍ନଲିଖିତ କଥାବାର୍ତ୍ତା ହେଲା—

ସୁରେଶ କହିଲା— ମୁଁ ଭାବିଥିଲି ତୁମେ ସିଧା କଲିକତା ଫେରି ଯିବାପାଇଁ ଚାହିଁବ । ହଠାତ୍ ଜବ୍‌ଲପୁରରେ ଓହ୍ଲାଇ ପଡ଼ିଲ କାହିଁକି ? ଏଠାରେ ତୁମର ପରିଚିତ ଲୋକ କେହି କ’ଣ ଅଛନ୍ତି ?

ଅଚଳା ଅନ୍ୟଦିଗକୁ ଚାହିଁଥିଲା । ସେହି ଦିଗକୁ ସେହିପରି ଚାହିଁ ରହି କହିଲା—କଲିକତାରେ ମୁଁ କାହା ପାଖକୁ ଆଉ ଯିବି ।

: କିନ୍ତୁ ଏଠାରେ ?

ଅଚଳା ଚୁପ ହୋଇ ରହିଲା ।

ସୁରେଶ ନିଜେ ମଧ୍ୟ କିଛି-କ୍ଷଣ ନୀରବ ରହିବା ପରେ କହିଲା—ମୋ କଥା ହୁଏତ ତୁମେ ଆଉ ବିଶ୍ୱାସ କରି ପାରିବ ନାହିଁ, ଆଉ ସେଥିପାଇଁ ମୋର ମଧ୍ୟ କୌଣସି ଆପତ୍ତି ନାହିଁ । ମୁଁ କେବଳ ଶେଷ ସମୟରେ ତୁମ ଠାରୁ କିଛି ଭିକ୍ଷା ମାଗିବାକୁ ଚାହେଁ ।

ଅଚଳା ସେହିପରି ନୀରବରେ ଠିଆ ହୋଇ ରହିଲା ।

ସୁରେଶ କହିଲା—ମୋ କଥା କେହି ବୁଝିବା ଦରକାର ନାହିଁ କିମ୍ବା ମୁଁ କାହାକୁ ମଧ୍ୟ ବୁଝାଇବାକୁ ଚାହେଁ ନାହିଁ । ମୋର ଜିନିଷପତ୍ର ମୋ ସଙ୍ଗରେ ଥାଉ । ଯେଉଁଠାକୁ ଗଲେ ଏଠାର ନିଆଁ ଆଉ ମୋତେ ପୋଡ଼ି ପାରିବ ନାହିଁ, ମୁଁ ସେହି ସ୍ଥାନକୁ ବାହାରିଲି, କିନ୍ତୁ ମୋର ଶେଷ ସମ୍ବଳ ଟିକିକ ମୋତେ ଫେରାଇ ଦିଅ । ମୁଁ ହାତଯୋଡ଼ି ତୁମକୁ ଏତିକି ମାତ୍ର ପ୍ରାର୍ଥନା କରୁଛି ।

ତଥାପି ଅଚଳାର ମୁହଁରୁ ପଦେ କଥା ବାହାରିଲା ନାହିଁ ।

ସୁରେଶ କହିବାକୁ ଲାଗିଲା—ମୁଁ ନିଜେ ତୁମକୁ ବହୁତ ନିଷ୍ଠୁର ବଚନ କହିଛି । ଅନେକ ଦୁଃଖ ଦେଇଛି । କିନ୍ତୁ ପରେ ଆପେଆପେ ଭଲରେ ରହିବା ଆଶ୍ୱାସ ଦେଇ ତୁମ ମଥାରେ କଳଙ୍କର କାଳି ଛୁଆଁଇ ଦେଇ କଳଙ୍କିନୀ କରି ବସିବ ତାହା ମଲା ପର୍ଯ୍ୟନ୍ତ ମୁଁ କରିପାରିବ ନାହିଁ । ମୋ ପାଇଁ ତୁମକୁ ଆଉ ଦୁଃଖ ସହିବାକୁ ହେବ ନାହିଁ । ତେଣୁ ବିଦାୟ ନେବା ଆଗରୁ ମୋତେ ଭିକ୍ଷାଦାନ ସୁଯୋଗରୁ ବଞ୍ଚିତ କରନାହିଁ ।

ତାହାର କଣ୍ଠସ୍ୱରରେ କ'ଣ ଥିଲା ତାହା କେବଳ ଅନ୍ତର୍ଯ୍ୟାମୀ ହିଁ ଜାଣନ୍ତି । ହଠାତ୍ ତପ୍ତ ଅଶ୍ରୁରେ ଅଚଳାର ଦୁଇ ଆଖି ଭାସି ଉଠିଲା । ତଥାପି କିନ୍ତୁ ସେ ନିଜର କଣ୍ଠସ୍ୱରକୁ ଅବିକୃତ ରଖି ମୃଦୁ ସ୍ୱରରେ ପ୍ରଶ୍ନ କଲା—ମୋତେ କ'ଣ କହିବାକୁ ହେବ କୁହନ୍ତୁ ?

ସୁରେଶ ପକେଟରୁ ଟାଇମଟେବୁଲ ଖଣ୍ଡିକ ବାହାର କରି ଗାଡ଼ିର ସମୟ ଦେଖିନେଇ କହିଲା—ତୁମକୁ ବିଶେଷ କିଛି କହିବାକୁ ହେବ ନାହିଁ । କିନ୍ତୁ ସନ୍ଧ୍ୟା ପୂର୍ବରୁ ଯେତେବେଳେ କୌଣସି ଆଡ଼େ ଯିବାର ଉପାୟ ନାହିଁ ସେତେବେଳେ ଏଇତକ ସମୟ ମୋତେ ଆଉ ଅବିଶ୍ୱାସ କରନାହିଁ ଏତିକି କେବଳ ମୁଁ ଚାହେଁ । ମୋ ତରଫରୁ ତୁମର କୌଣସି ଅମଙ୍ଗଳ ଘଟିବ ନାହିଁ ଏହା ମୁଁ ଶପଥ କରି କହୁଛି ।

ପ୍ରତ୍ୟୁତ୍ତରରେ ଅଚଳା କିଛି କହିଲା ନାହିଁ । କିନ୍ତୁ ସେ ସମ୍ମତ ହୋଇଛି ବୋଲି ବୁଝା ପଡ଼ିଲା ।

ଲୋକମାନଙ୍କର ଦୃଷ୍ଟି ଏବଂ କୌତୁହଳ ଆକର୍ଷଣ କରିବାର ଆଶଙ୍କା ହେତୁ ଷ୍ଟେସନକୁ ଫେରିଯାଇ ସେଠାରେ ଥିବା ଗ୍ରେଟ ବିଖଣ୍ଟିରେ ବସି ଅପେକ୍ଷା କରିବା ପାଇଁ ଦୁଇଜଣଙ୍କ ଭିତରୁ କାହାରି ହେଲେ ପ୍ରବୃତ୍ତି ହେଲା ନାହିଁ । ସନ୍ଧାନ ନେଲା

ପରେ ଜଣା ପଡ଼ିଲା ଯେ ବଡ଼ ରାସ୍ତା ଉପରେ ସମ୍ରାଟ ଶେର ସାହାଙ୍କ ନାମରେ ପ୍ରଚଳିତ ଏକ ସରାଇ ଘର ଏପର୍ଯ୍ୟନ୍ତ ସୁଦ୍ଧା ବିଲୁପ୍ତ ହୋଇନାହିଁ । ସହରର ଏକ ପ୍ରାନ୍ତରେ ସେହି ପାନ୍ଥଶାଳା ଅଭିମୁଖରେ ଗୋଟିଏ ଶଗଡ଼ ଗାଡ଼ିରେ ବସି ନିଜ ନିଜର ମର୍ମାନ୍ତିକ ଦୁଃଖକୁ ମନରେ ଚାପି ରଖି ଦୁହେଁ ଯାତ୍ରା କରିବାକୁ ଲାଗିଲେ ।

ଶଗଡ଼ ଗାଡ଼ି ଭିତରେ ବସି କେହି କାହା ସହିତ କିଛି କଥା ହେଲେ ନାହିଁ ଏପରିକି ବାଟ ମଧ୍ୟରେ କେହି କାହାର ମୁହଁକୁ ସୁଦ୍ଧା ଥରକ ପାଇଁ ଚାହିଁଲେ ନାହିଁ । କେବଳ ଗୋରୁ ଗାଡ଼ିଟି ଯେତେବେଳେ ଆସି ପାନ୍ଥଶାଳା ନିକଟରେ ପହଞ୍ଚିଗଲା ସେତେବେଳେ ଶଗଡ଼ରୁ ଓହ୍ଲାଇ ପଡ଼ି ଅଚଳା ସୁରେଶ ମୁହଁକୁ ଚାହିଁ ଦେଇ କେବଳ ଆଶ୍ଚର୍ଯ୍ୟ ନୁହେଁ ଉଦ୍‌ବିଗ୍ନ ମଧ୍ୟ ହୋଇ ଉଠିଲା । ତାର ଆଖି ଦୁଇଟା ଭୀଷଣ ଲାଲ ଦିଶୁଥାଏ । ମୁହଁ ଉପରେ ଯେପରି ମେଞ୍ଚାଏ କାଳି କିଏ ଘୁଟି ଦେଲାପରି ଜଣା ପଡ଼ୁଥାଏ । ସଂସାରରେ ଅନେକ ଝଡ଼ଝଞ୍ଜା ମଧ୍ୟରେ ସେ ତାକୁ ଦେଖି ଆସିଛି । କିନ୍ତୁ ତାର ଏହିଭଳି ଚେହେରା ସେ କେବେ ଦେଖିଥିଲା ଭଳି ସ୍ମରଣ କରି ପାରିଲା ନାହିଁ ।

ଶଗଡ଼ିଆକୁ ଭଡ଼ା ପଇସା ତୁଟାଇ ମନିବ୍ୟାଗଟାକୁ ସେହିଠାରେ ରଖିଦେଇ କହିଲା—ଏଇଟା ଆପାତତଃ ତୁମ ନିକଟରେ ଥାଉ । ଯଦି କିଛି ଦରକାର ହୁଏ, ତେବେ ଖର୍ଚ୍ଚ କରିବା ପାଇଁ କୁଣ୍ଠାବୋଧ କରିବ ନାହିଁ ।

ଅଚଳାର ଇଚ୍ଛା ହେଲା ପଚାରିବାକୁ: ଏ କଥାର ଅର୍ଥ କ'ଣ ? କିନ୍ତୁ ପଚାରି ପାରିଲା ନାହିଁ ।

ସୁରେଶ କହିଲା—ଏହି ଆଗ ଘରଟା ସମ୍ଭବତଃ ଭଲ । ତୁମେ ଟିକିଏ ବିଶ୍ରାମ କର । ମୁଁ ପାଖଘରେ ମୋର ଏଇ ଲୁଗା ଓ କୁରୁତା ପ୍ରଭୃତି ରଖିଦେଇ ଆସୁଛି । କିନ୍ତୁ ସେ ଅଚଳାର ସୁବିଧା, ଅସୁବିଧା ପ୍ରତି ଲେଶ ମାତ୍ର ଦୃଷ୍ଟି ନ ପକାଇ ନିଜ ବ୍ୟାଗ୍‌ଟା ଧରି ମାତାଲ ପରି ଟଳି ଟଳି ବାରଣ୍ଡା ପାରହୋଇ କଣ ଘରେ ପ୍ରବେଶ କଲା ।

ସେ ଚାଲିଯିବା ପରେ ଅଚଳା ଏକାକୀ ବାଟ ମଝିଟାରେ ଠିଆହୋଇ ପାରିଲା ନାହିଁ । ତେଣୁ ଅନେକ କଷ୍ଟରେ ନିଜର ଓଜନିଆ ବ୍ୟାଗ୍‌ଟାକୁ ଟାଣି ଟାଣି ସମ୍ମୁଖରେ ଥିବା ଘରେ ଫିଙ୍ଗିଦେଲା । ସେହି ବ୍ୟାଗ୍ ଉପରେ ସ୍ତବ୍ଧ ହୋଇ ବସି ରହି କେତେ କ'ଣ ଭାବିବାକୁ ଲାଗିଲା

ସେହି ଘର ଭିତରେ ବ୍ୟାଗ ଉପରେ ବସି ଆଶା ଓ ନିରାଶାର ସ୍ୱପ୍ନ ଦେଖୁ ଦେଖୁ କେତେବେଳେ ମେ ଅଚଳା ହୁଇ ଘଣ୍ଟା ବିତାଇ ଦେଇ ସାରିଲାଣି ତାହା ତାକୁ ଜଣା ନଥିଲା ।

ଅଳ୍ପ ସମୟ ହେବ ସୂର୍ଯ୍ୟ ଉଇଁଲେଣି । ଶୀତ ଦିନର ଧୂଳିଧୂସରିତ ତରୁଶ୍ରେଣୀ ଗତକାଲିର ବର୍ଷା ଜଳରେ ଗାଧୋଇ ପଡ଼ିବା ଫଳରେ ନିର୍ମଳ ହୋଇ ପ୍ରଭାତର ସୂର୍ଯ୍ୟ କିରଣରେ ଝଲମଲ କରୁଛନ୍ତି । ସିକ୍ତ ରାଜପଥ ଉପରେ ଗତକାଲିର ସମସ୍ତ କ୍ଳେଶକୁ ପାଶୋରି ଦେଇ ପାନ୍ଥ ପ୍ରଫୁଲ୍ଲ ଚିତ୍ତରେ ଯାତ୍ରା ଆରମ୍ଭ କରି ଦେଇଛନ୍ତି । ଗାଈ ଜଗୁଆଳ ପିଲାମାନେ ଗାଈ ଓ ମଇଁଷି ପଲ ଧରି ଅସମ୍ଭବ ଓ ଅଦ୍ଭୁତ ଆମ୍ପିସ୍ଥତାର ସମ୍ବନ୍ଧ ଘୋଷଣା କରି କୌଣସି ଗ୍ରାମ ପ୍ରାନ୍ତରକୁ ଯାତ୍ରା ଆରମ୍ଭ କରିଦେଲେଣି, ଏହି ଯେ ନୂତନ ଦିନର କର୍ମସ୍ରୋତ ଆରମ୍ଭ ହୋଇଛି ତାହା ଫଳରେ ଅଚଳାର ଚେତନା ଆସ୍ତେ ଆସ୍ତେ ଗତିଶୀଳ ହେବାକୁ ଲାଗିଲା । ଏହି ବିରାଟ ପ୍ରବାହରେ ତାର ଦୁଃଖ, ତାର ଦୁର୍ଭାଗ୍ୟ, ତାର ଦୁଶ୍ଚିନ୍ତା କିଛି ସମସ୍ତ ପାଇଁ କେଉଁଠି କିପରି ଭାସିଗଲା । ଠିକ୍ କାହାପାଇଁ ଓ କାହିଁକି ସେ ସେ ଏଠାରେ ଏପରି ବସିଛି ତାର ତାହା ସ୍ମରଣ ନଥିଲା । କଣେ ଦୁଇଜଣ ପଲ୍ଲୀ ବାଳକଙ୍କର ଆଶ୍ଚର୍ଯ୍ୟ ଓ କୌତୁହଳ ଚାହାଣି ହେତୁ ତାର ଯେତେବେଳେ ହୋସ ଫେରି ଆସିଲା ସେତେବେଳେ ସେ ଦେଖିବାକୁ ପାଇଲା ସେମାନେ ଅଟଣାର ଗୋଟିଏ କଣରେ ନୀରବରେ ଠିଆହୋଇ କେବଳ ଆଶ୍ଚର୍ଯ୍ୟ ଭାବରେ ତାକୁ ଚାହିଁ ରହିଛନ୍ତି । ଏହି ଜୀର୍ଣ୍ଣ ମଳିନ ପାଠଶାଳାର ପ୍ରାଚୀନ ଗୌରବର ଇତିହାସ ପିଲା ଦୁଇଟି ଜାଣି ନଥିଲେ ସତ କିନ୍ତୁ ସେମାନଙ୍କର ଜ୍ଞାନ ହେବା ଦିନଠାରୁ ଅଦ୍ୟାବଧି ଏହିଭଳି ବିଶିଷ୍ଟ ଅତିଥିମାନଙ୍କର ସମାଗମ ଯେ କେବେ ଘଟିନାହିଁ, ତାହା ସେମାନଙ୍କର ଆଖିର ନୀରବ ଚାହାଁଣୀ ଅଚଳାକୁ ସ୍ପଷ୍ଟ କରି ଜଣାଇଦେଇ ପାରିଲା ।

ଅଚଳା ଚମକି ଉଠି ଠିଆ ହୋଇପଡ଼ି ବୋଧହୁଏ କିଛି ପ୍ରଶ୍ନ ପଚାରିବାକୁ ଇଚ୍ଛା କରିଥିଲା, କିନ୍ତୁ ପିଲା ଦୁଇଟା ନିମିଷକ ଭିତରେ କୁଆଡ଼େ ଅନ୍ତର୍ହିତ ହୋଇଗଲେ । ସେଇ ମୁହୂର୍ତ୍ତରେ ତାର ମନେ ପଡ଼ିଲା ପ୍ରାୟ ଦୁଇଘଣ୍ଟା ପୂର୍ବେ ସେଇ ଯେ ସୁରେଶ ଲୁଗା ବଦଳାଇବା ପାଇଁ ସେ ଘରକୁ ଯାଇଥିଲା ଆଉ ତାର ଦେଖାନାହିଁ । ଏତେସମୟ ଧରି ଏକାକୀ କ'ଣ କରୁଛି ଜାଣିବା ପାଇଁ

ସେ ଧୀରେ ଧୀରେ ଗ୍ଭଲି ଗ୍ଭଲି ସେହି ଘର ଆଗରେ ପହଞ୍ଚିଲା । ଅବରୁଦ୍ଧ କବାଟ ଫାଙ୍କରୁ କୌଣସି ସୋର ଶବ୍ଦ ନପାଇ ସେ ଦୁଇ ମିନିଟ୍ ଅଟକି ରହି ଆସ୍ତେ ଆସ୍ତେ ଦ୍ୱାର ଖୋଲି ଯାହା ଦେଖିବାକୁ ପାଇଲା, ସେଥିରେ ସତେକି କ୍ଷଣକ ଭିତରେ ତାର ଶରୀର ଯେପରି ପାଷାଣ ପାଲଟି ଗଲାପରି ତାକୁ ମନେହେଲା । ଘରଟା ସମ୍ପୂର୍ଣ୍ଣ ଅନ୍ଧକାର । କେବଳ ଗୋଟାଏ ଭଙ୍ଗା ଝରକା ଭିତରେ ଅଳ୍ପ ଆଲୁଅ ଆସି ଘର ଭିତରେ ପଡ଼ୁଥିଲା । ଆଲୁଅ ଅନ୍ଧାର ଭିତରେ ଏକାନ୍ତ ଧୂଳିଧୂସରିତ ଭୂମି ଉପରେ ସୁରେଶ ସେଠାରେ ଚିତ୍ହୋଇ ଶୋଇ ପଡ଼ିଛି । ତାର ଦେହରେ ସେହି ପିନ୍ଧିଥିବା ଓଦା ଲୁଗାଟା ଏବେ ସେହିପରି ଅଛି । ବ୍ୟାଗ୍‌ଟା ଖୋଲିହୋଇ କେତେଗୁଡ଼ିଏ ଜିନିଷ ପତ୍ର ଏଣେ ତେଣେ ପଡ଼ିଛି ।

ଆଖିର ପଲକ ମାତ୍ରେ ସୁରେଶର ଶେଷକଥାଗୁଡ଼ାକ ଅଚଳାର ମନେ ପଡ଼ିଗଲା । ସେ ଡାକ୍ତର । ସେ କେବଳ ମନୁଷ୍ୟର ଜୀବନଟା ହିଁ ଧରିରଖିବାର ଉପାୟ ସେ ଶିଖିଥିଲା ତାହାନୁହେଁ ତାହାକୁ ନିଃଶବ୍ଦରେ ବାହାର କରିଦେବାର ଉପାୟ ମଧ୍ୟ ତାକୁ ଅବିଦିତ ନଥିଲା । ମନେ ପଡ଼ିଲା, ନିଦାରୁଣ ଭୁଲ ପାଇଁ ତାର ସେଉଁ ଆତ୍ମଗ୍ଳାନି, ମନେ ପଡ଼ିଲା ତାହାର ସେହି ବିଦାୟ ନେବା ମୁହୂର୍ତ୍ତି; ମନେ ପଡ଼ିଲା ତାହାର ସେହି ଆଶ୍ୱସନାବାଣୀ; ସର୍ବୋପରି ତାହାର ସେହି ବାରମ୍ବାର ପ୍ରାୟଶ୍ଚିତ କରିବାର ନିଷ୍ଠୁର ଇଙ୍ଗିତ, ସମସ୍ତ ଏକସଙ୍ଗରେ ଏକ ନିଃଶ୍ୱାସରେ ଯେପରି ଏହି ଅବଲୁଣ୍ଠିତ ଦେହଟାର କେବଳ ଗୋଟିଏ ମାତ୍ର ପରିଣାମ କଥା ହିଁ ତାହାର କାନେ କାନେ କହିବାକୁ ଲାଗିଲେ । ସେହି ସ୍ଥାନରେ ସେହି ଦ୍ୱାର ବନ୍ଧକୁ ଧରି ସେ ଧୀରେ ଧୀରେ ବସିପଡ଼ିଲା । ସୁରେଶ ଥିବା ଘରେ ପ୍ରବେଶ କରିବା ପାଇଁ ତାର ଯେପରି ସାହସ ହେଲାନାହିଁ ।

ଏହି ଅଚେତନ ଦେହଟାକୁ ଗୃହିଁଦେବା କ୍ଷଣି ଅଚଳାର ଦୁଇଆଖିରୁ ଲୁହ ବହିବାକୁ ଲାଗିଲା । ତାର ପାଇଁ ଏତେବଡ଼ ଦୁର୍ନାମର ବୋଝ ନିଜ ମୁଣ୍ଡରେ ବହନ କରି ସୁରେଶ ନିହାଶରେ ଏତେବଡ଼ ପୃଥିବୀରୁ ସତେ ବିଦାୟ ନେଇଗଲା ! ଅପରାଧ ତାର ଯେତେ ଗୁରୁତର ହେଉ ନା କାହିଁକି, ତାହାକୁ କ୍ଷମା କରିପାରିବ ନାହିଁ ଏପରି କଠିନ ହୃଦୟ ବ୍ୟକ୍ତି ବୋଧହୁଏ ସଂସାରରେ ଅଳ୍ପ ଥିବେ । ଆଜହିଁ ସେଥିପାଇଁ ପ୍ରଥମ ଥର କରି ତା ନିଜ ପାଖରେ ନିଜର ଅପରାଧ ସୁସ୍ପଷ୍ଟ ହୋଇ ଦେଖାଦେଲା ।

ସୁରେଶ ସହିତ ସେହି ପ୍ରଥମ ଦିନର ପରିଚୟଠାରୁ ସେଦିନ ପର୍ଯ୍ୟନ୍ତ ଯେତେ କିଛି କାମନା, ବାସନା, ଯେତେ ଭୁଲ୍ ଭ୍ରାନ୍ତ, ଯେତେ ମୋହ, ଯେତେ

ଛଳନା, ଯେତେ ଆଗ୍ରହ, ଆବେଗ, ଉଭୟଙ୍କ ମଧ୍ୟରେ ହୋଇ ଯାଇଛ ସବୁ ଯେପରି ଗୋଟି ଗୋଟି ହୋଇ ଫେରିଆସି ଦେଖାଦେବାକୁ ଲାଗିଲେ । ତାର ନିଜର ଆଚରଣ, ତାର ବାବାଙ୍କର ଆଚରଣ, ହଠାତ୍ ମନେ ପଡ଼ିବାରୁ ସେ ଶିହରି ଉଠିଲା । ତା ମନ ଭିତରୁ ଯେପରି କିଏ କହି ଉଠିଲା—କେବଳ ନିଜର ନୁହଁ, ଅନେକ ଲୋକଙ୍କର, ଅନେକ ପାତକର ଗୁରୁଭାର ବହନ କରି ଆଜି ସୁରେଶ ଯେଉଁ ବିଚାରକଙ୍କ ପଦ ପ୍ରାନ୍ତରେ ଉପନୀତ ହୋଇଅଛି, ସେହିଠାରେ ସେ ନୀରବରେ ମୁହଁ ବନ୍ଦ କରି ସମସ୍ତ ଶାସ୍ତି ଗ୍ରହଣ କରିନେବ କିମ୍ବା ଗୋଟି ଗୋଟି କରି ସକଳ ଦୁଃଖ, ଅଭିମାନ, ଅଭିଯୋଗ ପ୍ରକାଶ କରି ତାହାଙ୍କଠାରୁ କ୍ଷମାଭିକ୍ଷା ଚାହିଁ ବସିବ ।

ଏହି ଲୋକଟିର ସଂସାରରେ ଉପଭୋଗ କରିବାପାଇଁ ଅନେକ ସାଜ ସରଞ୍ଜାମ, ଅନେକ ଉପକରଣ ସଞ୍ଚିତ ଥିଲା । ତଥାପି ସେ ସେ ନୀରବରେ ଲେଶମାତ୍ର ଆଡ଼ମ୍ବର ନକରି ସମସ୍ତ ପରିତ୍ୟାଗ କରି ଚାଲିଗଲା ଏହି ଗଭୀର ବେଦନା କଣ୍ଟାଭଳି ମର୍ମେ ମର୍ମେ ବିନ୍ଧିବାକୁ ଲାଗିଲା । ସେ ଯେ ଯଥାର୍ଥରେ ତାକୁ ପ୍ରାଣଦେଇ ଭଲପାଇ ବସିଥିଲା, ତାହା ଆଜି ଏହି ମୃତ୍ୟୁ ସମ୍ମୁଖରେ ଠିଆହୋଇ ପ୍ରଶ୍ନ କରିବାକୁ, ଅବିଶ୍ୱାସ କରିବାକୁ, ଆଉ ଏତେ ଟିକିଏ ଅବକାଶ ରହିଲା ନାହିଁ ।

ପୁଣି ତାର ଦୁଇ ଗଣ୍ଡ ଦେଇ ଧାର ଧାର ହୋଇ ଲୁହ ବହିବାକୁ ଲାଗିଲା । ଗତ ରାତିରେ ଟ୍ରେନ ଭିତରେ ସେମାନଙ୍କ ଭିତରେ ନିହାତି କଟୁକଥା, ନ୍ୟାୟ ଅନ୍ୟାୟ, ଧର୍ମ ଅଧର୍ମ ବିଷୟରେ ଅନେକ ବିତର୍କ ହୋଇ ଯାଇଛି; କିନ୍ତୁ ସେ ସମସ୍ତ ଯେ କେତେ ଅର୍ଥହୀନ ପ୍ରଳାପ, ଅଚଳା ସେତେବେଳେ କ'ଣ ତାହା ଜାଣିଥିଲା ? ଭଲ ପାଇବାର ଯେ ଜାତି ନାହିଁ, ଧର୍ମ ନାହିଁ, ବିଗ୍ଭର ବିବେକ, ଭଲ-ମନ୍ଦ ବୋଧ କିଛି ହିଁ ନାହିଁ । ସିଏ ଏପରି ଭାବରେ ମରିପାରେ, ସେ ଯେ ଏଇସବୁ ସମାଜର ଗଢ଼ା ନିୟମ କାନୁନର ଊର୍ଦ୍ଧ୍ୱରେ, ସମସ୍ତ ବିଧି ନିଷେଧ ଯେ ତାହାକୁ ସ୍ପର୍ଶ କରିପାରେ ନାହିଁ; ସୁରେଶ ଆଗରେ ଠିଆ ହୋଇ ଆଜି ସେ ଅସ୍ୱୀକାର କରିବ କିପରି ?

ଅଚଳା ପଣତ କାନିରେ ଆଖି ପୋଛିଲା । ହଠାତ୍ ତାର କିପରି ମନେହେଲା ମୃତ ଦେହଟା ସାମାନ୍ୟ ହଲି ଉଠିଲା । ଏବଂ ଠିକ୍ ପର ମୁହୂର୍ତ୍ତରେ ଅସ୍ପଷ୍ଟ ଆର୍ତ୍ତନାଦ କରି ସୁରେଶ କଡ଼ ଲେଉଟାଇ ଶୋଇଲା । ସେ ଯେ

ମରନାହିଁ—ଜୀଇଛ ! ଆଶ୍ଚର୍ଯ୍ୟ ଏବଂ ଉଦ୍‌ବେଗରେ ଅଚଳା ତାହା ନିକଟକୁ ଧାଇଯାଇଁ ଡାକ ଛାଡ଼ିଲା—ସୁରେଶବାବୁ !

ଡାକ ଶୁଣି ସୁରେଶ ଦୁଇ ଆରକ୍ତ ଚକ୍ଷୁ ମେଲି ଚାହିଁଲା କିନ୍ତୁ କଥା କହିଲା ନାହିଁ ।

ଅଚଳା ମଧ୍ୟ ଆଉ କିଛି କହିପାରିଲା ନାହିଁ । କେବଳ ଅଦମ୍ୟ କୋହ ତାର କଣ୍ଠରୋଧ କରି ଅଶ୍ରୁ ଆକାରରେ ଦୁଇ ଆଖିରୁ ନିରନ୍ତର ବହିବାକୁ ଲାଗିଲା । କିନ୍ତୁ ମୁହୂର୍ତ୍ତିକ ପୂର୍ବର ଅଶ୍ରୁ ଏବଂ ବର୍ତ୍ତମାନର ଅଶ୍ରୁ ଭିତରେ କେତେ ପ୍ରଭେଦ ସତେ !

ଅଥଚ ଅଚଳାର ସକଳ ଚିନ୍ତା ମଧ୍ୟରେ ଯେଉଁ ଚିନ୍ତାଟା ଭିତରେ ଭିତରେ ଅତ୍ୟନ୍ତ ସଙ୍ଗୋପନରେ ତାକୁ କଷ୍ଟ ଦେଉଥିଲା, ତାହା ହେଉଛି ଏହାର ବାସ୍ତବ ପରିପ୍ରକାଶ । ଏହି ଅଜଣା ଅପରିଚିତ ସ୍ଥାନରେ ସୁରେଶର ମୃତ ଦେହଟାକୁ ଧରି ସେ ଯେ କି ଉପାୟ କରି ବସିବ, କାହାକୁ ଡାକିବ, କାହାକୁ କହିବ, ହୁଏ ତ ଅନେକ ଅପ୍ରୀତିକର ଏବଂ କୁତ୍ସିତ ଆଲୋଚନା ସେମାନଙ୍କୁ ନେଇ ଜମି ଉଠିବ, ସେ ସେସବୁ ଆଲୋଚନାର କି ଜବାବ ଅବା ଦେବ, ହୁଏତ ପୋଲିସ ଆସି ଥାନାକୁ ଟାଣିନେଇ ପଚାରି ଉଚ୍ଚାରି କରି ସବୁ କଥା ବାହାରକରି ପକାଇବ, ସବୁ ଅନାବୃତ ଘଟଣା କାଳେ ପ୍ରକାଶ ପାଇଯିବ ଏହି ଲଜ୍ଜାରେ ତାର ଦେହମନ, ଯେ ଭିତରେ ଭିତରେ କି ରୂପରେ ପୀଡ଼ିତ, କି ରୂପରେ କ୍ଲିଷ୍ଟ ହୋଇପଡ଼ିଅଛି ତାହା ସମ୍ପୂର୍ଣ୍ଣ ଭାବରେ ସେ ହୁଏତ ନିଜେ ଉପଲବ୍ଧି କରିପାରୁ ନଥିଲା । ବର୍ତ୍ତମାନ ସେହିସବୁ ବିପଦର ଅପରିସୀମ ଲାଞ୍ଛନାରୁ ଅକସ୍ମାତ୍ ଅବ୍ୟାହତି ପାଇବା ପରେ ତାହାର କୋହ ଯେପରି ଆଉ ଅଟକି ହୋଇ ରହିପାରିଲା ନାହିଁ । ସେ ଯେ ମରିନାହିଁ, କେବଳ ଏତିକରେ ସୁରେଶ ପ୍ରତି ଅଚଳାର ହୃଦୟର କଣେ କଣେ କୃତଜ୍ଞତା ଭରି ଉଠିଲା ।

କିଛିକ୍ଷଣ ଏହି ଭାବରେ କଟିଗଲା । ତାପରେ ସୁରେଶ ଧୀରେ ଧୀରେ ପ୍ରଶ୍ନ କଲା—କାନ୍ଦୁଛ କାହିଁକି ଅଚଳା ?

ଅଚଳା କରୁଣ କଣ୍ଠରେ କହି ଉଠିଲା—କାହିଁକି ତୁମେ ଏପରି ଭାବରେ ଶୋଇ ରହିଲ ? କାହିଁକି ଗଲ ନାହିଁ ? କାହିଁକି ମୋତେ ଏତେ ଭୟ ଦେଖାଇଲ ?

ଅଚଳାର କଣ୍ଠସ୍ୱରରେ ଯେଉଁ ସ୍ନେହ ଉଦ୍‌ବେଳିତ ହୋଇ ଉଠିଲା, ତାହା ଏପରି କରୁଣ ଯେ କେବଳ ସୁରେଶ ନୁହେଁ, ତାର ନିଜ ମଧ୍ୟରେ

କପର ଏକ ପ୍ରକାର ମୋହ ସଞ୍ଚାର ହେଲା । ସେ ପୁଣି କହିଲା—ତୁମକୁ ଯଦି ଏତେ ଜ୍ୱର ମାଡ଼ୁଥିଲା ତେବେ ମୋତେ କହିଲ ନାହିଁ କାହିଁକି ? ମୁଁ ତ ସେ ପାଖର ବଡ଼ ଘରଟା ପରିଷ୍କାର କରିଦେଇ ଯାହାହେଉ କିଛି ବିଛଣା କରିଦେଇ ପାରିଥାନ୍ତି । ଟ୍ରେନ ଆସିବାକୁ ତ ବହୁତ ସମୟ ବିଳମ୍ବ ଥିଲା ।

ସୁରେଶ କୌଣସି ଉତ୍ତର ଦେଲାନାହିଁ । କେବଳ ବିଗଳିତ ସ୍ନେହରେ ଅଚଳାର ମୁହଁକୁ ଚାହିଁରହି ଧୀରେ ଧୀରେ ହାତ ବଢ଼ାଇ ତାର ଡ଼ାହାଣ ହାତଟା ଆଣି ନିଜର ଉତ୍ତପ୍ତ ଲଲାଟ ଉପରେ ରଖି ଗୋଟିଏ ଦୀର୍ଘ ନିଃଶ୍ୱାସ ମାତ୍ର ମାରିଲା ।

ଅଚଳା ଆଶ୍ଚର୍ଯ୍ୟ ହୋଇ କହିଲା—ଆରେ ଏ ଯେ ଭୀଷଣ ତାତି ! ତୁମକୁ ତେବେ ଜ୍ୱର ହୋଇଯାଇଛି ?

ସୁରେଶ କହିଲା—ହି । ତାହାଛଡ଼ା ଏ ଜ୍ୱର ମୋର ଛାଡ଼ିଯିବ ବୋଲି ବିଶ୍ୱାସ ହେଉନାହିଁ । ବୋଧହୁଏ......

ଅଚଳା ଆସ୍ତେ ଆସ୍ତେ ତାର ହାତଟି ଟାଣି ଆଣିଲା । ପ୍ରତ୍ୟୁତ୍ତରରେ କେବଳ ତାର ମୁହଁରୁ ଗୋଟିଏ ଦୀର୍ଘ ନିଃଶ୍ୱାସ ବାହାରି ପଡ଼ିଲା । ତାର ଉଦ୍‌ବେଳିତ ସମସ୍ତ ସ୍ନେହ ମମତା ମୁହୂର୍ତ୍ତିକ ଭିତରେ ଜମାଟ ବାନ୍ଧି ସତେ ଯେପରି ପଥର ପାଲଟିଗଲା । ସହ୍ୟ କରିବା ପାଇଁ ଏବଂ ଧୈର୍ଯ୍ୟ ଧରିବା ନିମିତ୍ତ ତାର ଯେତେକିଛି ଶକ୍ତି ଥିଲା, ସେସବୁ ଏକତ୍ର କରି ସେ ଆଜି ଗାଡ଼ି ଆସିବା ପର୍ଯ୍ୟନ୍ତ ଅପେକ୍ଷା କରି ରହିପାରିବ ବୋଲି ମନେ ମନେ ପ୍ରତିଜ୍ଞା କରି ସାରିଥିଲା । କିନ୍ତୁ ଏହି ଅଚିନ୍ତନୀୟ ଏବଂ ଅଭାବିତ ପୂର୍ବ ବିପଦ ମେଘହେତୁ ତାର ଆଶାର ରଶ୍ମି ରେଖା ଟିକିକ ଯେତେବେଳେ ଅନ୍ତର୍ହିତ ହୋଇଗଲା, ସେତେବେଳେ ଅଚଳା ପାଇଁ ମୃତ୍ୟୁ ବ୍ୟତୀତ ଜଗତରେ ଆଉ ଦ୍ୱିତୀୟ ପ୍ରାର୍ଥନୀୟ ଜିନିଷ କିଛି ନଥିଲା ।

ସୁରେଶକୁ ଏହିଠାରେ, ଏହିପରି ଭାବରେ ଫିଙ୍ଗିଦେଇ ଚାଲିଯିବା କଥା ଅଚଳା ଆଦୌ କଳ୍ପନା କରିପାରିଲା ନାହିଁ । କିନ୍ତୁ ଯାହାଙ୍କର ଅସୁସ୍ଥତାର ସର୍ବପ୍ରକାର ଦାୟିତ୍ୱ, ସମସ୍ତ ଗୁରୁଭାର, ତାର ମୁଣ୍ଡ ଉପରେ ପଡ଼ିଲା ତାଙ୍କୁ ଧରି ଏଇଭଳି ଏକ ଅପରିଚିତ ଯାଗାରେ ସେ କ'ଣ କରିବ ? କେଉଁଠାରୁ କାହା ପାଖରେ କି ପ୍ରକାର ସାହାଯ୍ୟ ଅବା ଭିକ୍ଷା କରିପାରିବ ? କି ପରିଚୟ ଦେଇ ଲୋକମାନଙ୍କର ସହାନୁଭୂତି ଆକର୍ଷଣ କରି ପାରିବ ? ଅହର୍ନିଶି କେଉଁ ଭୂମିକାରେ ଅଭିନୟ କରିବସିବ ? ଏହି ସମସ୍ତ ଚିନ୍ତା ବିଦ୍ୟୁତ୍ ବେଗରେ

ତାର ମୁଣ୍ଡରେ ଖେଳଯିବା ମାତ୍ରେ ସେ ଦଉଡ଼ି ପଳାଇବ ନା ଡାକ ପକାଇ କାନ୍ଦି ବସିବ ନା ଜୋରରେ ମଥା ପିଟି ପିଟି ଏହି ଅଭିଶପ୍ତ ଜୀବନଟାର ପରିସମାପ୍ତି ଘଟାଇବ, ତହିଁର କୌଣସି କୂଳ କିନାରା ଯେପରି ଠିକ୍ କରିପାରିଲା ନାହିଁ ।

ସେଦିନ ଷ୍ଟେସନରୁ ଫେରିବାବେଳେ ବର୍ଷାରେ ଭିଜି ଥିବାରୁ କେଦାରବାବୁ ସାତ ଆଠ ଦିନ ଧରି ଆଣ୍ଠୁଗଣ୍ଠି ବାତ ଓ ସର୍ଦ୍ଦି ଜ୍ୱରରେ ଶଯ୍ୟାଗତ ହୋଇ ପଡ଼ିରହିଲେ । କନ୍ୟା ଓ ଜାମାତା ଉଭୟଙ୍କର କୁଶଳ ସମ୍ବାଦ ନ ପାଇ ଅତ୍ୟନ୍ତ ଚିନ୍ତିତ ହୋଇ କେବଳ ସେ ଜବଲପୁର ବନ୍ଧୁଙ୍କ ନିକଟକୁ ଖଣ୍ଡିଏ ପୋଷ୍ଟକାର୍ଡ଼ ଲେଖିବା ବ୍ୟତୀତ ଆଉ କିଛି କରିପାରି ନଥିଲେ । ଆଜି ସେ ଚିଠିର ଉତ୍ତର ଆସି ପହଞ୍ଚିଲା । କେହି ଆସିନାହାନ୍ତି ଏବଂ କାହାର କିଛି ଖବର ଜଣାନାହିଁ, ଏତିକି ମାତ୍ର ଚିଠିରେ ଉଲ୍ଲେଖ ଅଛି । ସେଇ କେତେ ଧାଡ଼ିକୁ କେଦାରବାବୁ ବାରମ୍ବାର ପଢ଼ିସାରି ଶୂନ୍ୟ ଦୃଷ୍ଟିରେ ବାହାରକୁ ଚାହିଁରହି କେବଳ ବାରମ୍ବାର ଚଷମାର କାଚ ଦୁଇଟା ପୋଛିବାକୁ ଲାଗିଲେ । ସେମାନଙ୍କର କ'ଣ ହେଲା, ସେମାନେ କୁଆଡ଼େ ଗଲେ, ଏସବୁ ଖବର ନେବାପାଇଁ କାହାକୁ କହିବେ, କାହା ପାଖକୁ ଚିଠି ଲେଖିବେ, କିମ୍ବା କାହାଠାରୁ ପରାମର୍ଶ ଲୋଡ଼ିବେ ଏସବୁ ବିଷୟରେ ସେ କିଛି ଚିନ୍ତା କରିପାରିଲେ ନାହିଁ । ତାଙ୍କର ଆପଦ-ବିପଦ ସମୟରେ ଯେଉଁ ବ୍ୟକ୍ତି କାୟମନୋବାକ୍ୟରେ ତାଙ୍କୁ ସାହାଯ୍ୟ କରି ଆସିଥିଲା ସେହି ସୁରେଶ ମଧ୍ୟ ସେମାନଙ୍କ ସହିତ ଯାଇଛି ।

ଠିକ୍ ଏହି ସମୟରେ ବେହେରା ଆସି ଖଣ୍ଡିଏ ଚିଠି ତାଙ୍କ ଆଗରେ ରଖିଦେଇ ଗଲା । କେଦାରବାବୁ କୌଣସି ମତେ ନାକ ଉପରେ ଚଷମାଟା ରଖି ବ୍ୟଗ୍ର ହାତରେ ଚିଠି ଖଣ୍ଡି ଟେକି ଧରି ଦେଖିଲେ—ଚିଠିଟି ତାଙ୍କ କନ୍ୟା ଅଚଳା ନାମରେ ଆସିଛି । ଅତ୍ୟନ୍ତ ଆଗ୍ରହ ହେତୁ ଅପରର ଚିଠି ଖୋଲିବା, ନ ଖୋଲିବାର ଉଚିତ ଅନୁଚିତ ପ୍ରଶ୍ନ ତାଙ୍କ ମନକୁ ଆସିଲା ନାହିଁ । ଚିଠି ଖଣ୍ଡ ତରତର ହୋଇ ଚିରି ପକାଇ ପ୍ରଥମେ ଦେଖିଲେ ପ୍ରେରକ ସ୍ଥାନରେ ଲେଖାଅଛି "ତୁମର ମୃଣାଳ" । ତାପରେ ଚିଠିଟିକୁ ବାରବାର ପଢ଼ି ସେ

ଶୂନ୍ୟ ଦୃଷ୍ଟିରେ ଆକାଶକୁ ଗୃହିଁରହି ଚଷମା କାଚ ପୁଣି ପୋଛିବାକୁ ଲଗିଲେ । ତାଙ୍କ ମନ ଭିତରେ ଯେ କି ଭାବନା ଜାତହେଲା ତାହା କେବଳ ସେହି ଅନ୍ତର୍ଯ୍ୟାମୀଙ୍କୁହିଁ ଜଣା । ବହୁତ ସମୟ ଧରି ଅନ୍ୟମନସ୍କ ଭାବରେ ଚଷମା କାଚ ପୋଛିବା ପରେ ପୁଣି ଥରେ ଚିଠିଟା ଆମୂଳଚୂଳ ପଢ଼ିବାକୁ ଆରମ୍ଭ କଲେ । ସ୍ତ୍ରୀ ମାନଙ୍କର ସହିଷ୍ଣୁତା, କ୍ଷମା, ଧୈର୍ଯ୍ୟ ପ୍ରଭୃତି ସମ୍ବନ୍ଧରେ ବହୁତ ଉପଦେଶ ଦେଇ ମୃଣାଳ ଶେଷ ଆଡ଼କୁ ଲେଖିଛି—

ମହିଁଆଁ ଭାଇ ତୁମ ସମ୍ବନ୍ଧରେ କିଛି କହୁନାହାନ୍ତି ଏବଂ ପଗ୍ଭରି ବସିଲେ ଖାପଛଣ ଭାବରେ ଗମ୍ଭୀର ହୋଇ ପଡ଼ୁଛନ୍ତି । କିନ୍ତୁ ମୁଁ ତ ବିବାହିତା ସ୍ତ୍ରୀ । ତେଣୁ ସେ ସବୁର ଅର୍ଥ ମୁଁ ବେଶ ବୁଝି ପାରୁଛି । ଆଚ୍ଛା ନୂଆବୋଉ, ଝଗଡ଼ା, କଳି, କେଉଁ ସ୍ୱାମୀସ୍ତ୍ରୀଙ୍କ ଭିତରେ ନ ହୁଏ କହିଲ ? କିନ୍ତୁ ଯା ବୋଲି ତୁମର ଏତେ ଅଭିମାନ ! ତୁମସ୍ୱାମୀ ନିଜ ଶରୀର ଓ ମନର ବର୍ତ୍ତମାନ ଅବସ୍ଥା ନବୁଝି ପାରି ରାଗି ପାରନ୍ତି । ଅଧୀର ହୋଇ ଗ୍ଭଲିଆସି ଅନ୍ୟାୟ କରି ପାରନ୍ତି, କିନ୍ତୁ ତୁମେ ତ ବର୍ତ୍ତମାନ ପାଗଳୀ ହୋଇ ନାହଁ ସେ ଯାହା କହିଲେ ତାକୁ ଶିରୋଧାର୍ଯ୍ୟ କରି କିପରି ଉତ୍ତର ଦେଇ କହିଲ—ଆଚ୍ଛା ତାହାହିଁ ହେଉ । ତୁମେ ସେହି ବନବାସକୁ ଯାଅ । ସେଥିପାଇଁ ମୁଁ କେବଳ ବେଳେ ବେଳେ ଭାବୁଛି; କିପରି ତୁମେ ତୁମର ଏହି ମୁମୂର୍ଷୁ ସ୍ୱାମୀକୁ ବନକୁ ପଠାଇ ଦେଇପାରିଲ ଏବଂ ସ୍ଥିର ହୋଇ ସାତ ଆଠ ଦିନ କ'ଣ ସାତ ଆଠ ମାସ ହେବ ବାପଘରେ ରହିପାରିଛ ? ସତ କହୁଛି; ସେଦିନ ସେ ଯେତେବେଳେ କିନଷପନ ଧରି ଘରେ ଆସି ପହଞ୍ଚିଲେ ତାଙ୍କୁ ହଠାତ୍ ମୁଁ ଚିହ୍ନି ପାରିଲି ନାହିଁ । ତୁମ ଦୁହିଁଙ୍କର କାହିଁକି ଝଗଡ଼ା ହେଲା, କେବେ ହେଲା, ଏବଂ କେଉଁଥିପାଇଁ ପଶ୍ଚିମଦେଶକୁ ଯାଉଥିଲ ଏବଂ କାହିଁକି ସେ ବାଟରୁ ଫେରି ଆସିଲେ ଏସବୁ ବିଷୟରେ ମୁଁ ଏପର୍ଯ୍ୟନ୍ତ କିଛି ଜାଣିନାହିଁ ଏବଂ ଜାଣିବାକୁ ଇଚ୍ଛା ମଧ୍ୟ କରେନାହିଁ । କିନ୍ତୁ ତୁମକୁ ମୋ ରାଣ, ପତ୍ର ପାଇବାମାତ୍ରେ ସବୁ ପଛକଥା ଭୁଲି ଶୀଘ୍ର ଗ୍ଭଲି ଆସିବ । ଜାଣ ତ ଭଉଣୀ, ମୋର ଶାଶୁବୁଢ଼ୀଙ୍କୁ ଛାଡ଼ି ମୋର କେଉଁଠାକୁ ଯିବାର ଶକ୍ତି ନାହିଁ । ନଚେତ୍ ମୁଁ ହୁଏତ ନିଜେ ଯାଇ ତୁମ ଗୋଡ଼ ଧରି ତାଙ୍କ ଆଣିପାରନ୍ତି । ଭାଇ ମଧ୍ୟ ଏତେଟା ଅସୁସ୍ଥ ହୋଇ ପଡ଼ିଛନ୍ତି ଯେ ତାଙ୍କୁ ଛାଡ଼ି ମୁହୂର୍ତ୍ତେ ଯାଇ ହେଉନାହିଁ । ଥରକପାଇଁ ଆସ । ତାଙ୍କୁ ନିଜଆଖିରେ ଦେଖ । ସେତିକିବେଳେ ବୁଝିପାରିବ ଏହିଭଳି ଅସଙ୍ଗତ ମାନ ଅଭିମାନ କରି ତୁମେ ତୁମପ୍ରତି କେତେବଡ଼ ଅନ୍ୟାୟ କରି ବସିଛ । ଏ ଘର ତୁମର । ମୁଁ ମଧ୍ୟ ତୁମର । ତେଣୁ ଏ ଘରକୁ ଆସିବାକୁ ମନରେ ସଙ୍କୋଚ କରିବ ନାହିଁ । ତୁମ ଆସିବା ବାଟକୁ ଗ୍ଭହିଁ ରହିଲି । ଶ୍ରୀଚରଣରେ ଶତକୋଟି ପ୍ରଣାମ । ଆଉ ଗୋଟିଏ କଥା

ମନେ ରଖିବ ଭଉଣୀ, ମୋର ଏହି ଚିଠି ଲେଖିବା କଥା ସେପରି ସେ ଜାଣି ନ ପାରନ୍ତି । ମୁଁ ତାଙ୍କୁ ଲୁଚାଇ ଏ ପତ୍ର ତୁମ ପାଖକୁ ଲେଖୁଛି । ଇତି ।

ତୁମର ମୃଣାଳ

ପତ୍ର ଶେଷ କରିବା ପରେ ମୃଣାଳ ପୁଣି ପୁନଶ୍ଚ ଦେଇ ଲେଖିଛି, ଯେହେତୁ ତୁମେ ସ୍ୱାମୀଙ୍କର ଅନୁପସ୍ଥିତିରେ ସୁରେଶ ବାବୁଙ୍କ ଘରେ ଦିନଟିଏ ସୁଦ୍ଧା ରହିବାକୁ ଉଚିତ୍ ମନେ କରନାହିଁ ତେଣୁ ତୁମ ବାପଘର ଠିକଣାରେ ଚିଠି ଲେଖିଲି । ଆଶାକରେ ଏ ପତ୍ର ତୁମ ନିକଟରେ ନିର୍ବିଘ୍ନରେ ପହଞ୍ଚି ପାରିବ ।

କେଦାରବାବୁଙ୍କ ହାତରୁ ଚିଠିଖଣ୍ଡିକ ଖସି ପଡ଼ିଲା । ସେ ପୁଣି ଥରେ ଆଖିରୁ ଚଷମା କାଢି ବାହାରକୁ ଗୁହିଁ ରହି କାଚ ପୋଛିବାରେ ଲାଗିଲେ । ଏଥିରୁ ଜଣା ପଡ଼ିଲା ମଧ୍ୟମ ଜବଲପୁର ପରିବର୍ତ୍ତିରେ ବର୍ତ୍ତମାନ ତାର ଗାଆଁରେ ଅଛି ଏବଂ ଅଚଳା ସେଠାରେ ନାହିଁ । ସେ ବର୍ତ୍ତମାନ କେଉଁଠି ? ତାର କ'ଣ ହେଲା ? ଏସବୁ କଥା ହୁଏତ ମଧ୍ୟମ ଜାଣେ ନାହିଁ କିମ୍ବା ଜାଣିଥିଲେ ବୋଧହୁଏ ପ୍ରକାଶ କରିବାକୁ ଇଚ୍ଛା କରେନାହିଁ ।

ହଠାତ୍ ତାଙ୍କର ମନେ ପଡ଼ିଲା—ସୁରେଶ ତେବେ, ବର୍ତ୍ତମାନ କେଉଁଠାରେ ? ସେ ତ ସେମାନଙ୍କର ଅତିଥି ହୋଇ ସଙ୍ଗରେ ଯାଇଥିଲା । ସେ ନିଶ୍ଚୟ ଘରକୁ ଫେରିନାହିଁ । ଫେରିଥିଲେ ନିଶ୍ଚୟ ଆସି ଥରକ ପାଇଁ ତାଙ୍କୁ ସାକ୍ଷାତ୍ କରି ଯାଆନ୍ତାଣି । ତାପରେ ପିତାର ହୃଦୟରେ ଯେଉଁ ଆଶଙ୍କା ଶୂଳପରି ଗଳିଗଲା, ସେହି ଆଘାତରେ ସେ ଆଉ ସିଧା ଠିଆହୋଇ ପାରିଲେ ନାହିଁ । ସେହି ଆରାମ-ଚୌକି ଉପରେ ଚିତ୍‌ହୋଇ ପଡ଼ିଗଲେ ଏବଂ ଆଖି ତାଙ୍କର ଆପେ ଆପେ ବନ୍ଦ ହୋଇ ଆସିଲା ।

ଦିପହର ବେଳେ ଦାସୀ ସୁରେଶଘରୁ ଫେରିଆସି ଜଣାଇଲା ଯେ— ସୁରେଶର ପିଉସୀମାଆ କହିଲେ ସେ ମଧ୍ୟ କିଛି ସମ୍ବାଦ, କାହା ବିଷୟରେ ପାଇ ନାହାନ୍ତି । କୌଣସି ଚିଠିପତ୍ର ନ ପାଇବାଫଳରେ ସେ ମଧ୍ୟ ଚିନ୍ତିତା ହୋଇ ପଡ଼ିଛନ୍ତି ।

ରାତିରେ ନିଭୃତ ଶୟନ କକ୍ଷରେ କେଦାରବାବୁ ଦୀପ ଆଲୁଅରେ ଆଉଥରେ ଥରକପାଇଁ ମୃଣାଳର ପତ୍ର ଖଣ୍ଡିକ ଧରି ବସିଲେ । ଚିଠିଟିର ପ୍ରତ୍ୟେକ ଶବ୍ଦକୁ ତନ୍ନ ତନ୍ନ କରି ଆଲୋଚନା କରିବାକୁ ଲାଗିଲେ । ହୁଏତ କେଉଁଠାରେ ଆତ୍ମରକ୍ଷା କରିବା ପାଇଁ କିଛି ସୁବିଧା ଥାଇପାରେ ନଚେତ୍ ମୁହଁ ଲୁଚାଇବାକୁ ଏତେ ବଡ଼

ପୃଥିବୀରେ ବୋଧହୁଏ ସେ ଯାଗା ଟିକିଏ ପାଇ ପାରିବେ ନାହିଁ । ଚିରଦିନ ସେ ପୁରୁଷାନୁକ୍ରମେ କଲିକତାବାସୀ । କଲିକତା ବାହାରେ କେଉଁଠି ଯେ, ଭଦ୍ରଲୋକ ଥାଇ ପାରନ୍ତି ଏହା ତାଙ୍କର କଳ୍ପନା ବାହାରେ ଥିଲା । ଏହି ଆଜନ୍ମ ପରିଚିତ ସ୍ଥାନ, ସମାଜ, ସବୁଦିନର ବନ୍ଧୁ ବାନ୍ଧବଙ୍କଠାରୁ ବିଚ୍ୟୁତ ହୋଇ ଯଦି ଶେଷ ଜୀବନଟା କେଉଁ ଅଜ୍ଞାତ ସ୍ଥାନରେ ଅତିବାହିତ କରିବାକୁ ହୁଏ ତେବେ ଦୁଃସହ ଦିନଗୁଡ଼ିକ ଯେ କିପରି କାଟିବେ, ଏହା ତାଙ୍କର ଚିନ୍ତାର ଅତୀତ ଏବଂ କନ୍ୟାହୋଇ ହତଭାଗିନୀ ଯେ ଶାନ୍ତିରୁ ଏହି ବୋଝକୁ ବୃଦ୍ଧ ପିତାର ଅଶକ୍ତ ଶିର ଉପରେ ଲଦି ଦେଲା, ତାହାକୁ ସେ କ'ଣ କହି ଅଭିଶାପ ଦେଇ ପାରିବେ ତାହା ମଧ୍ୟ ତାଙ୍କର ଭାବନାର ବାହାରେ ଥିଲା ।

ସାରାରାତି ଭିତରେ ଥରକ ପାଇଁ ତାଙ୍କ ଆଖିରେ ପଲକ ପଡ଼ିଲା ନାହିଁ । ତେଣୁ ବଡ଼ ସକାଳୁ ତାଙ୍କର ବ୍ୟଥାଟା ପୁଣି ଦେଖାଦେଲା । ଆଜି ଯେତେବେଳେ ନିଜର ବୋଲି କେହି ତାଙ୍କର ମୁହଁ ଚାହିଁବାକୁ ଦୁନିଆଁରେ ନାହାଁନ୍ତି ସେତେବେଳେ ନିର୍ଜୀବ ଭଳି ଶେଯରେ ପଡ଼ି ରହିବାକୁ ସେ ଘୃଣା ବୋଧ କଲେ । ଏତେବଡ଼ ବେଦନାକୁ ସେ ଶାନ୍ତ ମୁହଁରେ ବୁକୁ ଭିତରେ ଚାପିରଖି ବାହାରକୁ ଆସିଲେ । ରେଲ ଷ୍ଟେସନକୁ ଯିବାପାଇଁ ଗାଡ଼ି ବନ୍ଦୋବସ୍ତ କରିବାକୁ ଏବଂ ଲୁଗାପଟା ଦୁଇଖଣ୍ଡ ଶୀଘ୍ର ସଜାଡ଼ି ଦେବାପାଇଁ ବେହେରାକୁ ଆଦେଶ ଦେଲେ ।

ଶୀତଦିନର ସୂର୍ଯ୍ୟ ଅପରାହ୍ଣକୁ ଢଳିବାକୁ ଉପକ୍ରମ କରୁଥିଲେ । ତାଙ୍କର ଈଷତ୍ ଉତ୍ତପ୍ତ କିରଣରେ ଶୋଣନଦୀର ପାର୍ଶ୍ୱବର୍ତ୍ତୀ ସୁଦୂର ବିସ୍ତୀର୍ଣ୍ଣ ବାଲୁକା ଭୂମି ଧୂ ଧୂ ହୋଇ ଜଳିବାକୁ ଆରମ୍ଭ କରିଥିଲା । ଏହି ସମୟରେ ବଙ୍ଗଳା ଘରର ବାରଣ୍ଡା ରେଲିଂ ଧରି ଅଚଳା ସେହି ଦିଗକୁ ଚାହିଁ ରହି ନୀରବରେ ଠିଆହୋଇ ରହିଥିଲା । ତାର, ନିଜ ଜୀବନ ସହିତ ଏହି ଦଗ୍ଧ ମରୁଖଣ୍ଡର କୌଣସି ଘନିଷ୍ଠ ସମ୍ପର୍କ ଅଛି କି ନାହିଁ ସେ ଅନ୍ୟ କଥା, କିନ୍ତୁ ଏହି ଅପଲକ ଆଖି ଦୁଇଟି ପ୍ରତି ଚାହିଁବା କ୍ଷଣି ବୁଝା ପଡ଼ୁଥିଲା ଯେ ସେହିପରି ଚାହିଁ ରହିଲେ କିଛି ଦେଖାଯାଏ ନାହିଁ ସତ; ମାତ୍ର ସମସ୍ତ ସଂସାରଟା ଯେପରି ଗୋଟାଏ ବିଚିତ୍ର ଓ ବିରାଟ ଭେଳକିବାଜି ଖେଳପରି ମନେହୁଏ ।

: ଅପା ?

ଅଚଳା ଚମକି ଫେରି ଚାହିଁଲା । ଯେଉଁ ଝିଅଟି ଦିନେ 'ରାକ୍ଷସୀ' କହି ନିଜର ପରିଚୟ ଦେଇ ଆସି ଷ୍ଟେସନରେ ଓହ୍ଲାଇ ଯାଇଥିଲା, ଏ ହେଉଛି ସେହି । ନିକଟକୁ ଆସି ଅଚଳାର ଉଦ୍‌ଭ୍ରାନ୍ତ ଓ ଏକାନ୍ତ ଶ୍ରୀହୀନ ମୁହଁକୁ ମୁହୂର୍ତ୍ତକ ପାଇଁ ଚାହିଁ ଅଭିମାନ ସ୍ୱରରେ କହିଲା—ଆଚ୍ଛା ଅପା, ସମସ୍ତେ ଦେଖୁଛନ୍ତି ସୁରେଶବାବୁ ଭଲ ହୋଇ ଗଲେଣି । ଡାକ୍ତର କହୁଛନ୍ତି ଆଉ ଟିକିଏ ହେଲେ ଭୟ ନାହିଁ । ତଥାପି ଚିନ୍ତା କରିକରି ତୁମର ଦିନରାତି ଅଣ୍ଟୁନାହିଁ । ମୁହଁରେ ହସ ନାହିଁ । ମୋର ମଧ୍ୟ ସ୍ୱାମୀ ଅଛନ୍ତି । ତାଙ୍କର ମଧ୍ୟ ଅସୁଖ ବିସୁଖ ହୁଏ । ମୋତେ ମଧ୍ୟ ଭାତ ରୁଚେ ନାହିଁ । କିନ୍ତୁ ମୋ ମାଆ କହୁଛି ତୁମ ସହିତ ମୋର ତୁଳନା ହୋଇ ପାରିବ ନାହିଁ ।

ଅଚଳା ମୁହଁ ଫେରାଇ ନେଇ କେବଳ ଗୋଟିଏ ଦୀର୍ଘନିଃଶ୍ୱାସ ଛାଡ଼ିଲା । କୌଣସି ଉତ୍ତର ଦେଲାନାହିଁ ।

ଝିଅଟି କୃତ୍ରିମ କ୍ରୋଧ କରି କହିଲା—ଇସ୍ । ଫୁଁ କରି ଗୋଟାଏ ଦୀର୍ଘ-ନିଃଶ୍ୱାସ ଛାଡ଼ିଦେଇ ସତେଯେପରି ବଡ଼ କଥାଟାଏ କରି ବସିଲ ? କହି କିଛି ସମୟ ଅପେକ୍ଷା କରି ଯେତେବେଳେ ଅଚଳା ନିକଟରୁ କୌଣସି ପ୍ରକାର ଉତ୍ତର ପାଇ ପାରିଲା ନାହିଁ, ସେତେବେଳେ ତାର ଗୋଟିଏ ହାତ ନିଜ ମୁଠା ଭିତରେ ଟାଣି ଧରି ଅତ୍ୟନ୍ତ କରୁଣ କଣ୍ଠରେ ପଚାରିଲା—ଆଚ୍ଛା ସୁରମା ଅପା, ସତ କରି କୁହ ଭଉଣୀ, ଆମ ଘରେ ତୁମ ମନ ଦଣ୍ଡକ ପାଇଁ ସୁଦ୍ଧା ଭଲ ରହୁ-ନାହିଁ । ବୋଧହୁଏ ଭୀଷଣ ଅସୁବିଧା ଆଉ କଷ୍ଟ ହେଉଛି ? ସତ ନା ?

ଅଚଳା ନଦୀ ଆଡ଼କୁ ଯେପରି ଚାହିଁ ଥିଲା ସେହିପରି ଚାହିଁ ରହିଲା । କିନ୍ତୁ ଏଥର ଉତ୍ତର ଦେଲା, କହିଲା—ତୁମ ଶଶୁର ମୋର ଯେଉଁ ଉପକାର କରିଛନ୍ତି ତାହାକୁ କ'ଣ ଏ ଜନ୍ମରେ କଦାପି ଭୁଲି ପାରିବି ଭଉଣୀ ?

ଝିଅଟି ହସିଲା । କହିଲା—ଭୁଲିଯିବା ପାଇଁ ସତେ ଯେପରି ମୁଁ ତୁମକୁ କହୁଛି ? ଏବଂ ପରକ୍ଷଣରେ କୃତ୍ରିମ ଅନୁଯୋଗ କଣ୍ଠରେ କହିଲା—ବୋଧହୁଏ ସେଥିପାଇଁ ବାବାଙ୍କର ଏତେ ଡକା ଡକିରେ ତୁମେ ଉତ୍ତର ସୁଦ୍ଧା ଦେଲନାହିଁ । ତୁମେ ଭାବିଲ ବୁଢ଼ା ଯେତେବେଳେ ସେତେବେଳେ······

ଅଚଳା ନିହାତ ଆଶ୍ଚର୍ଯ୍ୟ ହୋଇ ମୁହ ଫେରାଇ କହି ଉଠିଲା—ନା, ଏପରି ହୋଇପାରିବ ନାହିଁ ।

ରାକ୍ଷସୀ ଜବାବ ଦେଲା—ପାରିବ ନାହିଁ କାହିଁକି ? ମୁଁ ଯଦି ନିଜେ ଶୁଣି ନଥାନ୍ତି ତେବେ ଅବା ଅବିଶ୍ୱାସ କରିଥାନ୍ତି । ଠାକୁର ଘରେ ମୁଁ ଥାଇ ଶୁଣି ପାରିଲି—ସୁରମା—ଆଗୋ ମାଆ ସୁରମା—ଏହିପରି ସ୍ନେହପାଞ୍ଚ ଥର ଶୁଣିବାକୁ ପାଇଲି ବାବା ତୁମକୁ ଡାକୁଛନ୍ତି । ପୂଜାପାଇଁ ସବୁ ଠିକ୍ ଠାକ୍ କରୁଥିଲି । ଗୋଟିଏ ପାଖକୁ ସେସବୁ ରଖିଦେଇ ପୂଜା ଘରୁ ଦଉଡ଼ି ଆସି ଦେଖେ ସିଡ଼ି ଦେଇ ସେ ତଳକୁ ଓହ୍ଲାଉଛନ୍ତି । ସତ କହୁଛି ଅପା, ଆଦୌ ଥଟ୍ଟା କରୁନାହିଁ ।

ଅଚଳା ଏତେବେଳକୁ ମନେମନେ ବୁଝିପାରିଲା—କାହିଁକି ବୃଦ୍ଧଙ୍କର "ସୁରମା" ଡାକ ତାର ବ୍ୟମନା ଚିତ୍ତକୁ ବାଟ ଖୋଜି ଯାଇ ପହଞ୍ଚି ପାରି ନାହିଁ । ସେ ଲଜ୍ଜ୍ୟାରେ ଏବଂ ଅନୁତାପରେ ଚଞ୍ଚଳ ହୋଇ କହି ଉଠିଲା ବୋଧହୁଏ ମୁଁ ଘର ଭିତରେ ଥିବି ......

ରାକ୍ଷସୀ କହିଲା—ଘର ଭିତରେ କାହିଁକି ? ଯାହା ପାଇଁ ଘର, ସେ ତ ବାହାରକୁ ବୁଲିବାକୁ ଯାଇଥିଲେ । ରୋଷେଘର ଭିତରୁ ମୁଁ ଚାହିଁ ଦେଖୁଛି ତୁମେ ରେଲିଂ ଧରି ସିମିତ ସେତିକବେଳୁ ଏପର୍ଯ୍ୟନ୍ତ ଠିଆ ହୋଇଛ—କହି ଟିକିଏ ଅଟକି ପୁଣି ହସି କହିଲା—କିନ୍ତୁ ଅପା ତୁମ ମନ ତ ଆଉ ତୁମ ଭିତରେ ନଥିଲା ଯେ ତୁମେ ବୁଢ଼ାଟାର ଡାକ ଶୁଣିପାରିଥାନ୍ତ ? ଯାହା ଭାବିଥିଲି ତାହା ଯଦି କହିବସିବି ତ.......

ଅଚଳା ନୀରବ ହୋଇ ପୁଣି ନଦୀ ଆଡ଼କୁ ଚାହିଁ ରହିଲା । ଏହି ସକଳ ଥଟ୍ଟା ପରିହାସର ଉତ୍ତର ଦେବାକୁ ଚେଷ୍ଟା କଲାନାହିଁ, କିନ୍ତୁ ଏଠାରେ କହି ରଖିବା ଆବଶ୍ୟକ ଯେ, ରାକ୍ଷସୀ ନାମ ସହିତ ତାର ସ୍ୱଭାବର ବିନ୍ଦୁମାତ୍ର ମେଳ ନଥିଲା । ତାର ନାମ ମଧ୍ୟ ରାକ୍ଷସୀ ନୁହେଁ, ତାର ଅସଲ ନାଆଁ ବୀଣାପାଣି । ଜନ୍ମକାଳରେ ମାଆ ମରିଯାଇଥିଲେ ବୋଲି ବୁଢ଼ୀ ମାଆ ଏହି ଅପବାଦ ଦେଇଥିଲେ ଏବଂ ପ୍ରତିବେଶୀ ଓ ଶାଶୁ ଶଶୁରଙ୍କ ନିକଟରେ ଏହି ଦୁର୍ନାମକୁ ମଧ୍ୟ ଗୋପନ କରି ରଖିପାରି ନଥିଲେ ।

ଅଚଳାକୁ ହଠାତ୍ ମୁହଁ ଫେରାଇ ନେଇ ଚୁପ୍ ରହିବାର ଦେଖି ରାକ୍ଷସୀ ମନେ ମନେ ଲଜ୍ଜିତା ହୋଇଉଠିଲା । ଅନୁତପ୍ତ ସ୍ୱରରେ କହିଲା—ଆଚ୍ଛା ସୁରମା ଅପା, ମୋର କ'ଣ ତୁମକୁ ପଦୁଟିଏ ଥଟ୍ଟାକରି କହିବାର ଅଧିକାର ନାହିଁ ? ମୁଁ କ'ଣ ଜାଣେନାହିଁ ଭଉଣୀ, ତୁମେ ବାପାଙ୍କୁ କେତେ ଭକ୍ତି ଓ ସମ୍ମାନ କର । ତାଙ୍କ ନିକଟରୁ ମୁଁ ସବୁକଥା ଶୁଣି ପାରିଛି । ସେ ସକାଳେ ବୁଲି ବାହାରିଥିଲେ, ଆଉ ତୁମେ ଏହି ଅଜଣା ଯାଗାରେ କାନ୍ଦି କାନ୍ଦି ଡାକ୍ତର ଖୋଜି ବୁଲୁଥିଲ । ତାପରେ ସେ ସଙ୍ଗରେ ଯାଇ ପାନ୍ଥଶାଳାରୁ ତୁମ ସ୍ୱାମୀଙ୍କୁ

ଘରକୁ ନେଇ ଆସିଲେ । ଏସବୁ ହେଉଛି ଭଗବାନଙ୍କର ଦୟା । ନହେଲେ ଏ ଘରେ ଯେ ତୁମ ପାଦଧୂଳି ପଡ଼ିବ ଗାଡ଼ିରେ ସେଦିନ ଏ କଥା କିଏ ଅବା ଭାବିଥିଲି ? କିନ୍ତୁ ମୋ ପ୍ରଶ୍ନର ଉତ୍ତର ତ ପାଇଲି ନାହିଁ ? ମୁଁ ପଚାରିଥିଲି—ଏ ଘରେ ଯେ ତୁମକୁ ଦଣ୍ଡିକ ପାଇଁ ଭଲ ଲାଗୁନାହିଁ ତାର ସନ୍ଧାନ ମୁଁ ପାଇ ପାରିଛି—କିଛି ପୂର୍ବ ପରି ମୁହୂର୍ତ୍ତିକ ପାଇଁ ଅପେକ୍ଷା କରିବା ପରେ ହଠାତ୍ କପରି ଟିକିଏ ମନେହେଲା, ଯେଉଁ କାରଣରୁ ହେଉ ପଛକେ ସେ ବୃଥାରେ ଉତ୍ତର ପାଇଁ ଅପେକ୍ଷା କରି ଠିଆ ହୋଇଛି । ତାପରେ ସେ ଅଚଳା ମୁହଁକୁ ଜୋର କରି ବୁଲାଇ ଆଣି ଦେଖିବାକୁ ପାଇଲା; ତାର ଦୁଇ ଆଖିରୁ ଲୁହ ଧାର ଅନବରତ ବହି ଚାଲିଛି । ବୀଣାପାଣି ସ୍ତବ୍ଧ ହୋଇ ଠିଆହୋଇ ରହିଲା—ଏବଂ ପଣତ କାନିରେ ଲୁହ ପୋଛିଦେଇ ଶୂନ୍ୟ ଦୃଷ୍ଟିରେ ଅନ୍ୟଆଡ଼େ ଆବାକାବା ହୋଇ ଚାହିଁ ରହିଲା ।

ପରଦିନ ଅପରାହ୍ନ ସମୟରେ ସଦ୍ୟପ୍ରାପ୍ତ ଖଣ୍ଡିଏ ମାସିକ ପତ୍ରରୁ ଗୋଟିଏ ଗଳ୍ପ ପଢ଼ାଇ ଅଚଳାକୁ ଶୁଣାଉଥିଲା ବୀଣାପାଣି । ଗୋଟିଏ ବେତ ଚଉକି ଉପରେ ଅର୍ଦ୍ଧଶାୟିତ ଅବସ୍ଥାରେ ବସି ଅଚଳା ସେ ଗପରୁ କେତେକ ଶୁଣୁଥିଲା, ତ ଆଉ କେତେକ ତାର ଏକାନ ବାଟେ ପଶି ସେ ପାଖେ ବାହାରି ଯାଉଥିଲା । ଏହି ସମୟରେ ବୀଣାପାଣିର ଶଶୁର ରାମ ଚରଣ ଲାହିଡ଼ୀ ମହାଶୟ, ସିଡ଼ିରୁ "ମାଆ ରାକ୍ଷସୀ" ବୋଲି ଡାକି ଡାକି ଆସି ବାରଣ୍ଡା ଉପରେ ପହଞ୍ଚିଲେ । ଉଭୟେ ତାଙ୍କୁ ଦେଖିପାରି ବ୍ୟସ୍ତ ହୋଇ ଠିଆ ହୋଇ ପଡ଼ିଲେ । ବୀଣାପାଣି ଖଣ୍ଡିଏ ଚୌକି ଟାଣି ଆଣି ବୃଦ୍ଧଙ୍କ ନିକଟରେ ରଖିଦେଇ ଆଗ୍ରହରେ ପଚାରି ଉଠିଲା କ'ଣ ବାବା ?

ଏହି ବୃଦ୍ଧ ଜଣକ ଅତ୍ୟନ୍ତ ନିଷ୍ଠାବାନ ହିନ୍ଦୁ । ସେ ଧୀରେ ସୁସ୍ଥେ ଆସନ ଗ୍ରହଣ କଲା ପରେ ଅଚଳା ମୁହଁକୁ ଚାହିଁ କୋମଳ କଣ୍ଠରେ କହିଲେ—ଗୋଟାଏ କଥା କହିବାର ଥିଲା ମାଆ, ଭଟ୍ଟାଚାର୍ଯ୍ୟ ମହାଶୟ ବର୍ତ୍ତମାନ ଆସିଥିଲେ । ସେ ତୁମ ସ୍ୱାମୀ ସ୍ତ୍ରୀଙ୍କ ନାମରେ ସଂକଳ୍ପ କରି ନାରାୟଣଙ୍କୁ ଯେଉଁ ତୁଳସୀ ଲାଗି କରୁଥିଲେ ତାହା କାଲି ଶେଷହେବ । ସେଥିପାଇଁ ମାଆ, ତୁମକୁ କାଲି ସକାଳୁ ପୂଜା ଶେଷ-ହେବାପର୍ଯ୍ୟନ୍ତ ଉପବାସ କରିବାକୁ ହେବ । ସେ ଆମ ଘରକୁ କାଲି ନାରାୟଣଙ୍କୁ ଆଣି ପୂଜା ସମ୍ପୂର୍ଣ୍ଣ କରିବେ । ତେଣୁ ତୁମେ କାଲି ଆଉ ଅନ୍ୟ କେଉଁଆଡ଼େ ଯିବ ନାହିଁ । ଏ କଥା ଶୁଣିବା ପରେ ଅଚଳାର ମୁହଁଟା କଳା ପଡ଼ିଗଲା । ମଳିନ ଆଲୋକରେ ବୃଦ୍ଧ ଏହାକୁ ଦେଖିପାରିଲେ ନାହିଁ ସିନା କିନ୍ତୁ ବୀଣାପାଣି ଆଖିରୁ ତାହା ବାଦ୍

ଗଲା ନାହିଁ । ସେ ହିନ୍ଦୁ ଘରର ଝିଅ । ଜନ୍ମଦିନରୁ ଏହି ସଂସାର ଭିତରେ ମଣିଷ ହୋଇଛି ଏବଂ ଅସୁସ୍ଥ ସ୍ୱାମୀଙ୍କ ପାଇଁ ଏହା ଯେ କେତେ କଲ୍ୟାଣକର ତାହା ସେ ଭଲକରି ଜାଣେ । କିନ୍ତୁ ଅଚଳା ମୁହଁର ଚେହେରା ଏପରି ପରିବର୍ତ୍ତିତ ହେବାରୁ ତାର ବିସ୍ମୟର ସୀମା ରହିଲା ନାହିଁ । ତଥାପି ନିଜଲୋକ ଭଳି ଅଚଳା ତରଫ ନେଇ ସେ କହିଲା—ଆଚ୍ଛା ବାବା, ସୁରେଶ ବାବୁଙ୍କ ଆରୋଗ୍ୟ ପାଇଁ ନାରାୟଣଙ୍କୁ ତ ତୁଳସୀ ଚଢାଇଲ, ତେଣୁ ସେ ଉପବାସ ନ କରି ଅପା କାହିଁକି କରି ବସିବେ ?

ବୃଦ୍ଧ ହସି ହସି କହିଲେ—ସେ ଆଉ ତୁମର ଏଇ ଅପାଟି କ'ଣ ଅଲଗା ମାଆ ? ସୁରେଶବାବୁ ତ ଏ ଅବସ୍ଥାରେ ଆଉ ଉପାସ କରିପାରିବେ ନାହିଁ, ତେଣୁ ତୁମର ସୁରମା ଅପାଙ୍କୁ ହିଁ କରିବାକୁ ହେବ, ଏ କଥାପରି ଶାସ୍ତ୍ରରେ ବିଧି ଅଛି ମାଆ, ତେଣୁ ଚିନ୍ତା କରିବାର କିଛି ନାହିଁ ।

ଅଚଳା ଏହାର ପ୍ରତ୍ୟୁତ୍ତରରେ ଯେତେବେଳେ ହଁ, କି ନାହିଁ କିଛି ନକହିଲା ସେତେବେଳେ ତାର ନୀରବତା ଯେପରି ଏହି ମଙ୍ଗଳାଭିଳାଷୀ ବୃଦ୍ଧଙ୍କର ଆଖିରେ ଧରା ପଡ଼ିଗଲା । ସେ ସିଧା ଅଚଳାର ମୁହଁକୁ ଚାହିଁ ପଚାରିଲେ—ଏଥିରେ କ'ଣ ତୁମର କିଛି ଆପତ୍ତି ଅଛି ସୁରମା ?

ଅଚଳା ହଠାତ୍ ଏହାର କୌଣସି ଉତ୍ତର ଦେଇ ପାରିଲା ନାହିଁ । କିଛି ସମୟ ଚୁପ ରହିବା ପରେ ଧୀରେଧୀରେ ଅତ୍ୟନ୍ତ କୋମଳ କଣ୍ଠରେ କହିଲା—ତାଙ୍କୁ ପଚାରନ୍ତୁ ସେ ବୋଧହୁଏ ଉପବାସ କରିପାରନ୍ତି ।

ତାପରେ ସମସ୍ତେ ନୀରବ ରହିଲେ । କଥାଟା ଯେ କେତେ କଟୁ ବିଷ ସଦୃଶ ଓ ନିଷ୍ଠୁର ଶୁଣାଗଲା, ତାହା ଯେଉଁ ବ୍ୟକ୍ତି ଉଚ୍ଚାରଣ କଲା ତାହା ବ୍ୟତୀତ ବୋଧହୁଏ ଆଉ କେହି ଅନୁଭବ କରିପାରିଲେ କି ନାହିଁ, ସେ କଥା କେବଳ ଅନ୍ତର୍ଯାମୀଙ୍କ ବ୍ୟତୀତ ଆଉ କେହି ଜାଣି ପାରିଲେ ନାହିଁ ।

ବୃଦ୍ଧ ଉଠିପଡ଼ି ଠିଆହୋଇ କହିଲେ—ବେଶ୍, ତାହାହିଁ ହେବ । କହି ଧୀରେ ଧୀରେ ତଳକୁ ଓହ୍ଲାଇ ଗଲେ । ବେହେରା ଆସି ଆଲୁଅ ଦେଇଗଲା । ତଥାପି ଦୁଇଜଣ ସେହିପରି ସଙ୍କୁଚିତ ଓ କୁଣ୍ଠିତ ହୋଇ ଚୁପ କରି ବସି ରହିଲେ । ମାସିକ ପତ୍ରର ସେହି ଏତେବଡ଼ ବଳଶାଳୀ ଓ ଉତ୍ତେଜକ ଗଳ୍ପର ବାକି ଅଂଶ ଟିକକ ଶେଷ କରିବା ପାଇଁ ଶକ୍ତି କାହା ଭିତରେ ନଥିଲା ।

ବାହାରେ ଅନ୍ଧକାର ଗାଢ଼ ହୋଇ ଉଠିଲା ଏବଂ ତାହାକୁ ଭେଦ କରି ପରପାରର ଧୂସର ସୈକତଭୂମି ଏକରୁ ଅନ୍ୟପ୍ରାନ୍ତ ପର୍ଯ୍ୟନ୍ତ ଏଇ ଦୁଇଟି କ୍ଷୁବ୍ଧ, ଲଜ୍ଜିତ ନାରୀଙ୍କର ଆଖି ଆଗରେ ସ୍ୱପ୍ନ ଭଳି ଭାସିବାକୁ ଲାଗିଲା ।

ଏହି ଭାବରେ ହୁଏତ ଆଉ ମଧ୍ୟ କିଛୁକ୍ଷଣ ବିତିଯାଇ ପାରିଥାନ୍ତା କିନ୍ତୁ କେଜାଣି ମନରେ କ'ଣ ଭାବି ବୀଣାପାଣି ତାର ଚୌକିଟା ଅଚଳା ନିକଟକୁ ଟାଣି ଆଣିଲା ଏବଂ ନିଜର ଡାହାଣ ହାତଟା ସଖୀର କୋଳରେ ରଖି ଚିପି ଚିପି କହିଲା—ସେପାଖର ସେହି ଚୂଡ଼ାକୁ ଚାହିଁ ଚାହିଁ ମୋର କ'ଣ ମନେ ହେଉଥିଲା ଜାଣ ଅପା ? ମନେ ହେଉଥିଲା ଯେପରି ଠିକ୍ ତୁମେ । ଯେପରି ଏପରି ଅନ୍ଧକାର ଭିତରେ ଗୋଟିଏ······ଏ କ'ଣ ? ଏପରି ଚମକି ଉଠିଲ କାହିଁକି ଭଉଣୀ ?

ଅଚଳା କିଛୁକ୍ଷଣ ନୀରବ ରହି ଅସ୍ପଷ୍ଟ ସ୍ୱରରେ କହିଲା—ହଠାତ୍ କାହିଁକି ଶୀତ ଲାଗିଲା ଲୋ ଭଉଣୀ···

ବୀଣାପାଣି ଉଠିଯାଇ ଘର ଭିତରୁ ଖଣ୍ଡେ ଗରମ ଲୁଗା ଆଣି ଅଚଳାର ସର୍ବାଙ୍ଗରେ ଘୋଡ଼ାଇ ଦେଇ ନିଜ ଜାଗାରେ ବସିପଡ଼ିଲା । କହିଲା—ଗୋଟାଏ କଥା ତୁମକୁ ପଚାରିବା ପାଇଁ ଭାରି ଇଚ୍ଛା ହୁଏ ଭଉଣୀ । କିନ୍ତୁ କାହିଁକି ପଚାରିବାକୁ ପୁଣି ଲାଜ ଲାଗେ । ଯଦି ରାଗ ନ କରିବତ······

ଅଜଣା ଆଶଙ୍କାରେ ଅଚଳାର ହୃଦୟ ଆତଙ୍କିତ ହୋଇ ଉଠିଲା । କାଳେ ବେଶୀ କଥା କହିଲା ବେଳେ କଣ୍ଠ ଥରି ଉଠିବ ସେହି ଭୟରେ ସେ କେବଳ 'ନା' କହି ଚୁପ୍ ହୋଇଗଲା ।

ବୀଣାପାଣି ଆଦର କରି ଗୋଟିଏ ହାତ ତାର ପିଠିରେ ଥାପିଦେଇ କହିବାକୁ ଲାଗିଲା—ବର୍ତ୍ତମାନ ତୁମେ ଯେପରି ମୋର ଅପା ଆଉ ମୁଁ ତୁମର ସେହିପରି ଶ୍ରେଷ୍ଠ ଭଉଣୀ । କିନ୍ତୁ ସେଦିନ ଗାଡ଼ିରେ ମୁଁ ତୁମର କିଛୁ ନ ଥିଲି, ତଥାପି କାହିଁକି ନିଜର ପରିଚୟ ମୋ ଠାରୁ ତୁମେ ଲୁଚାଇ ରଖିବାକୁ ଚାହିଁଥିଲ ? ଯିଏ ସ୍ୱାମୀ ତାଙ୍କୁ କହିଲ—ସେ କେହି ନୁହଁନ୍ତି । କହିଲ କ'ଣନା ମୋର ଅସୁସ୍ଥ ସ୍ୱାମୀ ଅନ୍ୟ ଡବାରେ ଅଛନ୍ତି । ତାଙ୍କୁ ନେଇ ଜବଲପୁର ଯାଉଛି । କିନ୍ତୁ ମୋତେ କ'ଣ ଠକି ଦେଇ ପାରିଲ ? ମୁଁ କିନ୍ତୁ ଠିକ୍ ଜାଣି ପାରିଥିଲି ସେ ତୁମର କିଏ ହେବେ । ପୁଣି କହିଲ କିଏ ନା ତୁମେ ହେଉଛ ବ୍ରାହ୍ମ । କହି ସେ ଅଳ୍ପ ମୁଚକି ହସିଦେଇ ପୁଣି କହିଲା—କିନ୍ତୁ ବର୍ତ୍ତମାନ ତୁମ ସ୍ୱାମୀଙ୍କ କାନ୍ଧରେ ପଇତା ଗୋଛାକୁ ଦେଖିଲେ ବିଷ୍ଣୁପୁରର ବୋଷେଇଆ ବ୍ରାହ୍ମଣମାନେ ମଧ୍ୟ ଲାଜରେ ମୁହଁ ଲୁଚାଇ ବସିବେ । ଆଚ୍ଛା ଭଉଣୀ ସେଦିନ କାହିଁକି ମୋତେ ଏତେ ମିଛ କହିଥିଲ କହିଲ ?

ଅଚଳା ଜୋର କରି ଟିକିଏ ଶୁଖିଲା ହସ ହସିଦେଇ କହିଲା—ଯଦି ମୁଁ ନ କହେ······

ବୀଣାପାଣି କହିଲା—ତାହାହେଲେ ମୁଁ କହିବ । କିନ୍ତୁ ତୁମେ ଆଗ ସତ୍ୟ କର; ଯଦି ମୁଁ ଠିକ୍ କଥା କହି ପାରିବ ତୁମେ ମୋତେ କଣ ଦେବ ?

ଅଚଳା ଗ୍ରୀବା ଭିତରେ ସତେ ଯେପରି ରକ୍ତ ଚଳାଚଳ ବନ୍ଦ ହୋଇଯିବା ଭଳି ମନେ ହେଲା । ତା ମୁହଁ ଉପରେ ଯେଉଁ ମୃତ୍ୟୁ କାଳୀନ ପାଣ୍ଡୁରତା ଘନେଇ ଆସିଲା, ଗୃହର କ୍ଷୀଣ ଆଲୋକରେ ତାହା ବୀଣାପାଣିର ଆଖିରେ ପଡ଼ିଲା କି ନାହିଁ କହିବା ଯଦିଓ କଠିନ ତଥାପି ସେ ଅଳ୍ପ ହସି କହିଲା—ଆଚ୍ଛା ଦିଅ ବା ନଦିଅ ଯଦି ସତ୍ୟ କଥାଟି କହିଦିଏ ତେବେ ମୋତେ କଣ ଖାଇବାକୁ ଦେବ କୁହ ଅଚଳା ଅପା ?

ଅଚଳାର ନିଜ ନାମଟା ଯେପରି ଜ୍ୱଳନ୍ତ ଅଗ୍ନିଶିଖା ଭଳି ନିଜ କାନରେ ପ୍ରବେଶ କଲା ଏବଂ ପରକ୍ଷଣରେ ସେ ଏକପ୍ରକାର ଅର୍ଦ୍ଧଚେତନ ଅର୍ଦ୍ଧଅଚେତନ ଭଳି ଶକ୍ତ ହୋଇ ବସି ରହିଲା ।

ବୀଣାପାଣି କହିବାକୁ ଲାଗିଲା, ଆମ ଦୁଇଭଉଣୀଙ୍କର କିନ୍ତୁ ଦୋଷ ନାହିଁ ଭଉଣୀ । ଯେତେକ ଦୋଷ ହେଉଛି ସେ ସବୁ ଆମ ଦୁଇ ବାବୁଙ୍କର । ଜଣେ ଜ୍ୱର ଦାଉରେ ତୁମର ପ୍ରକୃତ ନାଁଟି କହିଦେଲେ ଆଉ ଅପର ଜଣକ ସେଥିରୁ ତୁମର ଅସଲ ପରିଚୟଟି ଖୋଜି ବାହାର କରି ଆଣିଲେ ।

ଅଚଳା ପ୍ରାଣପଣେ ନିଜକୁ ସଯତ କରି ପ୍ରଶ୍ନ କଲା—ସତ ପରିଚୟଟି କଣ ଶୁଣେ ?

ବୀଣାପାଣି କହିଲା—ସତ ହେଉ କି ମିଛ ହେଉ ତାଙ୍କର ଯେ ବୁଦ୍ଧି ଅଛି ତାହା ତୁମକୁ ମାନିବାକୁ ପଡ଼ିବ । ଦିନକର ଗୃହରେ ସିଏ ଆସି ହଠାତ୍ କହିଲେ —ତୁମ ଅଚଳା ଅପାଙ୍କ ଘଟଣା କଣ ଜାଣିଛ ଗୋ ? ସେ ଘରୁ ପଳାଇ ଆସିଛନ୍ତି । ମୁଁ ରାଗକରି କହିଲି ଯାଅ, ଷ୍ଟୁଲକି ଆଉ କରିବାକୁ ହେବ ନାହିଁ । ଏକଥା ଅପା କାନକୁ ମୋର ଗଲେ ସେ ଆଉ ବଞ୍ଚିଥିବା ପର୍ଯ୍ୟନ୍ତ ତୁମ ମୁହଁ ଚାହିଁବ ନାହିଁ ।

ଅଚଳା ଚୌକିର ଦୁଇ ହାତକୁ ଦୁଇ ମୁଠାରେ ଜୋର କରି ଧରି ଶକ୍ତ ହୋଇ ବସିବାକୁ ଚେଷ୍ଟା କଲା ।

ବୀଣାପାଣି କହିବାକୁ ଲାଗିଲା—ସେ କହିଲେ ସେ ମୋର ମୁହଁ ଚାହାଁନ୍ତୁ କି ନ ଚାହାଁନ୍ତୁ; ଏହା ଯେ ନିରାଟ ସତ କଥା ତାହା ମୁଁ ହଲପ କରି କହି ପାରିବି । ଯାଆ ନଣନ୍ଦଙ୍କ ସହିତ ଝଗଡ଼ା କରି ହେଉ କିମ୍ବା ଶାଶୁ ଶଶୁରଙ୍କ ସହିତ

ମନ ଅମେଲ ହେଉ ହେଉ ସ୍ୱାମୀ ସମ୍ଭବତ ସେ ବ୍ରମ୍ଭିକଣ ଘରୁ ଗ୍ଲଲ ଆସିଛନ୍ତି । ସୁରେଶ ବାବୁଙ୍କର ଭାବ ଭଙ୍ଗୀକୁ ଦେଖିଲେ ମନେ ହୁଏ ତୁମ ଅପା ତାଙ୍କୁ ଯଦି ସମୁଦ୍ରରେ ବୁଡ଼ିଯିବାକୁ କହିବେ ନା ସେ ଆଦୌ ପଛାଇବେ ନାହିଁ । ତାପରେ ଯେତେଦିନ ପର୍ଯ୍ୟନ୍ତ ବୁଢ଼ାବୁଢ଼ୀ କାନ୍ଦି କାନ୍ଦି ସାରା ପୃଥିବୀ ଖୋଜି ବୁଲି ତାଙ୍କର ପୁଅ ବୋହୂଙ୍କୁ ପୁଣି ହାତଧରି ଘରକୁ ଡାକି ନ ନେଇଛନ୍ତି ସେତେଦିନ ପର୍ଯ୍ୟନ୍ତ ଦୁହେଁ ଯାକ ଛଦ୍ମ ନାମରେ ଅଜ୍ଞାତ ସ୍ଥାନରେହିଁ ରହିବେ । ଏହା ଯଦି ଅସଲ କଥା ନୁହେଁ ତାହାଲେ ତୁମେ ମୋତେ……

ମୁଁ କହିଲି—ଆଚ୍ଛା ତାହାଯଦି ହେଲା, ଗାଡ଼ିରେ ମୋପରି ଗୋଟାଏ ଅପରିଚିତା ମୁର୍ଖ ଝିଅ ପିଲା ନିକଟରେ ମିଛ କହିବା ପାଇଁ ଅପାଙ୍କର ଏପରି କି ଗରଜ ପଡ଼ିଥିଲା ଯେ ? ସ୍ୱାମୀ ସେଥିକରେ ହସି ହସି ଜବାବ୍ ଦେଲେ, ତୁମର ଅପା ଯଦି ତୁମ ଭଳି ବୁଦ୍ଧିମତୀ ହୋଇ ପାରିଥାନ୍ତେ ତେବେ ତାଙ୍କର କୌଣସି ଗରଜ ନଥିଲା । କିନ୍ତୁ ସେ ସେପରି ଆଦୌ ନୁହଁନ୍ତି । ଯିମିତି ଶୁଣିଲେ ତୁମର ଘର ଡିହରିରେ ଏବଂ ତୁମେ ଦୁଇଦିନ ପରେ ଡିହରୀକୁ ଆସିବ, ସେତେବେଳେ ସେ ସଙ୍ଗେ ସଙ୍ଗେ ଅଚଳାରୁ ବଦଳି ସୁରମା ଆଉ ଡିହରୀ ବଦଳରେ ଜବଲପୁର ଯାତ୍ରୀ ଏବଂ ହିନ୍ଦୁ ବଦଳରେ ବ୍ରାହ୍ମ ମହିଳା ହୋଇ ଉଠିଲେ । ଏଥିକି ତୁମ ମୁଣ୍ଡରେ ତ୍ ଟିକିଲା ନାହିଁ ରାକ୍ଷସୀ, ଯେଉଁମାନେ ଟିକଟ କାଟି ଜବଲପୁରଯାତ୍ରୀ ହୋଇଥିଲେ ସେମାନେ ହଠାତ୍ ଗାଡ଼ି ବଦଳ କରି ଦିନକ ଭିତରେ ଏଠାକୁ ଫେରି ଆସିଲେ କାହିଁକି ? ଆଉ ପୀଡ଼ିତ ସ୍ୱାମୀକୁ ଧରି କୌଣସି ଅନ୍ୟ ବଙ୍ଗାଳୀ ଭଦ୍ରଲୋକ ଘରକୁ ନ ଯାଇ ଏହି ଅଳ୍ପ ଦୂରରେ ହିନ୍ଦୁସ୍ଥାନୀ ପଲ୍ଲୀରେ ଗୋଟାଏ ଭଙ୍ଗା ଚଟିଘରେ ଅବା ପହଞ୍ଚିବେ କାହିଁକି ? କହୁ କହୁ ଖାଣାପାଣି ଉଠିପଡ଼ି ଅଚଳା ବେକରେ ଓହଳି ପଡ଼ି ଗେଲେଇ ହୋଇ କାନ ପାଖରେ ଚୁପି ଚୁପି କରି କହି ଉଠିଲା କୁହନା ଅପା; କଣ ହୋଇଥିଲା ? ମୁଁ ତୁମ ଦେହ ଛୁଇଁ ନିୟମ କରି କହୁଛି କୌଣସି ଦିନ କାହା ଆଗରେ ଏକଥା କହିବି ନାହିଁ ।

ଖାଣାପାଣି ମୁହଁରୁ ସେମାନଙ୍କ ସମ୍ବନ୍ଧରେ ଏହି ସତ୍ୟ ଆବଷ୍ଠାରର ମିଥ୍ୟା ଇତିହାସ ଶୁଣି ଅଚଳାର ଦେହଟା ଯେପରି ଗୋଟାଏ ଅଚେତନ ପଦାର୍ଥ ପରି ସଖୀର ଆଲିଙ୍ଗନ ଭିତରେ ଢଳି ପଡ଼ିଲା । ଇହ ଜୀବନର ଚରମ ଲକ୍ଷ୍ୟ, ରୂପ ପରିଗ୍ରହ କରି ଏକପାଦ ଏକପାଦ ହୋଇ ଯେ କେତେଦୂର ଅଗ୍ରସର ହୋଇ ଆସିଲାଣି, ତାହା ସେ ଚାହିଁ ଦେଖୁଥିଲା, କିନ୍ତୁ ସେହି ଲକ୍ଷ୍ୟ ମୂର୍ତ୍ତି ଯେତେବେଳେ ଅତ୍ୟନ୍ତ ଅଚନ୍ତ୍ରମିସ୍ତ ରୂପେ ମୁହଁ ବୁଲାଇ ହଠାତ୍ ଅନ୍ୟ ଏକ ବାଟରେ ଗ୍ଲଲଗଲା, ତାକୁ ସ୍ପର୍ଶ ସୁଦ୍ଧା କରିଲା ନାହିଁ, ସେତେବେଳେ ଏହି ବିପୁଳ

ସୌଭାଗ୍ୟକୁ ବନ୍ଧନ କରିବା ଭଳି ଶକ୍ତି ଆଉ ତାହା ଭିତରେ ନଥିଲା । କେବଳ ଚକ୍ଷୁର ଅବଶ୍ରାନ୍ତ ଅଶ୍ରୁପ୍ରବାହ ବ୍ୟତୀତ ବହୁକ୍ଷଣ ପର୍ଯ୍ୟନ୍ତ ଜୀବନର କୌଣସି ଲକ୍ଷଣ ଆଉ ତାହା ମଧ୍ୟରେ ଅନୁଭୂତ ହେଉନାହିଁ ।

ଏହିପରି କିଛିକ୍ଷଣ ବିତିଗଲା । ବୀଣାପାଣି ଆପଣା ପଣତ କାନିରେ ଅଚଳା ଆଖିର ଲୁହ ବାରମ୍ବାର ପୋଛି ଦେଇ ସସ୍ନେହରେ କହିଲା—ସୁରମା ଅପା, ତୁମେ ବୟସରେ ମୋଠାରୁ ବଡ଼ ହେଲେ ସୁଦ୍ଧା ଶ୍ରେଷ୍ଠ ଭଉଣୀଙ୍କର କଥାମାନ । ଏଥର ଭଉଣୀ ଘରକୁ ଫେରିଯାଅ । ମୁଁ କହୁଛି ତୁମର ଏଯାତ୍ରା ଆଦୌ ଶୁଭ-କର ନୁହେଁ । ଅଭିମାନ କରି ଗୁରୁଜନମାନଙ୍କୁ ଦୁଃଖ ଦିଅ ନାହିଁ ଏବଂ ଆଉ ସେମାନଙ୍କୁ ଚକ୍ରାରେ ପକାଅ ନାହିଁ । ମୁଣ୍ଡ ତଳକୁ କରି ଶାଶୁ ଘରକୁ ଫେରିଗଲେ ଲଜ୍ଜ୍ୟା କିମ୍ବା ଅପମାନ ପାଇବାର କିଛି ନାହିଁ ଭଉଣୀ ।

କ୍ଷଣକାଳ ନୀରବ ରହିବା ପରେ ସେ ପୁଣି କହିଲା—ଚୁପ କରି ବସି ରହିଲ ଯେ ଭଉଣୀ ? କଣ ଫେରିଯିବ ନାହିଁ ? ମା, ବାପଙ୍କ ଉପରେ ରାଗକରି ସୁରେଶବାବୁ ମଧ୍ୟ କୌଣସି ଭଲ କାମ କରି ନାହାନ୍ତି । ତୁମ ମୁହଁରୁ ବୋଧହୁଏ ଫେରିଯିବା ବିଷୟ ଶୁଣିଲେ ସେ ନିଶ୍ଚୟ ଖୁସିହେବେ, ଏକଥା ମୁଁ ତୁମକୁ ନିଶ୍ଚୟ କରି କହୁଛି ।

ଅଚଳା ଆଖି ବୁଜି ଏଥର ସିଧା ହୋଇ ବସିଲା । ଚାହିଁ ଦେଖିଲା, ବୀଣା-ପାଣି ସେହିପରି ଆଗ୍ରହ ଆଖିରେ ତାର ମୁହଁକୁ ଚାହିଁ ରହିଛି । ପ୍ରଥମେ ସେ ଉତ୍ତର ଦେବାକୁ ଲଜ୍ଜ୍ୟା ବୋଧକଲା, କିନ୍ତୁ କେବଳ ନୀରବ ରହି ପାରିଲେ ଯେ ଏଭଳି ଝିଅଠାରୁ ମୁକ୍ତି ମିଳିପାରିବ ନାହିଁ ବୋଲି ଯେତେବେଳେ ସେ ଜାଣି ପାରିଲା, ସେତେବେଳେ ସମସ୍ତ ସଙ୍କୋଚକୁ ଜୋର କରି ପରିତ୍ୟାଗ କରି ଧୀରେ ଧୀରେ କହିଲା—ଆଉ ଘରକୁ ଫେରିଯିବା ପାଇଁ ବାଟ ନାହିଁ ବୀଣା ।

ବୀଣାପାଣି ବିଶ୍ୱାସ କଲା ନାହିଁ । କହିଲା—ବାଟ ନାହିଁ କଣ ? ତୁମକୁ ବହୁତ ଦିନ ଧରି ଜାଣି ନାହିଁ ସତ, କିନ୍ତୁ ଯେତିକି ଜାଣିଛି ସେଥିରେ ପୃଥିବୀ ଆଗରେ ଠିଆହୋଇ ଶପଥ କରି କହି ପାରିବ ଯେ ତୁମେ କେତେବେଳେ ଏପରି କିଛି କାର୍ଯ୍ୟ କରି ପାରନାହିଁ, ଯାହା ଫଳରେ କେହି ତୁମର ଫେରିବା ବାଟକୁ କୌଣସି ଦିଗରୁ ବନ୍ଦ କରିପାରିବ । ଆଚ୍ଛା ତୁମର ଶାଶୁ, ଶଶୁରଙ୍କ ଠିକଣା ମୋତେ ଦେଲ । ମୁଁ ତ ପଅରଦିନ ସକାଳ ଗାଡ଼ିରେ ଘରକୁ ଯାଉଛି, ବାବାଙ୍କୁ ସଙ୍ଗରେ ଧରି ମୁଁ ନିଜେ ଯାଇ ତୁମ ଘରେ ପହଁଞ୍ଚିବ । ଦେଖିବ ବୁଢ଼ା ବୁଢ଼ୀ ମୋତେ କ'ଣ ଜବାବ୍ ଦେଉଛନ୍ତି ? ତୁମର ଯିଏ ଶାଶୁ ଶଶୁର, ମୋର ମଧ୍ୟ ସେମାନେ ସେଇ ।

ସେମାନଙ୍କ ଆଗରେ ଠିଆ ହେବା ପାଇଁ ମୋ ମନରେ କୌଣସି ଲଜ୍ଜ୍ୟା ନାହିଁ ।

ଅଚଳା ଚକିତ ହୋଇ କହିଲା—ପଅରିଦିନ ତୁମେ ଶାଶୁ ଘରକୁ ଯିବ ? କାହିଁ ମୁଁ ତ ଆଗରୁ ଶୁଣି ନାହିଁ ? ଏଠାରେ ତେବେ କେଉଁ କେଉଁମାନେ ରହିବେ ?

ବୀଣାପାଣି କହିଲା—କେହି ରହିବେ ନାହିଁ । କେବଳ ଚାକର ବାକର, ଦରୁଆନ ଘର ଜଗି ରହିବେ । ମୋର ଦେଢେଇ ଶାଶୁ ଅନେକ ଦିନ ହେବ ଶଯ୍ୟା-ଶାୟୀ । ତାଙ୍କର ବଞ୍ଚିବାର ଆଉ ଆଶା ନାହିଁ । ସମସ୍ତଙ୍କୁ ଥରକ ପାଇଁ ଦେଖିବାକୁ ସେ ଇଚ୍ଛା କରିଛନ୍ତି ।

ଅଚଳା ପ୍ରଶ୍ନ କଲା—ତୁମ ଶଶୁର ଘର କେଉଁଠି ?

ବୀଣାପାଣି କହିଲା—କଲିକତାର ପଟଲ ଡ଼ଙ୍ଗାରେ ।

ପଟଲ ଡ଼ଙ୍ଗା ନାମ ଶୁଣିବାମାତ୍ରେ ଅଚଳାର ମୁହଁ ଶୁଖିଗଲା । କ୍ଷଣକାଳ ଚୁପ ରହିବା ପରେ ଆସ୍ତେ ଆସ୍ତେ କହିଲା—ବୀଣା ତାହାହେଲେ ଆମକୁ ତୁମ ଘର ଛାଡ଼ି କାଲି ଚାଲିଯିବାକୁ ହେବ । ଆଉ ତ ଏଠାରେ ରହିଲେ ଚଳିବ ନାହିଁ ।

ବୀଣାପାଣି ହସି ଉଠିଲା । କହିଲା—ସେଥିପାଇଁ ବୋଧହୁଏ ତୁମ ଶାଶୁ ଘରକୁ ଫେରିଯିବା ପାଇଁ ମୁଁ ଏତେ ଆଲୋଚନା କରୁଥିଲି ? ଏତେ ସମସ୍ତ ପରେ ଜାଣି ପାରିଲି ଯେ ତୁମେ ମୋ କଥାରୁ ଏଇ ଅର୍ଥ ବୁଝି ପାରିଲ । ନା ଅପା ମୋର ଦୋଷ ହୋଇଛି । ତୁମକୁ କୁଆଡେ ଯିବା ପାଇଁ ଆଉ କେବେ କହିବି ନାହିଁ । ଯେତେଦିନ ଇଚ୍ଛା ତୁମେ ଏହି କୁଡ଼ିଆ ଘରେ ରହିଲେ ଆମର କାହାର କିଛି ଆପତ୍ତି ନାହିଁ ।

ଅଚଳା କିନ୍ତୁ ଏହି ସଦୟ ନିମନ୍ତ୍ରଣ ପାଇଁ କୌଣସି ଉତ୍ତର ଦେଇ ପାରିଲା ନାହିଁ । ମୁହୂର୍ତ୍ତ କାଳ ନୀରବ ରହିବା ପରେ ବିବର୍ଣ୍ଣ ମୁହଁରେ ଉତ୍ତର ଦେଲା—ତୁମମାନଙ୍କର ଯିବା କଣ ସତରେ ସ୍ଥିର ହୋଇ ସାରିଛି ?

ବୀଣାପାଣି କହିଲା ସ୍ଥିର ଆଉ କାହାକୁ କହନ୍ତି ? ଆମର ଗାଡ଼ି ପର୍ଯ୍ୟନ୍ତ ସୁଦ୍ଧା ରିଜର୍ଭ କରା ସରିଲଣି, ବାବାଙ୍କ ଘରେ ଯଦି ଥରକ ପାଇଁ ଉର୍ଦ୍ଧ୍ୱ ମାରିବ, ତେବେ ଦେଖି ପାରିବ, ବୋଧହୁଏ ପନ୍ଦର ଅଣା ଜିନିଷ ବନ୍ଧାବନ୍ଧି ସହି ଠିକ ଠାକ ହୋଇ ରହିଲଣି ।

ଦାସୀ ଆସି ଦ୍ୱାର ନିକଟରେ ଠିଆ ହୋଇ କହିଲା—ବୋହୂମାଆ, ତୁମକୁ ମାଆ କାହିଁକି ଶେଷ ଘରେ ଥାଇ ଡ଼କାଇଛନ୍ତି ।

—ଯାଉଛି କହି ସେ ଅଳ୍ପ ଟିକିଏ ହସିଦେଇ ହଠାତ୍ ଅଚଳାର ବେକରେ ଦୁଇ ବାହୁକୁ ଗୁଡ଼ାଇ କାନରେ ପୁଣି ଚୁପ ଚୁପ କରି କହିଲା—ଏତେଦିନ ଧରି ଲୋକ ଗହଳି ଭିତରେ ତୁମର ଦିନ ବଡ଼ କଷ୍ଟରେ କଟୁଥିଲା । ଏଥରକ ଖାଲି ଘର । କେହି କେଉଁଠାରେ ରହିବେ ନାହିଁ । ଅଡୁଆ ଥିଲି ମୁଁ । ମୁଁ ମଧ୍ୟ ଚାଲି ଯାଉଛି । ଏଥର ଭଉଣୀ ଖୋଲି ମେଲି—ମନଇଚ୍ଛା ଯାହା କରିପାରିବ··· କଣ ମୋ କଥା ବୁଝି ପାରିଲ ତ ଅପା ? କହି ଅଚଳାର ଓଠକୁ ଅଙ୍ଗୁଠିରେ ହଲାଇ ଦେଇ ବୀଣାପାଣି ତର ତର ହୋଇ ଦାସୀ ପଛେ ପଛେ ଚାଲିଗଲା ।

ଟିକିଏ ଚଞ୍ଚଳ ଆନନ୍ଦ, କେବଳ ସାମାନ୍ୟ ଦକ୍ଷିଣା ପବନ ପରି ଏଇ ସୌଭାଗ୍ୟବତୀ ତରୁଣୀଟିର ଲଘୁ ପଦ ପାତରେ ସିନା କ୍ଷଣକେ ମିଳାଇ ଗଲା; କିନ୍ତୁ ସେ ଗଲାବେଳେ ଯେଉଁ ଶେଷ ଦୁଇପଦ କଥା କାନେ କାନେ କହିଗଲା ତାହା ଅଚଳାକୁ ସେହିଠାରେ ପାଷାଣ ମୂର୍ତ୍ତିକରି ବସାଇ ଦେଲା । ଆଜିର ରାତି ଆଉ କାଲିକାର ଦିନଟି ମାତ୍ର ସମସ୍ତ । ତାହାପରେ ଆଉ କୌଣସି ବାଧା ନାହିଁ କି ବିଘ୍ନ ନାହିଁ । ନିର୍ଜନ ପୁରୀ ଭିତରେ ପାଖରେ ଏବଂ ଦୂରରେ ତାର ଯେତେଦୂର ପର୍ଯ୍ୟନ୍ତ ଦୃଷ୍ଟି ପାଏ ଭବିଷ୍ୟତ ପାଇଁ ଆଖି ମେଲି ଅଚଳା ଚାହିଁ ଦେଖିଲା, କେବଳ ସେ ଏବଂ ସୁରେଶ ବ୍ୟତୀତ ଆଉ କେହି ତା ଆଖିରେ ଦେଖାଗଲେ ନାହିଁ ।

ଏହି ଜନଶୂନ୍ୟ ପୁରୀଭିତରେ କେବଳ ସୁରେଶକୁ ନେଇ ଜୀବନଯାପନ କରିବାକୁ ହେବ ଏବଂ ସେହି ଦୁର୍ଦ୍ଦିନ ପ୍ରତି ମୁହୂର୍ତ୍ତରେ ନିକଟ ହୋଇ ଆସୁଅଛି । ବାଧାନାହିଁ, ବ୍ୟବଧାନ ନାହିଁ ଲଜ୍ଜ୍ୟା ନାହିଁ, ଏପରିକ ଆଜି ନୁହେଁ କାଲି ବୋଲି ଉପଲକ୍ଷ ସୃଷ୍ଟି କରିବା ପର୍ଯ୍ୟନ୍ତ ସୁଯୋଗ ମଧ୍ୟ ମିଳିବ ନାହିଁ ।

ବୀଣାପାଣି କହିଥିଲି—ଶଶୁର ଘର ହେଉଛି ନିଜ ଘର । ସେଠାକୁ ମୁଣ୍ଡ ନୁଆଇଁ ଯିବାରେ ଲଜ୍ଜ୍ୟା କରିବାର କୌଣସି କାରଣ ନାହିଁ ।

ହାୟ ! ତାର କିଏ ଅଛନ୍ତି ଆଉ ନାହାନ୍ତି ସେ ଜମା ଖରଚର ହିସାବ କେବଳ ଅନ୍ତର୍ଯ୍ୟାମୀ ଭିନ୍ନ ଆଉ କିଏ ରଖି ପାରିଛନ୍ତି ? ତଥାପି ଆଜି ଆପଣାର ଲୋକ ଭାବରେ ସ୍ୱାମୀ ଅଛନ୍ତି ଏବଂ ଆପଣାର ହୋଇ ସେହି ଭିଟାମାଟିଟା ଏପର୍ଯ୍ୟନ୍ତ ସୁଦ୍ଧା ପୃଥିବୀ କୋଳରୁ ଲୋପ ପାଇଯାଇ ନାହିଁ । ଆଜି ଇଚ୍ଛା କଲେ ସେ ସେଠାରେ ମଧ୍ୟ ଠିଆହୋଇ ପାରିବ ।

ଆବଦ୍ଧ ପଶୁ ଆଖିରେ ହୁଏତ ଯେତେକ୍ଷଣ ପାଇଁ ବାହାରର ଫାଙ୍କ ଟିକକ ସମ୍ପୂର୍ଣ୍ଣ ଭାବରେ ଆବୃତ ହୋଇଥାଏ ସେତେକ୍ଷଣ ପର୍ଯ୍ୟନ୍ତ ସେ ଯେପରି ଗୋଟିଏ ସ୍ଥାନରେ ମୁଣ୍ଡ ପିଟିବାକୁ ଲାଗିଥାଏ ଠିକ୍ ସେହିପରି ତାର ଅବାଧ ମନରେ ପ୍ରଚଣ୍ଡ କାମନା ତାର ବକ୍ଷ ଭିତରେ ହାହାକାର କରି ବାହାରକୁ ଯିବାପାଇଁ ବାଟ ଖୋଜିବାକୁ ଲାଗିଥିଲା । ପାଖ ଘରେ ସୁରେଶ ନିରୁଦ୍‌ବେଗ ଭାବରେ ନିଦ୍ରିତ । ମଝି ଦରଜାଟା ସାମାନ୍ୟ ଖୋଲା, ଏବଂ ଏପାଖ ବରଣ୍ଡାରେ ହିନ୍ଦୁସ୍ଥାନୀ ଦାସୀଟା ମୁନ୍ଦୁରା ଉପରେ ଆପାଦ ମସ୍ତକ ଆବୃତ ହୋଇ ନିଦ୍ରିତା । ଘର ଭିତରେ କେହି ଯେ ଶୋଇ ନାହାନ୍ତି, ଏପରି ଆଭାସ ଆଦୌ ମିଳୁନାହିଁ । କେବଳ ମାତ୍ର ସେ ଏକାକୀ ଏହି ତାତିଲା ରଡ଼ନିଆଁ ଭଳି ଶେଯ ଉପରେ ଶୋଇବାକୁ ଚେଷ୍ଟାକରି ସୁଦ୍ଧା ଶୋଇ ପାରୁନାହିଁ । ଅନେକଦିନ ଧରି ତାର ପାଖରେ ବୀଣାପାଣି ଶୋଇ ଆସୁଥିଲା । କିନ୍ତୁ ଆଜି ତାର ସ୍ୱାମୀ ଆସି ପହଞ୍ଚିଛନ୍ତି ତେଣୁ ସେ ତାର ନିଜ ଘରେ ଶୋଇବାକୁ ଚାଲିଯାଉଛି । କାଲେ ଏହି ଅନ୍ଧାର ଖିଅ ଧରି ନିଜର ବିକ୍ଷିପ୍ତ ପୀଡ଼ିତ ଚକ୍ଷୁ ସେମାନଙ୍କର ଅବରୁଦ୍ଧ କକ୍ଷରେ ସୁପ୍ତ ପଲକ ପ୍ରତି ଦୃଷ୍ଟିପାତ କରି ହିଂସାରେ, ଅପମାନରେ, ଲଜ୍ଜାର ଅଣୁ ପରମାଣୁରେ ବିଦୀର୍ଣ୍ଣ ହୋଇପାରେ, ଏହି ଭୟରେ ସେ ଯେପରି ପ୍ରଚଣ୍ଡ ଶକ୍ତି ସଂଗ୍ରହ କରି ନିଜର ଆଖିକୁ ସେ ଦିଗରୁ ଫେରାଇ ଆଣିଲା । କିନ୍ତୁ ସଙ୍ଗେ ସଙ୍ଗେ ତାହାର ଦେହଟା ବିଜୁଳି ସକ୍ ଲାଗିଲା ଭଳି ଥର ଥର ହୋଇ କମ୍ପିବାକୁ ଲାଗିଲା ।

ପାଖ କେଉଁ ଘରେ କାନ୍ଥ ଘଣ୍ଟାରେ ଦୁଇଟା ବାଜିଲା । ନିଜ ଦେହରୁ ଚଦରକୁ ଫିଙ୍ଗିଦେଇ ସେ ଅନୁଭବ କରିବାକୁ ଲାଗିଲା ଯେପରି ଏହି ଶୀତ ରାତିରେ ମଧ୍ୟ ତାର କପାଳରେ ବିନ୍ଦୁ ବିନ୍ଦୁ ଝାଳ ଲାଗିରହିଛି । ମୁଣ୍ଡ ପାଖର ଝରକାଟା ଖୋଲିଦେଇ ସେ ଦେଖିବାକୁ ପାଇଲା କୃଷ୍ଣପକ୍ଷର ଅଷ୍ଟମୀ ଚାନ୍ଦଟା ଠିକ୍ ଆଗରେ ଦେଖାଯାଉଛି ଏବଂ ତାହାର ସ୍ନିଗ୍ଧ ମୃଦୁ କିରଣରେ ଶୋଣ ନଦୀର ନୀଳ ଜଳ ବହୁଦୂର ପର୍ଯ୍ୟନ୍ତ ଉଦ୍‌ଭାସିତ ହୋଇ ଉଠିଛି । ଗଭୀର ରାତ୍ରିର ଥଣ୍ଡା ପବନ ତାହାର ତପ୍ତ ଲଲାଟ ଉପରେ ସ୍ନେହରେ ହାତ ବୁଲାଇ ଦେଲା

ଏବଂ ସେହିଠାରେ ସେହି ଝରକା ନିକଟରେ ସେ ତାର ଅଦୃଷ୍ଟର ଶେଷ ମୀମାଂସା କରିବା ପାଇଁ ବସି ପଡ଼ିଲା ।

ଏହି କଥାଟା ଅଚଳା ନିଶ୍ଚୟ ବୁଝିପାରିଥିଲା ଯେ ତାର ଏହି ହତଭାଗ୍ୟ ଜୀବନର ଯାହା କିଛି ସତ୍ୟ, ସମସ୍ତଟା ହିଁ ଲୋକଙ୍କ ଆଗରେ କେବଳ ଗୋଟାଏ ଅଦ୍ଭୁତ ଉପନ୍ୟାସ ଭଳି ଶୁଣାଯିବ, ଏବଂ ଯେଉଁଦିନଠାରୁ ଏହି କାହାଣୀର ପ୍ରଥମ ସୂତ୍ରପାତ ହୋଇଥିଲା, ସେହିଦିନଠାରୁ ଯେତେ ମିଥ୍ୟା, ଏ ଜୀବନରେ ସତ୍ୟର ମୁଖା ପିନ୍ଧି ଦେଖାଦେଇଯାଇଛି, ସେସବୁକୁ ଗୋଟି ଗୋଟି କରି ମନେକରି କ୍ରୋଧ, କ୍ଷୋଭ, ଅଭିମାନରେ ତାର ଆଖିରୁ ଲୁହ, ଝରଣା ଭଳି ଝରି ଚାଲିଲା ଏବଂ ଯେଉଁ ଭାଗ୍ୟ ବିଧାତା ତାର ଯୌବନର ପ୍ରଥମ ଆନନ୍ଦ ଟିକକୁ ବୃଥା କରିଦେଇ ଏପରି ବିକୃତ ଏବଂ ଉପହାସର ବସ୍ତୁ କରି ଜଗତ ସମ୍ମୁଖରେ ଉଦ୍‌ଘାଟିତ କରିବାକୁ ଲେଶମାତ୍ର କୁଣ୍ଠାବୋଧ କଲେନାହିଁ, ସେହି ନିର୍ମମ ନିଷ୍ଠୁରଙ୍କୁ ସଦା ବାଲ୍ୟକାଳରୁ ଭଗବାନ ବୋଲି ଭାବିବାକୁ ଶିକ୍ଷା ପାଇଥାଏ ତ ସେ ଶିକ୍ଷା ତାର ସମ୍ପୂର୍ଣ୍ଣ ରୂପେ ବ୍ୟର୍ଥ, ଏବଂ ନିରର୍ଥକ ହୋଇ ଯାଇଛି । ସେ ଆଖିର ଲୁହକୁ ପଣତ କାନିରେ ପୋଛି ପୋଛି ବାରମ୍ବାର କହିବାକୁ ଲାଗିଲା – ହେ ଈଶ୍ୱର ! ତୁମର ଏତେବଡ଼ ବିଶ୍ୱବ୍ରହ୍ମାଣ୍ଡରେ ଅଭାଗିନୀଟାର ଜୀବନ ବ୍ୟତୀତ କୌତୁକ କରି ଆମୋଦ ଲାଭ କରିବାକୁ କ'ଣ ଆଉ କିଛି ହିଁ ନଥିଲା !

ଅଚଳା ମନେ ମନେ ଭାବିଲା—କେଉଁଠି ଥିଲା ସୁରେଶ ଏବଂ କେଉଁଠି ଥିଲା ସେ । ବ୍ରାହ୍ମ ପରିବାରର ଛାଇ ମାଡ଼ିବା ପାଇଁ ଯାହାର ଘୃଣା ଓ ବିଦ୍ୱେଷର ସୀମା ନଥିଲା, ଭାଗ୍ୟର ପରିହାସ ହେତୁ ଆଜି ସେହି ଲୋକର ଆସକ୍ତିର ଆଉ ଅନ୍ତ ରହିଲା ନାହିଁ, ଯାହାକୁ ସେ ଆଦୌ ଭଲପାଏ ନାହିଁ, ସେହି ହିଁ ବର୍ତ୍ତମାନ ତାର ପ୍ରାଣରୁ ଅଧିକ, ଏହି ମିଥ୍ୟା କଥାଟା କ'ଣ ସମସ୍ତେ ଜାଣି ପାରିଲେ ? ଆଉ ଯାହା ସତ୍ୟ ସେ କ'ଣ କେଉଁଠାରେ ଏବଂ କାହାଠାରେ ଆଶ୍ରୟ ପାଇପାରିଲା ନାହିଁ ? ଆଉ ସେହି ମିଥ୍ୟାଟା କ'ଣ ତାର ନିଜ ମୁହଁରେ ପ୍ରଚାରିତ ହେବାର ଏତେ ପ୍ରୟୋଜନ ଥିଲା ? ଅଦୃଷ୍ଟର ଏତେବଡ଼ ବିଡ଼ମ୍ବନା, କେବେ କ'ଣ ଆଉ କାହା ଭାଗ୍ୟରେ ଘଟିଛି ? ସ୍ୱାମୀଙ୍କୁ ସେ ଅନେକ ଦୁଃଖରେ ପାଇଥିଲା, କିନ୍ତୁ ତାର ଭାଗ୍ୟକୁ ସେ ସହିଲେ ନାହିଁ । ତାର ଦୁର୍ଦ୍ଦଶାର ବୋଝ ବହି ହଠାତ୍ ଦିନେ ସୁରେଶ ଯାଇ ଅଭିଶାପ ଭଳି ସେମାନଙ୍କର ଗାଆଁରେ ପହଞ୍ଚିଲା । ତାର ସୁଖର ନୀଡ଼ ପୋଡ଼ି ଛାରଖାର ହୋଇଯିବା ସଙ୍ଗେ ସଙ୍ଗେ ସେ

ତାର ଭାଗ୍ୟଟା ପୋଡ଼ି ଭସ୍ମସାତ୍ ହୋଇ ଯାଇଥିଲା ଏକଥା ବୁଝିବା ପାଇଁ ତାର ଯେତେବେଳେ ବାକି ରହିଲା ନାହିଁ, ସେତେବେଳେ ପୁଣି ଆଉ କାହିଁକି ତାର ପୀଡ଼ିତ ସ୍ୱାମୀଙ୍କୁ ଆଣି ତାର କୋଳରେ ଦେଇଦେଲେ ? ଯାହାଙ୍କୁ ସେ ଥରେ ହରାଇ ବସିଥିଲା; ଏବଂ ସେବା କରିବା ଦ୍ୱାରା ପୁଣି ଥରେ ତାଙ୍କୁ ସମ୍ପୂର୍ଣ୍ଣ ରୂପେ ଫେରାଇ ଦେବା ଯଦି ବିଧାତାଙ୍କର ସଙ୍କଳ୍ପ ଥିଲା ତେବେ ଆଜି କାହିଁକି ତାର ଦୁଃଖ, ଦୁର୍ଦ୍ଦଶା, ଲାଞ୍ଛନା ଆଉ ଅପମାନର କୂଳ କିନାରା ନାହିଁ ?

ଅଚଳା ଦୁଇ ହାତ ଯୋଡ଼ି ସ୍ତବ୍ଧ ସ୍ୱରରେ କହିବାକୁ ଲାଗିଲା, ହେ ଜଗଦୀଶ୍ୱର, ରୋଗମୁକ୍ତ ସ୍ୱାମୀଙ୍କର ସ୍ନେହାଶୀର୍ବାଦ ହେତୁ ମୋର ସକଳ ଅପରାଧର ପ୍ରାୟଶ୍ଚିତ ହୋଇ ସାରିଥିଲା ବୋଲି ଯଦି ମନେ ବିଶ୍ୱାସ ଜନ୍ମାଇ ପାରିଥିଲ, ତେବେ ଏତେ ବଡ଼ ଦୁର୍ଗତି ଭିତରକୁ ପୁଣି ଠେଲି ଦେଲ କାହିଁକି ? ମୁଁ ସଙ୍କୀର୍ଣ୍ଣତାକୁ ଯେହେତୁ ଖାତିର କରେ ନାହିଁ ଏବଂ ଏତେ କାଣ୍ଡ ପରେ ପୁଣି ସୁରେଶକୁ ସଙ୍ଗରେ ଆସିବା ପାଇଁ ନିମନ୍ତ୍ରଣ ଜଣାଇ ଥିଲି; ସେଥିପାଇଁ ବୋଧହୁଏ ଏହି ଅପରାଧ କ୍ଷାଳନ ହୋଇ ପାରିବ ନାହିଁ ଏବଂ କଳଙ୍କର ଦାଗ ଆଉ ଲିଭି ପାରିବ ନାହିଁ, କିନ୍ତୁ ଅନ୍ତର୍ଯ୍ୟାମୀ, ତୁମେ କ'ଣ ମୋ ଭାଗ୍ୟକୁ ମଧ୍ୟ ଭୁଲ ବୁଝି ବସିଲ ? ଏହି ଗୃହ ଭିତରେ ଏତେଦିନ ଧରି ଯେ ଜ୍ୱଳନ ରହି ଆସିଛୁ ତାହା କ'ଣ ତୁମର ଦୃଷ୍ଟିରେ ଥରକ ପାଇଁ ପୁଣି ପଡ଼ି ପାରିଲା ନାହିଁ ?

ବାବାଙ୍କର ଚିନ୍ତା, ସ୍ୱାମୀଙ୍କ ଚିନ୍ତା ମନରୁ ସେ ଯେପରି ପ୍ରାଣପଣେ ଜୋର କରି ଦୁଇ ହାତରେ ଠେଲି ଆଡ଼େଇ ଦେଉଥିଲା ସେହିପରି ଆଜି ମଧ୍ୟ ସେ ସବୁ ଭାବନାକୁ ପାଖ ପୂରାଇ ଦେଲାନାହିଁ । କିନ୍ତୁ ମୃଣାଳର କଥା ଗୁଡ଼ାକ ତାର ମନେ ପଡ଼ିଲା । ଆଉ ମନେ ପଡ଼ିଲେ ପିଉସୀ ମାଆ । ଆସିବା ବେଳେ ସତୀ ସାଧ୍ୱୀ ହୁଅ ବୋଲି ସେ ଯେତେ ଆଶୀର୍ବାଦ କରିଥିଲେ, ସେ ସବୁ ମଧ୍ୟ ମନେ ପଡ଼ିଲା । ତାରି ସମ୍ବନ୍ଧରେ ଆଜି ସେମାନଙ୍କର ଯେଉଁ ମନୋଭାବ କଳ୍ପନା କରିବାକୁ ଯାଇ ହଠାତ୍ ମର୍ମାନ୍ତିକ ଆଘାତରେ କିଛିକ୍ଷଣ ପାଇଁ ସମସ୍ତ ବୋଧଶକ୍ତି ଯେପରି ତାର ଆଚ୍ଛନ୍ନ ହୋଇଗଲା । ଦେହ ମନର ସେହି ଅଭିଭୂତ ଅବସ୍ଥାରେ ଝରକା ଉପରେ ମଥା ରଖିଥିଲାବେଳେ ବୋଧହୁଏ ତାର ଅଜାଣତରେ ଆଖିରୁ ଲୁହ ଅବାରିତ ଭାବରେ ଝରିବାକୁ ଲାଗିଥିଲା । ଏପରି ସମୟରେ ଧୀର ପାଦଶବ୍ଦ ଶୁଣି ସେ ଚମକି ଫେରିପଡ଼ି ଦେଖିଲା, ଖାଲି ପାଦରେ, ଖାଲି ଦେହରେ ସୁରେଶ ଆସି ତାରି ନିକଟରେ ଠିଆ ହୋଇ ରହିଛି । କ୍ଷଣକର ଉତ୍ତେଜନା ହେତୁ ସେ ହୁଏତ କ'ଣ କହିବାକୁ ଯାଉଥିଲା । କିନ୍ତୁ ତାର କଣ୍ଠ ଯେପରି କିଏ ଚିପିଧରି ବସିଲା । ବୋଧ-ହୁଏ କଥା କହିବାକୁ ତାର ପ୍ରବୃତ୍ତି ହେଲାନାହିଁ । ସେଥିପାଇଁ ପରକ୍ଷଣରେ ମୁହଁ

ତୁଲାଇ ନେଇ ସେହିପରି ଝରକା ଉପରେ ମୁଣ୍ଡ ରଖିଲା । କିନ୍ତୁ ଯେଉଁ ଅଶ୍ରୁ ଏତେକ୍ଷଣ ଧରି ତାହା ଆଖିରୁ ଟପ୍ ଟପ୍ ହୋଇ ପଡୁଥିଲା ସେ ଯେପରି ହଠାତ୍ କୂଳ ଲଙ୍ଘି ଉନ୍ମତ୍ତ ଧାରାରେ ଛୁଟି ଚାଲିଲା ।

କେଉଁଠାରେ କିଛି ଶବ୍ଦ ନାହିଁ । ରାତ୍ରିର ଗମ୍ଭୀର ନୀରବତା ଘରର ଭିତରେ ଓ ବାହାରେ ବିରାଜୁଥିଲା । ପଛରେ ସୁରେଶ ପାଷାଣ ମୂର୍ତ୍ତି ପରି ଠିଆ ହୋଇଥିଲା । ହଠାତ୍ ତାର ଦେହଟା ବତାସରେ ବାଉଁଶ ପତ୍ର ଭଳି ଥରିବାକୁ ଲାଗିଲା ଏବଂ ଆଖିର ପଲକ ମାତ୍ରେ ସେ ଅଚଳାର ମୁଣ୍ଡଟା ଦୁଇ ହାତରେ ଟାଣି ନେଇ ନିଜ ଛାତିରେ ଜୋର କରି ଚାପି ଧରିଲା ।

ଅଚଳା ଆପଣାକୁ ମୁକ୍ତ କରି ନେଇ ଆଖିର ଲୁହ ପୋଛିଲା । କିନ୍ତୁ ଅତ୍ୟନ୍ତ ଆଶ୍ଚର୍ଯ୍ୟର କଥା ଏଇ ଯେ, ଯେଉଁ ଲୋକଟା ତାର ଏତେ ବଡ଼ ଦୁଃଖର ମୂଳ କାରଣ, ତାର ଆଜି ଏପରି ବ୍ୟବହାରରେ ଅଚଳା ମନରେ ଘୃଣା ଆସିଲା ନାହିଁ ବରଞ୍ଚ ସେ ମୃଦୁ କଣ୍ଠରେ ପ୍ରଶ୍ନ କଲା—ତୁମେ ଏ ଘରକୁ ଆସିଛ କାହିଁକି ?

ନିଜର କୋହକୁ ବନ୍ଦ କରିବାକୁ ଚେଷ୍ଟା କରୁଥିବାରୁ ସୁରେଶ କିଛି କହି ପାରିଲା ନାହିଁ ।

ଅଚଳା ଧୀରେ ଧୀରେ ଝରକାଟା ବନ୍ଦ କରିଦେଇ କହିଲା—ଶୀତ ହେଉ ତୁମର ହାତ ଥରୁଛି । ଯାଅ, ଖାଲି ଦେହରେ ଆଉ ଠିଆ ହୋଇ ରହନାହିଁ । ନିଜ ଶୋଇବା ଘରକୁ ଯାଇ ଥିର ହୋଇ ଶୋଇପଡ଼ ।

ସୁରେଶ ଆଖି ଦୁଇଟା ସତେ ଯେପରି ଜଳି ଉଠିଲା । କିନ୍ତୁ ତାର ଗଳା ଥରି ଉଠିଲା । ଅଚଳା ହାତକୁ ନିଜ ହାତ ମୁଠାରେ ଧରି ସେ କହିଲା—ତେବେ ତୁମେ ମୋ ଘରକୁ ଆସ ।

ଅଚଳା କ୍ଷଣକ ପାଇଁ ନିର୍ବାକ ବିସ୍ମୟରେ ତାହାର ମୁହଁକୁ ଚାହିଁରହି କେବଳ କହିଲା ନା, ଆଜି ନୁହେଁ । ଏତିକି କହି ସେ ଧୀରେ ଧୀରେ ନିଜ ହାତ ସୁରେଶ ମୁଠାରୁ ଖସାଇ ଆଣିଲା ।

ଏହି ଶାନ୍ତ, ସଂଯତ ପ୍ରତ୍ୟାଖ୍ୟାନ ମଧ୍ୟରେ କ'ଣ ଯେ ଥିଲା ତାହା ନିଶ୍ଚୟ ବୁଝି ନ ପାରି ନୀରବରେ ଠିଆ ହୋଇ ରହିଲା ।

ଅଚଳା ସୁରେଶ ଆଡକୁ ନ ଚାହିଁ ପୁଣି କହିଲା—ମୁଁ ଶୋଇ ନାହିଁ ଏକଥା ଜାଣି କ'ଣ ତୁମେ ଏ ଘରକୁ ଆସିଥିଲ ?

ସୁରେଶ ଆହତ ହୋଇ କହିଲା—ନହେଲେ କ'ଣ ତୁମେ ଶୋଇ ପଡ଼ିଥିବାର ପୁଣି ମୁଁ ଏ ଘରେ ପଶିଛି ? ଏକଥା ତୁମେ ଆଶା କରି ପାରୁଛ ?

—ଆଶା !! ଅଚଳା ମୁହଁ ଫେରାଇ ସାମାନ୍ୟ ଟିକିଏ ହସିଲା । ଏ ରାଷ୍ଟ୍ର କଠିନ ହସ ଦୀପର କ୍ଷୀଣ ଆଲୋକରେ ମଧ୍ୟ ସୁରେଶ ଆଖିରୁ ବାହିଗଲା ନାହିଁ । ସେ ହସ ଯେପରି ସ୍ପଷ୍ଟ କଥା କହିଲା ପରି କହିଲା ଆରେ କାପୁରୁଷ ! ଯେଉଁ ପୁରୁଷ ଚୋର ଭଳି ନିଦ୍ରିତ ରମଣୀର ଘରେ ପ୍ରବେଶ କରି ନାହିଁ ପୁରୁଷକାରର ମହତ୍ତ୍ୱ କି ସେ କେବେ ଦାବୀ କରିପାରେ ? କିନ୍ତୁ ମୁହଁରେ ସେ କିଛି କହିଲା ନାହିଁ, ଅନେକ ସମୟପରେ ଝରକା ଗ୍ରାଡ଼ ଠିଆ ହୋଇ ଆସ୍ତେ ଆସ୍ତେ କହିଲା—ତୁମର ଦେହ ଭଲ ନାହିଁ, ଆଉ ବେଶୀ ସମୟ ଅନିଦ୍ରା ରହିବା ଭଲ ନୁହେଁ । ଯାଅ ଶୋଇ ପଡ଼ିବ । କହିଦେଇ ନିଜେ ଆସି ବିଛଣା ଉପରେ ଗଡ଼ି ପଡ଼ି ଦେହରେ କମ୍ବଲଟା ଘୋଡ଼ିହୋଇ ମୁହଁ ବୁଲାଇ ଶୋଇ ପଡ଼ିଲା ।

କିଛି ସମୟ ପର୍ଯ୍ୟନ୍ତ ଅନ୍ୟମନସ୍କ ଭାବରେ ସୁରେଶ ସେହିଠାରେ ଠିଆ ହୋଇ ରହିଲା । ତାପରେ ଚୁପ୍ ଚାପ୍ ନିଜ ଶୋଇବା ଘରକୁ ଚାଲିଗଲା ।

ଜଣେ ଦୁଇ ଜଣ ଦାସ ଦାସୀଙ୍କ ବ୍ୟତୀତ ପାଞ୍ଚ ଛଅ ଦିନ ହେବ ଘରର ସମସ୍ତେ କଲିକତା ଚାଲିଯାଇଚନ୍ତି । କେବଳ ଯାଇ ନାହାନ୍ତି ଘରର ଝିଏ ମୃଣାଳୀ । ଜରୁରୀ କାମ ହାତରେ ଥିବାରୁ ସେ ଶେଷ ବେଳକୁ ପଡ଼ିରହି ଗଲେ । ଏଇ କେତେ ଦିନ ହେବ ରାମଚରଣ ବାବୁ କେତେକ ଜରୁରୀ କାର୍ଯ୍ୟ ହେତୁ ବ୍ୟସ୍ତ ଥିଲେ । ବହୁତ କମ୍ ସମୟ ତାଙ୍କୁ ଦେଖିବାକୁ ମିଳୁଥିଲା । ହଠାତ୍ ଆଜି ସକାଳଟାରୁ ଡାକ ମାରି ସେ ଉପର ବାରଣ୍ଡାରେ ଆସି ପହଞ୍ଚିଲେ ଏବଂ ସୁରମାର ନାମଧରି ଡାକିବାକୁ ଲାଗିଲେ । ଶୀତ ଦିନରେ ଏତେ ସକାଳୁ କେହି ଶେଯ ଛାଡ଼ି ନ ଥାନ୍ତି । ଡାକ ଶୁଣି ଅଚଳା ବ୍ୟସ୍ତ ହୋଇ କବାଟ ଖୋଲି ବାହାରେ ଆସି ଠିଆ ହେଲା ଏବଂ କ୍ଷଣକ ପରେ ସୁରେଶ ମଧ୍ୟ ଅନ୍ୟପଟୁ କବାଟ ଖୋଲି ଆଖି ପୋଛି ପୋଛି ବାହାରି ପଡ଼ିଲା । ଏହି ସଦ୍ୟ ନିଦ୍ରାରୁ ଉଠିଥିବା ଦମ୍ପତିଙ୍କୁ ଅଲଗା ଅଲଗା ଘରୁ ବାହାରୁଥିବାର ଦେଖି ଏହି ବୃଦ୍ଧଙ୍କର ପ୍ରସନ୍ନ ଦୃଷ୍ଟି ଯେ ହଠାତ୍ ବିସ୍ମୟରେ ସନ୍ଦିଗ୍ଧ ହୋଇ ଉଠିଲା, ତାହା ସିନା

ସୁରେଶ ଦେଖି ପାରିଲା ନାହିଁ କିନ୍ତୁ ଅଚଳା ଆଖି ଆଗରେ ଲୁଚି ରହି ପାରିଲା ନାହିଁ । ରାମବାବୁ ସୁରେଶଙ୍କୁ ଚାହିଁ ଅନୁତପ୍ତ କଣ୍ଠରେ କହିଲେ—ଡ଼କାଡ଼କି କରି ଆପଣଙ୍କ ନିଦ ଭାଙ୍ଗି ଦେଲି, ବଡ଼ ଭୁଲ ହୋଇ ଯାଇଛି ।

ସୁରେଶ ହସି କରି କହିଲା—ଭୁଲ କିଛି ହୋଇ ନାହିଁ । ତାର କାରଣ ମୁଁ ଉଠି ସାରିଥିଲି, ନ ହେଲେ ବାହାରୁ ଡ଼ାକି କ'ଣ ଢ଼ୋଲ ପିଟିଲେ ମଧ୍ୟ ମୋର ଶୋଇବା ଘରର କେହି ଶାନ୍ତିଭଙ୍ଗ କରି ପାରନ୍ତେ ନାହିଁ । ତାପରେ ତ ବର୍ତ୍ତମାନ ସକାଳ ହୋଇ ଗଲାଣି ।

ଅଚଳାକୁ ଉଦ୍ଦେଶ୍ୟ କରି ରାମବାବୁ କହିଲେ—ଆଜି ମୋର ସୁରମା ମାଆ ଉପରେ ଅଦଉତି କରିବା ଆବଶ୍ୟକ ହୋଇ ପଡ଼ିଛି କହି ଆଉ ଥରେ ତାର ମୁହଁକୁ ଚାହିଁ ନେଇ ହସି ହସି କହିଲେ—ମୋ ପାଇଁ ପାଲିଙ୍କି ପ୍ରସ୍ତୁତ ହୋଇ ରହିଛି । ବର୍ତ୍ତମାନ ବାହାରିବାକୁ ହେବ । ବୋଧହୁଏ ଦୁଇଟା ଘଣ୍ଟା ପୂର୍ବରୁ ଫେରି ପାରିବ ନାହିଁ । ଏଇ ବୁଢ଼ାଟା ପାଇଁ ଆଜି ଡାଲି ଭାତ ଦୁଇଟା ଫୁଟାଇ ରଖି ଦେବୁ ମାଆ, ଏତେ ଡ଼େରିରେ ଆସି ମୋତେ ଯେପରି ପୁଣି କାଆଁ ପାଖକୁ ଯିବାକୁ ନ ପଡ଼େ ।

ଏହି ପରମ ନିଷ୍ଠାବାନ୍ ନିରାମିଷାହାରୀ ବ୍ରାହ୍ମଣ; ସ୍ତ୍ରୀ ଏବଂ ପୁତ୍ରବଧୂ ବ୍ୟତୀତ ଅନ୍ୟ କାହା ହାତରୁ କେତେବେଳେ ଆହାର ଗ୍ରହଣ କରନ୍ତି ନାହିଁ । ସେଥିପାଇଁ ତାଙ୍କର ରୋଷେଇ ଘରଟି ସମ୍ପୂର୍ଣ୍ଣ ଭାବରେ ସ୍ୱତନ୍ତ୍ର ।

ଏପରିକି ସମସ୍ତଙ୍କର ସେହି ରୋଷଘରକୁ ଯିବା ପାଇଁ ଅଧିକାର ନ ଥିଲା । ନିଜେ ରୋଷେଇ କରି ଖାଇ ପାରିବା ତାଙ୍କର ଅଭ୍ୟାସ ଥିଲା ବୋଲି ସ୍ତ୍ରୀ ଲୋକ-ମାନେ ଘର ଛାଡ଼ି ଗାଆଁକୁ ଯାଇ ପାରିଥିଲେ । ଏଇକେତେଦିନ ହେବ ତାଙ୍କର ସେହି ବ୍ୟବସ୍ଥା ହିଁ ଚାଲି ଆସିଥିଲା । କିନ୍ତୁ ଆଜି ହଠାତ୍ ଏହି ଅଜ୍ଞାତ ଅପରିଚିତ ସ୍ତ୍ରୀ ଲୋକଟି ଉପରେ ଦାୟିତ୍ୱ ଦେବାର ଅନୁରୋଧ ହେତୁ ଅଚଳା ବିସ୍ମୟରେ, ବେଦନାରେ, ଏବଂ ସର୍ବୋପରି ଭୟରେ ଅଭିଭୂତ ହୋଇ ପଡ଼ିଲା ।

ରାମବାବୁ ସେହି ମଳିନ ମୁହଁଟି ଆଡ଼େ ଚାହିଁ ସସ୍ନେହରେ କହି ଉଠିଲେ—ତୁମେ ଭାବୁଛ ମାଆ, ଏଇ ବୁଢ଼ାଟା ଆଜି ଏପରି କଣ କହୁଛି ? ରାନ୍ଧିବା ଓ ଖାଇବା ବିଷୟରେ ଯାହାର ଏତେ ବାଛ ବିଚାର, ଏତେ ହାଙ୍ଗମା, ତାର ଆଜି ହେଲା କ'ଣ ? ଯାହା ହେଉ ପଛକେ; ରାକ୍ଷସୀ ହାତରୁ ଖାଇବା ପାଇଁ ଯେତେବେଳେ ଆପତ୍ତି ନଥିଲା, ସେତେବେଳେ ତୁମେ ଅବା ଦୁଇମୁଠା ଭାତ ଡ଼ାଲି ଫୁଟାଇ ଦେଲେ ପ୍ରବୃତ୍ତି ନ ହେବ କାହିଁକି ? ଆଉ ସୁଆଦ ହେଉ, କି ନ ହେଉ ମାଆ, ଏତେ

ଖସ୍ଵରେ ଆସି ଆଉ ଭ୍ରାନ୍ତି ଚୂଲ କରି ପାରିବ ନାହିଁ ମାଆ, । ଏତକ କହି ମୁହୂର୍ତ୍ତିକାଳ ପାଇଁ ଅଚଳାର ନିରୁତ୍ତର ମୁହଁକୁ ଚାହିଁ ରହି ପୁଣି ହସି ହସି କହିଲେ, ତୁମେ ନିଶ୍ଚୟ ମନେ ମନେ ଭାବୁଛ ଏ ବୁଢାଭିତରେ ଯଦି ଯଦି ଏତେ ଉଦାରତା ଥିଲା, ତାହା ହେଲେ ମୋତେ କଷ୍ଟ ନଦେଇ ହିନ୍ଦୁସ୍ତାନୀ ବ୍ରାହ୍ମଣ ରୋଷେଇକର ହାତରୁ ଖାଇଲେ ତ ଚଳନ୍ତା । ନାହିଁ ମାଆ, ତାହା ଚଳନ୍ତା ନାହିଁ । ଆଜି ମଧ୍ୟ ଏ ବୁଢାର ସେହିପରି କୁ ସଂସ୍କାର ଅଛି । ମରିଗଲେ ସୁଦ୍ଧା ଏଇ ସନ୍ଧ୍ୟା ଗାୟତ୍ରୀହୀନ ହିନ୍ଦୁସ୍ଥାନୀ ବ୍ରାହ୍ମଣ "ମହାରାଜ"ଙ୍କ ରନ୍ଧା ଅନ୍ନ ମୋ ତଣ୍ଟିରେ ଗଳି ପାରିବ ନାହିଁ । ମୋର ବୋହୂ ରାକ୍ଷସୀ ଆଉ ତୁମକୁ ଯେ ଏହା ଭିତରେ ଏକ ବୋଲି ଧରି ନେଇ ପାରିଛି ତାହା ମଧ୍ୟ ସତ ନୁହେଁ । କିନ୍ତୁ ଯେତକ ଦେଖୁଛି ମୋର ସେତକ ମନେ ହେଉଛି ଏ ମାଆଟି ଯଦି ଦିନେ ମୋତେ ରାନ୍ଧି ପରଶି ପାରନ୍ତା ତେବେ ତାହା ଅନ୍ନପୂର୍ଣ୍ଣାଙ୍କ ରନ୍ଧା ଅନ୍ନଠାରୁ ଯଥେଷ୍ଟ ଭଲ ହୋଇ ପାରନ୍ତା । ଆଉ ତ ଡେରି କରି ପାରୁ ନାହିଁ ମାଆ, ବାକି ଯେତକ କହିବାର ରହିଲା, ସେତକ ଖାଇ ବସିଲା ବେଳେ କହିବି । ଆଉ ସେହି କହିବା ହେବ ସବୁଠାରୁ ସତକଥା । ଏତକ କହିସାରି ବୃଦ୍ଧ ଚାଲିଯିବାକୁ ଉପକ୍ରମ କରିବାରୁ ଅଚଳା ବ୍ୟସ୍ତ ହୋଇ ପଡ଼ିଲା । କଣ କହିବ ତାହା ଠିକ୍ କରୁ ନକରୁଣୁ ଯେଉଁ କଥାଟା ହଠାତ୍ ତାର ପାଟିରୁ ଫିଟି ପଡ଼ିଲା ତାହା ହେଲା, କିନ୍ତୁ ମୁଁ ତ ଭଲ ରାନ୍ଧି ଜାଣି ନାହିଁ । ମୋର ରୋଷାଇ ଆପଣଙ୍କର ତ ପସନ୍ଦ ହେବ ନାହିଁ ।

ବୃଦ୍ଧ ରାମବାବୁ ଫେରି ପଡ଼ି ଠିଆ ହୋଇ ସାମାନ୍ୟ ହସିଲେ । କହିଲେ— ଏ କଥାଟାକୁ ତୁ ମୋତେ ବିଶ୍ୱାସ କରିବାକୁ କହୁଛୁ ମାଆ ?

ଅଚଳା କହିଲା—ସମସ୍ତେ କ'ଣ ରୋଷାଇ କରି ଜାଣନ୍ତି ?

ବୃଦ୍ଧ ଜବାବ ଦେଲେ—ସମସ୍ତେ ଯେ ଜାଣନ୍ତି, ତାହା କ'ଣ ମୁଁ କହୁଛି ?

ଅଚଳା ଏ କଥାର ହଠାତ୍ କୌଣସି ଉତ୍ତର ଦେଇ ନପାରି ଚୂପ୍ ହୋଇ ରହିଲା । କିନ୍ତୁ ସୁରେଶ ପକ୍ଷରେ ସେଠାରେ ଠିଆ ହୋଇ ରହିବା ଏକ ପ୍ରକାର ଅସମ୍ଭବ ହୋଇ ପଡ଼ିଲା । ଅଚଳାର ବିପନ୍ନ ମୁହଁକୁ କଟାକ୍ଷରେ ଚାହିଁ ଦେଇ ସେ ତାର ବେଦନା ବୁଝି ପାରିଲା । ଏହି ବୃଦ୍ଧଙ୍କର ସଂସ୍କାର, ତାଙ୍କର ହିନ୍ଦୁ ଆଚାର ଭଲ ହେଉ କି ମନ୍ଦ ହେଉ, ସତ ହେଉ କି ମିଛ ହେଉ ତାଙ୍କୁ ରାନ୍ଧି ଖୁଆଇବା ପଛରେ ଯେଉଁ କଦର୍ଯ୍ୟ ପ୍ରତାରଣା ଲୁଚି ରହିଅଛି, ସେ କଥା

ଯେ ଅଚଳାର ଅଗୋଚର ନାହିଁ ଏବଂ ଏହା ଭଦ୍ର ନାରୀର ବିବେକ ଯେ କୌଣସି ମତେ ଏହା ଗୋପନ କରିବାର ଦୁଷ୍ଟ ଚିନ୍ତାରୁ ଆପଣାକୁ ଅବ୍ୟାହତ ଦେଉ ନାହିଁ ଏହା ତାର ଶ୍ରୀହୀନ ପ୍ରାଣ୍ଡୁର ମୁହଁରୁ ଦେଖି ପାରି ସେ ଆଉ ଅନ୍ୟ କୌଣସି ଦିଗକୁ ନଚାହିଁ ମୁହଁ ହାତ ଧୋଇବା ବାହାନାରେ ସିଡ଼ି ଦେଇ ତଳକୁ ଓହ୍ଲାଇ ଗଲା ।

: ତାହାହେଲେ ମୁଁ ଯାଉଛି କହି ରାମଚରଣ ବାବୁ ସୁରେଶ ପଛେ ପଛେ ବାହାରି ଯିବାକୁ ଉଦ୍ୟତ ହେଲେ । ମୁହୂର୍ତ୍ତିକ ପାଇଁ ଅଚଳା ଆବାକାବା ହୋଇ ଠିଆ ହୋଇ ରହିଲା । ତାପରେ ନିଜକୁ ଜୋର କରି ଆମ୍ବସ୍ଥ କରି ସେ ପଛରୁ ଡାକିଲା—ଆଜ୍ଞା, ଟିକିଏ ଶୁଣନ୍ତୁ ।

ବୃଦ୍ଧ ଫେରିଚାହିଁ ଦେଖିଲେ, ସୁରମା ଯେପରି କ'ଣ କହିବାକୁ ଇଚ୍ଛା କରି ନୀରବରେ ତଳକୁ ଚାହିଁ ରହି ଠିଆ ହୋଇ ରହିଛି । ତାପରେ କେତେ ପାଦ ଅଗ୍ରସର ହୋଇ ଆସି କହିଲେ, ଆଉ ଗୋଟାଏ କଥା ତୁମର ଜାଣିବାର ଅଛି ମାଆ । ତୁମର ସଙ୍କୋଚ ଯେତେବେଳେ କୌଣସି ମତେ ତୁମେ ଛାଡ଼ିବାକୁ ନାରାଜ; ସେତେବେଳେ ଜାଣିରଖ ସୁରମା, ତୁମର ବାପାଙ୍କଠାରୁ ବୟସରେ ମୁଁ ବାଧହୁଏ ଶ୍ରେଷ୍ଠ ହେବି ନାହିଁ । ତାହାହେଲେ ମୋତେ କାହିଁକି ବଡ଼ବାପା ବୋଲି ଡାକୁନାହଁ ମାଆ ?

ଏହି ବୃଦ୍ଧ ଯେ ତାକୁ ଅତ୍ୟନ୍ତ ସ୍ନେହ କରୁଛନ୍ତି; ଅଚଳା ତା'ଜାଣେ । ଭଲ ପାଇବାର ଏହି ସ୍ୱୀକାରୋକ୍ତି ତାର ଆଖିରେ ଲୁହ ଆଣି ଦେଲା । ସେ କେବଳ ମୁଣ୍ଡ ହଲାଇ ସମ୍ମତି ଜଣାଇଲା ।

ବୃଦ୍ଧ ପ୍ରଶ୍ନ କଲେ—ଆଉ କ'ଣ କହିବ ?

ଅଚଳା ସେହିପରି ନୀରବରେ କିଛି ସମୟ ତଳକୁ ଚାହିଁ ରହି ଏହିଥର ବୋଧହୁଏ ନିଜର ସମସ୍ତ ଶକ୍ତିକୁ ଏକତ୍ର କରି ଅସ୍ପଷ୍ଟ ସ୍ୱରରେ କେବଳ ଏତିକି ମାତ୍ର କହି ପାରିଲା ଯେ; ମୋର ବାପା ବ୍ରାହ୍ମ ଥିଲେ ।

ରାମଚରଣ ବାବୁ ହଠାତ୍ ଚମକି ପଡ଼ିଲେ । କହିଲେ—ସତ୍ୟରେ ବ୍ରାହ୍ମ ନା ପାଞ୍ଚଜଣ କଲିକତା ବୁଲିଆସି ଦୁଇଦିନ ପାଇଁ ସଉକ୍ କରି ଯେପରି ହୁଅନ୍ତି; ସେହିପରି ନୁହେଁ ତ ? ସେମାନେ ବ୍ରାହ୍ମ ଦଳରେ ବସି ହିନ୍ଦୁମାନଙ୍କୁ ଗାଳି ଦିଅନ୍ତି । ସେପରି ଗାଳି କିନ୍ତୁ ପ୍ରକୃତରେ ଯେଉଁମାନେ ବ୍ରାହ୍ମ ସେମାନେ କେତେବେଳେ ହେଲେ ମୁହଁରେ ଧରି ପାରନ୍ତି ନାହିଁ । ତାପରେ ଘରକୁ ଫେରିଲେ ସମାଜ ଭିତରେ ଠିଆ ହୋଇ ବ୍ରାହ୍ମ ମାନଙ୍କୁ ଏପରି ଗାଳି ଗୁଲଜ

କରନ୍ତୁ ଯେ, ସେପରି ମଧୁର ବଚନ ହିନ୍ଦୁମାନଙ୍କର ଚଉଦ ପୁରୁଷରେ କେହି କେବେ ଉଚ୍ଚାରଣ କରି ପାରି ନଥିବେ । କ'ଣ ସେପରି ନୁହେଁ କି ମାଆ ? ତାହା ହେଲେ ମୋର ଏତେ ଟିକିଏ ଆପତ୍ତି ନାହିଁ ।

ଅଚଳାର ଆଖି ମୁହଁ ଲଜ୍ଜ୍ୟାରେ ନାଲି ହୋଇ ଉଠିଲା । ସେ କେବଳ ମାତ୍ର କହିଲା—ନା, ସେ ପ୍ରକୃତରେ ବ୍ରାହ୍ମ ଯାହାକୁ କହନ୍ତି; ସେଇଆ ।

ଉତ୍ତର ଶୁଣିବା ପରେ ବୃଦ୍ଧ ଯେପରି କ୍ଷଣକ ପାଇଁ ଅଟକି ଗଲେ । କିନ୍ତୁ ଟିକିଏ ପରେ ପ୍ରଫୁଲ୍ଲ ଚିତ୍ତରେ କହିଲେ—ହୋଇ ପାରନ୍ତି ବାପା ଅବା ବ୍ରାହ୍ମ, କିନ୍ତୁ ଝିଅଟି ଆଉ ତାର ଖାତକ ନୁହେଁ ଯେ ଏପରି ଭୟ କରି ବସିବ ? ବରଞ୍ଚ ଯାହା ସଙ୍ଗେ ତୁ ଧର୍ମ ଭାଗ କରି ନେଇଛୁ ମାଆ, ସେ ଯେତେବେଳେ ହିନ୍ଦୁ, ତାର କାନ୍ଧରେ ଯେତେବେଳେ ଯଜ୍ଞୋପବୀତ ଶୋଭା ପାଉଛି, ସେ ଯେତେବେଳେ ଏଇ କେତେକେରା ସୂତାର ଅପମାନ କରିନାହିଁ, ସେତେବେଳେ ପାପର ଦୋଷ ତୋତେ ସ୍ପର୍ଶ କରି ପାରିବ ନାହିଁ । ହସି ଦେଇ ପୁଣି କହିଲେ ଢେ଼ର ହୋଇ ଯାଉଛି ମାଆ, ବର୍ତ୍ତମାନ ଯାଉଛି କିନ୍ତୁ ତୁ ସେ ସ୍କନ୍ଧକ କରନା ମାଆ ସୁରମା । ବୁଢ଼ା ବଡ ବାପାକୁ ଆଉ ଫାଙ୍କି ଦେଇ ପାରିବୁ ନାହିଁ । ଆଜି ତୋତେ ରାନ୍ଧି କରି ଖାଇବାକୁ ଦେବାକୁ ହିଁ ହେବ ମାଆ । ବାପର ଶିକ୍ଷା ହେତୁ ସେଦିନ ଉପବାସ କରିବାକୁ ଗୃହିଁ ନଥିଲୁ ସତ, ସେଥିପାଇଁ ଆଜି ତାର ଅସଲ ସୁଧ ଆଦାୟ କରି ତେବେ ଯାଇ ଗ୍ରୁଡ଼ିବ । ଏହା କହି ସେ ପୁନରାୟ ଗ୍ଲଲ ଯାଉଥିବାର ଦେଖି ଅଚଳା ତାର ଏତେକ୍ଷଣ ଧରି ଅଦ୍ଭୁତ ଭାବଟାକୁ ଅତିକ୍ରମ କରି ସୁସ୍ପଷ୍ଟ କଣ୍ଠରେ କହିଲା—ଆଗ୍ରୁ ବଡ଼ବାବା, ମୁଁ ବ୍ରାହ୍ମ ମହିଳା ହୋଇଥିଲେ ଆପଣ କଣ ମୋ ହାତରୁ ଖାଇ ନ ଥାନ୍ତେ ?

ବୃଦ୍ଧ କହିଲେ ନା । କିନ୍ତୁ ତୁ ତ ବ୍ରାହ୍ମ ନୋହୁ; ଏବଂ ତାହା ମଧ ତୁ ହୋଇ ପାରିବୁ ନାହିଁ ।

ଅଚଳା ପ୍ରଶ୍ନ କଲା—ତାହା ଯଦି ହୋଇଥାନ୍ତି ତାହାଲେ କ'ଣ କେବଳ ମୋର ଧର୍ମ ଅଲଗା ବୋଲି ମୁଁ ଆପଣଙ୍କ ନିକଟରେ ଅସ୍ପୃଶ୍ୟ ହୋଇଥାନ୍ତି ?

ବୃଦ୍ଧ କହିଲେ, ଅସ୍ପୃଶ୍ୟ ହେବୁ କାହିଁକି ମାଆ ? ଅସ୍ପୃଶ୍ୟ ନୁହେଁ । କିନ୍ତୁ ତୋ ହାତରୁ ଖାଇ ପାରି ନଥାନ୍ତି ।

ଏହି ସମ୍ବନ୍ଧରେ ଅଚଳାର ଅନେକ କଥା ହିଁ ଜାଣିବା ପ୍ରୟୋଜନ । ସେଥିପାଇଁ ସେ ଚୁପ୍ ରହି ପାରିଲା ନାହିଁ । କହିଲା—କାହିଁକି ପାରି ନଥାନ୍ତେ ? କଣ ଘୃଣାରେ ?

ବୃଦ୍ଧ ହଠାତ୍ କୌଣସି ଉତ୍ତର ଦେଇ ପାରିଲେ ନାହିଁ । କେବଳ ଏକ ଲକ୍ଷ୍ୟରେ ଝିଅଟିକୁ ଚାହିଁ ରହିଲେ ।

ଅଚଳା ସମସ୍ତ ସଂକୋଚ ତ୍ୟାଗ କରି କହିଲା—ବଡବାପା; ଆପଣଙ୍କ ଦୟା ଓ ମମତା ଯେ କେତେ ବଡ଼; ତାହାର ଅନେକ ସାକ୍ଷୀ ଏ ପୃଥିବୀରେ ଥିଲେ ଥାଇ ପାରନ୍ତି କିନ୍ତୁ ମୋ ଠାରୁ ବଡ ସାକ୍ଷୀ ଆଉ କେହି ନଥିବେ । ତଥାପି ଆପଣଙ୍କ ପରି ମହାତ୍ମାଙ୍କ ମନ ଯେ କିପରି ଏତେ ଅନୁଦାର ହୋଇପାରିଲା, ସେହି କଥା ମୁଁ ଆଦୌ ଭାବି ପାରୁନାହିଁ । ଆପଣ କ'ଣ ମନୁଷ୍ୟକୁ ଏତେ ଘୃଣା କରି ପାରନ୍ତି ?

ବୃଦ୍ଧ ହଠାତ୍ ବାତୁଲ ହେଲାପରି କହି ଉଠିଲେ, ମୁଁ ଘୃଣା କରେ ? କାହାକୁ ? କଦାପି ନୁହେଁ ମାଆ ।

ଅଚଳା କହିଲା—ଯାହା ହାତଛୁଆଁ ଦ୍ରବ୍ୟ ଆପଣଙ୍କର ଅସ୍ପୃଶ୍ୟ, ସେ ଆପଣଙ୍କର ଘୃଣାର ପାତ୍ର । ତାକୁ ହିଁ ଆପଣ ମନେ ମନେ ଘୃଣା କରନ୍ତି । ଆମର ଏଇ ହିନ୍ଦୁସ୍ଥାନୀ ଚାକରଟା କଥା ଛାଡ଼ି ଦିଅନ୍ତୁ । ବ୍ରାହ୍ମଣ ହାତ ରନ୍ଧା ଖାଦ୍ୟ ଯେ କୌଣସି ମତେ ଖାଇ ପାରିବେ ନାହିଁ ସେ କଥା ତ ଆପଣ ନିଜ ମୁହଁରେ ପ୍ରକାଶ କରିଛନ୍ତି । ଏଥିରେ ଦେଶର କେତେ କ୍ଷତି, କେତେ ଅବନତି ନ ହେଉଛି ସତେ···

ବୃଦ୍ଧ ଚୁପ୍‌କରି ଶୁଣି ଯାଉଥିଲେ ଏବଂ ଅଚଳାର ଉତ୍ତେଜନା ମଧ୍ୟ ଲକ୍ଷ୍ୟ କରୁଥିଲେ । ତାର କଥା ହଠାତ୍ ଶେଷ ହେବା ପରେ ଟିକିଏ ହସି ଦେଇ କହିଲେ—ମାଆ, ଘୃଣା ମୁଁ କୌଣସି ମନୁଷ୍ୟକୁ କରେନାହିଁ । ଯେଉଁ ଅଭିଯୋଗ ତୁ କରି ବସିଲୁ ସେ ଅଭିଯୋଗ ସାହେବ ମାନେ କରନ୍ତି । ସେମାନଙ୍କ ନିକଟରୁ ତୁମ ବାବା ଏହାକୁ ଶିଖିଛନ୍ତି । ଆଉ ତାଙ୍କ ନିକଟରୁ ତୁ ଏହା ଶିଖିଛୁ, ନହେଲେ ମଣିଷ ଯେ ଭଗବାନ୍ । ଏ ଜ୍ଞାନ କେବଳ ସେମାନଙ୍କର ନୁହେଁ, ଆମ୍ଭ ମାନଙ୍କର ଥିଲା ଏବଂ ଆଜି ମଧ୍ୟ ଅଛି ।

ଏହି ସମୟରେ ତଳୁ ଅସ୍ପଷ୍ଟ କୋଳାହଳ ଶୁଣା ଗଲା, ବୃଦ୍ଧ ସେ ଆଡ଼କୁ ଦଣ୍ଡିକ ପାଇଁ କାନ ଡେରି କହିଲେ, ସୁରମା ଖାଇବା ବିଷୟଟା ଯେଉଁ ମାନଙ୍କ ନିକଟରେ ବଡ଼ ଜିନିଷ, ମସ୍ତ ଗୋଳ ଘାଣ୍ଟର ବ୍ୟାପାର, ସେମାନଙ୍କ ସହିତ ମୋର ପଟିବ ନାହିଁ । ମୋ ପକ୍ଷରେ ଭାତ ଖାଇବାଟା ଗୋଟାଏ ତୁଚ୍ଛ ବସ୍ତୁ । ସେତକ ଟିକିଏ ଯୋଗାଡ଼ କରି ରଖିଥାଆ । ଖାଇବାବେଳେ

ଆଲୋଚନା କରାଯାଇ ପାରିବ; ଘଣ୍ଟା ମୁଁ କାହାକୁ କେତେ କରେ ଏବଂ ଦେଶର ଅବନତି କାହାଦ୍ୱାରା କେତେ ଦୂର ହେଉଛି । କିନ୍ତୁ ଗୋଳମାଳ ଆଉ ବଢ଼ାଅନା ମାଆ, ମୁଁ ଚାଲିଲି । କହି ସେ ଅତି ତରତର ହୋଇ ତଳକୁ ଓହ୍ଲାଇ ଗଲେ ।

ପ୍ରାୟ ଅପରାହ୍ନ ବେଳକୁ ଭୋଜନ ସାରି ରାମବାବୁ ତୃପ୍ତିରେ ଗୋଟାଏ ହେଉଡ଼ି ଛାଡ଼ି ଯେତେବେଳେ ଉଠିଲେ, ସେତେବେଳେ ଅଚଳା ଅତି କଷ୍ଟରେ ସାମାନ୍ୟ ହସି ଦେଇ କହିଲା—କିନ୍ତୁ ବଡ଼ ବାବା; ଯେଉଁଦିନ ଆପଣ ଜାଣି ପାରିବେ ଯେ ଆପଣଙ୍କର ଜାତି ଯାଇଛି, ସେ ଦିନ କିନ୍ତୁ ମୋ ଉପରେ ରାଗି ପାରିବେ ନାହିଁ, ଏ କଥା ମୁଁ ଆଗରୁ କହି ଦେଉଛି ।

ବୃଦ୍ଧ ସ୍ନେହରେ ମୁଣ୍ଡ ଅଳ୍ପ ଟୁଙ୍ଗାରି କହିଲେ—ଆଚ୍ଛା, ଆଚ୍ଛା ମାଆ—ତାହାହିଁ ହେବ । କହି ଆଚମନ କରି ସାରି ବାହାରକୁ ଚାଲିଗଲେ । ତାଙ୍କର କଠାଉର ଖଟ୍ ଖଟ୍ ଶବ୍ଦ ଯେତେବେଳ ପର୍ଯ୍ୟନ୍ତ ଶୁଣା ଯାଉଥିଲା, ସେତେକ୍ଷଣ ପର୍ଯ୍ୟନ୍ତ ସେ ଏକାଗ୍ର ଚିତ୍ତରେ ତାହାକୁ ଶୁଣୁଥିଲା । ତାପରେ ଯେତେବେଳେ ସେ ଶବ୍ଦ ଆଉ ଶୁଭିଲା ନାହିଁ କେତେବେଳେ ଯେ ବାହାରର ସଂସାର ତାର ଚେତନାରୁ ବିଲୁପ୍ତ ହୋଇ ତାକୁ ପଥର କରି ଦେଇଛି, ସେ ତାହା ଆଦୌ ଜାଣି ପାରିଲା ନାହିଁ ।

ଅନେକ ଦିନର ହିନ୍ଦୁସ୍ଥାନୀ ଦାସୀଟି ବଙ୍ଗଳା କଥା ସଙ୍ଗେ ବଙ୍ଗାଳୀର ଆଚାର, ବ୍ୟବହାର, କାଇଦା, କାନୁନ କେତେକଟା ଆୟତ୍ତ କରି ପାରିଥିଲା । ସେ କ'ଣ ଗୋଟାଏ କାମରେ ପଶି ଆସି ବୋହୂମାଆଙ୍କର ବସି ରହିବାର ଭଙ୍ଗୀ ଦେଖି ଆଶ୍ଚର୍ଯ୍ୟ ହୋଇଗଲା, ଏବଂ ବୟୋଜ୍ୟେଷ୍ଠର ଅଧିକାରରେ ସେ ଶିଖିଥିବା ବଙ୍ଗଳା ଭାଷାରେ ତର୍ଜ୍ଜନ କରି ସମସ୍ତ ପ୍ରତି ସଚେତନ କରାଇ ଦେଇ ପ୍ରଶ୍ନ କଲା—ଆଜି ବୋଧହୁଏ ଖାଇବା ପିଇବାର କୌଣସି ପ୍ରୟୋଜନ ନାହିଁ ? ଏପରି ଭାବରେ ବସି ରହିଲେ ଘର ଚଳିବ କିପରି ?

ଅଚଳା ଚମକି ପଡ଼ି ଆଖି ମେଲି ଚାହିଁ ଦେଖିଲା; ବେଳ ଆଉ ନାହିଁ । ଶୀତ ଦିନର ସନ୍ଧ୍ୟା ଆସି ହେବା ଉପରେ । ସେ ମନେ ମନେ ଲଜ୍ଜିତ ହୋଇ

ଭଟି ପଞ୍ଚାଲା ଏବଂ ହସି ଦେଇ କହିଲା—ମୁଁ ଯେ ସନ୍ଧ୍ୟା ପରେ ଖାଇବି ବୋଲି ଠିକ୍ କରିଛି, ଲାଲୁର ମାଆ । ଆଜି ମୋର ଭୋକ ଶୋଷ ଏତେ ଟିକିଏ ହେଲେ ନାହିଁ ।

ଲାଲୁର ମାଆ ବିସ୍ମିତ ହୋଇ କହିଲା – ଏଇ ଟିକିଏ ଆଗରୁ ମତେ କହିଥିଲ ନା, ବଡ଼ବାବୁ ଖାଇ ସାରିଲେ ତୁମେ ଖାଇବ ବୋଲି ?

: ନା, ଏକାବେଳେ ରାତିରେ ଖାଇବି । କହି ଆଉ ବାଦାନୁବାଦକୁ ଅବସର ନ ଦେଇ ଅଚଳା ତରତର ହୋଇ ଉପରକୁ ଚାଲିଗଲା ।

ଟିକିଏ ସମୟ ପାଇଲେ ସେ ଉପର ବାରଣ୍ଡାର ରେଲିଂ ପାଖରେ ଚୌକି ଟାଣି ନେଇ ନଦୀ ଆଡ଼କୁ ଚାହିଁ ଚୁପ୍ ହୋଇ ବସି ରହୁଥିଲା । ଆଜି ମଧ୍ୟ ରାତିରେ ସେହିପରି ବସି ରହିଲା । ହଠାତ୍ ରାମବାବୁଙ୍କର ଯୋତା ଶବ୍ଦ ଶୁଣି ଅଚଳା ଫେରି ଚାହିଁ ଦେଖିଲା, ବୃଦ୍ଧ ଏକ ପ୍ରକାର ଘର ମଝିରେ ଆସି ଠିଆ ହୋଇ ଯାଇଛନ୍ତି ଏବଂ କିଛି କହିବା ପୂର୍ବରୁ ସେ ହାତରେ ଧରିଥିବା ହୁକାଟାକୁ କୋଣରେ ଆଉଜେଇ ରଖି ଆଉ ଖଣ୍ଡିଏ ଚୌକି ଟାଣି ଆଣି ବସିପଡ଼ିଲେଣି । ଅଳ୍ପ ହସିକରି କହିଲେ—ସେହି କଥାଟାର ଗୋଟାଏ ମୀମାଂସା କରିବାକୁ ଆସିଲି ସୁରମା । ତୁମର ବ୍ରହ୍ମଜ୍ଞାନୀ ବାବାଟି ଠିକ କି ଆଉ ଏ ବଡ଼ବାପାଟାର କଥା ଠିକ୍ ଏହି ତର୍କଟାର ଯାହା ହେଉ କିଛି ନିଷ୍ପତ୍ତି ନ କରି ଆଜି ଆଉ ତଳକୁ ଯାଉନାହିଁ ।

ଅଚଳା ବୁଝି ପାରିଲା—ଏ ହେଉଛି ସେହି ଜାତିଭେଦର ପ୍ରଶ୍ନ । ଶାନ୍ତ ସ୍ୱରରେ କହିଲା—ମୁଁ ଅବା କି ତର୍କ ତୁମ ସହିତ କରି ପାରିବି ବଡ଼ବାବା ?

ରାମବାବୁ ମୁଣ୍ଡ ହଲାଇ କହିଲେ—ବାଃରେ ! ତୁ କ'ଣ କମ୍ ଲୋକର ଝିଅ କି ମାଆ ? କଥା ଯେ କହୁଛି ମିଥ୍ୟା, ଏଥିରେ ସନ୍ଦେହ ନାହିଁ । ନଚେତ୍ ଏ ବେଳା ମଧ୍ୟ ହାରି ଯାଉଥିଲି କି କ'ଣ ?

କୌଣସି ବିଷୟରେ ଆଲୋଚନା କରିବା ପାଇଁ ଅଚଳାର ମନ ଅବସ୍ଥା ଆଦୌ ଭଲ ନଥିଲା । ସେ ଏହି ତର୍କ ଯୁଦ୍ଧରୁ ରକ୍ଷା ପାଇବା ପାଇଁ ସାମାନ୍ୟ ଫାଙ୍କ ପାଇବା କ୍ଷଣି କହିଲା—ତାହାହେଲେ ଆଉ ଯୁକ୍ତି କ'ଣ କରିବେ ବଡ଼ବାବା ? ଆପଣଙ୍କର ତ ଜୟ ହୋଇଗଲା ! ପୁଣି ଟିକିଏ ଅଟକି ଯାଇ କହିଲା ଯିଏ ଥରେ ହାରିଯାଇଛି, ତାକୁ ଆଉ ଦୁଇଥର ହରାଇ ଅବା ଲାଭ କ'ଣ ?

ରାମବାବୁ ସଙ୍ଗେ ସଙ୍ଗେ କୌଣସି ପ୍ରତ୍ୟୁତ୍ତର ଦେଲେ ନାହିଁ । ତାଙ୍କର ବୟସ ଯଥେଷ୍ଟ ହୋଇଗଲାଣି । ସଂସାରରେ ସେ ଅନେକ ଜିନିଷ

ଦେଖିଲେଣି, ତେଣୁ ଏହି ଅବସନ୍ନ କଣ୍ଠସ୍ୱରର ମର୍ମ ମଧ୍ୟ ତାଙ୍କୁ ଅବୁଝା ରହିଲା ନାହିଁ । ଏହି ଝିଅଟି ଯେ ସୁସ୍ଥ ନାହିଁ ଏବଂ ତାର ମନ ଭିତରେ ଯେ ଖୁବ୍‌ ଭୀଷଣ ଏକ ଚନ୍ଦ୍ରାର ଅଗ୍ନି ଅହରହ ଜଳି ଉଠୁଛି ଏହା ଯେପରି ତାର ଶାନ୍ତ, ପାଣ୍ଡୁର ମୁହଁରେ ସେ ସ୍ପଷ୍ଟ ଭାବରେ ଦେଖିବାକୁ ପାଇଲେ । କ୍ଷଣକ ପାଇଁ ଚୁପ୍‌ ରହିବା ପରେ ହଠାତ୍‌ ଟିକିଏ ହସିବାକୁ ଚେଷ୍ଟା କରି ଅତି କୋମଳ କଣ୍ଠରେ କହିଲେ—ନା, ମୋ କୌଶଳ ଫେଲ୍‌ ମାରିଲା ମାଆ । ବୁଢ଼ାଟା ଟିକିଏ ଗପିବାକୁ ଭଲ ପାଏ । ସନ୍ଧ୍ୟା ବେଳେ ଏକୁଟିଆ ବସି ବସି ପ୍ରାଣ ବିକଳ ହୋଇ ଉଠେ । ସେଥିପାଇଁ ଭାବିଥିଲି ସତ ମିଛ ଏଣୁ ତେଣୁ କହି ମାଆକୁ ମୋର ଟିକିଏ ରଗାଇ ଦେଇ ପାରିଲେ, କଥା ବାର୍ତ୍ତାଟି କିଛି ସମୟ ଜମି ପାରିବ । କିନ୍ତୁ ମୋର ଚାଲାକି ଧରା ପଡ଼ିଗଲା । କହି ସେ ନଇଁପଡ଼ି ହୁକାଟା ଆଣିବା ପାଇଁ ହାତ ବଢ଼ାଇଲେ ।

ସେ ଯେ ଚାଲିଯିବା ପାଇଁ ହୁକାଟିକୁ ହାତ ବଢ଼ାଇଲେଣି ଅଚଳା ସେ କଥା ବେଶ ବୁଝି ପାରିଲା । ତଳକୁ ଗଲାପରେ ଏକାକୀ ବସି ଏହି ବୃଦ୍ଧ ଯେ ଦୁଃଖରେ ସମୟ କଟାଇବେ, ଏହା ଉପଲବ୍ଧି କରିବା ପରେ ତାର ଚିତ୍ତ ବେଦନାରେ ବଡ଼ୁରି ଉଠିଲା । ସେଥିପାଇଁ ସେ ନିଜେ ଉଠିପଡ଼ି ହୁକାଟିକୁ ଆଣି ବୃଦ୍ଧଙ୍କ ହାତରେ ଧରାଇ ଦେଇ କହିଲା, ଆପଣ ଯେତେ ଖୁସି ସେତେ ତମାଖୁ ଖାଆନ୍ତୁ କିନ୍ତୁ ଏହିଠାରେ ବସି ଖାଆନ୍ତୁ । କିନ୍ତୁ ଏଠାରୁ ଆପଣଙ୍କୁ ଆଦୌ ଚାଲିଯିବାକୁ ଦେବି ନାହିଁ ।

ବୃଦ୍ଧ ହାତରେ ହୁକାଟି ଧରି ହସି କହିଲେ—ଆରେ ବାପ୍‌ରେ ! ଏତେ ବଡ଼ ଆଦେଶ ମୁଣ୍ଡ ଉପରେ ଅଜାଡ଼ି ଦେ ନା ମାଆ, ହୁଏତ ମୁଁ ବୋହି ନପାରେ । ତାର କାରଣ ମୁହଁ ବନ୍ଦ କରି ତମାଖୁ ଖାଇବା ଯେ କି କଷ୍ଟକର ବ୍ୟାପାର, ତାହାରୁ ଅନୁଭବ କରି ନାହୁଁ ମାଆ, ତେଣୁ ମୋତେ ଟିକିଏ ଗପିବାକୁ ଦେ ମାଆ !

: ଆପଣ କହନ୍ତୁତ···କ'ଣ କହି କଥା ଆରମ୍ଭ କରିବ ବଡ଼ବାବା ?

ରାମବାବୁ ଉପରକୁ କଳେ ଧୂଆଁ ଛାଡ଼ି ଦେଇ କହିଲେ ବଡ଼ ମୁସ୍କିଲରେ ପକାଇ ଦେଲୁ ମାଆ । ସଭାରେ ବିଶିଷ୍ଟ ବକ୍ତାକୁ ଯଦି ଏ ପ୍ରଶ୍ନ କରାଯାଏ ତେବେ ତାଙ୍କର ମଧ୍ୟ ମୁହଁ ବନ୍ଦ ହୋଇଯିବ ।

: ଆଚ୍ଛା ବଡ଼ବାବା, ଆପଣ ଯଦି କୌଣସି ଦିନ ଜାଣି ପାରନ୍ତି ଯେ, କୋର କରି ଯାହା ହାତରୁ ଆଜି ଭାତ ଖାଇଛନ୍ତି ତାହାଠାରୁ ନୀଚ, ତାହାଠାରୁ ଘୃଣିତ, ପୃଥିବୀରେ ଆଉ କେହିନାହିଁ, ସେତେବେଳେ କଣ କରିବେ ? ପ୍ରାୟଶ୍ଚିତ୍ତ ? ଆଉ ଶାସ୍ତ୍ରରେ ଯଦି ସେଥିପାଇଁ ପ୍ରାୟଶ୍ଚିତ୍ତ କରିବା ବିଧି ନ ଥାଏ, ତାହାହେଲେ ?

ବୃଦ୍ଧ କହିଲେ—ତାହାହେଲେ କଥାଟା ସଫା ହୋଇଗଲା । ପ୍ରାୟଶ୍ଚିତ୍ତ ଆଉ କରିବାକୁ ପଡ଼ିବ ନାହିଁ ।

: କିନ୍ତୁ ସେତେବେଳେ ମୋ ଉପରେ ଆପଣଙ୍କ ମନରେ କ'ଣ ଘୃଣା ଆସିବ ନାହିଁ ?

: କେତେବେଳେ ମାଆ ?

: ଯେତେବେଳେ ଜାଣିପାରିବେ ଯେ ମୋର ଜାତି ବୋଲି କିଛି ନାହିଁ ।

ରାମବାବୁ ମୁହଁରୁ ହୁକାଟା ବାହାର କରି ନେଇ ସେହି ଅସ୍ପଷ୍ଟ ଆଲୋକରେ କ୍ଷଣକ ପାଇଁ ତାର ମୁହଁକୁ ଚାହିଁ ରହି ଧୀରେ ଧୀରେ କହିଲେ, ତୋର ଏଇ କଥାଟାର ଅର୍ଥ ମୁଁ କିଛି ବୁଝିପାରୁ ନାହିଁ ମାଆ । ଆଉ "ତୁମେମାନେ" କାହିଁକି ମୁଁ ମଧ୍ୟ ମୋର ପୁଅ ଠାରୁ ଏ ଅଭିଯୋଗ ଅନେକଥର ଶୁଣିଲିଣି । ସେ ତ ପରିଷ୍କାର କରି କହୁଛି ଯେ ଏଇ ଖାଇବା ପିଇବାରେ ବାଛ ବିଚାର ହେତୁ ତ ସାରା ଦେଶଟା ଆସ୍ତେ ଆସ୍ତେ ସର୍ବନାଶ ଆଡ଼କୁ ଯାଉଛି । କାରଣ ଏହାର ମୂଳରେ ଅଛି ଘୃଣା, ଆଉ ଘୃଣା ଦ୍ୱାରା କେବେ କୌଣସି ଭଲ ଫଳ ମିଳି ନଥାଏ ।

ଅଚଳା ମନେ ମନେ ଅତିଶୟ ବିରକ୍ତ ହୋଇ ଉଠିଲା । ଏ ଘର ଭିତରେ ଯେ ଏ ସକଳ ଆଲୋଚନା ଜମି ଉଠିବାକୁ ସୁଯୋଗ ପାଇ ପାରିବ, ଏହା ତାର ଧାରଣା ବାହାରେ ଥିଲା । କହିଲା—କଥାଟା କ'ଣ ତେବେ ମିଛ ?

ରାମବାବୁ ଟିକିଏ ହସି କହିଲେ, ମିଛ କି ନାହିଁ, ସେ ଉତ୍ତର ଯଦିଓ ଦେଉନାହିଁ କିନ୍ତୁ ସତ ନୁହେଁ । ଶାସ୍ତ୍ରର ବିଧି ନିୟମ ମାନି ଚଳେ, ଏତିକି ମାତ୍ର । ଆଉ ଯେଉଁମାନେ ଟିକିଏ ବେଶୀ ମାନି ଚଳନ୍ତି ଏଇ ଯେପରି ମୋର ଗୁରୁଦେବ, ସେ ନିଜେ ହାତରେ ରାନ୍ଧି ଖାଆନ୍ତି । ଝିଅକୁ ସୁଦ୍ଧା ହାତ ମରାଇ ଦିଅନ୍ତି ନାହିଁ, ସେଥିରୁ କ'ଣ ଏହା ମନେ କରାଯାଇ ପାରିବ ଯେ ସେ ତାଙ୍କର ଏକମାତ୍ର ଝିଅକୁ ମଧ୍ୟ ଘୃଣା କରନ୍ତି ?

ଅଚଳା ଉତ୍ତର ଦେଇ ନ ପାରି, ନୀରବ ହୋଇ ବସି ରହିଲା ।

ବୃଦ୍ଧ ଆଉ କେତେଥର ହୁକାକୁ ଟାଣି ସାରି କହିଲେ—ମାଆ, ଯୌବନ ସମୟରେ ମୁଁ ଅନେକ ଦେଶ ବୁଲି ଆସିଛି । କେତେ ବଣ ଜଙ୍ଗଲ, ପାହାଡ଼, ପର୍ବତ, ଆଉ କେତେ ରକମର ଲୋକ, କେତେ ରକମର ଆଚାର ବ୍ୟବହାର

ଦେଖି ଆସିଛୁ ସେ ସବୁ ନାମ ହୁଏତ ତୁ ଜାଣି ନ ଥାଇ ପାରୁ । କେଉଁଠାରେ ଖାଇବା ପିଇବା ଛୁଆଁ ଛୁଇଁର ବିଗ୍ଭର ଅଛି ତ କେଉଁଠାରେ ଅବା ସେ ସବୁର ଆଭାସ ପର୍ଯ୍ୟନ୍ତ କେହି ଶୁଣି ନାହାନ୍ତି । ତେବେ ତ ମା'ଆ, ସେମାନେ ଚିରଦିନ ସେହିପରି ଅସଭ୍ୟ, ସେହିପରି ନୀଚ । କହି ହୁକାଟାରେ ଆଉ ଦୁଇଟା କଷ୍ଟଲ ଟାଣ ଦେଲେ । ଯେତେବେଳେ ଜାଣିଲେ ଯେ ହୁକାଟାରେ ଆଉ ତମାଖୁ ନାହିଁ । ସେତେବେଳେ ସେଇଟାକୁ କଣକୁ ଆଉଜାଇ ଦେଲେ ।

ଅଚଳା ଯେପରି ନୀରବରେ ବସିଥିଲା, ସେହିପରି ବସି ରହିଲା ।

ରାମବାବୁ ମଧ୍ୟ ନିଜେ କିଛି ସମୟ ସ୍ତବ୍ଧ ଭାବରେ ସିଧା ହୋଇ ବସି ରହି କହିଲେ—ଅସଲ କଥା କ'ଣ ଜାଣୁ ସୁରମା, ତୁମେମାନେ ସାହେବମାନଙ୍କ ନିକଟରେ ପାଠ ପଢ଼ିଛ । ସେମାନେ ଉନ୍ନତ, ସେମାନେ ଧନୀ, ଆଉ ସେମାନେ ହେଉଛନ୍ତି ରାଜା । ସେମାନଙ୍କ ଭିତରେ ଯଦି ପାଦ ଦୁଇଟା ଉପରକୁ କରି ହାତରେ ଚାଲିବାର ବ୍ୟବସ୍ଥା ଥାନ୍ତା ତ ତୁମେମାନେ ଠିକ୍ ସେହିପରି ଚାଲି ନ ଶିଖିଲେ ତୁମମାନଙ୍କର ଆଉ ଉନ୍ନତିର କୌଣସି ଭରସା ନଥାନ୍ତା ।

ଏ ସମସ୍ତ ଯୁକ୍ତି ଅଚଳା ଦୈନିକ ସମ୍ବାଦ ପତ୍ରରେ ଅନେକ ପଢ଼ିଛି । ତେଣୁ କୌଣସି କଥା ନକହି ସାମାନ୍ୟ ହସିଲା । ହସ ଟିକକ ବୃଦ୍ଧ ଯଦିଓ ଦେଖି ପାରିଲେ କିନ୍ତୁ ନ ଦେଖିଲା ଭଳି ଛଳନା କରି ନିଜର କଥାକୁ ପୁନରାବୃତ୍ତି କରି କହିଲେ ଶ୍ରୀଧାମ, ଶ୍ରୀକ୍ଷେତ୍ରକୁ ଯେତେବେଳେ ଗଲି ସେତେବେଳେ ଜଣା ଅଜଣା କେତେ ଲୋକଙ୍କ ସଙ୍ଗେ ମିଶିବାକୁ ହେଲା । ଛୁଆଁ ଅଛୁଆଁର ବିଗ୍ଭର ସେଠାରେ ନାହିଁ । ଭାବିବା କଥା କେବେ ମନକୁ ଆସେ ନା । କିନ୍ତୁ ଘୃଣା ଭିତରେ ଯଦି ଏ ଭାବର ଜନ୍ମ ହୋଇ ପାରିଥାନ୍ତା ତେବେ କ'ଣ ଏତେ ସହଜରେ ସେ ଭାବ ଏତେ ଜୋର ହୋଇ ରହିପାରି ଥାନ୍ତା ? ଏଇତ ମୁଁ କାହା ହାତରେ ଖାଏ ନାହିଁ କିନ୍ତୁ ବାଟଘାଟରେ ପଡ଼ିଥିବା ଦୀନ ଦୁଃଖୀଙ୍କୁ ମଧ୍ୟ କେବେ ମନେ ମନେ ଘୃଣା କରିଥିବାର ....

ଅଚଳା ବ୍ୟଗ୍ର, ବ୍ୟାକୁଳ କଣ୍ଠରେ ବାଧା ଦେଇ କହି ଉଠିଲା—ମୁଁ କ'ଣ ଆପଣଙ୍କୁ ଜାଣେ ନାହିଁ ବଡ଼ବାବା ? ଏତେ ଦୟା, ସଂସାରରେ ଆଉ କାହାଠାରେ କଣ ସଂଭବ ହୋଇପାରେ ?

—ଦୟା ନୁହେଁ ମା'ଆ, ଦୟା ନୁହେଁ, ଭଲ ପାଇବା । ସେମାନଙ୍କୁ ଯେ ମୁଁ ବେଶୀ ଭଲ ପାଏ । କିନ୍ତୁ ଅସଲ କଥା ଜାଣୁ ମା'ଆ, ଗୋଟାଏ ଜାତି ଅବା କଣ ? ଗୋଟାଏ ମଣିଷ ଅବା କ'ଣ ? ଧୀରେ ଧୀରେ ସେ ଯେତେବେଳେ ସ୍ୱାଧୀନ

ହୋଇଯାଏ ସେତେବେଳେ ସବୁଠାରୁ ତୁଚ୍ଛ ଜିନଷଟା ଉପରେ ସବୁ ଦୋଷ ଗୃପି ଦେଇ ସେ ସାନ୍ତ୍ୱନା ଲାଭକରେ । ମନେକରେ ଏହି ସହଜ ବାଧାଟିକକ ସମ୍ଭାଳି ନେଇ ସେ ଗ୍ରାତାଗ୍ରତ ବଡ଼ ହୋଇଯିବ । ଆମମାନଙ୍କର ଠିକ୍ ସେହିପରି ଭାବ; କିନ୍ତୁ ଯେଉଁଟା କଠିନ, ଯେଉଁଟାର ମୂଳରେ······

କଥାଟା ଶେଷ କରିବାକୁ ରାମବାବୁ ଆଉ ସମୟ ପାଇଲେ ନାହିଁ । ପିଣ୍ଡରେ ଜୋତାର ଶବ୍ଦ ଶୁଣି ମୁହଁ ଫେରାଇ ସୁରେଶକୁ ଦେଖିପାରି ଏକାବେଳକେ ପଗ୍ଚାରି ଉଠିଲେ, ଆଚ୍ଛା ସୁରେଶବାବୁ; ଆପଣ ତ ହିନ୍ଦୁ । ଆପଣ କ'ଣ ଜାତିଭେଦ ମାନନ୍ତି ?

ସୁରେଶ ଅତମତ ହୋଇଗଲା । ଏ ପୁଣି କି ପ୍ରଶ୍ନ ? ନିଶ୍ଚିତ ଭାବରେ ନଜାଣି ଗ୍ଲେବ୍ରାଲ୍ ଉପରେ ପାଦ ପଡ଼ିଗଲେ ଯେପରି ମୃତ୍ୟୁ ଅନିବାର୍ଯ୍ୟ ସେହିପରି ସେ ବର୍ତ୍ତମାନ ଯେଉଁ ଗ୍ଲେବ୍ରାଲ୍ ଉପରେ ପାଦ ରଖିଛି ସେଠାରେ ସତ୍ୟ ଓ ମିଥ୍ୟାର ପରୀକ୍ଷା ନିହାତି ଆବଶ୍ୟକ ହୋଇ ଉଠୁଛି । ତେଣୁ ସେ ଭୟରେ ପାଖକୁ ଆସି ଥରକ ପାଇଁ ଅଚଳା ମୁହଁକୁ ଗ୍ରହିଁ ଦେଇ କଥାଟାର ତାତ୍ପର୍ଯ୍ୟ ବୁଝିବାକୁ ଚେଷ୍ଟା କଲା । କିନ୍ତୁ ଯେତେବେଳେ ମୁହଁ ଚେହେରାରୁ କିଛି ଜାଣି ପାରିଲା ନାହିଁ । ସେତେବେଳେ ଟିକିଏ ଶୁଖିଲା ହସ ହସିଦେଇ ଦ୍ୱିଧା ବିଜଡ଼ିତ ସ୍ୱରରେ କହିଲା; ସେ କଥାତ ମୋଠାରୁ ଆପଣ ବେଶୀ ଜାଣନ୍ତି ।

ରାମବାବୁ କହିଲେ—ବେଶୀ ଜାଣେ ଏକଥା ମୁଁ ମାନି ନିଅନ୍ତି, କିନ୍ତୁ ଆପଣଙ୍କର ଗୃହିଣୀଟି ଯେ ମୋର ଚନ୍ଦ୍ରାଧାରାକୁ ଏକବାର ଆଗପଛ, ଓଲଟ ପାଲଟ କରି ଦେବାକୁ ଗ୍ରହୁଁଛି । କହୁଛି ଜାତିଭେଦ ଭଳି ଏତେ ବଡ଼ ଅନ୍ୟାୟ; ଏତେବଡ଼ ସର୍ବନାଶକୁ ସେ କୌଣସି ମତେ ସ୍ୱୀକାର କରିବାକୁ ନାରାଜ । ମ୍ଳେଚ୍ଛମାନଙ୍କ ଠାରୁ ଅନ୍ନ ଗ୍ରହଣ କରିବାରେ ତାର ଆପତ୍ତି ନାହିଁ ଏବଂ ଏହି ଶିକ୍ଷା ସେ ପିଲା ବେଳରୁ ତାର ବ୍ରାହ୍ମ ବାପାଠାରୁ ଶିଖିଛି । ସୁତରାଂ ଏହା ହାତରୁ ଖାଇ ଆଜି ମୋର ଜାତି ଯାଇଛି କି ନାହିଁ ଏବଂ ପ୍ରାୟଶ୍ଚିତ୍ତ କରିବା ଦରକାର ପଡ଼ୁଛି କି ନାହିଁ ଏତେ ସମୟ ଧରି ସେହି ଆଲୋଚନା ହିଁ ଆମ ଦୁହିଁଙ୍କ ଭିତରେ ଗ୍ଲୁଲିଥିଲା । ଆପଣ କଣ କହୁଛନ୍ତି ଟିକିଏ କହନ୍ତୁ ନା ?

ସୁରେଶ ନିର୍ବାକ ହୋଇ ଠିଆ ହୋଇ ରହିଲା । ଅଚଳା ମନର ଅବସ୍ଥା ବିଷୟରେ ସେ ଭଲ କରି ଜାଣେ । ସେହି ମନ ଭିତରେ ବିଦ୍ରୋହର ଅଗ୍ନି ଯେ ଅହରହ ଜଳି ଉଠୁଛି ଏ ଖବର ମଧ୍ୟ ତାହା ନିକଟରେ ନୂଆ ନୁହେଁ । କିନ୍ତୁ ସେହି ନିଆଁ ଯେ ହଠାତ୍ କେଉଁଥିପାଇଁ ଏବଂ କେତେଦୂର ପର୍ଯ୍ୟନ୍ତ ପରିବ୍ୟାପ୍ତ ହୋଇ

ପଡ଼ୁଛୁ ତାହା ଅନୁମାନ କରି ନପାରି ତାର ମୁହଁ ଆଶଙ୍କା ଓ ଉଦବେଗରେ ଶୁଖି ଆସିଲା । ସଙ୍ଗେ ସଙ୍ଗେ ଆତ୍ମସ୍ଥ ହୋଇ ପଡ଼ି ପୂର୍ବଭଳି ସେ ଆହୁରି ଟିକିଏ ହସିବାର ଚେଷ୍ଟା କଲା । କିନ୍ତୁ ଏଥର ତାର ଏହି ଚେଷ୍ଟାଟା କେବଳ ହସକୁ ଆଚ୍ଛନ୍ନ କରି ମୁହଁଟାକୁ ବିକୃତ କରିଦେଲା ସିନା !

ସୁରେଶ ଉଠିପଡ଼ି କହିଲା—ସେ ଆପଣଙ୍କୁ ସେଇମିତି ଅର୍ଥରେ କହୁଛୁ ।

ରାମବାବୁ ଗମ୍ଭୀର ହୋଇ ମୁଣ୍ଡ ହଲାଇ କହିଲେ—ଉଚିତ୍ ନ ହୋଇଥିଲେ ଏକଥା ମୋର ଚିନ୍ତା କରିବା ପାଇଁ ଆପତ୍ତି ନଥିଲା । କିନ୍ତୁ ସ୍ୱାମୀର କଲ୍ୟାଣ ପାଇଁ ଯେତେବେଳେ ହିନ୍ଦୁ ଘରର ବୋହୂ ତାର କର୍ତ୍ତବ୍ୟ ପାଳନ କରିବାକୁ ଇଚ୍ଛାକଲା ନାହିଁ, ତୁଳସୀ ଦେବା ଦିନଟାରେ ମଧ୍ୟ ଉପବାସ କଲା ନାହିଁ, ଭଲ, ଏ ଯଦି ଅର୍ଥ ହୁଏ, ତେବେ ମୋର କିଛି କହିବାର ନାହିଁ । ଆଚ୍ଛା ସୁରେଶ ବାବୁ ଆପଣଙ୍କର ବିବାହ ହିନ୍ଦୁ ମତରେ ହୋଇଥିଲା ତ ।

ସୁରେଶ କହିଲା— ହଁ,

ବୃଦ୍ଧ ଅଳ୍ପ ଅଳ୍ପ ହସିବାକୁ ଲାଗିଲେ । କହିଲେ, ତାହା ମୁଁ ଜାଣେ, ଅଚଳା ଆଡ଼କୁ ଚାହିଁ କହିଲେ, ଯଦିଓ ତୋତେ ମୋର ଅନେକ କଥା କହିବାର ଅଛି ମାଆ, କିନ୍ତୁ ତୋର ବାପ ବ୍ରାହ୍ମ ହୋଇଥିବାରୁ ମୋର ଆଉ କୌଣସି ଦୁଃଖ ନାହିଁ । ଏପରି ଅନେକ ବ୍ରାହ୍ମଙ୍କୁ ମୁଁ ଜାଣେ, ଯେଉଁମାନେ ବ୍ରାହ୍ମ ସମାଜ ଭିତରକୁ ଯାଇ ଆଖି ବୁଜି ଦିଅନ୍ତି । ଅଳ୍ପ ସ୍ୱଳ୍ପ ଅନାଚାର ମଧ୍ୟ କରନ୍ତି । କିମ୍ବା ଝିଅର ବିବାହ ବେଳ ଉପସ୍ଥିତ ହେଲେ କୌଣସି କଥାକୁ ବିଚାର ମଧ୍ୟ କରନ୍ତି ନାହିଁ । ଯାହା ହେଉ ଆଜି ମୋର ଗୋଟାଏ ବଡ଼ ଚିନ୍ତା ଦୂର ହେଲା—

ବୃଦ୍ଧଙ୍କ ଅପେକ୍ଷା ବେଶୀ ଚିନ୍ତା କିନ୍ତୁ ସୁରେଶର ଦୂର ହୋଇଗଲା । ସେ ତତ୍‌କ୍ଷଣାତ୍ ତାଙ୍କ ସ୍ୱର ସହିତ ସ୍ୱର ମିଳାଇ କହି ଉଠିଲା—ଆପଣ ଠିକ୍ କହୁଛନ୍ତି ରାମବାବୁ । ଆଜିକାଲି ସେପରି ଦଳର ଲୋକ ଗୁଡ଼ାକଙ୍କର ସଂଖ୍ୟା ଅଧିକ । ସେମାନେ······

ହଠାତ୍ ଉଭୟେ ଚମକି ଉଠିଲେ । କଥା ମଝିରେ ଅଚଳାର ତୀକ୍ଷ୍ଣ କଣ୍ଠସ୍ୱର ଗର୍ଜ୍ଜନ କରି ଉଠିଲା । ସେ ସୁରେଶର ମୁହଁ ଉପରେ ଦୁଇ ଆଖିର ତୀବ୍ର ଦୃଷ୍ଟି ନିକ୍ଷେପ କରି କହିଲା—ଏତେ ଅପରାଧ କରି ସାରିବା ପରେ ପୁଣି ଅପରାଧ ବଢ଼ାଇବା ପାଇଁ ତୁମକୁ ଲଜ୍ଜ୍ୟା ଲାଗେ ନାହିଁ ? ତାହା ପୁଣି ମୋ ଆଗରେ ? ତୁମେ ଜାଣ, ଏ ସବୁ ମିଥ୍ୟା ? ବାବା ମୋର ଠକ ନୁହନ୍ତି । ସେ

ମନରେ ଜ୍ଞାନରେ ଯଥାର୍ଥରେ ବ୍ରାହ୍ମ । ତୁମେ ଜାଣ ସେ······କହି କହି ସେ ଚୌକି ଛାଡ଼ି ଠିଆ ହୋଇ ପଡ଼ିଲା ।

ସୁରେଶ ପ୍ରଥମେ ଟିକିଏ ଇତସ୍ତତଃ ହେଲା । କିନ୍ତୁ ମୁହଁ ଟେକିଲାଇ ବୃଦ୍ଧଙ୍କର ବିସ୍ମୟ ବିସ୍ଫାରିତ ଆଖିକୁ ଚାହିଁଦେଇ ହଠାତ୍ ସେ ଯେପରି କ୍ରୋଧରେ ଜଳି ଉଠିଲା । କହିଲା—ମିଛ କଥା କଣ ? ତୁମ ବାବା କଣ ହିନ୍ଦୁ ଘରେ ତାଙ୍କର ଝିଅକୁ ବିବାହ ଦେବାକୁ ରାଜି ନ ଥିଲେ ? ତୁମେ ନିଜେ ପ୍ରକୃତ ସତ କଥାଟା କହିଦିଅ ।

ଅଚଳା ଆଉ ପ୍ରତ୍ୟୁତ୍ତର ଦେଲାନାହିଁ । କ୍ଷଣକାଳ ଠିଆହୋଇ ନିଜକୁ ସମ୍ଭାଳି ନେଲା । ତାପରେ ଧୀରେ ଧୀରେ କହିଲା, ସେ କଥା ଆଜି ମୋତେ ପଚାରୁଛ କାହିଁକି ? ତାର କାରଣ କ'ଣ ସଂସାରରେ ସମସ୍ତଙ୍କ ଅପେକ୍ଷା ତୁମେ ବେଶୀ ଜାଣନାହିଁ ? ତୁମେ ଠିକ୍ ଜାଣ, ମୁଁ କ'ଣ, ମୋ ବାବା କ'ଣ । କିନ୍ତୁ ଏ ବିଷୟ ନେଇ ତୁମ ସହିତ ବଚସା କରିବାକୁ ଆମର ଯେ ପ୍ରବୃତ୍ତି ହୁଏ ନାହିଁ ତାହାନୁହେଁ କିନ୍ତୁ ସେପରି ଆଲୋଚନା କରିବାକୁ ଆମେମାନେ ଲଜ୍ଜ୍ୟା ମଧ୍ୟ ଅନୁଭବ କରୁଥିଲୁ । ତୁମର ଯାହା ଇଚ୍ଛା ତାହା ବଡ଼ ବାବାଙ୍କ ଆଗରେ ବସିନେଇ ଚୁପ୍‌ନେଇ କହିପାର । ମୁଁ କିନ୍ତୁ ଶୁଣିବାକୁ ଚାହେଁନାହିଁ ହିଁ କହିବା ଆରମ୍ଭ କର........କହି ସେ ତରତର ହୋଇ ଚାଲିଯାଇ ପାଖ ଘରେ ପଶିଗଲା ।

ସେ ଚାଲିଗଲା ସତ କିନ୍ତୁ କିଛିକ୍ଷଣ ପାଇଁ ଏହି ଦୁଇଜଣଙ୍କୁ ପାଷାଣ ପରି ସ୍ଥାଣୁ କରି ଦେଇଗଲା ।

ବୃଦ୍ଧ ବୋଧହୁଏ ତାଙ୍କର ମନର ଭୁଲ ପାଇଁ ଆଉଥରେ ତାଙ୍କର ହୁକାଟା ପାଇଁ ହାତ ବଢ଼ାଇଲେ । କିନ୍ତୁ ହଠାତ୍ ହାତଟା ଟାଣି ଏଣୁତେଣୁ ହୋଇ ଗଳାଟା ସାମାନ୍ୟ ପରିଷ୍କାର କରିନେଇ କହିଲେ—ଆଜିକାଲି ତୁମଦେହ କିପରି ଅଛି ସୁରେଶବାବୁ ?

ସୁରେଶ ଅନ୍ୟମନସ୍କ ହୋଇ ପଡ଼ିଥିଲା, ଚମକିପଡି କହି ଉଠିଲା— ଆଜ୍ଞା, ଭଲ ଅଛି । ହଠାତ୍ ବୋଧହୁଏ ସତ କଥାଟା ମନେ ପଡ଼ିଲା, କହିଲା— ଛାତିରେ ଏଇ ସ୍ଥାନରେ ଟିକିଏ ବ୍ୟଥା ଅଛି । କେଜାଣି କାଲିଠାରୁ ଆଉ ଅଧିକ ହେଲାଣି କ'ଣ······

ରାମବାବୁ କହିଲେ—ଦେଖନ୍ତୁ ସୁରେଶବାବୁ, ଏଇ ଅଣ୍ଡାରେ ଏତେ ରାତି, ପର୍ଯ୍ୟନ୍ତ କ'ଣ ଆପଣଙ୍କର ବାହାରେ ବୁଲାବୁଲି କରିବାଟା ଉଚିତ୍ ହେଉଛି ?

ଅଯଥାରେ ବୁଲବୁଲି କରୁ ନଥିଲି ଆଜ୍ଞା, ସେହି ଘରଟା ପାଇଁ ଆଜି ଦୁଇହଜାର ଟଙ୍କା ବଇନା ଦେଇ ଆସିଲି ।

ରାମବାବୁ ବିସ୍ମୟ ପ୍ରକାଶ କରି ଶେଷରେ କହିଲେ—ନଦୀ କୂଳରେ ଥିବା ଘରଟି ଭଲ । କିନ୍ତୁ ମୋତେ ଯଦି ପଚାରିଥାନ୍ତ ତେବେ ମୁଁ ନିଶ୍ଚୟ ମନା କରିଥାନ୍ତି । ସେଦିନ କଥାବାର୍ତ୍ତା ଭିତରେ କପରି ବୁଝି ପାରିଥିଲି ସେଠାରେ ରହିବାକୁ ସୁରମା ନିତାନ୍ତ ଅନିଚ୍ଛୁକ । ହସିଦେଇ ପୁଣି ପ୍ରଶ୍ନ କଲେ—ତାର ମତ ଏ ବିଷୟରେ ନେଇଛ ତ ? ନା କେବଳ ନିଜ ଇଚ୍ଛା ଅନୁସାରେ କିଣି ପକାଇଲ ?

ସୁରେଶ ଏ ପ୍ରଶ୍ନର ଉତ୍ତର ନ ଦେଇ କେବଳ କହିଲି—ଅନିଚ୍ଛାର ବିଶେଷ କୌଣସି କାରଣ ଦେଖି ପାରୁନାହିଁ । ତା'ଛଡ଼ା ଚଳାଚଳ ପାଇଁ କିଛି ଆସବାବ ପତ୍ର କଲିକତାରୁ ଆଣିବା ପାଇଁ ବ୍ୟବସ୍ଥା କରିଛି । ସମ୍ଭବତଃ କାଲି ପଅରିଦିନ ଭିତରେ ଆସି ପହଞ୍ଚିଯିବ ।

ରାମବାବୁ କିଛିକ୍ଷଣ ସ୍ତବ୍ଧ ଭାବରେ ଠିଆହୋଇ ହଠାତ୍ କ'ଣ ଭାବି ଡାକି ଉଠିଲେ—ମାଆ ସୁରମା !

ଅଚଳା କୌଣସି ଉତ୍ତର ଦେଲାନାହିଁ । କିନ୍ତୁ ଘର ଭିତରୁ ନୀରବରେ ବାହାରକୁ ଚାଲି ଆସି ନିଜେ ବସିଥିବା ଚୌକିରେ ଆସ୍ତେ ଆସ୍ତେ ବସିପଡ଼ିଲା ।

ବୃଦ୍ଧ କୋମଳ କଣ୍ଠରେ କହିଲେ—ମାଆ, ତୋର ସ୍ୱାମୀ ଯେ ଆମ ଅଞ୍ଚଳରେ ଗୋଟାଏ ବିରାଟ ଘର କିଣି ସାରିଲେଣି । ଏଣିକି ଏଇ ବୁଢ଼ା ବାପାଟାକୁ ଛାଡ଼ି ଏଠାରୁ ଆଉ ପଳାଇ ଯାଇ ପାରିବୁ ନାହିଁ ମାଆ ।

ଅଚଳା ନୀରବ ରହିଲା ।

ବୃଦ୍ଧ ପୁଣି କହିଲେ—କେବଳ ଘର କିମ୍ବା ଆସବାବ ପତ୍ର ନୁହେଁ ମୁଁ ଜାଣେ ଗାଡ଼ି ଘୋଡ଼ା ମଧ୍ୟ ଆସୁଛି । ତାହା ବ୍ୟତୀତ ଏକଥା ମଧ୍ୟ ଭଲକରି ଜାଣେ ଯେ ଏସବୁ ଆୟୋଜନ କେବଳ ତୋରି ପାଇଁ । ଏତିକି କହି ସେ ହସି ହସି ଥରକ ପାଇଁ ଅଚଳା ଓ ସୁରେଶ ମୁହଁକୁ ଚାହିଁ ନେଲେ । କିନ୍ତୁ ଅଚଳାର ସେହି ଗମ୍ଭୀର ବିଷଣ୍ଣ ମୁହଁରେ ଆନନ୍ଦର ଏତେ ଟିକିଏ ଚିହ୍ନ ସୁଦ୍ଧା ପ୍ରକାଶ ପାଇଲା ନାହିଁ । ଏହି ଅସ୍ପଷ୍ଟ ଆଲୁଅରେ ହୁଏତ ଅନ୍ୟ କେହି ଦେଖିଲେ ଦେଖି ନପାରନ୍ତେ କିନ୍ତୁ ବୃଦ୍ଧଙ୍କର ତୀକ୍ଷ୍ଣ ଦୃଷ୍ଟିରୁ ତାହା ବାଦ୍ ଯାଇପାରିଲା ନାହିଁ । ତଥାପି ସେ ପ୍ରଶ୍ନ କଲେ—କିନ୍ତୁ ମାଆ ତୋର ମତଟା କହିଲୁ······

ଏଥର ଅଚଳାର ପାଟି ଫିଟିଲା । କହିଲା—ମୋର ମତର ତ ଆବଶ୍ୟକ ନାହିଁ ବଡ଼ବାବା ।

ବୃଦ୍ଧ ସଙ୍ଗେ ସଙ୍ଗେ କହି ଉଠିଲେ—ସେ କ'ଣ ଗୋଟାଏ କଥା ମାଆ ? ତୁ ତ ସବୁ । ତୋର ଇଚ୍ଛା ଅନୁସାରେ ତ······

ଅଚଳା ଉଠିପଡ଼ି ଠିଆ ହୋଇ କହିଲା—ନା, ବଡ଼ବାବା, ନା, ମୋର ଏଥିରେ କିଛି ଯାଏଆସେ ନାହିଁ । ଆପଣ ସବୁ କଥା ବୁଝିବେ ନାହିଁ କି ମୁଁ ଆପଣଙ୍କୁ ସବୁକଥା ବୁଝାଇ ପାରିବ ନାହିଁ । ମୋ ସହିତ ଆଉ ଯଦି କିଛି କଥା ନଥାଏ ତେବେ ମୁଁ ଯାଉଛି······

ବୃଦ୍ଧଙ୍କ ମୁହଁରୁ ଆଉ କଥା ବାହାରିଲା ନାହିଁ ଏବଂ ବାହାରିବାର ଆବଶ୍ୟକତା ମଧ୍ୟ ନଥିଲା । ହଠାତ୍ ହିନ୍ଦୁସ୍ଥାନୀ ଚାକରାଣୀ ଗୋଟାଏ କରେଇରେ ନିଆଁ ଆଣି ପହଞ୍ଚିବାକ୍ଷଣି ସମସ୍ତଙ୍କର ଦୃଷ୍ଟି ତାହାରି ଉପରେ ଲାଗି ରହିଲା ରାମବାବୁ ଆଶ୍ଚର୍ଯ୍ୟ ହୋଇ ପଚାରିବାକୁ ଯାଉଥିଲେ, ଏହି ସମୟରେ ସୁରେଶ ଅପ୍ରତିଭ ହୋଇ କହି ଉଠିଲା—ମୁଁ ବେହେରାକୁ ଆଣିବାକୁ କହିଥିଲି କିନ୍ତୁ ସେ ଆଉ ଜଣକୁ ହୁକୁମ ମଧ୍ୟ ଦେଇ ଦେଇଛି ତ । ମୋର ପୀଡ଼ା ପାଇଁ ଟିକିଏ······

ନିଆଁର ପ୍ରୟୋଜନ ପାଇଁ ଆଉ ବିଶଦ ବ୍ୟାଖ୍ୟା କରିବାକୁ ପଡ଼ିଲା ନାହିଁ । କିନ୍ତୁ ସେହି ନିଆଁର ଉପଯୁକ୍ତ ସଦବ୍ୟବହାର କରାଇବା ପାଇଁ ତ ଆଉ ଜଣଙ୍କର ଆବଶ୍ୟକତା ଯଥେଷ୍ଟ ଅଛି । ରାମବାବୁ ଅଚଳାର ମୁହଁକୁ ଚାହିଁଲେ । କିନ୍ତୁ ସେ ଦଣ୍ଡକ ଭିତରେ ମୁହଁ ବୁଲାଇ ନେଇ ଶାନ୍ତ କଣ୍ଠରେ କହିଲା; ମୋତେ ବଡ଼ ନିଦ ଲାଗୁଛି ବଡ଼ବାବା, ମୁଁ ଯାଉଛି । ଏତିକ କହି ଉତ୍ତରକୁ ଅପେକ୍ଷା ନକରି ଚାଲି-ଗଲା ଏବଂ ପରକ୍ଷଣରେ ତା'ର ଶୋଇବା ଘରର କବାଟ ବନ୍ଦ ହେବାର ଶବ୍ଦ ରାମବାବୁ ଓ ସୁରେଶ ଶୁଣି ପାରିଲେ ।

ବୃଦ୍ଧ ଧୀରେ ଧୀରେ ଚୌକି ଛାଡ଼ି ଉଠି ଠିଆ ହେଲେ ଏବଂ ଚାକରାଣୀ ହାତରୁ ନିଆଁ ଉହ୍ନେଇଟା ଧରି କହିଲେ ଆଚ୍ଛା, ତାହାହେଲେ ଚାଲନ୍ତୁ ସୁରେଶ ବାବୁ !

: ଆପଣ ?

: ହଁ ମୁଁ ନିଜେ । ଏଇ କାମ ଜୀବନରେ ନୂଆ ନୁହେଁ । ଅନେକ ଥର କରିଛି । ଏହାପରେ ଏକ ପ୍ରକାର ଜୋର କରି ସୁରେଶକୁ ତାର ଘରକୁ ଟାଣି

ନେଇ ଉଦ୍ଭେଇଟାକୁ ମେଜ ଉପରେ ରଖିଦେଇ ତାର ଶୁଖିଲା ମଳିନ ମୁହଁକୁ ଏକ ଦୃଷ୍ଟିରେ ଗ୍ରହିଁରହି ଆର୍ଦ୍ର କଣ୍ଠରେ କହି ଉଠିଲେ, ନା, ସୁରେଶ ବାବୁ ନା, କୌଣସି ମତେ ନୁହେଁ । ମୁଁ ନିଷ୍ଟୟ ଜାଣୁଛୁ, ତୁମ ଦୁହିଁଙ୍କ ଭିତରେ କିଛି ଗୋଟାଏ ହୋଇଚ୍ଛି । ମୁଁ ଆପଣଙ୍କର ଆପଣାର···କିନ୍ତୁ ଥାଉ ସେ କଥା ଯଦି ପ୍ରୟୋଜନ ମନେ କରନ୍ତ ତ ବୃତ୍ତାନ୍ତ ଆଉ ଥରେ···କହି ସେ ହଠାତ୍ ନୀରବ ହୋଇଗଲେ ।

ସୁରେଶ ପଦଟିଏ କଥା ମଧ୍ୟ କହି ପାରିଲା ନାହିଁ । କିନ୍ତୁ ଶିଶୁ ଭଳି ପ୍ରଥମେ ତାର ଓଠ ବାରମ୍ବାର କମ୍ପିବାକୁ ଲାଗିଲା । ତା ପରେ ଆଖିର ଲୁହକୁ ଗୋପନ କରିବା ପାଇଁ ମୁହଁକୁ ସେ ଅନ୍ୟ ଦିଗକୁ ବୁଲାଇ ନେଲା ।

କୋଚ ଉପରେ ସୁରେଶ ଆଖିବୁଜି ଶୋଇଥିଲା ଏବଂ ନିକଟରେ ଖଣ୍ଡିଏ ଚଉକି ଟାଣି ନେଇ ବୃଦ୍ଧ ରାମବାବୁ ତାର ପୀଡ଼ିତ ବକ୍ଷରେ ନିଆଁର ସେକ ଦେଉଥିଲେ; ଏହିପରି ସମୟରେ ଦ୍ୱାର ଖୋଲିବା ଶବ୍ଦରେ ଗ୍ରହିଁ ଦେଖିଲେ ଅଚଳା ଘର ଭିତରକୁ ପ୍ରବେଶ କରୁଛି । ସେ ବିନା ଭୂମିକାରେ କହିଲା—ରାତି ଅନେକ ହେଲାଣି ବଡ଼ବାବା, ଆପଣ ଶୋଇବେ ଯାଆନ୍ତୁ ।

: ସେଥିପାଇଁ ତ ଅପେକ୍ଷା କରିଛି ମାଆ, ବୃଦ୍ଧ ଚଟ୍ କରି ଉଠି ପଡ଼ିଲେ ଏବଂ ସୁରେଶକୁ ଲକ୍ଷ୍ୟ କରି କହିଲେ, ଏତେ ସମୟ ଧରି ଦୁଇଜଣ କେବଳ କଷ୍ଟ ଭୋଗ କଲ ସିନା ! ଏସବୁ କାମ କ'ଣ ମୋ ଦ୍ୱାରା କେବେ ସମ୍ଭବ ? ଅଚଳା ଆଡ଼କୁ ଚୌକିଟା ସାମାନ୍ୟ ପେଲି ଦେଇ କହିଲେ, ଯାହା କାମ ତାକୁ ସାଜେ ମାଆ, ଏଇ ନେ, ବସ । ମୁଁ ଟିକିଏ ଆଶ୍ୱସ୍ତ ହୁଏ । କହି ବୃଦ୍ଧ ବିପୁଳ ଶାନ୍ତିରେ ଗୋଟାଏ ହାଇ ମାରି ହୁକାଟା ଧରି ଘରୁ ବାହାରି ଯାଇ କବାଟ ଧୀରେ ଧୀରେ ବନ୍ଦ କରୁ କରୁ ହସି ହସି କହିଲେ— ନିଦରେ ଢୁଳେଇ ପଡ଼ି ଯେପରି ଗୋଡ଼ କି ହାତ ପୋଡ଼ି ନ ବସୁ ମାଆ ? କ'ଣ କହୁଛନ୍ତି ସୁରେଶ ବାବୁ ?

ସୁରେଶ କୌଣସି କଥା କହିଲା ନାହିଁ । କେବଳ ନୀମିଳିତ ଆଖିରେ ହାତ ଦୁଇଟା ଯୋଡ଼ି ନମସ୍କାର ଜଣାଇଲା ।

ଅଚଳା ବୃଦ୍ଧଙ୍କର ପରିତ୍ୟକ୍ତ ଆସନଟି ଅଧିକାର କରି ବସିଲା ଏବଂ ସେକ ଦେବାପାଇଁ ଗାମୁଛାଟାକୁ ନିଆଁକୁ ଦେଖାଇ ଦେଖାଇ ଧୀରେ ଧୀରେ ପଚାରିଲା— ପୁଣି ବ୍ୟଥା ହେଲା କାହିଁକି ? କେଉଁଠାରେ କଷ୍ଟ ଅନୁଭବ କରୁଛନ୍ତି ?

ସୁରେଶ ଆଖି ଖୋଲିଲା ନାହିଁ । ଉତ୍ତର ମଧ୍ୟ ଦେଲା ନାହିଁ । କେବଳ ହାତ ଟେକି ଛାତିର ବାମ ପଟଟାକୁ ଦେଖାଇ ଦେଲା । ପୁଣି ସବୁ ନିସ୍ତବ୍ଧ । ଚୁପ୍ ଚାପ୍ । ମନେହେଲା ବୋଧହୁଏ ଏହି ନିର୍ବାକ ଅଭିନୟ ରାତି ଶେଷ ପର୍ଯ୍ୟନ୍ତ ଚାଲିବ । କିନ୍ତୁ ସେପରି ଘଟିଲା ନାହିଁ । ହଠାତ୍ ସେକ ଦେଉଥିବା ବେଳେ ସୁରେଶ ଅଚଳାର ହାତକୁ ଚାପି ଧରିଲା । ଅଚଳା ମୁହଁରେ କିନ୍ତୁ କୌଣସି ଉଦ୍‌ବେଗ ପ୍ରକାଶ ପାଇଲା ନାହିଁ । ସେ ଯେପରି ଆଗରୁ ଏହା ପ୍ରତ୍ୟାଶା କରିଥିଲା । କେବଳ କହିଲା—ଛାଡ଼, ଆଉ ଟିକିଏ ସେକ ଦିଏ ।

ସୁରେଶ ହାତ ଛାଡ଼ି ଦେଲା । କିନ୍ତୁ ଆଖି ପଲକ ମାତ୍ରେ ଉଠିପଡ଼ି ତାର ଦୁଇ ବାହୁକୁ ବଢ଼ାଇ ଅଚଳାକୁ ଟାଣି ଆଣି ନିଜ ଛାତିରେ ଜୋରରେ ଚାପି ଧରି ଅଜସ୍ର ଚୁମ୍ବନରେ ତାହାକୁ ଆଚ୍ଛନ୍ନ କରି ଅଭିଭୂତ ହୋଇ ପଡ଼ିଲା । ଏଇ କିଛି ସମୟ ପୂର୍ବରୁ ଯେପରି ମନେ ହୋଇଥିଲା, ଏହି ଆବେଗ ଉଚ୍ଛ୍ୱାସ ସ୍ୱାନ ନାଟକର ପରିସମାପ୍ତି. ହୁଏତ ଏପରି ମୌନ ଅବତାର ଭିତରେ ହିଁ ଘଟିବ କିନ୍ତୁ ନିମିଷକ ଭିତରେ ମନେ ହେଲା ଏହି ଉନ୍ମତ୍ତ ନିର୍ଲ୍ଲଜତାର ବୋଧହୁଏ ସୀମା ନାହିଁ, ଶେଷ ନାହିଁ, ସର୍ବଦିଗ, ସର୍ବକାଳ ପରିବ୍ୟାପ୍ତ ଏହି ମତ୍ତତା ଚିରଦିନ ମନେହୁଏ ଯେପରି ଅନନ୍ତ ଏବଂ ଅକ୍ଷୟ ହୋଇ ରହିଯିବ ।

ଅଚଳା ବାଧା ଦେଲିନାହିଁ । ମୁହଁ ଫିଟାଇ ମଧ୍ୟ କିଛି କହିଲା ନାହିଁ । ମନେହେଲା ଯେପରି ଏଥିପାଇଁ ସେ ନିଜକୁ ପ୍ରସ୍ତୁତ କରି ଆସିଥିଲା । କେବଳ ତାହାର ଶାନ୍ତ ମୁହଁଟି ଯେପରି ପଥର ଭଳି କଠିନ ଓ ଶୀତଳ ହୋଇଗଲା । ସୁରେଶର ଚୈତନ୍ୟ ନଥିଲା, ବୋଧହୁଏ ସୃଷ୍ଟିର କଠିନତମ ତମିସ୍ରାରେ ତାର ଦୁଇଟି ଚକ୍ଷୁ ସମ୍ପୂର୍ଣ୍ଣଭାବରେ ଅନ୍ଧ ହୋଇ ଯାଇଥିଲା, ନଚେତ୍ ଏ ମୁଖ ଚୁମ୍ବନ କରିବାର ଲଜ୍ଜ୍ୟା ଓ ଅପମାନ ଆଜି ତା ନିକଟରେ ଧରା ପଡ଼ି ଧରା ପଡ଼ିଲା ନାହିଁ ସତ; କିନ୍ତୁ ଯେତେବେଳେ ଏହି ଉନ୍ମାଦନା ଶାନ୍ତ ହୋଇଆସିଲା, ସେତେବେଳେ ଅଚଳା ଧୀରେ ଧୀରେ ନିଜକୁ ମୁକ୍ତ କରିନେଇ, ଆପଣାର ଜାଗାରେ ଫେରି ଆସି ବସିପଡ଼ିଲା ।

ଆଉ କିଛି ସମୟ ଦୁଇଜଣ ଚୁପ ହୋଇ ବସିରହିଲେ ।

ହଠାତ୍ ଗୋଟାଏ ଦୀର୍ଘନିଃଶ୍ୱାସ ଛାଡ଼ି ସୁରେଶ କହି ଉଠିଲା—ଏଇପରି ଭାବରେ ଆଉ କେତେଦିନ ଆମେ କଟାଇବା ? କହି ଉତ୍ତରକୁ ଅପେକ୍ଷା ନକରି ପୁଣି କହିବାକୁ ଲାଗିଲା, ତୁମର କ'ଣ କଷ୍ଟ ମୁଁ ତାହା ଜାଣେ । କିନ୍ତୁ ମୋର ଦୁଃଖଟା ତ ତୁମର ଅରିକ ପାଇଁ ଭାବି ଦେଖିବା ଉଚିତ୍ । ତୁମପାଇଁ ମୁଁ ଯେ ସବୁଦିନ ପାଇଁ ସରିଗଲି······

ଏ ପ୍ରଶ୍ନର ଉତ୍ତର ନ ଦେଇ ଅଚଳା ପଚାରିଲା—ତୁମେ କ'ଣ ଏଠାରେ ଘର କିଣିଛ ?

ସୁରେଶ ଅତ୍ୟନ୍ତ ଆଗ୍ରହରେ କହି ଉଠିଲା—ସେ'ତ ତୁମରି ପାଇଁ ଅଚଳା ।

ଅଚଳା କୌଣସି ପ୍ରତ୍ୟୁତ୍ତର ନଦେଇ ପୁନଶ୍ଚ ପ୍ରଶ୍ନକଲା—ଆସବାବ ପତ୍ର ; ଗାଡ଼ି ଘୋଡ଼ା ସେସବୁ ମଧ୍ୟ କିଣିବାକୁ ଲୋକ ପଠାଇଛ ?

ସୁରେଶ ସେହିପରି ଉତ୍ତର ଦେଲା—କିନ୍ତୁ ଏ ସବୁତ ତୁମରିପାଇଁ ।

ଅଚଳା ନୀରବ ହୋଇ ରହିଲା । ମନେ ମନେ ଭାବିବାକୁ ଲାଗିଲା ଏସମସ୍ତ ଜିନିଷରେ ତାର ଅବା କି ପ୍ରୟୋଜନ ? ଏ ସମସ୍ତ ଯେ ସ୍ୱହେଁ କି ନାହିଁ, ଏ ଲୋକକୁ ପଚାରିବା ଅର୍ଥ ନିଜକୁ ବିଦ୍ରୁପ କରିବା ସଙ୍ଗେ ସମାନ । ସେଥିପାଇଁ ଏ ସମ୍ବନ୍ଧରେ କୌଣସି କଥା ନକହି ସେ ନୀରବ ରହିଲା । କିଛିସମୟ ପରେ ପଚାରିଲା, ରାମବାବୁଙ୍କ ନିକଟରେ ତୁମେ କ'ଣ ମୋ ବାବାଙ୍କ ନାମ ପ୍ରକାଶ କରିଛ ? ଘର କେଉଁଠାରେ କହିଛ ?

ସୁରେଶ କହିଲା—ନା ।

: ଆଉ କ'ଣ ସେକି ଦେବାର ଦରକାର ଅଛି ?

: ନା ।

ତାହାହେଲେ ବର୍ତ୍ତମାନ ମୁଁ ଯାଉଛି । ମୋତେ ବଡ଼ ନିଦ ମାଡୁଛି; କହି ଅଚଳା ଚୌକିରୁ ଉଠିପଡ଼ି ଠିଆହେଲା ଏବଂ ନିଆଁ ଉହ୍ନେଇଟା ଘୁଞ୍ଚାଇରଖି ଯିବାବେଳେ ସୁରେଶ ଧଡ଼ ପଡ଼ ହୋଇ ଉଠିପଡ଼ି କହିଲା—ଆଜି ଆଉ ଗୋଟିଏ କଥା କହିଯାଅ ଅଚଳା, ତୁମେ କ'ଣ ସତରେ ଅନ୍ୟ କେଉଁ ସ୍ଥାନକୁ ଯିବାକୁ ଇଚ୍ଛା କର ? ସତ କୁହ ?

ଅଚଳା କହିଲା—କେଉଁଠାକୁ ?

ସୁରେଶ କହିଲା—ଯେଉଁଠାରେ ଆମକୁ କେହି ଚହ୍ନନ୍ତି ନାହିଁ, କେହି ଜାଣନ୍ତି ନାହିଁ, ସେହିପରି କୌଣସି ଦେଶକୁ। ସେ ଦେଶ ଯେତେ······

ଆଗ୍ରହରେ, ଆବେଗରେ, ସୁରେଶର କଣ୍ଠସ୍ୱର କମ୍ପିବାକୁ ଲାଗିଲା।

ଅଚଳା ତାହା ଲକ୍ଷ୍ୟ କଲା। କିନ୍ତୁ ନିଜେ ଯଥାସାଧ୍ୟ ସ୍ୱାଭାବିକ ଓ ସରଳ ଗଳାରେ ଆସ୍ତେ ଆସ୍ତେ ଉତ୍ତର ଦେଲା—ଏ ଦେଶରେ ମଧ୍ୟ ଆମକୁ କେହି ଚହ୍ନନ୍ତି ନାହିଁ; କେହି ଜାଣନ୍ତି ନାହିଁ।

ସୁରେଶ ଉତ୍ସାହିତ ହୋଇ କହି ପକାଇଲା—କିନ୍ତୁ ଆସ୍ତେ ଆସ୍ତେ···

ଅଚଳା ବାଧା ଦେଇ କହିଲା—ଆସ୍ତେ ଆସ୍ତେ ଜାଣି ପାରିବେ? ଖୁବ୍ ସମ୍ଭବ ଶୀଘ୍ର ବି ଜାଣି ପାରନ୍ତି। କିନ୍ତୁ ସେହିଭଳି ସମ୍ଭାବନା ତ ଅନ୍ୟ ଦେଶରେ ମଧ୍ୟ ଅଛି?

ସୁରେଶ ଉଲ୍ଲସିତ ହୋଇ କହିବାକୁ ଲାଗିଲା—ତାହାହେଲେ ଏଠାରେ ହିଁ ରହିବା ସ୍ଥିର? ଏଠାରେ ରହିବାକୁ ତୁମର ସମ୍ମତି ଅଛି ତ ଅଚଳା, କୁହ? ଥରକ ପାଇଁ ଖୋଲି କରି କହିଦିଅ,—କିନ୍ତୁ କିନ୍ତୁ ସତେ ଯେପରି ତାକୁ କିଏ ଠେଲି କରି ଠିଆ କରାଇ ଦେଲା। ବ୍ୟଗ୍ର ଭାବରେ ସେ ଟଳି ଟଳି ଘର ମଝିରେ ଆସି ପହଞ୍ଚି ଦ୍ୱାର ବନ୍ଧକୁ ଷ୍ପର୍ଶ ଦେଇ ଦେଖିଲା—ଅଚଳା କେତେବେଳୁ ଦ୍ୱାର ବନ୍ଦ କରି ଚାଲି ଗଲାଣି।

କେତେଦିନ ହେବ ଆକାଶରେ ମେଘର ଯିବା ଆସିବା ପୁଣି ଆରମ୍ଭ ହୋଇଛି। ଝଡ଼ ହେବାର ସୂଚନା ମିଳିଥିଲା। ସୁରେଶର ନୂଆ ଘରେ କଲିକତାରୁ ଅନେକ ଆସବାବ ପତ୍ର ଓ ସାଜ ସରଞ୍ଜାମ ଆସି ଗଦା ହୋଇ ପଡ଼ିଛି। ସେଗୁଡ଼ିକ ସଜେଇବା ବା ଏକତ୍ର କରି ସାଇତି ରଖିବାପାଇଁ କୌଣସି ପକ୍ଷରୁ ଆଗ୍ରହ ନାହିଁ। ଦୁଇଟା ଘୋଡ଼ା ଓ ଗୋଟାଏ ଦାମିକା ଗାଡ଼ି କାଲିଠାରୁ ଆସି ପହଞ୍ଚି କେଉଁଠାରେ ରହିଛନ୍ତି ସେ ସବୁର ମଧ୍ୟ ଖୋଜ ଖବର କେହି ନେଉ ନାହାନ୍ତି। ଦିନ ଗୁଡ଼ିକ ଯେପରିସେପରି ହୋଇ କଟି ଚାଲିଛି। ଏପରି ସମୟରେ ଦିନେ ଦିପହର ବେଳେ ବୃଦ୍ଧ ରାମବାବୁ ଗୋଟିଏ ହାତରେ ହୁକା ଏବଂ ଆର ହାତରେ ନେଳୀ ରଙ୍ଗର ଚିଠି ଖଣ୍ଡେ ଧରି ଆସି ପହଞ୍ଚିଲେ। ଅଚଳା ରେଲିଂ ନିକଟରେ ଅର୍ଦ୍ଧଶାୟିତ ଅବସ୍ଥାରେ ସୋଫା ଉପରେ ପଡ଼ି ରହି ଗୋଟିଏ ବଙ୍ଗଳା ମାସିକ ପତ୍ରିକାର ବିଜ୍ଞାପନ ପୃଷ୍ଠା ଗୁଡ଼ିକୁ ଓଲଟାଇବାରେ ଲାଗିଥିଲା। ବଡ଼ବାବାଙ୍କୁ ଦେଖି ଉଠି ବସି ପଡ଼ିଲା। ରାମବାବୁ ଚିଠି ଖଣ୍ଡିକ ତାହା ଆଡ଼କୁ ବଢ଼ାଇ ଦେଇ

କହିଲେ—ଏଇ ନେ ମାଆ, ତୋ ପାଖକୁ ଏ ଚଠି ରାକ୍ଷସୀ ଦେଇଛୁ । ସେ ଏତେଦନ ଧର ତୋ ପାଖକୁ ଚଠି ଲେଖି ପାର ନଥିବାରୁ ମୋ ପାଖକୁ ଲେଖିଥିବା ପତ୍ରରେ ଯେପର ଅନେକ ଥର କ୍ଷମା ମାଗି ବସିଛୁ, ସେହିପର ଅନେକ ଥର ନମସ୍କାର ମଧ୍ୟ ଜଣାଇଛୁ । ତୁ ତାକୁ କ୍ଷମା ଦେବୁ । କହି ସେ ହସି ହସି ଚଠି ଖଣ୍ଡି ତାହା ହାତରେ ଗୁଞ୍ଜି ଦେଇ ଅଳ୍ପ ଦୂରରେ ଚୌକିଟିଏ ଟାଣି ନେଇ ବସି ପଡ଼ିଲେ ଏବଂ ନଦୀ ଆଡ଼େ ଏକ ଲକ୍ଷ୍ୟରେ ଗୁଡ଼ିଏ ଚୁଟି ହୁକାରୁ ଧୂଆଁ ଟାଣି ଟାଣି ଘରଟାକୁ ଅନ୍ଧକାରାଚ୍ଛନ୍ନ କରଦେଲେ ।

ଅଚଳା ପତ୍ର ଖଣ୍ଡିକ ଦୁଇ ତନ ଥର ପଢ଼ି ସାରବା ପରେ ମୁହଁ ଟେକି ଗ୍ଭହିଁ କହିଲା, ଏ ସମସ୍ତେ ତେବେ ପଅର ଦନ ସକାଳ ଗାଡ଼ିରେ ଆସି ପହଞ୍ଚୁଛନ୍ତ । ପିଉସୀ ମାଆ କିଏ ବଡ଼ବାବା ? ଆଉ ତାଙ୍କର ରାଜପୁତ୍ର, ରାଜବଧୂ, ଗାର୍ଜେନ୍ ଟିଉଟର ?

ରାମବାବୁ ହସିକର କହିଲେ—ରାକ୍ଷସୀ ଏମିତ ଗୋଟାଏ ଝିଅ ଥଟ୍ଟା କରବାକୁ ଟିକିଏ ସୁଯୋଗ ପାଇଲେ ଆଉ ନ ଛାଡ଼େ । ପିଉସୀ ମାଆ ହେଉଛୁ ମୋର ବଧବା ଜ୍ୟେଷ୍ଠ ଭଉଣୀ । ଆଉ ରାଜପୁତ୍ରବଧୂ ହେଉଛନ୍ତ ତାର ଝିଅ, ଭଣ୍ଡାର ପୁରର ଭବାନୀ ଚୌଧୁରୀର ସ୍ତ୍ରୀ, ସେ ଯାହା କହୁ ପଛକେ କିନ୍ତୁ ପ୍ରକୃତରେ ସେମାନେ ରାଜା ରାଜୁଡ଼ା ଲୋକ । ରାଜପୁତ୍ର ହେଉଛୁ ତାର ଦଶ ବର୍ଷର ପୁଅ । ଆଉ ଶେଷ ବ୍ୟକ୍ତି କିଏ ତାହା ତ ଆଖିରେ ନ ଦେଖିଲା ପର୍ଯ୍ୟନ୍ତ କହି ପାରୁନ ମାଆ । ହୁଏତ ହୋଇପାରେ ମୋଟା ଦରମା ପାଉଥିବା କେଉଁ ଗ୍ଭକର ଯେଉଁମାନେ କ ବଡ଼ ଲୋକର ପିଲାଙ୍କ ସଙ୍ଗେ ଘୁର ବୁଲନ୍ତ । ଏଇଟା, ସେଇଟା ପ୍ରକାଶ୍ୟରେ, ଅପ୍ରକାଶ୍ୟରେ ଯୋଗାଇ ଦେଇ ସାବାଳକ, ନାବାଳକ ଉଭୟ ପକ୍ଷର ମନ ରଖନ୍ତ । ଏଇପର ବୋଧହୁଏ କିଏ ଜଣେ ହୋଇ ପାରନ୍ତ । ସେଥିପାଇଁ ମୁଁ ସେତେ ଭାବୁ ନାହିଁ ସୁରମା । ସେମାନେ ଆସନ୍ତୁ; ଖାଆନ୍ତୁ ପିଅନ୍ତୁ, ଦୁଇଦନ ରହନ୍ତୁ ସେଥିରେ ଆନନ୍ଦ ଲଗିବ, କିନ୍ତୁ ମୋର ଅସଲ ଚନ୍ତା ହେଲା ମୋ ଘରଟି ତ ଗ୍ଭେଟ । ରାଜା ରାଜୁଡ଼ା ଆସିବେ ଏହି ହିସାବରେ ତ ତଆର କର ନାହିଁ । ଘରଟି ମଧ୍ୟ ସେମାନଙ୍କର ଉପଯୋଗୀ ନୁହେଁ । ସଙ୍ଗରେ ଦାସ ଦାସୀ ମଧ୍ୟ ପ୍ରୟୋଜନ ଠାରୁ ତନ ଗୁଣ ବେଶୀ ଥିବେ । ସେଥିପାଇଁ ମୁଁ ଭାବୁଛୁ ତୁମ ଘରଟାକୁ ଯଦ···

ଅଚଳା ବ୍ୟଗ୍ର ହୋଇ କହି ଉଠିଲା—କିନ୍ତୁ ସେଥିପାଇଁ ଆଉ ସମୟ ତ ନାହିଁ ବଡ଼ବାବା ? ତାହାଛଡ଼ା ଏତେ ଦୂରରେ ରହିବାଟାକୁ ସେମାନେ କ'ଣ ପସନ୍ଦ କରିବେ ?

ରାମବାବୁ କହିଲେ ଯଦି ଏତିକ ବେଳୁ ସମସ୍ତେ ଲାଗିପଡ଼ିବା ତେବେ ସମୟ ଅଛି । ଆଜି ଯାଗା ପ୍ରସ୍ତୁତ ହୋଇଥିଲେ କେଉଁଠାରେ କାହାର ରହିବା ସୁବିଧା ହେବ ତାହା ସ୍ଥିରକରି ପାରିବା ସମ୍ଭବପର ହୋଇ ପାରିବ । ସୁରେଶ ବାବୁ ତ ଶୁଣିବା କ୍ଷଣି ଟମ୍ ଟମ୍ ଭଡ଼ା କରି ସିଧା ବାହାରି ଗଲେଣି । ତୁମର ଗାଡ଼ି ଏଇ ଆସିଲା ବୋଲି ଜାଣ । ତୁ ନିଜେ ଯାଇ ଯଦି ଟିକିଏ ଶୀଘ୍ର ପ୍ରସ୍ତୁତ ହୋଇ ପାରିବୁ ମାଆ, ତାହାହେଲେ ସେହି ସମୟ ଭିତରେ ମୁଁ ଯାଇ ଜୋତା ହଳକ ବଦଳାଇ, କାନ୍ଧରେ ଗୋଟାଏ ଚଦର ପକାଇ ବାହାରି ପଡ଼ନ୍ତି ।

ଅଚଳା ମୁହୂର୍ତ୍ତିକ ପାଇଁ ନୀରବରେ ଠିଆ ହୋଇ ରହିଲା । ତାପରେ, ଆଚ୍ଛା ମୁଁ ଲୁଗାଟା ବଦଳାଇ ନେଉଛି କହି ଧୀରେ ଧୀରେ ଚାଲିଗଲା ।

ରାମବାବୁଙ୍କର ପ୍ରସ୍ତାବ ଅସଙ୍ଗତ ନୁହେଁ । ସେଥିପାଇଁ ମନା କରିବା ପ୍ରଶ୍ନ ଉଠୁ ନାହିଁ । ଆତ୍ମୀୟ ରାଜକୁମାର ଓ ରାଜମାତାଙ୍କର ରହିବାର ସୁବିଧା କରିବା ପାଇଁ ଏ ଆଶ୍ରୟ ତ୍ୟାଗ କରି ସେ ଏଥର ତାକୁ ଅନ୍ୟ ସ୍ଥାନକୁ ଯିବାକୁ ପଡ଼ିବ, ଅଚଳା ଏହା ସହଜରେ ବୁଝି ପାରିଲା । ବୁଝି ପାରିବାଟା ଯଦିଓ ସହଜ କିନ୍ତୁ ସେଥିରେ ତାର ଦାୟିତ୍ୱ ଲାଘବ ହୋଇ ପାରିଲା ଭଳି ସେ ଅନୁଭବ କରି ପାରିଲା ନାହିଁ ।

ଏତେଦିନ ଏଠାରେ ରହିବା ଭିତରେ ବାହାରକୁ ଯିବା ପାଇଁ ଆଜି ପର୍ଯ୍ୟନ୍ତ କେହି ତାକୁ ରାଜି କରାଇ ପାରି ନଥିଲେ । ପନ୍ଦର ମିନିଟ ପରେ ସେ ଯେତେବେଳେ ଆଜି ପ୍ରଥମ କରି ତା'ର ଅଭ୍ୟସ୍ତ ସଜ୍ଜାରେ ସଜ୍ଜିତ ହୋଇ ପ୍ରସ୍ତୁତ କେବଳ ଏଇଥିପାଇଁ ତଳକୁ ଓହ୍ଲାଇ ବାକୁ ଲାଗିଲା— ସେତେବେଳେ ଚତୁର୍ଦ୍ଦିଗ ତାହା ଆଖିରେ ନୂଆ ଏବଂ ଆଶ୍ଚର୍ଯ୍ୟକର ମନେହେଲା । ଏପରିକି ନିଜକୁ ଆଉ ଅନ୍ୟ କେହି ଜଣେ ପରି ତାକୁ ଲାଗିଲା । ଫାଟକ ବାହାରେ ଠିଆ ହୋଇଥିବା ପ୍ରକାଣ୍ଡ ଘୋଡ଼ା ଗାଡ଼ି ଉପରେ ନବ ପରିଚ୍ଛଦ ପରିହିତ କୋଚମ୍ୟାନ୍ ମାଲିକ ଜାଣିପାରି ସଲାମ ବଜାଇଲା । ସଇସ ଦ୍ୱାର ଖୋଲି ଦେଇ ସମ୍ଭ୍ରମରେ ଆଡେଇ ହୋଇ ଠିଆ ହେଲା । ତାକୁ ଅନୁସରଣ କରି ବୃଦ୍ଧ ରାମବାବୁ ଯେତେବେଳେ ସମ୍ମୁଖରେ ଆସନ ଗ୍ରହଣ କରି ବସି ପଡ଼ିଲେ ସେତେବେଳେ ସମସ୍ତ ପରିବେଶଟା ଯେପରି ଅଦ୍ଭୁତ ସ୍ୱପ୍ନ ପରି ମନେହେଲା । ତାହାର ଆଚ୍ଛନ୍ନ ଚକ୍ଷୁ ଦୁଇଟା ଗାଡ଼ିର ଯେଉଁ ଅଂଶଟା ପ୍ରତି ଦୃଷ୍ଟିପାତ କଲା, ସେଥିରେ ତାର ମନେ ହେଲା ଏ କେବଳ ଧନବାନ ଲୋକର ଅର୍ଥର ଦମ୍ଭ ନୁହଁ, ଏହାର ପ୍ରତ୍ୟେକ ବିନ୍ଦୁ ଯେପରି କାହାର ସୀମାହୀନ ପ୍ରେମ ଦ୍ୱାରା ଗଢ଼ା ହୋଇଛି ।

କଠିନ ପଥର ରାସ୍ତା ଉପରେ ଗୁର ଘୋଡ଼ା ଖୁର ପ୍ରତିଧ୍ୱନି ତୋଳି ଘୋଡ଼ା ଦୁଇଟି ଛୁଟି ଚାଲିଲେ ମଧ୍ୟ ଅଚଳା କାନ ଭିତରକୁ ଯେପରି ସେ ଶବ୍ଦ ପ୍ରବେଶ କରିପାରୁ ନଥିଲା । ତାହାର ଅନ୍ତର ଏବଂ ବାହ୍ୟ ଇନ୍ଦ୍ରିୟ ହୁଏତ ଶେଷ ପର୍ଯ୍ୟନ୍ତ ଏପରି ଅଭିଭୂତ ହୋଇ ରହି ଯାଇଥାନ୍ତା ଯଦି ହଠାତ୍ ରାମବାବୁଙ୍କର କଣ୍ଠସ୍ୱର ଶୁଣି ସେ ଚମକି ଉଠି ନ ଥାନ୍ତା । ଆଗକୁ ତାର ଦୃଷ୍ଟି ଆକର୍ଷଣ କରି ରାମବାବୁ କହି ଉଠିଲେ—ମାଆ, ଏଇ ତୁମର ଘର ଦେଖାଯାଉଛି । ଦାସ ଦାସୀ ସମସ୍ତେ ନିଯୁକ୍ତ ହୋଇ ଯାଇଛନ୍ତି । ମୋଟା ମୋଟି ସଜାସଜି କାମ ବୋଧହୁଏ ଆଗେଇ ଚାଲିଛି । କେବଳ ତୁମ ଶୋଇବା ଘରଟିରେ ହାତ ନ ଦେବାକୁ ମୁଁ ସମସ୍ତଙ୍କୁ ମନା କରି ଦେଇଛି । ସେମାନେ ଯିବାବେଳେ ସତର୍କ କରି କହି ଦେଇଛି—ସୁରେଶ ବାବୁ ! ଭିତରେ ତୁମେ ଯାହା ଇଚ୍ଛା ତାହା କରିପାର । କିନ୍ତୁ ମୋ ମାଆ ସୁରମାର ଶୋଇବା ଘରେ କାମ କରିବାକୁ ଯାଇ ଯେପରି ମୋ ମାଆର କାମ ଆଉ ବଢାଇ ନ ଦିଅ । କାରଣ ତାର ଶୋଇବା ଘର ସେ ନିଜେ ସଜାଇବ । ଏହା କହି ବୃଦ୍ଧ ଟିକିଏ ସଲ୍ଲଜ ହସ ହସି ଅଚଳା ମୁହଁକୁ ଚାହିଁ ଦେଇ ହଠାତ୍ ଅଟକି ଗଲେ ।

ସେ ଯେ କାହିଁକି ଏପରି ଅଟକି ଗଲେ, ଅଚଳା ସେହି ମୁହୂର୍ତ୍ତରେ ବୁଝି ପାରିଲା । ସେଥିପାଇଁ ଗାଡ଼ି ଯେତେବେଳ ପର୍ଯ୍ୟନ୍ତ ନୂଆ ବଙ୍ଗଳା ନିକଟରେ ପହଞ୍ଚି ନଥିଲା, ସେତେବେଳ ପର୍ଯ୍ୟନ୍ତ ନିଜର ଶୁଷ୍କ, ବିବର୍ଣ୍ଣ ଆଖିରେ ବାହାରକୁ ଚାହିଁ ରହି ଏହି ବୃଦ୍ଧଙ୍କର ବିସ୍ମିତ ଦୃଷ୍ଟିରୁ ନିଜକୁ ଗୋପନ ରଖିବାକୁ ବାଧ୍ୟ ହେଲା ।

ଗାଡ଼ି ଶବ୍ଦ ଶୁଣି ସୁରେଶ ବାହାରକୁ ଆସିଲା । ଦାସ ଦାସୀମାନେ ମଧ୍ୟ କାମ ଛାଡ଼ିଦେଇ ଘର ଭିତରୁ ତାଙ୍କର ନୂତନ ମାଲିକାଣୀଙ୍କୁ ଦେଖିବାକୁ ଦଉଡ଼ି ଆସିଲେ । କିନ୍ତୁ ମାଲିକାଣୀଙ୍କ ମୁହଁକୁ ଚାହିଁଦେବା କ୍ଷଣି କାହା ମନରେ ହରଷ ରହିଲା ନାହିଁ ।

ରାମବାବୁଙ୍କ ସଙ୍ଗେ ସଙ୍ଗେ ଅଚଳା ଗାଡ଼ିରୁ ଧୀରେ ଧୀରେ ଓହ୍ଲାଇ ପଡ଼ିଲା । ସୁରେଶ ମୁହଁକୁ ଥରକ ପାଇଁ ସୁଦ୍ଧା ମୁହୂର୍ତ୍ତେକ ଚାହିଁଲା ନାହିଁ । ତାପରେ ଉଭୟେ ଜଣକ ପଛରେ ଜଣେ ଧୀରେ ଧୀରେ ଘରଭିତରେ ପ୍ରବେଶ କଲେ । ସେଠାରେ ଭିତରେ, ବାହାରେ, ଉପରେ, ତଳେ କୌଣସିଠାରେ ଆନନ୍ଦର ଲେଶମାତ୍ର ଆଭାସ ଦେଖା ପଡ଼ୁ ନ ଥିଲା । ଏହା ଯେପରି ଉଭୟେ ମୁହୂର୍ତ୍ତକ ଭିତରେ ଉପଲବ୍ଧ କରି ପାରୁଥିଲେ ।

ଏହା ମଧ୍ୟରେ କିନ୍ତୁ କେତେବଡ଼ ଭୁଲଥିଲା, ତାହା ପ୍ରକାଶ ପାଇବାକୁ ବିଳମ୍ବ ହେଲନାହିଁ । ଘର ସଜାଇବା କାର୍ଯ୍ୟରେ ବ୍ୟାପୃତ ରହି, ଏହି ସକଳ ମହାର୍ଘ ଓ ଅପର୍ଯ୍ୟାପ୍ତ ଉପକରଣ ମାନଙ୍କ ଭିତରେ ଠିଆହୋଇ; ସେହି ସକଳ ଭାବନାକୁ ଲୁଚାଇ ଦେଇ; ଗୋଟିଏ ଚିନ୍ତା ସମସ୍ତଙ୍କ ମନରେ ବାରମ୍ବାର ଦେଖାଦେଲା ଯେ, ଯାହାର ଟଙ୍କା ଅଛି ସେ ଖରଚ କରିପାରେ ଏହା ଯଦିଓ ଗୋଟାଏ ପୁରୁଣା କଥା । କିନ୍ତୁ ଏଠାରେ ସେହିପରି ନୁହେଁ । ଏହି ଘର ଏବଂ ସାଜସଜାକୁ ଦେଖିଲେ ଜଣାପଡ଼େ ଯେପରି ଜଣକୁ ଆରାମ ଓ ଆନନ୍ଦ ଦେବାପାଇଁ ଆଉ ଜଣଙ୍କର ବ୍ୟାକୁଳତାର ସୀମା ନଥିବାର ଏହା ଏକ ପରିପ୍ରକାଶ । କାର୍ଯ୍ୟର ବ୍ୟସ୍ତତା ଭିତରେ, ଜିନିଷପତ୍ର ଏଣେ ତେଣେ ସାଇତି ରଖିବା ଭିତରେ ସାଧାରଣ କଥାବାର୍ତ୍ତା ଅନେକ ହେଲା, ମୁହାଁମୁହିଁ ଅନେକଥର ମଧ୍ୟ ହେଲା; କିନ୍ତୁ ପ୍ରତ୍ୟେକଙ୍କ ଭିତରେ ଏଇଟା ଏକ ଅନୁଚ୍ଚାରିତ ବାକ୍ୟ ହୋଇ ଅପ୍ରକାଶ୍ୟ ଭାବରେ ଇଙ୍ଗିତ କରି କରି କେବଳ ଏହି ଦିଗରେ ଅଙ୍ଗୁଳି ନିର୍ଦ୍ଦେଶ କରିବାକୁ ଲାଗିଲା ।

ଘରଟାର ଧୂଆ ପୋଛା କାମ ସରିପାରି ନଥିଲା । ସୁତରାଂ ଏହାକୁ ବାସଯୋଗ୍ୟ କରି ନେବାପାଇଁ ସାରା ଦିନଟା ବିତିଗଲା । କ୍ଲାନ୍ତ, ପରିଶ୍ରାନ୍ତ ହୋଇ ତିନିଜଣ ଯେତେବେଳେ ଘରକୁ ଫେରି ଆସିବାପାଇଁ ଗାଡିରେ ବସିଲେ ସେତେବେଳେ ରାତି ପହରେ ହେବ । ଗୋଟାଏ ଝଡ଼ ମଝିରେ ବହିଯିବା ଫଳରେ ଆକାଶରୁ ମେଘ ଅନେକ ପରିମାଣରେ ଅପସାରିତ ହୋଇ ଯାଇଥିଲା ।

ଅନେକ ଦିନ ତଳର ଗୋଟାଏ ସ୍ମୃତି ଅଚଳା ମନରେ ଝାପ୍‌ସା ହୋଇ ଦେଖାଦେଲା । ସେଦିନ ସୁରେଶର କଲିକତା ଘରୁ ସେମାନେ ସନ୍ଧ୍ୟାବେଳେ ଏହିପରି ଗାଡ଼ି ଚଢି ଫେରିଥିଲେ । ତାର ସମ୍ପଦର ଓ ସମ୍ଭୋଗର ବିପୁଳ ଆୟୋଜନ ସେଦିନ ମହିମ ନିକଟରୁ ତାର ମନଟାକୁ ଏତେ ଦୂର ପର୍ଯ୍ୟନ୍ତ ଆକର୍ଷଣ କରି ନେଇ ଯାଇଥିଲା ଯେ ସୁରେଶ ନିକଟରେ ଆତ୍ମ ସମର୍ପଣ କରିବା ଏକାନ୍ତ ଅସଙ୍ଗତ ଅବା ଅସମ୍ଭବ ବୋଲି ସେ ମନେ କରିଥିଲା । ବହୁ କାଳପରେ କାହିଁକି ଯେ ହଠାତ୍ ଆଜି ସେହି କଥାଟା ସ୍ମରଣ ହେଲା, ଭାବିବାକୁ ଯାଇ ନିଜ ଅନ୍ତରର ନିଗୂଢ଼ ଛବିଟା ସ୍ପଷ୍ଟ ଦେଖିପାରି ତାର ସାରା ଦେହରେ ଯେପରି ଲଜ୍ଜାର ଝଡ଼ ବହିବାକୁ ଲାଗିଲା ।

ଲଜ୍ଜ୍ୟା ! ଲଜ୍ଜ୍ୟା ! ଲଜ୍ଜ୍ୟ ! । ଏହି ଗାଡ଼ି, ଏହି କୋଠା, ଏବଂ ତାହାପାଇଁ କେତେ କ'ଣ ଆୟୋଜନ ଏ ସମସ୍ତ ହିଁ ତାର ସ୍ୱାମୀଙ୍କର ଆଦରର ଉପହାର ବୋଲି ସମସ୍ତେ ଜାଣିପାରିଲେ । ଆଉ ଦିନ ଆସିବ ଯେତେବେଳେ ସମସ୍ତେ ଜାଣି-ପାରିବେ ପ୍ରକୃତରେ ଏଥିରେ ତାର କଡ଼ାକରି ସୂକ୍ଷ୍ମ ଅଧିକାର ନଥିଲା । ଆରମ୍ଭରୁ ଶେଷଯାଏଁ ଏ ସବୁ ମିଛ । ସେ ଦିନ ଲଜ୍ଜ୍ୟାରେ ସେ ମୁହଁ ଲୁଚାଇବ କେଉଁଠି ? ଅଥଚ ଆଜି ପାଇଁ ଏ କଥା କୌଣସି ପ୍ରକାରରେ ମିଥ୍ୟା ନୁହେ ଯେ, ଏସବୁ କେବଳ ତାରି ପୂଜାପାଇଁ ସଯତ୍ନରେ ସଂଗ୍ରହ କରାଯାଇଛି ଏବଂ ଏହାର ଆରମ୍ଭ ହିଁ ସ୍ନେହ, ପ୍ରେମ, ଏବଂ ଆଦରଦ୍ୱାରା ବିମଣ୍ଡିତ । ଏଇ ଯେ ମସ୍ତ ମସ୍ତ ଦୁଇଟା ଘୋଡ଼ା ଟପ୍ ଟପ୍ ଶବ୍ଦ କରି ଚାଲିଛନ୍ତି; ଏହି ଗାଡ଼ିର ସୁଖ ସୁକୋମଳ ସ୍ପର୍ଶର ସୁଖ, ଏମାନଙ୍କର ନିସ୍ତରଙ୍ଗ ଅବାଧ ଗତିର ଆନନ୍ଦ— ଏ ସମସ୍ତ ଆଜି ତାହାର । ଆଜି ଯେଉଁ ଅଗଣିତ ଦାସ ଦାସୀ ପ୍ରତୀକ୍ଷା କରି ରହିଁ ରହିଥିଲେ ସେମାନେ ସମସ୍ତେ ତାହାର ।

ଦେଖୁ ଦେଖୁ ତାର ମନ ଭିତରେ ଲୋଭ ଓ ତ୍ୟାଗ, ଲଜ୍ଜ୍ୟା ଓ ଗୌରବ; ଠିକ ଯେପରି ଗଙ୍ଗା ଯମୁନା ପରି ପାଖାପାଖି ବହିବାକୁ ଲାଗିଲା ଏବଂ କିଛି ସମୟ ପାଇଁ ଏଥିରୁ 'କୌଣସିଟାକୁ ସେ ଅସ୍ୱୀକାର କରି ପାରିଲା ନାହିଁ । ଘରେ ପହଞ୍ଚିବା ପରେ ବୃଦ୍ଧ ରାମବାବୁ ତାଙ୍କର ସନ୍ଧ୍ୟା ଆହ୍ନିକ କରିବାକୁ ବାହାରିଗଲେ । ଅଚଳା ଯେତେବେଳେ ହଠାତ୍ କ୍ଳାନ୍ତ ଓ ମୁଣ୍ଡ ବିନ୍ଧାର ବାହାନା କରି ଅତ୍ୟନ୍ତ ଅସମୟରେ ନିଜ ଘରେ କବାଟ ବନ୍ଦକରି ଶୋଇବାକୁ ଗଲା; ସେତେବେଳେ ଲଜ୍ଜ୍ୟା ଓ ଅପମାନ ଏକାଠି ମିଶି ଯେପରି ତାକୁ ଗିଳି ପକାଇବାକୁ ଆଁ କରି ଦଉଡ଼ି ଆସିଲେ । ପିତାଙ୍କର ଲଜ୍ଜ୍ୟା, ସ୍ୱାମୀଙ୍କର ଲଜ୍ଜ୍ୟା, ଆତ୍ମୀୟ ବନ୍ଧୁ-ବାନ୍ଧବଙ୍କର ଲଜ୍ଜ୍ୟା, ସମସ୍ତଙ୍କର ସମ୍ମିଳିତ ଲଜ୍ଜ୍ୟା କେବଳ ଆଖି ଆଗରେ ଠିଆ ହୋଇ ଅନ୍ୟ ସବୁ ଦୁଃଖକୁ ଆବୃତ କରି ପକାଇଲା । କେବଳ ମାତ୍ର ଏହି କଥାଟା ମନରେ ଉଠିଲା ଯେ; ଏ ଛଳନା ଦିନେ ନା ଦିନେ ଯେତେବେଳେ ଧରା ପଡ଼ିବ ସେତେବେଳେ ଏ ମୁହଁଟାକୁ ଲୁଚାଇବାକୁ ସେ ଯାଗା ଖୋଜି ପାଇବ ତ ?

ଅଥଚ ଯେଉଁ ସମାଜ ଓ ସଂସ୍କାର ଭିତରେ ଶୈଶବରୁ ସେ ମଣିଷ ହୋଇ ଆସିଛି ସେଠାରେ ତରୁତଳ ବାସ କମ୍ବା ତୃଣଶଯ୍ୟା କୌଣସିଟା କାହାର କାମନାର ବସ୍ତୁ ବୋଲି ଶୁଣି ନାହିଁ । ସେଠାରେ ସମସ୍ତେ ଚଲାବୁଲା, ମିଳାମିଶା, ଆହାର ବିହାର ଭିତରେ ବିଳାସିତାର ପ୍ରତି ବୈରାଗ୍ୟ ନୁହେଁ; ବରଂ ଅନୁରାଗର ଉଦ୍ରେ-

ଜନାରେ ପ୍ରଚଣ୍ଡ ଉନ୍ମତ୍ତ ହେବାର ଦେଖି ଆସିଛୁ । ସେଠାରେ ହିନ୍ଦୁଧର୍ମର କୌଣସି ଆଦର୍ଶ ପରିଚୟ ମିଳେନାହିଁ, କିମ୍ବା ପରଲୋକ ଆଶାରେ ଇହଲୋକର ସମସ୍ତ ସୁଖଠାରୁ ଆପଣାକୁ ବଞ୍ଚିତ କରିବାର ନିଷ୍ଠୁର ନିଷ୍ଠା ମଧ୍ୟ କୌଣସି ଦିନ ଦେଖିବାକୁ ମିଳେନାହିଁ । ସେ କେବଳ ଦେଖିଛି ପର ଅନୁକରଣରେ ଗଠିତ ନିଜ ଘରର ସମାଜଟାକୁ । ଯେଉଁ ସମାଜର ପ୍ରତ୍ୟେକ ନରନାରୀ ହିଁ ପାଶବିକ ଆକଣ୍ଠ ପିପାସାରେ ଦିନ ପରେ ଦିନ କେବଳ ଶୁଷ୍କ ହେବାରେ ଲାଗିଛନ୍ତି ।

ସେଥିପାଇଁ ଏ ନବ୍ୟେଲା ଶେଯ ଉପରେ ଆଖିବୁଜି ପଡ଼ିରହି ସେ ଐଶ୍ୱର୍ଯ୍ୟ ଜିନିଷଟା କିଛି ନୁହେଁ ବୋଲି ଉଡ଼ାଇଦେଇ ପାରିଲା ନାହିଁ ଏବଂ ଜୀବନରେ ଏହାର ଆବଶ୍ୟକତା ନାହିଁ ବୋଲି ମଧ୍ୟ ତାର ମନ ଭିତରୁ କେହି ଜବାବ୍ ଦେଇ ପାରିଲା ନାହିଁ । ତାର ଆଜନ୍ମର ଶିକ୍ଷା ଓ ସଂସ୍କାର ଏହାକୁ ତୁଚ୍ଛ ବୋଲି କହିବା ପକ୍ଷରେ ଅନୁକୂଳ ଯଦିଓ ନୁହନ୍ତି ତଥାପି ଗ୍ଲାନିରେ ତାର ହୃଦୟ କଳା ପଡ଼ିଗଲା । ସେଥିପାଇଁ ଯେତେ ସମ୍ପଦ, ଯେତେ ଉପକରଣ, ଏହି ଦେହଟାକୁ ସବୁ ପ୍ରକାରରେ ସୁଖ ସୁବିଧାରେ ରଖିବାପାଇଁ ଯେତେ ପ୍ରକାର ଆୟୋଜନ, ଆଜି ଅଯାଚିତ ଭାବରେ ତାର ପାଦତଳେ ଅଜାଡ଼ି ହୋଇ ପଡ଼ୁଛି, ସେ ସବୁର ଦୁର୍ନିବାର ମୋହ, ତାହାକୁ ଅବିଶ୍ରାନ୍ତ ଏକ ହାତରେ ଟାଣୁଥିଲାବେଳେ ଅନ୍ୟହାତରେ ଠେଲିବାରେ ଲାଗିଥିଲା ।

ଅଥଚ ଦୁଃଖର ସ୍ୱପ୍ନ ମଧ୍ୟରେ ଯେପରି ଏକ ଅପରିସ୍ଫୁଟ ମୁକ୍ତିର ଚେତନା ସଞ୍ଚରଣ କରେ ସେହିପରି ଏହି ଭାବନାଟା ତାର ଏକବାରେ ତିରୋହିତ ହୋଇନାହିଁ ଯେ, ଅଦୃଷ୍ଟର ବିଡ଼ମ୍ବନା ହେତୁ ଆଜି ଯାହା ଠକାମି ବୋଲି ମନେ ହେଉଛି ତାହା ଯେ ଦିନେ ସତ୍ୟ ରୂପରେ ରୂପାନ୍ତରିତ ହେବାପାଇଁ କୌଣସି ବାଧା ନ ଥିଲା । ଏହି ସୁରେଶ ତାର ସ୍ୱାମୀ ହୋଇ ପାରିଥାନ୍ତା, ଏବଂ ଭବିଷ୍ୟତରେ ଏହା ଯେ ସମ୍ପୂର୍ଣ୍ଣ ଭାବରେ ଅସମ୍ଭବ ଏପରି କଥା କେହି ଜୋର କରି ମଧ୍ୟ କହି ପାରିବେ ନାହିଁ ।

ସମାଜରେ ତାହାପରି ସମସ୍ତ ବିଧବାଙ୍କର ପୁଣି ବିବାହ ହୁଏ । ହିନ୍ଦୁନାରୀ ଭଳି କେବଳ ଗୋଟିଏ ମାତ୍ର ଲୋକ ନିକଟରେ ପତ୍ନୀତ୍ୱର ବନ୍ଧନ ଇହକାଳ ଓ ପରକାଳ ବ୍ୟାପୀ ବହନ କରିବାର ଅଲଙ୍ଘ୍ୟ ଅନୁଶାସନ ସେମାନଙ୍କୁ ମାନିନେବାକୁ ହୁଏ ନାହିଁ । ସେଥିପାଇଁ ଜୀବନ ମରଣରେ କେବଳ ଜଣେ ମାତ୍ର ହିଁ ଅନନ୍ୟ ଗତି ବୋଲି ଭାବନା କରିବାର ଭଳି ଅବିରୁଦ୍ଧ ମନ ତାହା ନିକଟରେ ପ୍ରତ୍ୟାଶା କରି-ଯାଇ ପାରେନାହିଁ । ସେହି ମନ ସ୍ୱାମୀର ଜୀବିତକାଳରେ ଅପରକୁ ସ୍ୱାମୀବୋଲି

ସମ୍ବୋଧନ କରିବାର ଅପରାଧ ବୋଧ ହେତୁ ଯେତେ ପୀଡ଼ିତ, ହୋଇ ଥାଉନା ଲଜ୍ଜା ଓ ଅପମାନ ଜ୍ୱାଳାରେ ଯେତେ ଜଳିଥାଉନା କାହିଁକି କିନ୍ତୁ ଧର୍ମ ଓ ପରକାଳର ଗଦା ତାହାକୁ ଧରାଶାୟୀ କରିଦେବାର ଭୟ ଦେଖାଇ ପାରିଲା ନାହିଁ ।

ଦରଜାରେ ଆଘାତ କରି ରାମବାବୁ ଡାକି କହିଲେ—କିଛି ନଖାଇ ଶୋଇ ପଡ଼ିଲୁ ମାଆ । ଦେହଟା କ'ଣ ଖରାପ ଖରାପ ଲାଗୁଛି କି ?

ଅଚଳାର ଚନ୍ଦ୍ରାର ଛିଅ ଛିଣ୍ଡି ଗଲା । ହଠାତ୍ ମନେହେଲା, ଏ ଯେପରି ତାର ବାବାଙ୍କ କଣ୍ଠସ୍ୱର । ରାଗକରି ଅସମୟରେ ଶୋଇ ପଡ଼ିଲେ ଠିକ୍ ଏହି ପରି ଉଦ୍‌ବିଗ୍ନ କଣ୍ଠରେ ସେ କବାଟ ବାହାରେ ଠିଆ ହୋଇ ରହି ତାକୁ ଡାକି ଥାନ୍ତି ।

ଏପରି ଚନ୍ଦ୍ରାଟାକୁ ସେ କୌଣସିମତେ ଆଶ୍ରୟ ଦେଇ ନଥାନ୍ତା ଯେହେତୁ ଏହି ସ୍ନେହର ଆହ୍ୱାନକୁ ସେ ଏଡ଼ାଇ ଦେଇ ପାରିଲା ନାହିଁ । ଆଖିର ପଲକମାତ୍ରେ ତାର ଦୁଇଆଖି ଲୁହରେ ଭରି ଉଠିଲା । ସଙ୍ଗେ ସଙ୍ଗେ ସେ ଲୁହ ପୋଛି ପକାଇ ରୁଦ୍ଧ କଣ୍ଠକୁ ସଫାକରି ଉତ୍ତର ଦେଲା ଏବଂ ଦ୍ୱାର ଖୋଲି ଆସି ବାହାରେ ରାମବାବୁଙ୍କ ଆଗରେ ଠିଆହେଲା ।

ଏହି ବୃଦ୍ଧ ବ୍ୟକ୍ତି ଏତେଦିନ ଧରି ଏତେ ଘନିଷ୍ଠତା ସତ୍ତ୍ୱେ ମଧ୍ୟ ବରାବର ଦୂରତ୍ୱ ରକ୍ଷାକରି ଚାଲିଛନ୍ତି । ତାଙ୍କ ଘରେ ସେମାନଙ୍କର ଶେଷ ଦିନ ବୋଲି ବୋଧହୁଏ ଦଣ୍ଡକ ଭିତରେ ସେ ଭୁଲି ଯାଉଛନ୍ତି । ଗୋଟିଏ ହାତ ଅଚଳା କାନ୍ଧ ଉପରେ ରଖି ଅନ୍ୟ ହାତରେ ତାର କପାଳଟା ସ୍ପର୍ଶ କରି ମୁହୂର୍ତ୍ତ ପରେ ହସିଦେଇ କହିଲେ, ବୁଢ଼ା ବଡ଼ବାବା ସଙ୍ଗେ ଦୁଷ୍ଟାମି ? କିଛି ହୋଇ ନାହିଁ ? ଆସ, କହି ହାତଧରି ଆଣି ବରଣ୍ଡାର ଗୋଟାଏ ଚୌକି ଉପରେ ବସାଇ ଦେଲେ ।

ଅଳ୍ପ ଦୂରରେ ଆଉ ଗୋଟାଏ ଚୌକି ଉପରେ ସୁରେଶ ବସିଥିଲା । ସେ ମୁହଁ ତୋଳି ଥରକପାଇଁ ଚାହିଁଦେଇ ପୁଣି ତଳକୁ ଚାହିଁ ରହିଲା । କଥା ଥିଲା— ରାତିରେ ଧୀର ସୁସ୍ଥରେ ବସି ସାରା ଦିନର କାର୍ଯ୍ୟକ୍ରମର ଗୋଟାଏ ଆଲୋଚନା କରା ହେବ । ସେଥିପାଇଁ କେବଳ ଏକାକୀ ସେ ରାମବାବୁଙ୍କର ଫେରିଆସିବା ନିମିତ୍ତ ପ୍ରତୀକ୍ଷା କରିଥିଲା । ତାହା ଆଡ଼କୁ ଚାହିଁ ବୃଦ୍ଧ ସାମାନ୍ୟ ହସିଦେଇ କହିଲେ, ସୁରେଶବାବୁ ଆପଣଙ୍କର ଗୃହଲକ୍ଷ୍ମୀଟି ତ ବଳିଆ ବାପର ଝିଅ । ଦିନ, ବାର, ବେଳା, ପାଞ୍ଜି, ପୋଥି ମାନେନାହିଁ । ତେଣୁ ଆପଣ ନଜେ ମାନନ୍ତୁ, କି ନମାନନ୍ତୁ ସେଥିରେ ବିଶେଷ ଯାଏ ଆସେ ନାହିଁ । କିନ୍ତୁ ମୁଁ ତ ଏ ଛନକୋଡ଼ି

ବର୍ଷର କୁସଂସ୍କାରକୁ ଏତେ ସହଜରେ ଛାଡ଼ିଦେଇ ପାରୁନାହିଁ । କାଲି ଦିନ ଗୋଟାକ ଭିତରେ ଗୋଟାଏ ଶୁଭବେଳା ଅଛି……

ସୁରେଶ ଇଙ୍ଗିତଟା ହଠାତ୍ ବୁଝି ନପାରି ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନକଲା— କେଉଁ ଶୁଭକ୍ଷଣ ?

ରାମବାବୁ ସିଧାସଳଖ ଉତ୍ତରଟା ଦେଇ ପାରିଲେ ନାହିଁ । ସାମାନ୍ୟ ଟିକଏ ଇତସ୍ତତଃ ହୋଇ କହିଲେ, କିନ୍ତୁ ସପ୍ତାହକ ଭିତରେ ପାଞ୍ଜିରେ ଆଉ ଦିନ ଖୋଜି ପାଇଲି ନାହିଁ । ସେଥିପାଇଁ ଭାବିଥିଲି……

ସୁରେଶ କଥାଟା ଏଥର ବୁଝି ପାରିଲା ସତ କିନ୍ତୁ 'ହଁ' କି ନାହିଁ କୌଣସି ପ୍ରକାର ଉତ୍ତର ନ ଦେଇ ଗୋପନରେ ଥରକ ପାଇଁ ମୁହଁ ଟେକି ଅଚଳାକୁ ଚାହିଁ ଦେଇ ଆଉ ଆଖିକୁ ଫେରାଇ ଆଣି ପାରିଲା ନାହିଁ । ସେ ଦେଖିବାକୁ ପାଇଲା ଅଚଳା ଏକ ଲୟରେ ତା ମୁହଁକୁ ପୂର୍ବରୁ ଚାହିଁ ରହି ନୀରବରେ ବସି ରହିଛି ।

ଅଚଳା ହଠାତ୍ ଶାନ୍ତ କଣ୍ଠରେ କହିଲା—କାଲି ସକାଳେ ତ ଆମେମାନେ ସେ ଘରକୁ ଯାଇ ପାରିବା ?

ବସ୍ତୁସ୍ଥାଭିଭୂତ ସୁରେଶ ମୁହଁରୁ ଏହି ସିଧା ପ୍ରଶ୍ନର ସରଳ ଉତ୍ତର ଆଦୌ ବାହାରି ପାରିଲା ନାହିଁ । ସେ କେବଳ ଏତିକି କହିବାକୁ ଚାହିଁଲା ଯେ, ସେ ଘର ବର୍ତ୍ତମାନ ପୂରା ସମ୍ପୂର୍ଣ୍ଣ ବାସପଯୋଗୀ ହୋଇ ପାରିନାହିଁ । ତାର ତଳ ଏପର୍ଯ୍ୟନ୍ତ ଓଦା ଅଛି । ନୂଆ କାନ୍ଥ ଗୁଡ଼ାକରୁ ରଙ୍ଗ ଶୁଖି ନାହିଁ, ଏପରି ଘରେ ରହିଲେ ହୁଏତ ଅଚଳାର କୌଣସି ଅସୁବିଧା ହୋଇପାରେ …

କିନ୍ତୁ ସୁରେଶର ଆପତ୍ତିର ତାଲିକାଟା ଶେଷ ହୋଇ ପାରିଲା ନାହିଁ । ଅଚଳା ସାମାନ୍ୟ ହସି ଦେଇ କହିଲା ସେ ଯାହାହେଉ, ଯିବାକୁ ହେବ । ଯେଉଁ ଦୁର୍ଦ୍ଦିନରେ ଶିଆଳ କୁକୁର ପର୍ଯ୍ୟନ୍ତ ସେମାନଙ୍କର ଘର ଛାଡ଼ିବାକୁ ଚାହାନ୍ତି ନାହିଁ; ସେତେବେଳେ ଯେ ମୋତେ ଗଛ ତଳକୁ ଟାଣି ଆଣି ପାରିଲ, ତେବେ ସାମାନ୍ୟ ଓଦା ଚଟାଣ, କମ୍ପା କଞ୍ଚା କାନ୍ଥ ପାଇଁ ତୁମକୁ ଚିନ୍ତାକରି ଅସ୍ଥିର ହେବାକୁ ହେବ ନାହିଁ । ଯାହାର ସେଦିନ ମରଣ ହୋଇ ନାହିଁ, ସେ ଆଜି ସୁଦ୍ଧା ବଞ୍ଚିପାରିବ ।

ରାମବାବୁଙ୍କ ଆଡ଼କୁ ଚାହିଁ କହିଲା—ଆପଣ ଆଦୌ କିଛି ଭାବିବେ ନାହିଁ ବଡ଼ବାବା । ଆମେ କାଲି ସକାଳୁ ସେଠାକୁ ଯାଇ ପାରିବୁ । ଆପଣଙ୍କ ଋଣ ଆମେ ଜନ୍ମ ଜନ୍ମାନ୍ତରେ ଶୁଝି ପାରିବୁ ନାହିଁ । ଆମେ କାଲି ନିଶ୍ଚୟ ବିଦାୟ ନେବୁ, କହି ସେ କାନ୍ଦି କାନ୍ଦି ନିଜ ଘର ଭିତରେ ପଶିଯାଇ କବାଟ ବନ୍ଦ କରିଦେଲା ।

ବୃଦ୍ଧ ରାମବାବୁ ଯେପରି ବଜ୍ରାହତ ପରି ନିଶ୍ଚଳ ହୋଇ ବସି ରହିଲେ । ତାଙ୍କର ବିହ୍ୱଳ ଆକୁଳ ଦୃଷ୍ଟି ଥରକ ପାଇଁ ସୁରେଶର ଆନତ ମୁଖ ପ୍ରତି, ଏବଂ ଥରକ ପାଇଁ ସେହି ଅବରୁଦ୍ଧ ଦ୍ୱାର ପ୍ରତି ବୁଲି ଆସିବା ପରେ ସେ କେବଳ ଏପରି ସବୁ ବିଫଳ ପ୍ରଶ୍ନ କରିବାକୁ ଲାଗିଲେ, ଏ କ'ଣ ହେଲା ? କାହିଁକି ହେଲା ? କିପରି ଭାବରେ ସମ୍ଭବ ହେଲା ?

ଅନ୍ତର୍ଯାମୀଙ୍କ ବ୍ୟତୀତ ଏହିସବୁ ମର୍ମାନ୍ତିକ ଅଭିମାନର କିଏ ଅବା ଉତ୍ତର ରାମବାବୁଙ୍କୁ ଦେଇ ପାରିବ ?

ପରଦିନ ସକାଳ ପହରରୁ ଆକାଶ ମେଘାଚ୍ଛନ୍ନ ଅଛି । ସେହି ମଳିନ ଆକାଶ ତଳେ ସାରା ପୃଥିବୀଟା କିପରି ବିଷଣ୍ଣ ଓ ମ୍ଳାନ ଦେଖାଯାଉଥିଲା । ଗାଡ଼ି ଦାଣ୍ଡରେ ଠିଆ ହୋଇଥିଲା । କିଛି ବେଡ଼ିଙ୍ଗ୍ ଓ କେତେକ ପର ଜିନିଷ ତାହା ଉପରେ ଲଦା ସରିଥାଏ । ପାଞ୍ଜିର ଶୁଭ ମୁହୂର୍ତ୍ତ ଅନୁସାରେ ଅଚଳା ତଳକୁ ଓହ୍ଲାଇ ଆସିଲା, ଏବଂ ଗାଡ଼ିକୁ ଯିବା ପୂର୍ବରୁ ରାମବାବୁଙ୍କର ପଦଧୂଳି ଗ୍ରହଣ କଲାବେଳେ ଜୋର କରି ମୁହଁରେ ହସ ଆଣି ସେ କହିଲେ, ବୁଢ଼ା ପୁଅର ମାଆ ହେଲେ ବହୁତ ଜଞ୍ଜାଳ ସହିବାକୁ ହୁଏ । ମାଆ ସାମାନ୍ୟ ପାଦଧୂଳି ନେଇ ଯେପରି ଦୁଇ ମାଇଲ ଦୂରରେ ରହି ରକ୍ଷା ପାଇଯିବୁ ବୋଲି ଭାବବୁ ନାହିଁ ।

ଅଚଳା ସଜଳ ଆଖିରେ ଚାହିଁ ରହି କହିଲା—ମୁଁ ତ ସେପରି ଆଦୌ ଭାବୁ ନାହିଁ ବଡ଼ବାବା ?

ଏପରି କରୁଣ କଥା ପଦକ ଶୁଣିବା ପରେ ବୃଦ୍ଧଙ୍କର ଆଖି ଲୁହରେ ଭରି ଉଠିଲା । ତାଙ୍କର ହଠାତ୍ ମନେହେଲା, ଏଇ ପରିଚିତା ଝିଅଟି ପୁଣି ଥରେ ଯେପରି ପରିଚୟ ବାହାରେ କେତେ ଦୂରରେ ଯାଇ ଠିଆ ହେଉଛି । ସ୍ନେହାର୍ଦ୍ର କଣ୍ଠରେ କହିଲେ, ସେ କଥା କ'ଣ ମୁଁ ଜାଣେ ନାହିଁ ମାଆ ? ନ ହେଲେ ସ୍ୱାମୀକୁ ସଙ୍ଗରେ ଧରି ତୁ ଆପଣା ଘରକୁ ଗଲାବେଳେ ତୋ ଆଖିରେ ଲୁହ ଆସିବ ଅବା କାହିଁକି ? କିନ୍ତୁ; ତଥାପି ତ ଅଟକାଇ ପାରିଲି ନାହିଁ ମାଆ ? କହି ହାତରେ ଆଖିର ଲୁହ ପୋଛି ପୁଣି ହସିଦେଇ କହିଲେ, ପାଖରେ ଥିଲେ, ଦିନରାତି ଉପଦ୍ରବ

କରିଥାନ୍ତି । ବର୍ତ୍ତମାନ ସେତକ କରି ପାରିବି ନାହିଁ ସତ, କିନ୍ତୁ ସମସ୍ତ ଆସିବ ଦିନେ ସୁଧମୂଳ ଆଦାୟ କରି ନେବାରେ ଆଦୌ ହେଳା କରିବି ନାହିଁ ।

ସୁରେଶ ପଛରେ ଥିଲା । ସେ ଆଜି ଯଥାର୍ଥରେ ପ୍ରଥମ କରି ବୃଦ୍ଧଙ୍କର ପାଦଧୂଳି ଭକ୍ତିଭରେ ଗ୍ରହଣ କରି ପ୍ରଣାମ କଲା । ବୃଦ୍ଧ ଚୂପ ଚୂପ କରି କହିଲେ, ତୁମେ ଆମଘରେ ସୁଖରେ ନଥିଲ, ଏକଥା ମୁଁ ଭଲ କରି ଜାଣେ ସୁରେଶବାବୁ, ନିଜ ଘରେ ଏଥର ଯେପରି ଏତିକ ଦୂର ହୁଏ ତାହା ମୁଁ କାୟମନ ବାକ୍ୟରେ ଭଗବାନଙ୍କ ଠାରେ ପ୍ରାର୍ଥନା କରୁଛି ।

ସୁରେଶ କୌଣସି କଥା କହିଲା ନାହିଁ । କେବଳ ମୁଣ୍ଡ ନୁଆଁଇ ପ୍ରଣାମ କରି ଗାଡ଼ିରେ ବସିଲା ।

ରାମବାବୁ ଆଉ ଥରେ ଆଶୀର୍ବାଦ ଜଣାଇ ଉଚ୍ଚସ୍ୱରରେ କହି ଉଠିଲେ; ସେ ମଧ୍ୟ ଗୋଟିଏ ଘୋଡ଼ା ଗାଡ଼ି ମଗାଇ ଦେଇଛନ୍ତି । ସମ୍ଭବତଃ ଓପର ଓଳି ଯାଇ ପହଞ୍ଚି ପାରନ୍ତି । କିନ୍ତୁ ସେତେବେଳେ ରାଗ କଲେ ଚଳିବ ନାହିଁ । ଏହା କହି ଅଟ୍ଟହାସ କରିବାକୁ ଯାଇ କେବଳ ଗୋଟିଏ ଦୀର୍ଘ ନିଶ୍ୱାସ ତ୍ୟାଗ କରି ଚୂପ୍ ହୋଇଗଲେ ।

ଗାଡ଼ି ଚାଲିଯିବା ପରେ ମନେ ମନେ ସେ କହିବାକୁ ଲାଗିଲେ, ଯାହାହେଉ ବେଳ ଥାଉ ଥାଉ ସେମାନେ ବାହାରି ଗଲେ । ଏଠାରେ ଯେ କେବଳ ସ୍ଥାନାଭାବ ହୋଇଥାନ୍ତା ତାହାନୁହେଁ ବରଂ ତାଙ୍କର ବିଧବା ଭଉଣୀଟିର ଚାଲିଚଳଣି ସେମାନଙ୍କୁ ବହୁତ କଷ୍ଟ ଦେଇଥାନ୍ତା । ଅନ୍ୟ ଲୋକର ଇତିବୃତ୍ତି ଖୋଳାଖୋଳି କରି ଖୋଜି ବୁଝିବାରେ ତାର ଅତ୍ୟନ୍ତ ଆନନ୍ଦ । ସେ ଆସିବାକ୍ଷଣି ସୁରମାକୁ କଠିନ ପରୀକ୍ଷା କରି ବସିବ ଏବଂ ତାର ଫଳ ଆଉ ଯାହା ହେଉ କିନ୍ତୁ ସେଥିରେ ଆନନ୍ଦ କରିବାର କିଛି ନଥିବ । ଏ ଝିଅଟି ବିଷୟରେ କିଛି ନଜାଣି ସୁଦ୍ଧା ସେ ଏତିକି ଜାଣି ପାରିଥିଲେ ଯେ ପ୍ରକୃତରେ ସେ ଖୁବ୍ ଭଦ୍ର । କୌଣସି ସୁବିଧା କିମ୍ବା ନିଜର ସ୍ୱାର୍ଥ ସାଧନ ପାଇଁ ସେ କୌଣସି ମତେ ମିଛ କହି ପାରିବ ନାହିଁ । ସେ ଯେ ବ୍ରାହ୍ମ-ପିତାର କନ୍ୟା, ସେ ନିଜେ ଯେ ଛୁଆଁ ଅଛୁଆଁ, ଠାକୁର ଦେବତା ମାନେ-ନାହିଁ, ଏଥିରୁ କୌଣସିଟା ସେ ଆଦୌ ଗୋପନ ରଖି ପାରିବ ନାହିଁ । ସେତେବେଳେ ଏ ଘରେ ଯେଉଁ ବିପ୍ଳବ ଘଟିଯିବ ତାହା କଳ୍ପନା କରି ବସିଲେ, ହୃତକମ୍ପ ଜାତହୁଏ । କିନ୍ତୁ ଏ'ତ ଗଲା ତାଙ୍କର ସୁଖ ସୁବିଧା କଥା । କିନ୍ତୁ ଆଉ ଗୋଟାଏ ଅସଲ କଥା ଥିଲା ଯାହାକୁ କି ସେ ନିଜ ପାଖରେ ସ୍ପଷ୍ଟ କରିବାକୁ ଚାହାନ୍ତି ନାହିଁ । ତାଙ୍କ ନିଜର ଝିଅ ନାହିଁ ସତ କିନ୍ତୁ ପ୍ରଥମ ସନ୍ତାନ ତାଙ୍କର

କନ୍ୟା ହୋଇ ଜନ୍ମ ହୋଇଥିଲା । ଆଜି ସେ ବଞ୍ଚି ରହିଥିଲେ ଅଚଳାର ଜନନୀ ହୋଇପାରି ଥାନ୍ତା । ସୁନ୍ଦରୀଂ ବୟସ କିମ୍ବା ଚେହେରାର ସାଦୃଶ୍ୟ କିଛି ମଧ୍ୟ ନଥିଲା । କିନ୍ତୁ ମମତାର କ୍ଷୁଧାଟା ଯେ ତାଙ୍କର କେତେବଡ଼ ଥିଲା, ଯେତେବେଳେ ଅଚହ୍ନା ଝିଅଟିକୁ ରାସ୍ତାରେ କାନ୍ଦି କାନ୍ଦି ଚକସ୍ତ୍ରକ ଅନୁସନ୍ଧାନ କରୁଥିବାର ଦେଖିଲେ, ସେତେବେଳେ ହିଁ ତାର ସନ୍ଧାନ ପାଇଥିଲେ । ସେଦିନ ତାଙ୍କର ମନେ ହୋଇଥିଲା, ବହୁ ଦିନରୁ ହଜାଇ ଥିବା ଝିଅଟିକୁ ଯେପରି ସେ ହଠାତ୍ ପାଇ ପାରିଲେ । କ୍ରମେ କ୍ରମେ ସେ କ୍ଷୁଧାଟା ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଲା ଏବଂ ସେ ଅନ୍ତରରେ ବାତ୍ସଲ୍ୟମମତା ଅନୁଭବ କରୁଥିଲେ ମଧ୍ୟ କିପରି ଏକ ଗମ୍ଭୀର ସଂଦେହ ଏହି ଝିଅକୁ ନେଇ ତାଙ୍କ ମନ ଭିତରେ ସଦାବେଳେ ଜାଗି ଉଠୁଥିଲା । ପୁଣି ମନେ ମନେ ସେ କହିବାକୁ ଲାଗିଲେ ସେ ଯେପରି ଅଛି ସେହିପରି ଆଖିର ଅନ୍ତରାଳରେ ରହିଥାଉ । ଚେଷ୍ଟାକରି ତାକୁ ବିଶ୍ଳେଷଣ କରି ଲାଭ ନାହିଁ ।

ଦିନେ ରାକ୍ଷସୀ ତାଙ୍କୁ ଏତିକି ମାତ୍ର ଆଭାସ ଦେଇଥିଲା ଯେ, ବୋଧହୁଏ ସେମାନଙ୍କ ଭିତରେ ଗୋଟାଏ କିଛି ପାରିବାରିକ ଭୁଲ ବୁଝାମଣା ଅଛି କିମ୍ବା ପରିବାର ଭିତରେ କାହା ସହିତ କଳହ କରି ସୁରେଶବାବୁ ସ୍ତ୍ରୀକୁ ସଙ୍ଗରେ ଧରି ଘର ଛାଡ଼ି ଚାଲି ଆସିଛନ୍ତି । ହଠାତ୍ ଯେଉଁଦିନ ଅଚଳା ନିଜକୁ ବ୍ରାହ୍ମ ମହିଳା ବୋଲି ପ୍ରକାଶ କରିଥିଲା ଅଥଚ ସୁରେଶର କାନ୍ଧରେ ଏଥିପୂର୍ବରୁ ଯଜ୍ଞୋପବୀତ ଦେଖା ଯାଇଥିଲା, ସେହିଦିନ ବୃଦ୍ଧ ଚମକି ଉଠିଥିଲେ । ଆଘାତ ପାଇଥିଲେ । କିନ୍ତୁ ମନେ ମନେ ଯେପରି ଏହି ଗୁପ୍ତ ରହସ୍ୟର କାରଣ ଖୋଜି ଏତିକି ମାତ୍ର ଜାଣି ପାରିଥିଲେ ଯେ ସୁରେଶ ବ୍ରାହ୍ମ ଘରେ ବିବାହ କରିବାରୁ ଏପରି ବିପତ୍ତି ଘଟିଅଛି ଏଥିରେ କୌଣସି ସନ୍ଦେହ ନାହିଁ । କ୍ରମଶଃ ଏହି ଧାରଣା ହିଁ ତାଙ୍କର ମନରେ ବଦ୍ଧମୂଳ ହୋଇ ରହି ଯାଇଥିଲା ।

ଏହି ବୃଦ୍ଧଜଣକ ପ୍ରକୃତରେ ହିନ୍ଦୁ ଥିଲେ । ସେଥିପାଇଁ ହିନ୍ଦୁଧର୍ମର ନିଷ୍ଠାକୁ ସେ ପାଳନ କରିଥିଲେ । କିନ୍ତୁ ନିଷ୍ଠୁରତାକୁ ଘୃଣା କରୁଥିଲେ । ବ୍ରାହ୍ମଣ ସନ୍ତାନ ସୁରେଶର ଏପରି ଦୁର୍ଘଟଣା ନ ଘଟିଥିଲେ ସେ ହୁଏତ ଖୁସି ହୋଇଥାନ୍ତେ । କିନ୍ତୁ ଏଇ ଯେ ଭଲପାଇ ବିବାହ, ଏଇ ଯେ ଆତ୍ମୀୟ ସ୍ୱଜନଙ୍କଠାରୁ ବିଚ୍ଛେଦ, ଏଇ ଯେ ଲୁଚକାଳି ଖେଳ, ଏହାର ମାଧୁର୍ଯ୍ୟ, ଏହାର ସୌନ୍ଦର୍ଯ୍ୟ ଭିତରେ ଭିତରେ ତାଙ୍କୁ ମୁଗ୍ଧ କରୁଥିଲା । କେଜାଣି କାହିଁକି ଏସବୁକୁ ପ୍ରଶ୍ରୟ ଦେବାକୁ ଯାଇ ମନ ତାଙ୍କର ଅପୂର୍ବ ରସରେ ବୁଡ଼ି ଯାଉଥିଲା । ସେଥିପାଇଁ ଯେତେବେଳେ ଏହି ବିଦ୍ରୋହୀ ପ୍ରଣୟୀଙ୍କର ପ୍ରଣୟ–

ଅଭିମାନ ତାଙ୍କ ନିକଟରେ ମଝିରେ ମଝିରେ ମନୋମାଳିନ୍ୟ ଆକାରରେ ପ୍ରକାଶ ପାଉଥିଲା, ସେତେବେଳେ ଅତିଶଯ୍ୟ ଦୁଃଖରେ ସେ ବିଗ୍ଭି ଥିଲେ ଯେ, ପର ଘରେ ଅତ୍ୟନ୍ତ ସଙ୍କୀର୍ଣ୍ଣ ସଙ୍କୁଚିତ ଗଣ୍ଡି ଭିତରେ ଯେଉଁ ମିଳନ କେବଳ ଠୁକର ଖାଉଛି, ତାହା ହୁଏତ ନିଜର ଘର ଭିତରେ ସ୍ୱାଧୀନ ଓ ପ୍ରଶସ୍ତ ଅବକାଶ ଭିତରେ; ସଂସାରର ଅସଂଖ୍ୟ କାର୍ଯ୍ୟ ଓ ଅକାର୍ଯ୍ୟ ଭିତରେ, ଶାନ୍ତି ଓ ସାମଞ୍ଜସ୍ୟ ଭିତରେ ଆଦୌ ବଞ୍ଚିପାରିବ ନାହିଁ ।

ରାମବାବୁଙ୍କର ଗାଧୋଇବା ସମସ୍ତ ହୋଇ ଯାଇଥିଲା । ଗାମୁଛାଟାକୁ କାନ୍ଧରେ ପକାଇ ନଦୀ ଆଡ଼କୁ ଯାଉ ଯାଉ ମନେ ମନେ ହସି ଉଠି ସେ ବାରମ୍ବାର କହିବାକୁ ଲାଗିଲେ, ମାଆଟା, ଯିବାବେଳେ ଏଇ ବୁଢ଼ାଟା ଉପରେ ବଡ଼ ଅଭିମାନ କରି ଗ୍ଭଲିଗଲା । ଭାବିଲା, ଆପଣାର ଲୋକ ହୋଇ ବଡବାବା ଆମକୁ ତାଙ୍କ ଘରେ ରହିବାକୁ ସ୍ଥାନ ଟିକିଏ ହେଲେ ଦେଲେ ନାହିଁ । କିନ୍ତୁ ଦୁଇ ଚ୍ଚରି ଦିନ ପରେ ଯେତେବେଳେ ଯାଇ ଦେଖି ପାରିବ ଯେ, ପାଟିରେ, ମୁହଁରେ ଅସରନ୍ତ ହସଧାରା ଛୁଟି ଗ୍ଭଲିଛି ସେହିଦିନ ଯାଇ ଏହି ଅଭିମାନର ପ୍ରତିଶୋଧ ନେବ । ସେହିଦିନ କହିବ—ଏଇ ବୁଢ଼ାଟା ମୁଣ୍ଡରେ ହାତରଖି ସତକରି କହି ଆଗକାର ପୂର୍ବ ରାଗରୁସାର ମାତ୍ରାଟା ବଢ଼ିଛି ନା କମିଛି ? ଦେଖିବି ଝିଅ ସେତେବେଳେ କ'ଣ ଜବାବ ଦେବ ? କହି କହି ପ୍ରଶାନ୍ତ ନିର୍ମଳ ହାସ୍ୟରେ ତାଙ୍କର ସମସ୍ତ ମୁଖମଣ୍ଡଳ ଉଦ୍‌ଭାସିତ ହୋଇଉଠିଲା । ସେ ମନେ ମନେ ପରିଷ୍କାର ଦେଖିବାକୁ ପାଇଲେ ସୁରମା ଚୂପି ଚୂପି ହସିଦେଇ କାମର ବାହାନା ଦେଖାଇ ତାଙ୍କ ଆଗରୁ ଗ୍ଭଲିଯାଉଛି; ଏବଂ ପରକ୍ଷଣରେ ଥାଳିରେ ସନ୍ଦେଶ ଧରି ଫେରିଆସି ଅସମ୍ଭବ ଗମ୍ଭୀର ମୁହଁରେ କହୁଛି—ମୋ ହାତ ତିଆରି ଏଇ ମିଠା ଯଦି ଆପଣ ବଡ଼ବାବା ନ ଖାଆନ୍ତି ନା, ତେବେ ଦେଖିବେ ଆପଣଙ୍କୁ ଆଦୌ କଥା କହିବ ନାହିଁ ।

ସ୍ନାନ ସାରି ଜଳରେ ଠିଆହୋଇ ଗଙ୍ଗା ସ୍ତୋତ୍ର ଆବୃତ୍ତି କଲାବେଳେ ମଝିରେ ମଝିରେ ଝିଅଟାର ସେହି ଲୁଗ୍ଭଇବାର ଚେଷ୍ଟାକୁ ରାଗ ଦେଇ ମାଛକୁ ତାଙ୍କି ରଖିଲା ସଙ୍ଗେ ତୁଳନା କରି ବୁଢ଼ା ମନେ ମନେ ହସିବାକୁ ଲାଗିଲେ ଏବଂ ଅନ୍ତର ଭିତରେ ଯେଉଁ କ୍ଷୋଭ ଗତ ରାତିରୁ ନିରନ୍ତର ବଢ଼ି ଗ୍ଭଲିଥିଲା, ତାହା ସନ୍ଧ୍ୟା ଆହ୍ନିକ ସାରି ଫେରିବା ବାଟରେ କଲ୍ପନାର ସ୍ନିଗ୍ଧ ବର୍ଷାରେ ଭିଜି ତରଳ ପାଣି ହୋଇଗଲା ।

କାଲି ସକାଳେ ସମସ୍ତେ ଆସି ପହଞ୍ଚିବେ ବୋଲି ଟେଲିଗ୍ରାମ ଆସିଛି । ସଙ୍ଗରେ ରାଜକୁମାର ନାତି ଏବଂ ରାଜବଧୂ ଭଉଣୀ ସହିତ ସମ୍ଭବତଃ ଅଧିକା କେତେଜଣ ଲୋକ ଆସିବେ । ଆଜି ଘରେ ତାଙ୍କର ସେପରି ବିଶେଷ କିଛି କାର୍ଯ୍ୟ ନଥିଲା, ଅଧିକନ୍ତୁ ଆକାଶର ଗତି ମଧ୍ୟ ଭଲ ନଥିଲା, କିନ୍ତୁ କାଲେ ବର୍ଷା ହୋଇପାରେ ଏବଂ ରାସ୍ତାରେ ବିଘ୍ନ ଘଟିପାରେ ଏହି ଆଶଙ୍କାରେ ରାମବାବୁ ବେଳ ବୁଡ଼ୁ ନ ବୁଡ଼ୁଣୁ ଗୋଟାଏ ଟୈକା ଭଡ଼ାକରି ତାକୁ ଅଧିକା ଭଡ଼ାର ଆଶା ଦେଖାଇ ଶୀଘ୍ର ଗାଡ଼ି ଚଳାଇବାକୁ କହିଲେ । କିନ୍ତୁ ବାଟରେ ପାଣି ଓ ପବନଙ୍କର ସାକ୍ଷାତ୍ ମିଳିଲା ତେଣୁ ସେମାନଙ୍କ ଘରେ ପହଞ୍ଚିଲାବେଳକୁ ରୀତିମତ ବର୍ଷା ଆରମ୍ଭ ହୋଇ ଯାଇଥିଲା ।

ଅଚଳା ବାହାରକୁ ବାହାରି ଆସି କହିଲା—ଏଭଳି ଦୁର୍ଯୋଗ ଭିତରେ ପୁଣି କାହିଁକି ଆସିଲେ ବଡ଼ବାବା ? ଆଉ ତ ଟିକିଏ ଡେରି ହୋଇଥିଲେ ସମ୍ପୂର୍ଣ୍ଣ ଓଦା ହୋଇ ଯାଇଥାନ୍ତେ ?

ଅଚଳା ମୁହଁରେ ଏବଂ ମନରେ ସେପରି କୌଣସି ଆନନ୍ଦର ଚିହ୍ନ ନ ଦେଖିବା ଫଳରେ ବୁଢ଼ାଙ୍କର ମନ ଦବିଗଲା ଏଥିପାଇଁ ସେ ଆଦୌ ପ୍ରସ୍ତୁତ ନଥିଲେ । କିଏ ଯେପରି ତାଙ୍କର କଳ୍ପନାର ସୁନେଲି ସ୍ୱପ୍ନକୁ ସମ୍ପୂର୍ଣ୍ଣ ଭାବରେ ଧୂଳିସାତ୍ କରିଦେଲା । ତଥାପି ମୁହଁ ଉପରେ ହସ ରଖି ସେ କହିଲେ, ଆରେ ବାପ୍‌ରେ ! ତାହାହେଲେ କ'ଣ ଆଉ ରକ୍ଷା ଥିଲା ? ବର୍ଷାରେ ଓଦା ହେବାଟାକୁ ହୁଏତ ସହ୍ୟ କରିପାରିବି କିନ୍ତୁ ସବୁଦିନ ପାଇଁ ଶେଜ୍ୟପୂନ୍ନ ହୋଇ ମୋର କିଏ ରହିପାରିବ, ମାଆ ?

ଏହି ଦୁର୍ବୋଧ ଝିଅଟାକୁ ବୁଢ଼ା କୌଣସି ଦିନ ଭଲ କରି ଚିହ୍ନିପାରି ନାହାନ୍ତି । ବିଶେଷତଃ ଗତ କାଲିର ବ୍ୟବହାରରେ ସେ ତ ଆଶ୍ଚର୍ଯ୍ୟରେ ଆବାକାବା ହୋଇ ଯାଇଥିଲେ । କିନ୍ତୁ ଆଜି ତାର ଆଚରଣରେ ସେ ଦିଗହରା ଓ ଆତ୍ମହରା ହୋଇ ପଡ଼ିଲେ । ସେ କୌଣସି ସମୟରେ, କୌଣସି କାରଣରୁ ଏପରି ଯେ କରିପାରେ ସେହିପରି ସ୍ୱପ୍ନ ଦେଖିବା ସେପରି ଅସମ୍ଭବ । କଥାଟି ମାତ୍ର ଏତିକି । କିନ୍ତୁ ହଠାତ୍ ଝିଅଟା ଠିକ୍ ପାଗଳୀଙ୍କ ଭଳି ଦୌଡ଼ିଆସି ତାଙ୍କ ଗୋଡ଼ରେ ଲୋଟିପଡ଼ି କଇଁ, କଇଁ ହୋଇ କାନ୍ଦିବାକୁ ଲାଗିଲା । କହିଲା ବଡ଼ବାବା, ମୋତେ ଆପଣ କାହିଁକି ଏତେ ସ୍ନେହ କରୁଛନ୍ତି ଯାହାଫଳରେ ମୁଁ ଲାଜରେ ମରିଯାଉଛି ?

ଅନେକ କ୍ଷଣ ପର୍ଯ୍ୟନ୍ତ ବୃଦ୍ଧ କୌଣସି କଥା କହି ପାରିଲେ ନାହିଁ । କେବଳ ଗୋଟିଏ ହାତରେ ତାକୁ ଛାତିରେ ଚାପିଧରି ଅନ୍ୟ ହାତରେ ତାର ମଥାରେ ହାତ ବୁଲାଇବାକୁ ଲାଗିଲେ । ତାଙ୍କର ସ୍ନେହାର୍ଦ୍ର ଚିତ୍ତ ସେହିସବୁ ସମାଜ ଅନୁମୋଦିତ ବିବାହର କଥା, ଆତ୍ମୀୟ ସ୍ୱଜନ, ଜନ୍ମଦାତ ଅବା ବାପ, ମାଆଙ୍କ ସହିତ ବିଦ୍ରୋହ, ବିଚ୍ଛେଦର କଥା, ବିବାଦ କରି ଗୃହତ୍ୟାଗ କରିବାର କଥା—ଏହିସବୁ ପୁରାତନ, ପରିଚିତ, ବହୁବାରର ଅଭ୍ୟସ୍ତ ଧାରା ଉପରେ ଗଢ଼ି ଚାଲିଲା ସିନା କିନ୍ତୁ କୌଣସି ମତେ ଆଜି ଗୋଟାଏ ନୂଆ କିଛି କଳ୍ପନା କରି ପାରିଲା ନାହିଁ । ଏହିପରି ନିର୍ବାକ ବୃଦ୍ଧ ଓ ଶ୍ରେଣୁଦ୍ୟମାନା ତରୁଣୀ ବହୁକ୍ଷଣ ପର୍ଯ୍ୟନ୍ତ ଠିଆହୋଇ ରହିଲେ । ତାପରେ ଚୁପ୍ ଚୁପ୍ କରି ବୃଦ୍ଧ କହି ଉଠିଲେ, ଏଥିରେ ଆଉ ଲଜ୍ଜ୍ୟା କ'ଣ ଅଛି ମାଆ ? ତୁ ମୋର ଝିଅ, ତୁ ମୋର ସେହି ସନ୍ତାଲକ୍ଷ୍ମୀ ମାଆ, ଯିଏ କି ଅନେକ ଦିନ ତଳେ ମାତ୍ର ଦୁଇଦିନ ପାଇଁ ମୋ କୋଳକୁ ଆସି ଚାଲିଯାଇଥିଲୁ । ମାୟା ତୁଟାଇ ନପାରି ପୁଣି ବାପର ଛାତିକୁ ଫେରି ଆସିଛୁ । ମୁଁ ଯେ ତୋତେ ଦେଖିଲା ମାତ୍ରେ ଚିହ୍ନି ପାରିଥିଲି ସୁରମା ! କହି, ତାକୁ ଗୋଟାଏ ଚଉକିରେ ବସାଇଦେଇ ବାରମ୍ବାର ଏହିକଥା ବୁଝାଇବାକୁ ଲାଗିଲେ ଯେ—ଏଥିରେ ଲଜ୍ଜ୍ୟା କରିବାର, ସରମ କରିବାର କିଛି ନାହିଁ । ଯୁଗେ ଯୁଗେ ଚିରଦିନ ଧରି ଏହା ହୋଇଆସିଛି । ଯିଏ ସତୀ, ଯିଏ ସ୍ୱୟଂ ଆଦ୍ୟା ଶକ୍ତି, ସେ ମଧ୍ୟ ଦିନେ ସ୍ୱାମୀ ସହିତ ଘର-ସଂସାର କରିବା ପାଇଁ ବାପା, ମାଆ, ଆତ୍ମୀୟସ୍ୱଜନଙ୍କ ସହିତ ଝଗଡ଼ା କରି ଚାଲି ଯାଇଥିଲେ । ପୁଣି ସବୁ ହେବ । ପୁଣି ସବୁ ଫେରି ଆସିବ । ସେମାନେ ପୁଣି ଆସି ସେମାନଙ୍କର ପୁଅ ବୋହୂଙ୍କୁ ଘରକୁ ଆଦରରେ ଡାକି ନେବେ । ଦେଖ, ମୋର ଏ ଆଶୀର୍ବାଦ କେବେହେଲେ ବିଫଳ ହେବନାହିଁ ମାଆ ।

ଏହିପରି କେତେ କ'ଣ ବୃଦ୍ଧ ମନର ଆବେଗରେ କହିଚାଲିଲେ । ସେଥିରେ ସାର ଯାହାଥିଲେ ଥାଉ କିନ୍ତୁ ତାହାର ଓଜନରେ ଶ୍ରୋତାର ଆନତ ମଥାଟି ଯେପରି ଧୀରେ ଧୀରେ ଧୂଳି ସଙ୍ଗରେ ମିଶିଯିବାକୁ ଉପକ୍ରମ କରିବାକୁ ଲାଗିଲା । ବର୍ଷା ଜୋରରେ ଆସୁଥିଲା । ଏପରି ସମୟରେ ଦେଖାଗଲା ସୁରେଶ କୁଆଡ଼ୁ ଓଦା ସର ସର ହୋଇ ଘର ଭିତରକୁ ଆସି ପଶିଲା । ସୁରେଶକୁ ଦେଖିବାକ୍ଷଣି ଅଚଳା ତରତର ହୋଇ ଆଖିର ଲୁହ ପୋଛି ପକାଇଲା ଏବଂ ଉଠି ଠିଆହୋଇ ପଡ଼ି ବର୍ଷାପାଣି ହାତରେ ଆଣି ମୁହଁଟା ଧୋଇ ପୋଛିନେଲା ।

ରାମବାବୁ ବୁଝିପାରିଲେ ଯେଉଁଥିପାଇଁ ହେଉ ପଛକେ ସ୍ୱାମୀ ଆଗରୁ ଆଖିର ଲୁହକୁ ଲୁଚାଇବା ପାଇଁ ସୁରମା ସଦାବେଳେ ଇଚ୍ଛାକରେ ।

ସୁରେଶ ଉପରକୁ ଉଠିଯାଇ ରାମବାବୁଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇ କିଛି କହିବାର ଉପକ୍ରମ କରୁଥିବାର ଦେଖି ରାମବାବୁ ବ୍ୟସ୍ତହୋଇ କହି ଉଠିଲେ, କଥାବାର୍ତ୍ତା ପରେ ହେବ। ସୁରେଶବାବୁ । ମୁଁ ତ କୁଆଡ଼େ ପଳାଇ ଯାଉନାହିଁ, ଆପଣ ଲୁଗା ବଦଳାଇ କରି ଆସନ୍ତୁ ।

ସୁରେଶ କହିଲା—ଏ କିଛି ନୁହେଁ । ଟୋଗୋଟାଏ ଚୌକି ଟାଣିଆଣି ସୁରେଶ ବସିବାକୁ ଉଦ୍ୟମ କରୁଥିବାବେଳେ ଅଚଳା ମୁହଁ ଟେକି ଚାହିଁ କହିଲା— ବଡ଼ବାବାଙ୍କର କଥାଟା ଶୁଣିଲେ ଦୋଷ ଅବା କ'ଣ ? ତୁମେ ଏତେବଡ଼ ବେମାରିରୁ ଉଠିବାର ମାସଟାଏ ହୋଇନାହିଁ, ଥରକୁ ଥର ଏପରି ମୋତେ କେତେ ଆଉ ଶାସ୍ତି ଦେବାକୁ ଚାହୁଁଛ ?

ତାର କଥା ଓ ଚାହାଁଣୀ ଭିତରେ ଏତେ ଦୂର ବ୍ୟବଧାନ ଥିଲା ଯେ, ଦୁଇଜଣ ବିସ୍ମିତ ହୋଇଉଠିଲେ । କିନ୍ତୁ କିଛି ସମୟ ପରେ ଏହି ବିସ୍ମୟର ସୋତଟା ଠିକ୍ ବିପରୀତ ଦିଗକୁ କହିବାକୁ ଲାଗିଲା ।

ସୁରେଶ କୌଣସି ଜବାବ ନ ଦେଇ ନୀରବରେ ଆଦେଶ ପାଳନ କରିବା ପାଇଁ ଚାଲିଗଲା ।

ରାମବାବୁ ବାହାରକୁ ଚାହିଁ ବସି ରହିଲେ ।

ବାହାରେ ହେଉଥିବା ବର୍ଷାର ଯେପରି ଆଉ ବିରାମ କଥିଲା । ରାତି ଯେତେ ବଢିବାକୁ ଲାଗିଥିଲା ବର୍ଷାର ପ୍ରକୋପ ସେତିକି ବଢି ଚାଲିଥିଲା । ବହୁଦିନ ଧରି ବର୍ଷା ନହେବା ଫଳରେ ଧରିତ୍ରୀ ଶ୍ରୀହୀନା ହୋଇ ପଡ଼ିରହିଥିଲା । ମନେ ହେବାକୁ ଲାଗିଲା, ସତେ ଯେପରି ଧରିତ୍ରୀ ମାଆର ସମସ୍ତ ଦୀନତା, ସମସ୍ତ ଅଭାବ, ଆଜି ରାତିକ ଭିତରେ ପୂର୍ଣ୍ଣ କରିଦେବା ପାଇଁ ବିଧାତା ପ୍ରତିଜ୍ଞା କରି ଉଠିଛନ୍ତି ।

ରାମବାବୁଙ୍କର ଉଦ୍‌ବେଗ ଲକ୍ଷ୍ୟ କରି ଅଚଳା ଧୀରେ ଧୀରେ କହିଲା— ଫେରିଯିବା ପାଇଁ ବଡ଼ କଷ୍ଟ ହେବ ବଡ଼ବାବା, ଆଜି ରାତିରେ ନ ଗଲେ କ'ଣ ଚଳିବ ନାହିଁ ?

ରାମବାବୁ ତୃପ୍ତିର ହସ ହସିଲେ । ମନର ଚଞ୍ଚଳତାକୁ ସଞ୍ଚିତ କରି କହିଲେ, କଷ୍ଟପାଇଁ ଯେତିକି ନ ହେଉ, ଏ ଦୁର୍ଯ୍ୟୋଗରେ ଏଇ ନୂଆ ଜାଗାରେ ତୁମମାନଙ୍କୁ ଛାଡ଼ି ମୁଁ ଆଦୌ ଯାଆନ୍ତି ନାହିଁ । କିନ୍ତୁ କାଲି ସକାଳେ ଯେ ସେମାନେ ସମସ୍ତେ ଆସି ପହଞ୍ଚିବେ । ରାତି ଭିତରେ ଫେରି ନଗଲେ ନଚଳେ

ସୁରମା । ମୋର କପର ମନେ ହେଉଛୁ ଆଉ ଏପରି ବର୍ଷା ହେବନାହିଁ, ଘଣ୍ଟାକ ପରେ ନିଶ୍ଚୟ ବର୍ଷା ଛାଡ଼ିଯିବ । ମୁଁ ଏତକ ସମୟ ଆଗ ଅପେକ୍ଷା କରି ଦେଖେ ।

ଇତି ମଧ୍ୟରେ କାଲି ଯେଉଁମାନେ ଆସୁଛନ୍ତି ସେମାନଙ୍କ କଥାରୁ ଆରମ୍ଭ କରି ସଂସାରର ଦିଗରୁ, ସମାଜ ଦିଗରୁ, ଧର୍ମାଧର୍ମ, ପାପପୁଣ୍ୟ, ଇହଲୋକ, ପରଲୋକ ପ୍ରଭୃତି କେତେଦିଗରୁ ଆଲୋଚନା ଚାଲିଥିଲା । କଥାବାର୍ତ୍ତା ଭିତରେ ଉଭୟ ଏପରି ମଗ୍ନ ହୋଇ ରହିଲେ ଯେ, ରାତି କେତେ ହେଲାଣି, କାହାର ସେଥିପ୍ରତି ଖିଆଲ ରହିଲା ନାହିଁ । ବାହାରେ ମେଘର ଗର୍ଜ୍ଜନ ଓ ବର୍ଷଣ ଉତ୍ତରୋତ୍ତର କି ଭାବରେ ବଢିଚାଲିଥାଏ ଏବଂ ଅନ୍ଧକାର କେତେ ଦୁର୍ଭେଦ୍ୟ ହୋଇ ପଡ଼ିଥାଏ ତାହା ଦେଖିବାକୁ କାହାର ମନେ ପଡ଼ିଲା ନାହିଁ । ବୃଦ୍ଧ ରାମବାବୁଙ୍କ ଭିତରେ ଯେଉଁ ଜ୍ଞାନ, ଯେଉଁ ଭୂୟୋଦର୍ଶନ, ଯେଉଁ ଭକ୍ତି ସଞ୍ଚିତ ହୋଇଥିଲା, ତାହା ଏହି ପରମ ସ୍ନେହଶୀଳା ପାର୍ଶ୍ୱୀ ନିକଟରେ ଅବାଧରେ ଫିଟି ପଡ଼ିବା ଫଳରେ କେବଳ ମାତ୍ର ଦୁଇଟି ଲୋକଙ୍କର ସତ୍ତାକୁ ଯେପରି ମାଧୁର୍ଯ୍ୟରେ ମଣ୍ଡିତ କରିଦେଲା । ଅଚଳାର କେବଳ ଏତକ ଚେତନା ଅବଶିଷ୍ଟ ରହିଲା ଯେ, ସେ ଏପରି ଜଣେ ଲୋକକୁ ପାଇ ପାରିଛି ଯିଏ କି ନିଷ୍ପାପ ଏବଂ ଯାହାଙ୍କର ସ୍ନେହ, ପ୍ରୀତି ଓ ଶ୍ରଦ୍ଧା ତାର ସବୁଦିନ ପାଇଁ ମନେ ରହିବ ।

ହଠାତ୍ ପାଦଶବ୍ଦ ଶୁଣି ଉଭୟେ ଫେରି ଚାହିଁ ଦେଖିଲେ ଯେ, ଚାକର ଆସି ଠିଆ ହୋଇଛି । ସେ କହିଲା, ମାଆ, ରାତି ଅନେକ ହେଲାଣି ସମ୍ଭବତଃ ବାରଟା ବାଜିବ । ଆପଣଙ୍କ ପାଇଁ କ'ଣ ଖାଇବା ଆଣିବ ?

ଅଚଳା ଚମକି ପଡ଼ି କହିଲା—ବାରଟା ବାଜିଲାଣି ? ବାବୁ ?

: ସେ ଏଇ ବର୍ତ୍ତମାନ ଖାଇସାରି ଶୋଇବାକୁ ଗଲେ ।

ସୁରେଶ ସେତେବେଳରୁ ଯାଇଛନ୍ତି ଯେ ଆଉ ଫେରି ନାହାନ୍ତି, ଏହା କେବଳ ବର୍ତ୍ତମାନ ହିଁ ସେ ଜାଣିପାରିଲା । ଅଚଳା ଉର୍ଦ୍ଧ୍ୱମାରି ଦେଖିଲା ଶୋଇବା-ଘରର ପର୍ଦ୍ଦାଫାଙ୍କ ଦେଇ ଆଲୁଅ ଦେଖା ଯାଉଛି ।

ବୃଦ୍ଧ ରାମବାବୁ ଲଜ୍ଜିତ ହୋଇ ବାରମ୍ବାର କହିବାକୁ ଲାଗିଲେ, ମୋର ବଡ଼ ଅନ୍ୟାୟ ହୋଇଯାଇଛି ମାଆ । ତୋତେ ଏପରି ଭାବରେ ଅଟକାଇ ରଖିଲି ଫଳରେ ତୁ ତାଙ୍କ ଖାଇବାର ତତ୍ତ୍ୱ ନେଇପାରିଲୁ ନାହିଁ । ବର୍ତ୍ତମାନ ଯାଆ ମାଆ, ତୁ ଖାଇବୁ······

ଅଚଳା ବୋଧହୁଏ ଏ ସବୁ କଥାରେ କାନଦେଲା ନାହିଁ । ଚାକରକୁ ପଚାରିଲା —କୋଚମ୍ୟାନ ଗାଡ଼ି ଘୋଡ଼ା ଠିକ୍ ସମୟରେ ଆଣିଲା ନାହିଁ କାହିଁକି ?

ଏହିଭଳି ଝଡ଼ ବର୍ଷା ଓ ଅନ୍ଧାରରେ ନୂଆ ଘୋଡ଼ା ବାହାର କରିବାକୁ ସେ ସାହସ କରି ପାରିଲା ନାହିଁ ।

: ତାହାହେଲେ ଆଉ ଅନ୍ୟ କୌଣସି ଗାଡ଼ି କାହିଁକି ଅଣାଯାଇ ନାହିଁ ?

ଚାକରଟି ନୀରବ ହୋଇ ଠିଆହୋଇ ରହିଲା । ତାହାର ଅର୍ଥ ଅପରାଧ ସ୍ୱୀକାର କରିବା ନୁହେଁ ବରଂ ପ୍ରତିବାଦ କରିବା ଯେ. ସେ ଅନ୍ୟ ଗାଡ଼ି ଡାକିବାପାଇଁ କାହାଠାରୁ ହୁକୁମ ପାଇନଥିଲା ।

ରାମବାବୁ ଆନନ୍ଦିତ ହେବା ପରିବର୍ତ୍ତିରେ ଲଜ୍ଜ୍ୟାପାଇ କହିବାକୁ ଲାଗିଲେ— ଗାଡ଼ିର ଦରକାର ନାହିଁ ମାଆ, ରାତିରେ ନଗଲେ ମଧ୍ୟ କ୍ଷତି ନାହିଁ, କେବଳ ସକାଳୁ ଯାଇ ଷ୍ଟେସନରେ ହାଜର ହୋଇପାରିଲେ ହେଲା । ରାତ୍ରିରେ ମୁଁ କିଛି ଖାଏନାହିଁ । ତୁ କେବଳ ଦୁଇଟି ଖାଇନେଇ ଶୋଇବୁ ଯାଆ; ମାଆ । କଥା ହେଉ ହେଉ ବହୁତ ରାତି ହୋଇଗଲା । ତୁ ଖାଇବୁ ଯାଆ, ଏହା କହି ଜୋର କରି ଅଚଳାକୁ ତଳକୁ ଖାଇବା ପାଇଁ ପଠାଇ ଦେଲେ । ପନ୍ଦର ମିନିଟ୍ ପରେ ଅଚଳା ଯେତେବେଳେ ଖାଇସାରି ପୁଣି ଉପରକୁ ଫେରି ଆସିଲା, ସେତେବେଳେ ସେ ବ୍ୟଗ୍ର ଓ ଉତ୍ସୁକ ହୋଇ କହି ଉଠିଲେ, ଆଉ ମିନିଟିଏ ଡେରି କରନାହିଁ ମାଆ । ଯାଆ ତୁ ଶୋଇବୁ ଯାଆ । ମୁଁ ଏଇ ବୈଠକ ଘରେ କୋଚ ଉପରେ ଶୋଇ ପାରିବି ମାଆ । ମୋର କୌଣସି କଷ୍ଟ, କୌଣସି ଅସୁବିଧା ହେବନାହିଁ ।

ବୃଦ୍ଧଙ୍କର ସନିର୍ବନ୍ଧ ଆବେଦନ, ନିବେଦନ ଏବଂ ପୁନଃ ପୁନଃ ଉତ୍ତେଜନା ଅଚଳାକୁ କିପରି ମୋହରେ ପକାଇଦେଲା । ଯେଉଁ ମିଥ୍ୟା ସମ୍ମାନ, ପ୍ରୀତି ଓ ଶ୍ରଦ୍ଧା ତାର ଏହି ନିତ୍ୟ ଶୁଭାକାଂକ୍ଷୀ ପିତୃବ୍ୟସମ ବୃଦ୍ଧଙ୍କ ନିକଟରୁ ଏତେକାଳ ଧରି ସେ କେବଳ ପ୍ରତାରଣା ଦ୍ୱାରା ପାଇ ଆସିଅଛି; ସେହି ଲୋଭ ହିଁ ତାର ଏକାନ୍ତ ଦୁଃସମୟରେ କଣ୍ଠରୋଧ କରି ଅପ୍ରତିହତ ଶକ୍ତିରେ ସୁରେଶର ସେହି ନିର୍ଜ୍ଜନ ଶୟନ କକ୍ଷକୁ ଠେଲିବାକୁ ଲାଗିଲା । ତାର ମନେ ପଡ଼ିଲା; ଏପରି ଏକ ଜଳ-ଦୁର୍ଦ୍ଦିନ ରାତ୍ରି ତାକୁ ସ୍ୱାମୀହରା କରାଇଥିଲା । ଆଜି ପୁଣି ସେହିପରି ଏକ ଦୁର୍ଦ୍ଦିନର

ଦୁରଭିକମ୍ୟ ଅଭିଶାପ ତାକୁ ସବୁଦିନ ପାଇଁ ସୀମାହୀନ ଅନ୍ଧକାରରେ ଡୁବାଇବା ପାଇଁ ଉଦ୍ୟତ ହୋଇଅଛି । କାଲି ଅସହ୍ୟ ଅପମାନରେ; ଲଜ୍ଜ୍ୟାର ଗଭୀରତମ ପଙ୍କରେ ସେ ଆକଣ୍ଠ ବୁଡ଼ିଯିବ, ଏହା ଯେପରି ସେ ଆଖି ଆଗରେ ସ୍ପଷ୍ଟଭାବରେ ଦେଖିବାକୁ ପାଇଲା । ତଥାପି ଜୀବନର ଏହି ଚରମ ମୁହୂର୍ତ୍ତରେ ଅଭିମାନ ଓ ମୋହ ହିଁ ତାକୁ ଜୟ କରିପାରିଲେ । ସେ ବାଧା ଦେଲାନାହିଁ, ଆପତ୍ତି କଲା ନାହିଁ, ଥରକପାଇଁ ପଛକୁ ଫେରି ଚାହିଁଲା ନାହିଁ, ନୀରବରେ ଧୀରେ ଧୀରେ ସୁରେଶର ଶୟନ କକ୍ଷରେ ପ୍ରବେଶ କଲା ।

ବାହାରେ ମତ୍ତ ପ୍ରକୃତି ପୂର୍ବଭଳି ତାର ମାତାଲାମୀ କରିବାରେ ଲାଗିଥାଏ ।

ଗାଢ଼ ଅନ୍ଧକାର ଭିତରେ ବିଜୁଳି ସେହିପରି ହସି ହସି ଉଠୁଥାଏ । ଘନ-ଘାର ଏହିପରି ତାଣ୍ଡବଲୀଳା ଅନବରତ ଚାଲିଥାଏ ।

ନୂତନ ସ୍ଥାନରେ ରାମବାବୁଙ୍କ ସୁନିଦ୍ରା ହୁଏ ନାହିଁ । ବିଶେଷତଃ ମନରେ ଚିନ୍ତା ଥିବାହେତୁ ବଡ଼ ସକାଳୁ ତାଂକର ନିଦ ଭାଙ୍ଗି ଯାଇଥିଲା । ବାହାରେ ଆସି ଦେଖିଲେ ବର୍ଷା କମିଯାଇଛି ସତ, କିନ୍ତୁ ସମ୍ପୂର୍ଣ୍ଣ ବନ୍ଦ ହୋଇନାହିଁ । ଘରର ବାକିର କେହି ଉଠିଛନ୍ତି କି ନାହିଁ ଦେଖିବା ପାଇଁ ବାରଣ୍ଡାଆଡ଼େ ବୁଲି ବାହାରି ସେ ହଠାତ୍ ଚମକି ଉଠିଲେ । କିଏ ଯେପରି ଟେବୁଲ ଉପରେ ମୁଣ୍ଡରଖି ଚୌକିରେ ବସି ରହିଛି । ନିକଟକୁ ଆସି ଆଶ୍ଚର୍ଯ୍ୟରେ କହି ଉଠିଲେ, ସୁରମା ତୁ ମାଆ; ଏତେ ସକାଳୁ ଉଠି ପଡ଼ିଛୁ କାହିଁକି ?

ଅଚଳା ଥରକ ପାଇଁ ମୁହଁ ଟେକି ପୁଣି ସେହିପରି ଟେବୁଲ ଉପରେ ମୁଣ୍ଡ ରଖି ଶୋଇଗଲା । ତାର ମୁହଁ ଶବ ଭଳି ଧଳା । ଦୁଇ ଆଖିତଳେ ବଡ଼ ବଡ଼ କଳାଦାଗ, ଏବଂ କଳାକଳା ପଥର ସନ୍ଧିଦେଇ ଯେପରି ପାହାଡ଼ରୁ ଝରଣା ଝରି ଆସେ ସେହିପରି ସେହି ଆଖିରୁ ଅଶ୍ରୁର ଝରଣା ବହି ଚାଲିଥାଏ ।

ବୃଦ୍ଧ କେବଳ ଏକ ଅସ୍ପଷ୍ଟ ଆର୍ତ୍ତନାଦ କରି ଏହି ଅର୍ଦ୍ଧମୃତା ନାରୀର ଦେହକୁ ନୀରବରେ ଚାହିଁ ରହିଲେ ।

ସକାଳବେଳା ଦୁଇମୁଠା ମାତ୍ର ମୁଢ଼ି ସହିତ ଗ୍ଲାସେ ଖିଆ ଶେଷ କରି କେଦାରବାବୁ ପରିତୃପ୍ତିର ଗୋଟାଏ ନିଃଶ୍ୱାସ ଛାଡ଼ିଲେ । ଉଚ୍ଛିଷ୍ଟ ବାସନଗୁଡ଼ିକ ନେବା ପାଇଁ ମୃଣାଳ ଘର ଭିତରକୁ ଆସିବା କ୍ଷଣି ସେ କହିଲେ, ମାଆ ତୋର ଏହି ଗରମ ମୁଢ଼ି ଆଉ ପଥର ବାସନ ଗ୍ଲାସ ଭିତରେ ଯେ କି ଅମୃତ ସ୍ୱାଦ ଅଛି; ଯେଉଁଥିପାଇଁ ଏଇ ଗୋଟାଏ ମାସ ଭିତରେ ଏଠାରୁ ଆଉ ଯାଇ ପାରିଲି ନାହିଁ ।

ଅଚଳା ସମ୍ପର୍କନେଇ ମୃଣାଳ ତାଙ୍କୁ ବାବା ବୋଲି ସମ୍ବୋଧନ କରିବା ଆରମ୍ଭ କରି ଦେଇଥାଏ । କହିଲି—କାହିଁକି, ତୁମେ ପଳାଇବା ପାଇଁ ଏତେ ବ୍ୟସ୍ତ ହେଉଛ ବାବା ? ତୁମର ଏଇ······ମୁଁ କ'ଣ ସେବା କରି ଜାଣି ନାହିଁ ?

ତୁମର ଏଇ ଝିଅଟା କ'ଣ—ଏହି କଥାଟା ହିଁ ମୃଣାଳ ଅସାବଧାନରେ କହିବାକୁ ଯାଉଥିଲି । କିନ୍ତୁ କଥାର ମୋଡ଼ ବଦଳାଇ ଅନ୍ୟ ପ୍ରକାରରେ ପ୍ରକାଶ-କଲି । ସେଥିପାଇଁ ଏହି ଇଙ୍ଗିତ ବୋଧହୁଏ କେଦାରବାବୁ ବୁଝି ପାରି ସୁଦ୍ଧା ପଚାରିବାକୁ ଚାହିଁଲେ ନାହିଁ । କିନ୍ତୁ ହଠାତ୍ ତାଙ୍କର କଣ୍ଠସ୍ୱର କରୁଣ ହୋଇ ଉଠିଲା କହିଲେ ପଳାଇବାକୁ ବ୍ୟସ୍ତ ହେଲିଣି କାହିଁ ? ତୋର ଢଆଣି ଗ୍ଲାସ, ତୋ ହାତ ରନ୍ଧା, ତୋର ଏଇ ମାଟି ଘର ଖଣ୍ଡିକ ଛାଡ଼ି ମୋର ବୈକୁଣ୍ଠକୁ ମଧ୍ୟ ଯିବାକୁ ଇଚ୍ଛା ହେଉ ନାହିଁ । ଏହି ଗ୍ରେଣ୍ଟ ଝରକା ନିକଟରେ ବସି ମୁଁ କେତେଦିନ ଭାବୁଛି ଆଉ ଦୁଇଟା ବର୍ଷ ମୃଣାଳ ଯଦି ଭଗବାନଙ୍କ କୃପାରୁ ଏଠାରେ ବଞ୍ଚି ରହିପାରନ୍ତି, ତେବେ କଲିକତାରେ ରହି ଜୀବନ ସାରା ଧରି ଯେତେ କ୍ଷତି ନିଜର କରିଛି ତାର ସମସ୍ତ ଅଂଶ ହୁଏତ ପୂରଣ କରି ନେଇ ପାରିବି, ଆଉ ସେହି ମୂଳଧନଟିକକୁ ହାତରେ ଧରି ଦିନେ ଯାଇ ଅଚଳା ନିକଟରେ ଠିଆ ହୋଇ ପାରିବି ।

—

କେତେ ବେଦନା ଭିତରେ ରହି କେଦାରବାବୁ ଏହି କଥାଗୁଡ଼ିକ କହି ବସିଲେ, ଏବଂ କି ପ୍ରକାର ମର୍ମ୍ମାନ୍ତିକ ଲଜ୍ଜାରେ କଲିକତାର ଆଜନ୍ମ ପରିଚିତ ବାସ ଭବନ, ଚିରଦିନର ଆଶ୍ରିତ ସମାଜକୁ ତ୍ୟାଗ କରି ଏହି ବଣ ମଧ୍ୟରେ ପର୍ଣ୍ଣ କୁଟୀରରେ ଜୀବନର ବାକି ଦିନଗୁଡ଼ିକକୁ କଟାଇବାର ଅଭିଳାଷ ବ୍ୟକ୍ତ କରି ବସିଲେ, ମୃଣାଳ ତାହା ବୁଝି ପାରିଲି । ସେଥିପାଇଁ କୌଣସି ଉତ୍ତର ନ ଦେଇ ଗ୍ଲାସ ପଥୁରିଆଟା ହାତରେ ଧରି ଧୀରେ ଧୀରେ ଚାଲିଗଲି ।

ଏହିଠାରେ ଟିକିଏ ପୂର୍ବର କଥା ପ୍ରକାଶ କରିବା ଆବଶ୍ୟକ । ପ୍ରାୟ ମାସେ ଖଣ୍ଡେ ହେବ କେଦାରବାବୁ ଏଠାକୁ ଆସିଛନ୍ତି । ଏବଂ ସେହିଦିନଠାରୁ ଅଜି ପର୍ଯ୍ୟନ୍ତ ଆଉ ଫେରି ଯାଇ ପାରି ନାହାଁନ୍ତି । ମଧ୍ୟମର ଅସୁସ୍ଥତା ସମୟରେ ସୁରେଶଘରେ ଏହି ବିଧବା ଝିଅଟି ସହିତ ତାଙ୍କର ପ୍ରଥମ ପରିଚୟ ହୁଏ । କିନ୍ତୁ ଏଠାରେ ତାର ନିଜ ଘରେ ପହଞ୍ଚି ଯେଉଁ ପରିଚୟ ଟିକିକ ତାର ପାଇ ପାରିଲେ, ତାହାଦ୍ୱାରା ଯେପରି ତାଙ୍କର ସମସ୍ତ ମନ, ଆଉ ଦେହ ସୁନା ଶୃଙ୍ଖଳରେ ବନ୍ଧା ହୋଇଗଲା । ଏହି ବନ୍ଧନରୁ ବୃଦ୍ଧ ନିଜକୁ କୌଣସି ମତେ ମୁକ୍ତ କରି ପାରିଲେ ନାହିଁ । ଯଦିଓ ତେଣେ ତାଙ୍କର କେତେ ନା କେତେ କାମ ବାକି ପଡ଼ିଅଛି ।

ମହିମ ସହିତ ତାଙ୍କର ସାକ୍ଷାତ ହୋଇ ପାରିଲା ନାହିଁ । ତାଙ୍କର ଆସିବା ସଂବାଦ ପାଇବା କ୍ଷଣି ସେ ବ୍ୟସ୍ତ ହୋଇ ଏଠାରୁ ଚାଲିଗଲା । ଯିବାବେଳେ ମୃଣାଳ ଅଟକାଇ ଧରି ରଖିବାପାଇଁ ଚେଷ୍ଟା କଲା ନାହିଁ । କାରଣ ପିଲାଦିନରୁ ଭାଇଙ୍କର ସଂଯମ ସହିଷ୍ଣୁତା ଏବଂ ବୁଦ୍ଧି-ବିବେଚନାର ପ୍ରତି, ତାର ଏତେ ଅଗାଧ ବିଶ୍ୱାସ ଥିଲା ଯେ, ସେ ନିଶ୍ଚୟ ବୁଝି ପାରିଥିଲା ଯେ ଅଚଳା ସହିତ ଦେଖା କରିବା ବର୍ତ୍ତମାନ ଉଚିତ୍ ନୁହେଁ ଭାବି ସେ ଚାଲି ଯାଉଛନ୍ତି । ସେ ଭାବିଥିଲା, ତାର ପତ୍ର ପାଇବା ପରେ ହୁଏତ କେଦାରବାବୁ ଝିଅ ଜ୍ୱାଇଁଙ୍କ ଭିତରେ କୌଣସି ଗୋଟାଏ ମିଳାମିଶା କରିଦେବା ପାଇଁ ଶୀଘ୍ର ଅଚଳାକୁ ସଙ୍ଗରେ ଧରି ଆସିବେ । କିନ୍ତୁ ଦେଖାଗଲା ସେ ଏକାକୀ ଆସି ଉପସ୍ଥିତ ହେଲେ ।

ଆଜି ପୁଣି କିଛି ମିଳାମିଶା ହୋଇ ପାରିନାହିଁ, କେବଳ ସଂଦେହର ବୋଝରେ ଉଭୟେଙ୍କର ଭାରିକାନ୍ତ ଦିନଗୁଡ଼ିକ ଗୋଟିକ ପରେ ଗୋଟିଏ ବିତି ଚାଲିଛି । କେବଳ ଉପରକୁ ଚାହିଁଲେ ଜଣା ପଡୁଛି ଯେ, ଆକାଶରେ ଦୁର୍ଭେଦ୍ୟ ମେଘର ସ୍ତର କୌଣସି ଦିନ ଯଦି କଟି ଯାଇ ପାରେ ତ ପାରେ କିନ୍ତୁ ତାହା ପଛରେ ଅନ୍ଧକାର ସଞ୍ଚିତ ହୋଇ ଅଛି କି ନା କିମ୍ବା ଜ୍ୟୋତ୍ସ୍ନା ଥିଲା ପରି ଜଣା ପଡ଼ୁ ନାହିଁ ।

ସୁରେଶର ପିଉସୀ ମାଆ ନିରୁଦ୍ଦିଷ୍ଟ ପୁତୁରା ପାଇଁ ବ୍ୟାକୁଳ ହୋଇ ଯେଉଁ ଚିଠି ମୃଣାଳ ନିକଟକୁ ଲେଖିଥିଲେ ତାହା କେଦାରବାବୁଙ୍କ ହାତରେ ପଡ଼ିଥିଲା । ମହିମ କୌଣସି ଏକ ଧନୀ ଜମିଦାରଙ୍କ ଘରେ ଗୃହ ଶିକ୍ଷକ ରୂପେ ରହିଥିବାର ଯେଉଁ ସମ୍ବାଦ ଦେଇଥିଲା ସେ ଚିଠି ଖଣ୍ଡିକ ମଧ୍ୟ ସେ ବାରମ୍ବାର ପଢିବାକୁ

ଲଗିଲେ । କିନ୍ତୁ କୌଣସି ଶଠିରେ ତାଙ୍କ କଥା ଉଲ୍ଲେଖ ନାହିଁ । ତଥାପି ଶଠି ଦୁଇଖଣ୍ଡିର ପ୍ରତ୍ୟେକ ଛନ୍ଦ, ପ୍ରତ୍ୟେକ ବର୍ଣ୍ଣ ଦୁର୍ଭାଗ୍ୟ ପିତାର କର୍ଣ୍ଣରେ କେବଳ ଗୋଟିଏ କଥାକୁ ଶହେଥର କରି କହିବାକୁ ଲଗିଲେ; ଯାହାକୁ ସତ୍ୟ ବୋଲି ଉପଲବ୍ଧ କରିବା ଭଳି ଶକ୍ତି ତାଙ୍କର ଆଦୌ ନଥିଲା ।

ଅଚଳା ତାଙ୍କର ଏକମାତ୍ର ସନ୍ତାନ । ତାର ମାଆ ମରିଯିବାବେଳୁ ସେ ଜନନୀର ସ୍ଥାନ ଅଧିକାର କରି ତାକୁ ମଣିଷକରି ଏତେଟିଏ କରିଥିଲେ । ତେଣୁ ସେହି ଝିଅର ଅକଲ୍ୟାଣ ଆଶଙ୍କାରେ ତାଙ୍କର ଶରୀର ଦିନକୁ ଦିନ ଦୁର୍ବଳ ଏବଂ ଦେହର ଆଉଟିଲି ସୁନାର ରଙ୍ଗ କ୍ରମଶଃ କଳା ପଡ଼ି ଯାଉଥିଲା ।

ଗାଆଁର ଦୁଇଚାରିଜଣ ପଡ଼ୋଶୀ ମଝିରେ ମଝିରେ ତାଙ୍କ ସହିତ ଆଳାପ ଆଲୋଚନା କରିବାକୁ ଆସନ୍ତି । କିନ୍ତୁ ସେ ନିଜେ କାହା ଘରକୁ ଯିବା ପାଇଁ ସଂକୋଚ ଅନୁଭବ କରନ୍ତି । ମୃଣାଳ ଅନୁରୋଧ କରି କହିଲେ ସେ ହସି ଦେଇ କହନ୍ତି ମୋ ଭଳି ମ୍ଲେଚ୍ଛ କାହା ଦୁଆରକୁ ନଯିବାଟା ମଙ୍ଗଳ ମାଆ ।

ମୃଣାଳ କହେ—ତାହାହେଲେ ସେମାନେ ଅବା ଆସୁଛନ୍ତି କାହିଁକି ? ବୃଦ୍ଧ କିନ୍ତୁ ଏ କଥାର କୌଣସି ଜବାବ ନଦେଇ ମୁଣ୍ଡ ଉପରେ ଛତାଟି ଧରି ବିଲ ଆଡ଼େ ବାହାରି ପଡ଼ନ୍ତି । ସେଠାରେ ପହଞ୍ଚି ଚାଷୀମାନଙ୍କ ସଙ୍ଗେ ଆପଣା ଆଡ଼ୁ ବଳି ପଡ଼ି କଥାବାର୍ତ୍ତା କରନ୍ତି । ସେମାନଙ୍କର ସୁଖ-ଦୁଃଖ ଘର ଦ୍ୱାରର ଅବସ୍ଥା, ନ୍ୟାୟ, ଅନ୍ୟାୟ ପାପ ପୁଣ୍ୟର କଥା, ଏହିପରି କେତେ କ'ଣ ଆଲୋଚନା କରି ଦି'ପହର ବେଳକୁ ଘରକୁ ଫେରନ୍ତି । ପ୍ରତ୍ୟେକ ଦିନ ସକାଳେ ଚାହା ଖାଇବା ପରେ ଏହା ଥିଲା ତାଂକର ଦୈନନ୍ଦିନ କାର୍ଯ୍ୟ ।

ଆଜନ୍ମରୁ ସେମାନେ କଲିକତାବାସୀ । ସହର ବାହାରେ ଯେଉଁ ସବୁ ଅସଂଖ୍ୟ ପଲ୍ଲୀ ଗ୍ରାମ, ସେଗୁଡ଼ିକ ସହିତ ବହୁପୂର୍ବପୁରୁଷରୁ ସେମାନଙ୍କର ଯୋଗସୂତ୍ର ଆଦୌ ନାହିଁ । ଆତ୍ମୀୟ କୁଟୁମ୍ବ ମଧ୍ୟ ଧର୍ମାନ୍ତର ଗ୍ରହଣ ସଙ୍ଗେ ସଙ୍ଗେ ସମ୍ପର୍କ ତୁଟାଇ ଦେଇଛନ୍ତି । ଅତଏବ ଅଧିକାଂଶ ନାଗରିକ ଭଳି ସେ ମଧ୍ୟ କିଛି ନ ଜାଣି ସୁଦ୍ଧା ଏମାନଙ୍କ ବିଷୟରେ ଅନେକ ବିଚିତ୍ର ଧାରଣା ପୋଷଣ କରିବାଟା ଆଦୌ ବିସ୍ମୟକର ନୁହେଁ । ଯେଉଁ ଅଗଣିତ ଅଶିକ୍ଷିତ କୃଷିଜୀବି ସାରାଜୀବନଟା ସୁଦୂର ପଲ୍ଲୀଗ୍ରାମରେ କଟାଇ ଦିଅନ୍ତି, ସହରର ମୁହଁ ଦେଖିବା ଯେଉଁମାନଙ୍କ ଭାଗ୍ୟରେ କ୍ୱଚିତ୍ ଘଟେ; ଯେଉଁମାନଙ୍କୁ ଏକ ପ୍ରକାର ପଶୁ ବୋଲି ସେ ଜାଣି ଆସିଛନ୍ତି,

ଏବଂ ଏହି ସମାଜଟାକୁ ବର୍ଣ୍ୟ ସମାଜ ବୋଲି ମନେ କରି ଆସିଛନ୍ତି କିନ୍ତୁ ଦୁର୍ଭାଗ୍ୟ ଯେତେବେଳେ ତାହାର ବିଷଦାନ୍ତ ଦ୍ୱାରା ତାଙ୍କର ମର୍ମ ସ୍ଥଳରେ ଆଘାତ କରି ସମଗ୍ର ମନଟାକୁ ସମାଜ ଠାରୁ ବିମୁଖ କରାଇ ନେଲା, ସେତେବେଳେ ଯେଉଁକି ଏହି ଲେଖା ପଢ଼ା ବିହୀନ, ପଲ୍ଲୀବାସୀ, ଦରିଦ୍ର କୃଷକ ମାନଙ୍କ ସହିତ ତାଙ୍କର ପରିଚୟ ଘନିଷ୍ଠ ହେବାକୁ ଲାଗିଲା, ସେତିକି ସେମାନଙ୍କ ପ୍ରତି ପ୍ରୀତି ଓ ଶ୍ରଦ୍ଧା ବୃଦ୍ଧି ପାଇବାକୁ ଲାଗିଲା । ଅନ୍ୟ ଦିଗରେ ସେହିପରି ତାଙ୍କର ଆପଣାର ସମାଜ, ତାହାର ଆଚାର ଓ ଆଚରଣ, ତାହାର ଶିକ୍ଷା ଓ ସଂସ୍କାର, ତାହାର ଧର୍ମ, ଓ ସଭ୍ୟତା, ତାହାର ବିଧି ବିଧାନ, ବିରୁଦ୍ଧରେ ତାଙ୍କର ଅନ୍ତର ବିଦ୍ୱେଷ ଓ ବିତୃଷ୍ଣାରେ ପରିପୂର୍ଣ୍ଣ ହେବାକୁ ଲାଗିଲା ।

ସେ ସ୍ପଷ୍ଟ ଦେଖିବାକୁ ପାଇଲେ, ଏମାନେ ଲେଖା ପଢ଼ା ନ ଜାଣିଥିଲେ ମଧ୍ୟ ଅଶିକ୍ଷିତ ନୁହନ୍ତି । ବହୁ ଯୁଗର ପ୍ରାଚୀନ ସଭ୍ୟତା ଆଜି ମଧ୍ୟ ଏମାନଙ୍କ ସମାଜରେ ଅସ୍ଥିମଜ୍ଜାଗତ ହୋଇ ରହିଛି । ମୀତର ସାର କଥା ଏମାନେ ଜାଣନ୍ତି । କୌଣସି ଧର୍ମ ବିରୁଦ୍ଧରେ ଏମାନଙ୍କର ବିଦ୍ୱେଷ ନାହିଁ, କାରଣ ଜଗତର ସକଳ ଧର୍ମ ମୂଳରେ ଏକ ଏବଂ ତେତିଶ କୋଟି ଦେବ ଦେବୀଙ୍କୁ ଅମାନ୍ୟ ନ କରାଯାଇ ମଧ୍ୟ ଏକ ଈଶ୍ୱରଙ୍କୁ ସ୍ୱୀକାର କରାଯାଇ ପାରେ, ଏହି ଜ୍ଞାନ ସେମାନଙ୍କର ଅଛି । ହିନ୍ଦୁଙ୍କର ଭଗବାନ ଏବଂ ମୁସଲମାନଙ୍କର ଆଲ୍ଲା ଯେ ଏକ ବସ୍ତୁ, ଏହି ସତ୍ୟ ମଧ୍ୟ ସେମାନଙ୍କୁ ଅବିଦିତ ନାହିଁ ।

ତାଙ୍କର ମନ ଲଜ୍ଜିତ ହୋଇ ତାଙ୍କୁ ବାରମ୍ବାର ପ୍ରଶ୍ନ ପଚାରି ଉଠିଲା— ଏମାନେ କେଉଁ ଗୁଣରେ ତୁମଠାରୁ ଶ୍ରେଷ୍ଠ ? ଏମାନଙ୍କ ଅପେକ୍ଷା କେଉଁ କଥା ତୁମେ ଅଧିକ ଜାଣ ? କେଉଁଥିପାଇଁ ସେମାନଙ୍କ ସହିତ ସମ୍ପର୍କ ଛିନ୍ନ କରି ତୁମେ ଦୂରକୁ ଚାଲି ଯାଇଛ ? ଆଉ ତୁମେ, ଏତେଦୂର ଚାଲି ଯାଇଛ ଯାହାଫଳରେ ଏହି ସବୁ ଆପଣାର ଲୋକଙ୍କ ନିକଟରେ ତୁମେ ଆଜି ମ୍ଳେଚ୍ଛ ରୂପରେ ଠିଆ ହୋଇଛ ।

ଏପରି ମନ ନେଇ ଯେତେବେଳେ କେଦାରବାବୁ ଘରକୁ ଫେରି ଆସିଲେ, ସେତେବେଳକୁ ସମସ୍ତ ପ୍ରାୟ ଦଶଟା ହେବ । ମୃଣାଳ ଆସି କହିଲା କାଲି ତୁମ ଦେହ ଭଲ ନଥିଲା ବାବା, ଆଜି ପୁଣି ପୋଖରୀକୁ ଗାଧୋଇବାକୁ ଯାଅନାହିଁ । ତୁମ ପାଇଁ ମୁଁ ଗରମ ପାଣି କରି ରଖିଛି ।

ଗରମ ପାଣି କରି ରଖିଛୁ ! କହି କେଦାରବାବୁ ମୃଣାଳ ମୁହଁକୁ ଚାହିଁ ରହିଲେ ।

ସ୍ନାନ ସାରି ମୃଣାଳ ପୂଜା କରିବାକୁ ବସିଥିଲା, ତାଙ୍କର ଡାକ ଶୁଣି ଏଇ ମାତ୍ର ଉଠି ଚାଲି ଆସିଛି । ଯଠିଆରୁ ଓଦା କେଶ ଫିଟି ଲୋଟି ପଡ଼ୁଛି ।

ପରିଧାନ ଲାଲ ଧଡ଼ି ମଠା, ମୁହଁଟି ପ୍ରସନ୍ନ । ଏସବୁ ଦେଖିଲେ ଜଣା ପଡୁଛି ଯେପରି ତାର ସର୍ବାଙ୍ଗରେ ଶୁଚିତା ବିରାଜମାନ କରୁଛି । ତାକୁ ସ୍ନେହିରନ୍ଧ୍ର ବୃଦ୍ଧ ପୁଣି କହିଲେ– ଏତେ କଷ୍ଟ କାହିଁକି କରିବାକୁ ଗଲୁ ମାଆ ? ଏ ସବୁର ତ ଆଦୌ ଦରକାର ନ ଥିଲା । ଟିକଏ ଅଟକି ଯାଇ ପୁଣି କହିଲେ–– ମୁଁ ତ କଲିକତାର ଲୋକ, କଳ ପାଣିରେ ଗାଧୋଇବା ଆମର ପ୍ରତିଦିନର ଅଭ୍ୟାସ । କିନ୍ତୁ ତୁ ମୋତେ ଏପରି ସ୍ନେହ କରି ବସିଲୁଣି ମୃଣାଳ ଯେଉଁଥିରେ ତୋର ପୋଖରୀଟା ମଧ୍ୟ ମୋତେ ଖାତିର ନ ଦେଖାଇ ରହିପାରୁ ନାହିଁ । ତହିଁରେ ଗାଧୋଇଲେ ମୋର କୌଣସି ଦିନ କିଛି ଅସୁବିଧା ହେବନାହିଁ । ମୁଁ ପୋଖରୀକୁ ଗାଧୋଇବାକୁ ଯିବି ମାଆ ।

ମୃଣାଳ ମୁଣ୍ଡ ହଲାଇ କହିଲା, ନା ବାବା, ସେକଥା ହୋଇ ପାରିବ ନାହିଁ । ମୁଁ ଭଲ କରି ଜାଣେ କାଲି ତୁମକୁ ଜର ହୋଇଥିଲା । ମୁଁ ପାଣି ନେଇ ଆସୁଛି, ତୁମେ ତେଲ ଲଗାଉଥାଅ, କହି ସେ ଯିବାକୁ ଉଦ୍ୟତ ହେବାକ୍ଷଣି କେଦାରବାବୁ ହଠାତ୍ କହି ଉଠିଲେ ହଉ ତୋର କଥା ହେଉ । କିନ୍ତୁ ମୋତେ ଆଜି ଏକଥାଟା କହ, ଏଇ ଅଳ୍ପ ବୟସରେ ପରକୁ ଏପରି ସେବା କରିବା ବିଦ୍ୟାଟା କାହାଠାରୁ ଓ କପରି ତୁ ଶିଖିଲୁ ? ତୋ ପରି ଝିଅ ମୁଁ ଆଜି ପର୍ଯ୍ୟନ୍ତ କେଉଁଠାରେ ଦେଖିନାହିଁ, ମାଆ ।

ମୃଣାଳର ମୁହଁ ଲାଜରେ ରଙ୍ଗ ହୋଇ ଉଠିଲା । କିନ୍ତୁ ଜୋର କରି ହସି ଦେଇ କହିଲା, କିନ୍ତୁ ତୁମେ କ'ଣ ବାବା ମୋର ପର ?

କେଦାରବାବୁ କହିଲେ, ନା, ପରନୁହେଁ । ମୁଁ ତୋର ପୁଅ । କିନ୍ତୁ କଥାଟାକୁ ଏପରି ଏଡ଼ାଇ ଦେଲେ ଚଳିବ ନାହିଁ । ତୋତେ ଆଜି ମୋ ପ୍ରଶ୍ନର ଉତ୍ତର ଦେବାକୁ ହିଁ ପଡ଼ିବ ?

ମୃଣାଳ ସେହିପରି ଠିଆ ହୋଇ ରହି ସଲ୍ଲଜ ହସ ହସ ମୁହଁରେ କହିଲା––ଏହା କ'ଣ ଏପରି ଶକ୍ତ କାମ ଯେ ଚେଷ୍ଟା କରି ଶିଖିବାକୁ ହେବ ? ଏ ତ ମୋର ପିଲା ଦିନର ଶିକ୍ଷା । କିନ୍ତୁ ଏଣେ ଯେ ତୁମ ପାଣି ଥଣ୍ଡା ହୋଇଯିବ ବାବା.......

: ଥଣ୍ଡା ହୋଇ ଯାଉ କହି କେଦାରବାବୁ ଗମ୍ଭୀର ହୋଇ କହିଲେ, ଠିକ୍ ଏହି କଥାଟାକୁ ହିଁ ମୁଁ କେତେଦିନ ହେବ ଭାବୁଛି ମୃଣାଳ, ମଣିଷ ଶିଖିଲା ପରେ ଯାଇ ପାଣିରେ ପହଁରି ପାରେ, କିନ୍ତୁ ଯେଉଁ ପକ୍ଷୀ ଜଳଚର ସେ ଜନ୍ମରୁ ପହଁରି ପାରେ । ତାର ଏହି ଶିଖିବାଟାକୁ କେହି ହିଁନା ଦେଖି ପାରନ୍ତି ନାହିଁ ସତ

କିନ୍ତୁ ଶିଖିବା କାର୍ଯ୍ୟଟାକୁ ଫାଙ୍କି ଦେଇ ପଢ଼ିବାଟାକୁ ମାନିନେଲେ ତ ଚଳିବ ନାହିଁ ମାଆ ? ଏହା ତ ଭଗବାନଙ୍କର ନିୟମ ନୁହେଁ । କେଉଁଠାରେ ନା କେଉଁଠାରେ, କୌଣସି ପ୍ରକାରରେ ନା କୌଣସି ପ୍ରକାରରେ ଶିଖିବାର ଦୁଃଖ ତାକୁ ବହନ କରିବାକୁ ହେବ ହିଁ ହେବ । ସେଥିପାଇଁ ଏଇ ଜଳଚର ପରି ତୁ ଯେ ନୀଡ଼ ଭିତରେ ପିଲାଟି ଦିନରୁ ଥାଇ ଅନାୟାସରେ ଏତେ ବଡ଼ ବିଦ୍ୟା ଆୟତ୍ତ କରି ପାରିଛୁ, ତୋର ସେହି ବିରାଟ ବିପୁଳ ସମାଜ ରୂପକ ନୀଡ଼ର କଥାଟା ହିଁ ମୁଁ ଦିନରାତି ଭାବୁଛି । ମୁଁ ଏୟା ଭାବୁଛି ଯେ···

: କିନ୍ତୁ ତୁମ ପାଇଁ ଗାଧୋଇବା ପାଣି ଯେ ଏକବାର···

- ଥାଉ ସେ ପାଣି । ପୋଖରୀ ତ ଆଉ ଶୁଖି ଯାଉ ନାହିଁ ମାଆ । ମୁଁ ଭାବୁଛି ଯେ ତୋର ବୁଢ଼ା ପୁଅଟି ଶିଶୁଭଳି ତାର ମାଆ ନିକଟରୁ କେତେ ଗୋପନ କଥାହିଁ ଶିଖି ପାରୁଛି । ଆଜି ମଧ୍ୟ ଠାକୁର ଦେବତାରେ, ତନ୍ତ୍ର ମନ୍ତ୍ରରେ ମୋର କାଣି କଉଡ଼ିକର ବିଶ୍ୱାସ ନାହିଁ । ତଥାପି ଯେତେବେଳେ ମୋର ମାଆକୁ ସ୍ନାନ ସାରି ମଠା ଶାଢ଼ୀ ପିନ୍ଧି ପୂଜା କରିବାକୁ ଯାଉଥିବାର ଦେଖେ ସେତେବେଳେ ମୋର ଇଚ୍ଛା ହୁଏ କାନ୍ଧରେ ପଇତା ପକାଇ ସେହିପରି ପାଟ ପିନ୍ଧି ପୂଜା କରିବାକୁ ବାହାରି ପଡ଼ନ୍ତି କି ?

ମୃଣାଳ କହିଲା, କାହିଁକି ବାବା, ତୁମର ନିଜର ଧର୍ମ ନିଜର ସମାଜ ଛାଡ଼ି ଅନ୍ୟର ଆଚାର ବିଚାରକୁ ପାଳନ କରି ବସିବ ? ତୁମ ବ୍ରାହ୍ମ ସମାଜକୁ ତ କେହି ଦୋଷ ଦେଇ ପାରିବେ ନାହିଁ ।

କେଦାରବାବୁ କହିଲେ—ଆମ ଧର୍ମକୁ କେହି ଦୋଷ ଦେଇ ପାରିବେ କି ନାହିଁ; ତାହା ଅଲଗା କଥା । କିନ୍ତୁ ମୁଁ ତାର ଅମର୍ଯ୍ୟାଦା କରିବାକୁ ଯାଉ ନାହିଁ । ସେ ଭଲ ହେଉ କି ମନ୍ଦହେଉ ଏ ବୟସରେ ତାକୁ ତ୍ୟାଗ କରିବାର ସାମର୍ଥ୍ୟ ମୋର ଆଉ ନାହିଁ କିମ୍ବା କହିବାକୁ ଇଚ୍ଛା ମଧ୍ୟ ନାହିଁ । ଏହି ରାସ୍ତାରେହିଁ ଜୀବନର ଶେଷ ପର୍ଯ୍ୟନ୍ତ ଚାଲିବାକୁ ହେବ । କିନ୍ତୁ ତୋତେ ଯେତେବେଳେ ଯେତେଥର ଦେଖୁଛି; ଏତେ ଅଳ୍ପ ବୟସରେ ଏତେ ବଡ଼ ଆତ୍ମବିସର୍ଜ୍ଜନ, ଯିଏ ସ୍ୱର୍ଗକୁ ଗଲେଣି ତାଙ୍କ ପାଇଁ ଏତେ ନିଷ୍ଠା, ତାଙ୍କର ମାଆକୁ ନିଜର ମାଆ ବୋଲି ଜ୍ଞାନ କରିବା, ଆଉ, ଆଉ, ଆଉ ଅଧିକା କହିବି ନାହିଁ । କିନ୍ତୁ ମୁଁ ମଧ୍ୟ ଯେଉଁ ଧର୍ମ ଭିତରେ ମଣିଷ ହୋଇ ବୁଢ଼ା ହୋଇଗଲି ମାଆ, ତାକୁ ତ ମନେ ମନେ ତୁମ ଧର୍ମ ସହିତ ତୁଳନା କରି ରହି ପାରୁ ନାହିଁ । ସମାଜକୁ ବାଦ ଦେଇ ଯେଉଁ ଧର୍ମ ତାହା ଉପରେ ଆଉ ଯେ କୌଣସି ମତେ ମୋ ମନରେ ବିଶ୍ୱାସ ଆସି ପାରୁ ନାହିଁ ମା' ।

ମୃଣାଳ ଯେପରି ମନେ ମନେ ଦୁଃଖିତା ହୋଇ ଉଠିଲା । ତାର ବ୍ୟକ୍ତି-ଗତ ଜୀବନର ଦୁର୍ଭାଗ୍ୟକୁ ଯେ ସେ ଏପରି ଭାବରେ ନିଜର ସାମାଜିକ ଶିକ୍ଷାଦୀକ୍ଷା ଉପରେ ଆରୋପ କରି ବସିବେ ଏହା ତାହା ନିକଟରେ ଅତ୍ୟନ୍ତ ଅନ୍ୟାୟ ବୋଲି ମନେ ହେଲା । କହିଲା, ବାବା, ଠିକ୍ ଏହିପରି ଯେତେବେଳେ ଆମ ସମାଜକୁ ଦେଖି ବସିବ ସେତେବେଳେ ଏହା ମଧ୍ୟରେ ଥିବା ତ୍ରୁଟି, ଅନେକ ଦୋଷ ତୁମ ଆଖିରେ ନିଶ୍ଚୟ ଦେଖାଯିବ । ଆମେମାନେ ମଧ୍ୟ ନିଜର ଦୋଷ ଗୁଡ଼ାକ ନିଜ ନିଜ କାନ୍ଧକୁ ନେବା ବଦଳରେ ସମାଜ ଉପରେ ଲଦି ଦେବାରେ ଧୁରନ୍ଧର । ଆମେମାନେ ମଧ୍ୟ...

କିନ୍ତୁ କଥା ଶେଷ ନ ହେଉଣୁ କେଦାରବାବୁ ବାଧା ଦେଇ କହି ଉଠିଲେ, କିନ୍ତୁ ମୁଁ ସେଥିପାଇଁ ବ୍ୟସ୍ତ ନୁହେଁ ମା'ଆ । ତୁମ ସମାଜରେ ଦୋଷ ଥିଲେ ଥାଉ । ତ୍ରୁଟି ଥିଲେ ଥାଉ । କିନ୍ତୁ ତୁ ତ ଅଛୁ । କିନ୍ତୁ ତୋଭଳି ଝିଅଟିଏ ଆମ ସମାଜରେ ଖୋଜି କରି ପାଇବା ମୁସ୍କିଲ୍ ।

ପୁଣି ମୃଣାଳର ମୁହଁ ଲଜ୍ଜ୍ୟାରେ ରଙ୍ଗ ହୋଇ ଉଠିଲା । ସେ କହିଲା, ଏପରି ଭାବରେ ତୁମେ ଯଦି ମୋତେ ଲଜ୍ଜ୍ୟା ଦେଇ ଚାଲିବ ବାବା, ମୁଁ ଏଠାରୁ ଏପରି ଭାବରେ ପଳାଇବି ଯେ ମୋତେ ଯେତେ ଖୋଜିଲେ ସୁଦ୍ଧା ଆଉ ପାଇ ପାରିବ ନାହିଁ । ସେଥିପାଇଁ ଏକଥା ତୁମକୁ ଆଗରୁ ମୁଁ କହି ରଖୁଛି ।

ବୃଦ୍ଧ ତତ୍‌କ୍ଷଣାତ୍ କୌଣସି କଥା କହି ପାରିଲେ ନାହିଁ । ମଳିନ ମୁହଁରେ ମୃଣାଳ ଆଡ଼କୁ ଚାହିଁ ରହିଲେ । ତାପରେ ଧୀରେ ଧୀରେ କହିଲେ; ଆଜି ମୁଁ ମଧ୍ୟ ତତେ କହି ରଖୁଛି ମା'ଆ, ଏଭଳି କାମ ତୋତେ କରିବାକୁ ମୁଁ କେବେ ସୁବିଧା ଦେବି ନାହିଁ । ତୁ ମୋ ଆଖିର ମଣି; ତୁ ମୋର ମା'ଆ ଏବଂ ତୁ ମୋର ଏକ ମାତ୍ର ଆଶା ଓ ଭରସା । ଏହି ଅନାଥ ଅକର୍ମଣ୍ୟ ବୁଢ଼ାର ଭାର ବୋହିବା କଷ୍ଟରୁ ଛୁଟି ମିଳିବା ଦିନ ଆସିବାକୁ ଆଉ ବେଶୀ ଡେ଼ରି ନାହିଁ ମା'ଆ, ଏହା କହୁ କହୁ ତାଙ୍କ ଆଖିରେ ଲୁହ ଜକେଇ ଆସିଲା ।

ଜାମାରେ ନିଜ ଆଖିର ଲୁହ ପୋଛି ପକାଇ କେଦାରବାବୁ କହିଲେ— ମୋର ଆଉ ଗୋଟିଏ କାମ ଅପୂର୍ଣ୍ଣ ଅଛି, ସେହିଟା ହେଲା ମହିମ ସହିତ ସାକ୍ଷାତ କରିବା । ସେ କାହିଁକି ଏପରି ଲୁଚି ଛପି ଘୂରି ବୁଲୁଛି ଏକଥା ମଧ୍ୟ ତାକୁ ପଚାରିବାକୁ ଚାହେଁ । ଏପରି ହୋଇ ପାରେ ହୁଏତ ଅଚଳା ବଞ୍ଚି ନଥାଇ ପାରେ...

: କାହିଁକି ବାବା, ତୁମେ ଏଭଳି ଭୟ କରୁଛ ?

ଭୟ ? ବୃଦ୍ଧଙ୍କ ମୁହଁରେ ଗୋଟାଏ ଦୀର୍ଘଶ୍ୱାସ ବାହାରି ପଡ଼ିଲା । କହିଲେ, ସନ୍ତାନର ମରଣଟା ହିଁ ବାପ ନିକଟରେ ସବୁଠାରୁ ବଡ଼ ଭୟ ନୁହେଁ କି ମାଆ ?

ଏକମାତ୍ର କନ୍ୟାର ମୃତ୍ୟୁ ଅପେକ୍ଷା ଦୁରବସ୍ଥା ଯେ ଜଣେ ବାପ ଆଖିରେ ବଡ଼ ହୋଇ ଉଠିଛି, ତାର ଆଭାସ ପାଇବା ମାତ୍ରେ ମୃଣାଳ କୁଣ୍ଠିତା ଓ ଲଜ୍ଜିତା ହୋଇ ଯେତେବେଳେ ନୀରବରେ ଚୁପ୍‌ରହିଲା, ସେତେବେଳେ ଏହି ସାଧ୍ୱୀ ବଧବାଟିର ଲଜ୍ଜ୍ୟାଟା ଯେପରି ଗୋଟାଏ ମୁଗୁର ଭଳି କେଦାରବାବୁଙ୍କ ଗୁଣ୍ଡରେ ଆସି ଆଘାତ କଲା । ବହୁ ସମୟ ପର୍ଯ୍ୟନ୍ତ ନୀରବରେ ବସି ରହି ସେ ନିଜର ପାଚିଲା ଦାଢ଼ିରେ ହାତ ବୁଲାଇବାକୁ ଲାଗିଲେ । ତାପରେ ଗୋଟାଏ ଦୀର୍ଘ ନିଶ୍ୱାସ ଗ୍ରୁଡ଼ି ସେ ତେଲ ଗିନାଟା ଟାଣିନେଲେ ।

ଆଜି ସକାଳଟା ବେଶ୍ ପରିଷ୍କାର ଥିଲା । କିନ୍ତୁ ମଧ୍ୟାହ୍ନର କିଛି ସମୟ ପରେ ଆକାଶ ମେଘୁଆ ହୋଇ ଉଠିଲା । କେଦାରବାବୁ ଏଇ ମାତ୍ର ଉଠି ପଶ୍ଚିମ ପାଖର ଝରକାଟା ଖୋଲି ବାହାରକୁ ଚାହିଁ ରହିଥିଲେ । ଆଗରେ ଗୋଟାଏ ପିଜୁଳି ଗଛ ଫୁଲରେ ନଇଁ ହୋଇ ପଡ଼ିଛି ଏବଂ ଅସଂଖ୍ୟ ମହୁମାଛିଙ୍କ ଆନନ୍ଦ କଳରବର ଅନ୍ତ ନାହିଁ । ଅଳ୍ପ ଦୂରରେ ଲମ୍ବା ଦଉଡ଼ିରେ ମୃଣାଳ ପାଳିଥିବା ଚକଣ, ପରପୁଷ୍ଟ ଗାଈଟି ବଡ଼ ବଡ଼ ଲମ୍ବା ନିଶ୍ୱାସ ଗ୍ରୁଡ଼ି ଚରି ବୁଲୁଛି ।

: ବାବା, ତୁମର ଚୁହାଟା ବର୍ତ୍ତମାନ ନେଇ ଆସୁଛି ।

: କେଦାରବାବୁ ମୁହଁ ଫେରାଇ କହିଲେ—ଏତେ ଶୀଘ୍ର ନେଇ ଆସିବୁ ମାଆ ?

: ବାଃ, ବେଳ କ'ଣ ଆଉ ଅଛି ?

ସେ ଚକଆ ଚଲୁ ଘଡ଼ିଟା ବାହାର କରି ହସି ହସି କହିଲେ ବର୍ତ୍ତମାନ ସୁଦ୍ଧା ତିନଟା ବାଜି ନାହିଁ ଯେ ମାଆ ?

ମୃଣାଳ କହିଲା—ନବାବୁ ଘଣ୍ଟା । ଏ ଓଳି ଯେ ତୁମେ ମୋଟେ କିଛି ଖାଇ ନାହିଁ ବାବା ।

କେଦାରବାବୁ ମନେ ମନେ ବୁଝି ପାରିଲେ ଏ ଆପତ୍ତିର କିଛି ଫଳ ନାହିଁ । ସେଥିପାଇଁ କହିଲେ ଆଚ୍ଛା, ଆଣ ।

ମୃଣାଳ କିଛି ସମୟ ରହି କହିଲା, ଆଚ୍ଛା ବାବା, ତୁମେ ତ ଗରମ ଚୂଡ଼ା ଭଜାକୁ ଭଲ ପାଅ ?

: ମିଛ କହନୁ ମାଆ ।

: ତେବେ, ସେଥିରୁ ଦୁଇମୁଠା ଆଣୁ ଛି ।

: ଆଚ୍ଛା ଆଣ : କହି ତାହା ମୁହଁକୁ ଗୁହିଁ କେଦାରବାବୁ ଟିକିଏ ହସିଲେ । ମୃଣାଳ ଗ୍ଲଲିଯିବା ପରେ ପୁଣି ସେହି ଝରକା ଆଡ଼େ ଗୁହିଁବାକୁ ଯାଇ ଦେଖିଲେ; ବାହାରେ ସବୁ ଅସ୍ପଷ୍ଟ ଏବଂ ଝାପସା ହୋଇ ଉଠିଲଣି । ପରକ୍ଷଣରେ ପାଞ୍ଚ ଛଅ ଟୋପା ତାତଲି ଲୁହ ତାଙ୍କ କୋଳରେ ପଡ଼ିଲା । ଜାମାରେ ନିଜ ଆଖି ଦୁଇଟା ପୋଛି ନେଇ ନିଜକୁ ସଚେତ ଦେଖାଇ ହେବା ପାଇଁ ଆଖି ଆଗରେ ଇମରସନଙ୍କ ଲେଖା ବହିଟା ଧରି ବସିଲେ ।

ସେ ବହି ପୃଷ୍ଠାରେ ଯାହା ଲେଖା ଯାଉନା କାହିଁକି କିନ୍ତୁ ତାଙ୍କ ମନ ଭିତରେ ଏହି କଥାଟା ବାରମ୍ବାର ଗ୍ରୁପ ପଡ଼ିବାକୁ ଲଗିଲା ଯେ ଏ ସୃଷ୍ଟିଟା ବଡ଼ ଆଶ୍ଚର୍ଯ୍ୟକର ଏବଂ ଅଜ୍ଞେୟ । ସଂସାରର ଦିନ ଗୁଡ଼ିକ ଯେତେବେଳେ ଗଣିବା ଭଳି ହୋଇ ଉଠିଲା, ମଣିଷ ସେତେବେଳେ ଯେପରି ଏହି ଦୀର୍ଘ ଜୀବନର ଅଭିଜ୍ଞତା, ସକଳ ଆୟୋଜନକୁ ରଦ୍ଦ କରି ଦେଇ ପୁଣି ନୂଆ ଅଭିଜ୍ଞତା ଅର୍ଜ୍ଜନ କରିବାର ଆବଶ୍ୟକତା ଅନୁଭବ କଲା । ଧରିଷ୍ଠାର ଭାବରେ ଦେଖି ହେଉଛି ଯେ ମାନବ ଜୀବନଟା ବ୍ୟର୍ଥ ହୋଇଗଲା । ଅଥଚ ଏକଥା ବୁଝିବାକୁ ବାକୀ ରହିଲା ନାହିଁ ଯେ ଏହି ସୁଦୀର୍ଘ ଫାଙ୍କ ପୂର୍ଣ୍ଣ ହେବା ପାଇଁ ତାଙ୍କ ପକ୍ଷରେ ମାତ୍ର ଗୋଟିଏ ମାସ ହିଁ ଯଥେଷ୍ଟ ହୋଇ ପାରିଲା ।

ଦ୍ୱାର ନିକଟରେ ପାଦ ଶବ୍ଦ ଶୁଣିବା ପରେ ସେ ମୁହଁ ଟେକି ଗୁହିଁଲେ । ମୃଣାଳ ପଥୁରିରେ ଗୁହା ଏବଂ ରେକାବିରେ ଚୂଡ଼ାଭଜା ଧରି ପ୍ରବେଶ କରୁଛି । ଦୁଇ ହାତ ବଢ଼ାଇ ସେସବୁ ତାହାଠାରୁ ନେଉ ନେଉ ସେ କହିଲେ—ଆଜି ମୋର ଯେ ଖାଇବା ମନ ମୁତାବକ ହୋଇ ପାରି ନାହିଁ; ଏକଥା ବୋଧହୁଏ ତୁ ଜାଣି ପାରିଛୁ । କିନ୍ତୁ ଦେଖ ମାଆ....

—ନା, ବାବା ତୁମେ ତ କଥା କହୁ ବସିଲେ ଦୁନିଆଁକୁ ପାଶୋର ପକାଅ ।

କେଦାରବାବୁ ମାରବରେ ଗୁଣ୍ଡା ପାଇଟି ମୁହଁକୁ ନେଲେ ଏବଂ ପିଇସାର ଥୋଇ ଦେଇ ଗୋଟାଏ ଦୀର୍ଘଶ୍ୱାସ ମାର କହିଲେ, ମୁଁ ଏତକ କାମନା କରୁଛି ଆର ଜନ୍ମରେ ମୃଣାଳ ତୁ ଯେପର ମୋର ଝିଅ ହୋଇ ଜନ୍ମ ହେଉ । ଗୃହରେ ପକାଇ ମଣିଷ କରିବାର ବିଦ୍ୟାଟା ମୋତେ ବେଶ୍ ଜଣାଅଛି । ସେତିକ ଯେପର ସାଗ୍ରଜୀବନ ଧର ତୋର ସେବାରେ ଖଟାଇ ମୁଁ ମୋର ଏ ଜୀବନର ଋଣ ଶୁଝାଇ ପାରେ ।

କଥାର ଶେଷ ବେଳକୁ ତାଙ୍କ କଣ୍ଠସ୍ୱର କମ୍ପିବାକୁ ଲଗିଲା । କିନ୍ତୁ ଏଇ ଧରଣର ଆଲୋଚନାକୁ ମୃଣାଳ ସବୁଠାରୁ ବେଶୀ ଭୟ କରେ । ସେଥିପାଇଁ ହସି ଦେଇ କହିଲା, ବେଶ୍ ବାବା, ତୁମର ଅନେକ ପିଲା ପିଲଙ୍କ ଭିତରେ ମୁଁ ଯେପର ଗୋଟିଏ ହୁଏ ।

ବୃଦ୍ଧ ତତ୍‌କ୍ଷଣାତ୍ ମୁଣ୍ଡ ହଲାଇ କହିଲେ ନା, ଅନେକ ନୁହଁ ମାଆ, କେବଳ ତୁ ଏକା । ମୋର ଗୋଟିଏ ବୋଲି ଝିଅ ହେବୁ । ଏକାକୀ ତୁ ମୋର ଗୃହରେ ଅନବରତ ଲଗି ରହିବୁ । ଏଥର ଯାହାସବୁ ତୋ ଠାରୁ ଶିଖି ଯାଉଛି ସେଗୁଡ଼ିକ ଗୋଟିକ ପରେ ଗୋଟିଏ ମୋ ଝିଅକୁ ଶିଖାଇ ଦେଇ, ପୁଣି ଏହିପର ବୁଢ଼ା ବୟସରେ ସବୁତକ ତାକୁ ଫେରାଇ ଦେଇ ପର ଜନ୍ମକୁ ଅଋଣୀ ହୋଇ ଯାତ୍ରା କରିବ । ଏତକ କହି ଅଜାଣତରେ ସେ ଥରକ ପାଇଁ ଆଖିରୁ ଲୁହ ପୋଛି ଦେଲେ ।

ମୃଣାଳ ଦୁଃଖିତା ହୋଇ କହିଲା, ତୁମେ କେବଳ ମୋତେ ଲଜ୍ଜିତ କରୁଛ ବାବା, ମୁଁ କଣ ଅବା ଏପର ଜାଣିଛି ଯେ···

: ଏଇ ତ ମୁଁ ଭଲ କର ସକାଳ ବେଳା ଖାଇ ପାର ନଥିଲି, ମୁଁ ନିଜେ ଜାଣି ନାହିଁ କିନ୍ତୁ ତୁ ଜାଣି ପାରିଛୁ ।

: ଏଇଟା କ'ଣ କମ୍ ଜାଣିବା ପଣିଆ ? ଯାହାର ଆଖିଥିବ, ଖାଇବା ଥାଳୀକୁ ଦେଖିଲେ ସିଏ ତ ଜାଣି ପାରିବ ।

: କିନ୍ତୁ ଏହି ଆଖି କ'ଣ ସମସ୍ତଙ୍କର ଥାଏ ମାଆ ? କହି ଟିକିଏ ଅଟକି ଯାଇ କହିଲେ, କିନ୍ତୁ ମୁଁ ସବୁଠାରୁ ଆଶ୍ଚର୍ଯ୍ୟ ହୋଇ ଉଠୁଛି ମାଆ, ଭଗବାନ କେଉଁଠାରେ, କେତେବେଳେ ଏବଂ କେଉଁ ଉପାୟରେ ଯେ ମନୁଷ୍ୟର

ଯଥାର୍ଥ ଉପଯୁକ୍ତ ଲୋକଟିକୁ ଆଣି କୁଆଡ଼େ ଦିଅନ୍ତ ତାହା କେହି ଜାଣି ପାରନ୍ତି ନାହିଁ । ଏଥିରେ ନା ଅଛି ତାଙ୍କର କେଉଁ ଆଡ଼ମ୍ବର, ନା ଅଛି ବାହୁଲ୍ୟ, ନା ଅଛି ସମୟର ହିସାବ । ଦଣ୍ଡକ ଭିତରେ କେଉଁଠାରେ କ'ଣ କିପରି ଘଟିଯାଏ । ଯେତେବେଳେ ସେଇଭଳି ଉପଯୁକ୍ତ ଲୋକଟି ମିଳିଯାଏ ସେତେବେଳେ ମନେ ମନେ ଭାବିବାକୁ ହୁଏ ଏତେକାଳ ଧରି ଏତେବଡ଼ ଶୂନ୍ୟତାକୁ କିପରି ଏତେଦିନ ପର୍ଯ୍ୟନ୍ତ ସହ୍ୟ କରିଥିଲି ?

ମୃଣାଳ ଆସ୍ତେ ଆସ୍ତେ କହିଲା, ଠିକ୍ କଥା ବାବା, ନହେଲେ ତୁମର ଗୋଟାଏ ଝିଅ ଯେ ଏତେଦିନ ଧରି ଏପରି ଗୋଟାଏ ବଣ ଭିତରେ ପଡ଼ିଥିଲା, ସେ ଖବର କ'ଣ ତୁମେ ରଖି ପାରିଥିଲ ?

କେଦାରବାବୁ କହିଲେ, ଯେତେଦିନ ପର୍ଯ୍ୟନ୍ତ ତାଙ୍କର ଆଜ୍ଞା ହୋଇ ନଥିଲା, ସେତେଦିନ ପର୍ଯ୍ୟନ୍ତ ମୋର ଅବା ଗୃହ କ'ଣ ଥିଲା ? ପୁଣି ଯେତେବେଳେ ହୁକୁମ ଦେଲେ ମୋତେ ବାନ୍ଧିକରି ଆଣିବାକୁ ତୋତେ ଦୁଇ ମିନିଟ୍ ସମୟ ଲାଗିଲା ନାହିଁ । ଦେଖିବାକୁ ଆମର ପରିଚୟ ଗୋଟାଏ ମାସର । କିନ୍ତୁ ମୁଁ ଦେଖି ପାରୁଛି ଏହାତ ମୋର ଘର ଭଡ଼ାର ହିସାବ ନୁହେଁ ଯେ କ୍ୟାଲେଣ୍ଡର ଦେଖି ଦିନ ଗଣା ଯାଇ ପାରିବ । ଯେପରି କେଉଁ ଯୁଗ ଯୁଗାନ୍ତର ଧରି ମୁଁ ତୋର ଆଶ୍ରୟରେ ରହିଆସିଛି । ଏଥିରେ ଆଉ ଦିନ, ମାସ, ବର୍ଷର ଗଣନା କରିହେବ କିପରି ? ଏତିକି କହି ଟିକିଏ ଦମ ନେଲେ । ମୃଣାଳ କ'ଣ ଯେପରି କିଛି କହିବାକୁ ଚାହୁଁଥିଲା । କିନ୍ତୁ ହଠାତ୍ ତାଙ୍କ ମୁହଁକୁ ଚାହିଁଦେଇ ସେ ନିର୍ବାକ ହୋଇ ଉଠିଲା । ତାର ମନେହେଲା, ଏହି ବୃଦ୍ଧଙ୍କ ଅନ୍ତର ଭିତରେ ଏତେଦିନ ଧରି ଯେଉଁ ଦୁଃଖର ଚିତା ନୀରବରେ ଜଳି ଉଠିଥିଲା, ସେ ଯେପରି ଲିଭି ଆସିଲା ଏବଂ ତାହାର ଶେଷ ଆଭା ଟିକିକ ତାଙ୍କର ମୁହଁ ଉପରେ ଦୀପ୍ତିମନ୍ତ ହୋଇ ଉଠିଛି, ଯେଉଁଠାରେ କି କେଉଁ ଯୁଗର ସାଇତା ହୋଇ ରହିଥିବା ସ୍ନେହ, ପ୍ରୀତି ଓ କରୁଣା ଫୁଟିଉଠିଛି ।

କିଛିକ୍ଷଣ ପର୍ଯ୍ୟନ୍ତ କେହି କୌଣସି କଥା କହିଲେ ନାହିଁ ।

ମୃଣାଳର ଆନତ ଦୃଷ୍ଟି ସେହିପରି ଟେବୁଲ ଉପରେ ଲାଗି ରହିଲା ।

ଏହି ନୀରବତାକୁ ପ୍ରଥମେ କେଦାରବାବୁ ଭାଙ୍ଗି ଦେଇ କହିଉଠିଲେ; ମୃଣାଳ ମୁଁ ଗୋଟାଏ ଧର୍ମ ତ୍ୟାଗ କରି ଆଉ ଗୋଟାଏ ଧର୍ମ ଗ୍ରହଣ କରି ସାରିଛି । ସେଥିପାଇଁ ଆଉ କାହା ପାଖରେ ନ ହେଲେ ମଧ୍ୟ ମୋ ନିଜ ନିକଟରେ ମୋତେ କୈଫିୟତ ଦେବାକୁ ପଡ଼ୁଛି । ସେହିଟାକୁ କୌଣସି ମତେ ଆଜି ପର୍ଯ୍ୟନ୍ତ

ଏଡ଼ାଇ ଦେଇ ପାରୁଥିଲୁ ସତ, ଆଉ ବୋଧହୁଏ ଠକ ଦେଇ ହେବ ନାହିଁ । ଧର୍ମ ସଂବନ୍ଧରେ ଏଇ କଥାଟା ଯେପରି ଆଜ ବୁଝିପାରୁଛୁ···

ଥରକ ପାଇଁ ମୃଣାଳ ସମାନ୍ୟ ଆଖି ଟେକ ଚୃହିଁବା କ୍ଷଣି, କେଦାରବାବୁ କହି ଉଠିଲେ, ଭୟ ନାହିଁ ମାଆ, ଭୟ ନାହିଁ । ମୁଁ ବାରମ୍ବାର ତୋ ନାମ ସମ୍ବୋଧନ କରି ତୋତେ ଆଉ ସଂକୋଚରେ ପକାଇବି ନାହିଁ । କିନ୍ତୁ ଏତେକାଳ ପରେ ଏହି ସତ୍ୟଟା ବୁଝି ପାରୁଛୁ ଯେ ଝଗଡ଼ା, ଲଢ଼ାଇ, ବାଦାନୁବାଦ କରି ଆଉ ଯାହା ମିଳି ପାରେ ସିନା କିନ୍ତୁ ଧର୍ମ ବସ୍ତୁଟିକୁ ପାଇବା ସମ୍ଭବପର ଆଦୌ ନୁହେଁ ।

ମୃଣାଳ ତାଙ୍କ ଅନ୍ତର କଥାଟି ଅନୁଭବ କରି ଧୀରେ ଧୀରେ କହିଲା, ସେ କଥା ସତ ହୋଇପାରେ ବାବା, କିନ୍ତୁ ଯେଉଁ ଧର୍ମଟି ଭଲ ବୋଲି ବୁଝି ପାରୁଛୁ, ତାକୁ ଧରି ରଖିବାକୁ ହେଲେ ସେ ଲଢ଼ାଇ, ଝଗଡା, ବାଦାନୁବାଦ କରିବାକୁ ହେବ; ମୁଁ ତ କାହିଁକି ଏହାର କୌଣସି ଯଥାର୍ଥତା ଦେଖି ପାରୁ ନାହିଁ ।

କେଦାରବାବୁ କହିଲେ—ମୁଁ ଆଗେ ମଧ୍ୟ ଠିକ୍ ଦେଖି ପାରି ନଥିଲି । କିନ୍ତୁ ବର୍ତ୍ତମାନ ଆବଶ୍ୟକ ହୋଇ ପଡ଼ିଲାଣି । କୌଣସି ବସ୍ତୁକୁ ଆମେ ପ୍ରୀତି କିମ୍ବା ପ୍ରେମ ସହିତ ପରିତ୍ୟାଗ କରୁ ନାହିଁ । ଯାହାକୁ ତ୍ୟାଗକରୁ ତାହା ସବନ୍ଧରେ ମନ ସଦାବେଳେ ଶ୍ରେଷ୍ଠ ହୋଇ ରହେ, ସେ ଘୃଣା କେତେବେଳେ ହେଲେ ମନରୁ ଯାଏ ନାହିଁ । ସେଇଥିପାଇଁ ତ ମୋତେ ଆଜ କୈଫିୟତ ଦେବାକୁ ହେଉଛି । କିନ୍ତୁ ତୁମେମାନେ ଯାହା ଜନ୍ମରୁ ପାଇଛ ତାକୁ ଆପଣାର କରି କୁଣ୍ଢାଇ କରି ଧରିଛ । ସେ ଭଲ ହେଉ କି ମନ୍ଦ ହେଉ ସେହି ଧର୍ମକୁ ଅବଲମ୍ବନ କରି ଚୃଲିଛ । ଏହି ତଫାତ୍‌ଟା ନିଜେ ଚିନ୍ତା କରି ଦେଖତ ମାଆ ।

ମୃଣାଳ ନୀରବ ହୋଇ ରହିଲା । ପ୍ରତିବାଦ କରିବା ପାଇଁ ଭାଷା ସେ ହଠାତ୍ ଖୋଜି ପାଇ ପାରିଲା ନାହିଁ । କେଦାରବାବୁ ମଧ୍ୟ ଦଣ୍ଡକ ପାଇଁ ସ୍ତବ୍ଧ ହୋଇ ଅଟକି ଯାଇ ପୁଣି କହିଲେ—ମାଆ, ଆଜ କେତେଦିନ ହେବ ଭୁଲି ଯାଇଥିବା କଥା ଧୀରେ ଧୀରେ ମନରେ ଜାଗି ଉଠୁଛି । କିନ୍ତୁ ଏତେ କାଳ ଧରି ଏସବୁ କଥା ଲୁଚ କରି ରହିଥିଲେ କେଉଁଠାରେ ?

ମୃଣାଳ ଆଖିଟେକ ପ୍ରଶ୍ନ କଲା—କାହା କଥା ବାବା ?

କେଦାରବାବୁ କହିଲେ – ମୋର କଥା ମାଆ । ବଡ଼ ହେବା ପାଇଁ ବୁଦ୍ଧି ଭଗବାନ ମୋତେ ଦେଇ ନାହାଁନ୍ତି । ତେଣୁ କେବେ ହେଲେ ବଡ଼ ହୋଇ ପାରିଲି ନାହିଁ । ମୁଁ ସାଧାରଣ ମନୁଷ୍ୟ । ସାଧାରଣ ଲୋକଙ୍କ ସଙ୍ଗେ ମିଶି ସମସ୍ତ କଟାଇଛି । କିନ୍ତୁ ଆମମାନଙ୍କ ଭିତରେ ଯେଉଁମାନେ ବଡ଼, ଯେଉଁମାନେ ସମାଜର ମୁଣ୍ଡିଆଳ, ଏବଂ ଯେଉଁମାନଙ୍କୁ କହନ୍ତି ସମାଜର ହର୍ତ୍ତା କର୍ତ୍ତା ବିଧାତା ସେମାନଙ୍କର ଉପଦେଶ ଚିରକାଳ ଭକ୍ତିର ସହିତ, ଶ୍ରଦ୍ଧାର ସହିତ, ମାନିଆସିଛି । ସେମାନଙ୍କର ସେହି ସବୁ କେତେ ଧନର ବାକ୍ୟଗୁଡ଼ାକ ଆଜି ମୋର ମନେ ପଡ଼ି ଯାଉଛି । ତୁ କହୁଥିଲୁ ମୃଣାଳ, ଧର୍ମାନ୍ତର ଗ୍ରହଣ ଭିତରେ, ଭଲଟାକୁ ବାଛି ନେବା ଭିତରେ, ରାଗ ଉଷା ରହିବ ଅବା କାହିଁକି ? ରହିବାର ପ୍ରଶ୍ନ ଅବା ଉଠିବ କାହିଁକି ? ମୁଁ ମଧ୍ୟ ଏତେ କାଳ ତାହା ବୁଝି ଆସିଛି ଏବଂ କହି ଆସିଛି । କିନ୍ତୁ ଆଜି ଦେଖି ପାରୁଛି ସେ ସବୁର ପ୍ରୟୋଜନ ପ୍ରକୃତରେ ଥିଲା । ଆଜି ବୁଝି ପାରୁଛି ହିନ୍ଦୁମାନଂକ ଭିତରେ ଯେଉଁମାନେ ଅଭିଯୋଗ କରନ୍ତି ଯେ, ଦେଶ ବିଦେଶରେ ସେମାନଂକର ମୁଣ୍ଡ ଆମେମାନେ ଯେତେ ଦୂର ତଳକୁ କରି ଦେଇ ପାରିଛୁ ସେତେଦୂର ପର୍ଯ୍ୟନ୍ତ ଖ୍ରୀଷ୍ଟାନ କମ୍ବା ପାଦ୍ରୀମାନେ କରି ପାରି ନାହାଁନ୍ତି । ଆଜି ତ ଆଉ ସେମାନଂକର ଅଭିଯୋଗକୁ ମିଥ୍ୟା କହି ଉଡ଼ାଇ ଦେଇ ପାରୁ ନାହିଁ ମାଆ ବସ୍ତୁତଃ ବିଦେଶୀ ବିଧର୍ମୀଂକ ପାଖରେ ଆମଭଳି କେତେକ ବିଭୀଷଣ ହିଁ ପହିଞ୍ଚ ଏପରି କରି ବସିଛୁ ।

ମୃଣାଳ ଅତ୍ୟନ୍ତ ଚଞ୍ଚଳ ହୋଇ ଉଠିଲା ।

ବୃଦ୍ଧ କିନ୍ତୁ ସେ ଆଡ଼କୁ ଆଦୌ ଦୃଷ୍ଟି ଦେଲେନାହିଁ । କହିବାକୁ ଲାଗିଲେ, ମୃଣାଳ, ରାଗ ଈର୍ଷା ଯଦି ନ ରହିବ ତାହାହେଲେ ଆମମାନଙ୍କ ଭିତରେ ଯେଉଁମାନେ ସକଳ ବିଷୟରେ ଆଦର୍ଶ, ଏପରିକି ସମସ୍ତ ମନୁଷ୍ୟମାନଙ୍କ ଭିତରେ ଯିଏ ଆଦର୍ଶ ପଦବାଚ୍ୟ, ସେମାନଙ୍କ ମୁହଁରୁ ଧର୍ମ ମନ୍ଦିରରେ, ଧର୍ମପୀଠ ଉପରେ ଠିଆହୋଇ "ରାମ" ଙ୍କୁ "ରେମୋ" "ହରି"ଙ୍କୁ "ହୋରେ" ନାରାୟଣଙ୍କୁ 'ନାରାଣୋ' ବୋଲି ବାହାରି ପାରିବ କିପରି ? ସମସ୍ତଙ୍କୁ ଆହ୍ୱାନ କରି ଉଚ୍ଚକଣ୍ଠରେ କେଉଁଥିପାଇଁ ଏହି କଥା ଘୋଷଣା କରିବାକୁ ଯିବେ ଯେ, ଦୁର୍ଗା ଗାମାନେ ଯଦି ଆଘାତରେ ମରିବାକୁ ଚାହଁ ନାହିଁ ତେବେ ଆମ ନିକଟକୁ ଆସ । ମାଆ, ଧର୍ମ ଉପଦେଶ ନାମରେ ଏହି ପ୍ରଚଣ୍ଡ ପ୍ରବଞ୍ଚନାକୁ କେହି ଯେପରି ଆମ ସମାଜ ଭିତରେ ହଠାତ୍ ବୁଝି ପାରିଲେ ନାହିଁ । କିନ୍ତୁ ଆଜି ଜୀବନର ଏହି ଶେଷ ସୀମାରେ ଯେପରି ସ୍ପଷ୍ଟ ଉପଲବ୍ଧି କରି-ପାରୁଛି, ସେମାନଙ୍କ କଥାରେ ଉପଦେଶ ଯଦି କିଛି ଥିଲେ ଥିବ ତାହା ଆଉପାରେ, କିନ୍ତୁ ଧର୍ମର ଲେଶମାତ୍ର ଚିହ୍ନ ନ ଥିଲା ।

ମୃଣାଳ ବ୍ୟଥିତ କଣ୍ଠରେ କହିଲା—ବାବା; ଏସବୁ କଥା ତୁମେ ମୋତେ କାହିଁକି ଅବା ଶୁଣାଉଛ ? ସେମାନେ ସମସ୍ତେ ଯେ ମୋର ପୂଜନୀୟ, ନମସ୍ୟ । କହି ସେ ଦୁଇହାତ ଯୋଡ଼ି ମୁଣ୍ଡରେ ଲଗାଇଲା ।

ଏହି ଭକ୍ତିମତୀ ତରୁଣୀର ନମ୍ରତାପୂର୍ଣ୍ଣ ମୁହଁକୁ ଯେପରି ବୃଦ୍ଧ ବସ୍ମୟର ହୋଇ ଚାହିଁ ରହିଲେ ଏବଂ କ୍ଷଣକ ପରେ ଚାକରାଣୀର ଡାକଶୁଣି ମୃଣାଳ ସେହିଠାରୁ ବାହାର ଚାଲିଗଲେ ସୁଦ୍ଧା ସେ ସେହିପରି ସ୍ଥିର ହୋଇ ବସି-ରହିଲେ ।

ଶାଶୁ କାହିଁକି ଡାକଥିଲେ ଶୁଣିସାରି କିଛିକ୍ଷଣ ପରେ ମୃଣାଳ ଯେତେବେଳେ ଫେରି ଆସିଲା, ସେତେବେଳେ କେଦାରବାବୁ ଦୁଇହାତ ବଢ଼ାଇ ଉଚ୍ଛ୍ୱସିତ ଆବେଗରେ କହି ଉଠିଲେ—ମୃଣାଳ, ଏପରି ପରର ଦୋଷ ତ୍ରୁଟି ବିରୁଦ୍ଧରେ ଅଭିଯୋଗ କରି କରି କ'ଣ ମୋର ସାରା ଜୀବନଟା କଟିଯିବ ? ଏଥିରୁ କ'ଣ କେବେ ମୋତେ ମୁକ୍ତି ମିଳିପାରିବ ନାହିଁ ମାଆ ?

ମୃଣାଳ କହିଲା, ତୁମ ମଶାରିର କଣଟା ଟିକିଏ ଛିଣ୍ଡିଯାଇଛି ବାବା, ଅଳ୍ପ ଦୁଃଖବସିଲେ ମୁଁ ସେଇଟା ସିଲାଇ କରିଦିଅନ୍ତି । ଏତକ କହି ସେ ଗ୍ରେଟ ସିଲାଇ ଡବାଟା ଧରି ବିଛଣା ଉପରକୁ ଯିବାକ୍ଷଣି କେଦାରବାବୁ ଶେଯରୁ ଉଠି ଚୌକି ଉପରେ ଯାଇ ବସିଲେ । ଏବଂ ଏହି ଅନବରତ କର୍ମନିରତ ନତୋକ୍ ଝିଅଟିର ମୁହଁକୁ ଏକ ଲମ୍ବରେ ଚାହିଁ ରହିଲେ । ମୃଣାଳ କୌଣସି ଆଡ଼କୁ ନଚାହିଁ ନିଜ କାମ କରି ଚାଲିଥାଏ । କିନ୍ତୁ ତାକୁ ଚାହିଁ ଚାହିଁ କେଦାରବାବୁଙ୍କ ଆଖିରୁ ଅନବରତ ଲୁହ ବହି ଚାଲିଥାଏ ଏବଂ ସେହି ଲୁହକୁ ସେ ବାରମ୍ବାର କୁର୍ତ୍ତା କାନରେ ପୋଛିବାରେ ଲାଗିଥାନ୍ତି ।

ସିଲାଇ ଶେଷ କରି ସିଲାଇ ଡବାଟି ଯଥାସ୍ଥାନରେ ରଖିଦେଇ ମୃଣାଳ ଠିଆହୋଇ ପଚାରିଲା—ଏ ଓଳି ଆପଣ କ'ଣ ଖାଇବେ ବାବା ?

ପ୍ରଶ୍ନ ଶୁଣି କେଦାରବାବୁ ହଠାତ୍ ଗୋଟାଏ ବଡ଼ ଧରଣର ନିଃଶ୍ୱାସ ତ୍ୟାଗ କରି ତାଙ୍କର ଅଶ୍ରୁକରୁଣ ଓଷ୍ଠପ୍ରାନ୍ତରେ ସାମାନ୍ୟ ହସର ଇଙ୍ଗିତ ପ୍ରକାଶ କରି କହିଲେ, ଖାଇବା ପାଇଁ ଏତେକବେଳୁରୁ ବ୍ୟାକୁଳ ହେବାର ଆବଶ୍ୟକ ନାହିଁ ମାଆ । ସେ ଚିନ୍ତା ଯଥା ସମୟରେ ହୋଇ ପାରିବ । କିନ୍ତୁ ତୁ ଟିକିଏ ସ୍ଥିର ହୋଇ ବସ ତ ମାଆ । ପୁଣି ସାମାନ୍ୟ ଅଟକି ଯାଇ କହିଲେ—ଏ ଅପରାଧର ଆଜି ହିଁ ହେଉଛି ଶେଷଦିନ । ମୋର ମୁହଁରୁ ଆଉ କେତେବେଳେ କାହା ନାମରେ

ଅଭିଯୋଗ ଶୁଣିବାକୁ ପାଇ ପାରିବୁ ନାହିଁ ମାଆ । କିନ୍ତୁ ତୁ ମୋ ଉପରେ ବିରକ୍ତ ହେବୁନାହିଁ ମାଆ, ମୁଁ ଠିକ୍ ଏଇଥିପାଇଁ କିନ୍ତୁ ଏ ପ୍ରସଙ୍ଗର ଅବତାରଣା କରି ନଥିଲି ।

କେଦାରବାବୁଙ୍କ ସଜଳ କଣ୍ଠସ୍ୱର ଶୁଣି ମୃଣାଳ ଚକିତ ହୋଇ କହିଲା, ଇମିତି କଥା କାହିଁକି ତୁମେ କହୁଛ ବାବା ? ମୁଁ କ'ଣ କେଉଁଦିନ ତୁମ ଉପରେ କେବେ ବିରକ୍ତ ହୋଇଛି ?

କେଦାରବାବୁ ସଙ୍ଗେ ସଙ୍ଗେ ମୁଣ୍ଡ ହଲାଇ କହିଉଠିଲେ—କେବେ ନୁହେଁ ମାଆ, କେବେ ନୁହେଁ । ତୁ ମୋର ମାଆ କିନା ! ସେଥିପାଇଁ ଏ ବୁଢ଼ା ପୁଅଟାର ସବୁ ଅତ୍ୟାଚାର ସ୍ନେହରେ ହସି ହସି ସହି ଆସିଛୁ । କିନ୍ତୁ ଏତେକାଳ ପରେ ଯେଉଁ ସତ୍ୟଟା ବୁକୁର ରକ୍ତ ଦେଇ ପାଇପାରିଛୁ, ତାହାକୁ କେବଳ ତୋତେ ଦେଖାଇ ଦେବାପାଇଁ ଚାହିଁଛି ମୃଣାଳ । କିନ୍ତୁ ପରର ନିନ୍ଦା ବା କୁତ୍ସା କରିବାକୁ ଚାହିଁ ନଥିଲି । ଆଜି ନିଶ୍ଚିତ ଭାବରେ ଜାଣି ପାରିଛି ଯେ ଧର୍ମ ଜିନିଷଟିକୁ ଯିଏ ଆମେମାନେ ଦଳବାନ୍ଧି ସ୍ୱାର୍ଥ ସାଧନ ପାଇଁ ଧରିବାକୁ ଚାହିଁଥିଲୁ କିନ୍ତୁ ସେପରି ଭାବରେ ତାକୁ କେତେବେଳେ ଧରାଯାଇ ପାରେନାହିଁ । ପରମ ଦୁଃଖର ମୂର୍ତ୍ତି ରୂପରେ ଯେଉଁଦିନ ଭଗବାନ ମନୁଷ୍ୟର ଚରମ ବେଦନା ଉପରେ ପାଦଦେଇ ଏକାକୀ ଆସି ଠିଆ ହୁଅନ୍ତି ସେତେବେଳେ କିନ୍ତୁ ତାଙ୍କୁ ଚିହ୍ନି ପାରିବା ଦରକାର । ଏତେ ଟିକିଏ ଭୁଲଭ୍ରାନ୍ତି ସେ ସହ୍ୟ କରି ପାରନ୍ତିନାହିଁ ମାଆ ।

ଯେଉଁ ପ୍ରସଙ୍ଗକୁ ମୃଣାଳ କ୍ରମାଗତ ଭାବରେ ବାଧାଦେଇ ବାଟକାଟି ଚାଲିଥିଲା, ଏ ଯେ ତାହାର ଇଙ୍ଗିତ, ତାହା ଅନୁଭବ କରିବା କ୍ଷଣି ତାର ସଙ୍କୋଚ ଓ ବେଦନାର ସୀମା ନଥିଲା । କିନ୍ତୁ ଆଜି ସେ କୌଣସି ଛଳନା କରି ପଳାଇବା ପାଇଁ ଚେଷ୍ଟା କଲାନାହିଁ । ନୀରବରେ ବସିରହିଲା ।

କେଦାରବାବୁ କହିବାକୁ ଲାଗିଥିଲେ—ମାଆ, ଏକଥା ବାରମ୍ବାର କହୁଥିଲେ ମଧ୍ୟ ମୋର ତୃପ୍ତି ଆସୁ ନାହିଁ ଯେ, ଏତେବଡ଼ ସଂସାରରେ ତୋ ବ୍ୟତୀତ ଆଉ ମୋର କେହି ଆପଣାର ଲୋକ ଅଛନ୍ତି ବୋଲି । ସେଥିପାଇଁ ବୋଧହୁଏ ମୋ ଶେଷ ଜୀବନର ସମସ୍ତ ବୋଝ, ସମସ୍ତ ଭଲ ମନ୍ଦ କପାଳ ଜାଣେନା ଆସି ତୋ ଉପରେ ଅଜାଡ଼ି ହୋଇ ପଡ଼ିଲା । ଯିଏ ସକଳ ବିଧି-ବ୍ୟବସ୍ଥାର ମାଲିକ, ଏ ହେଉଛି ତାଙ୍କର ବ୍ୟବସ୍ଥା । ମୁଁ ନିଃସନ୍ଦେହରେ ଏହା ବୁଝି ପାରିଛି ବୋଲି ଆଉ କୌଣସି ଲଜ୍ଜା, କୌଣସି କୁଣ୍ଠା ମୋର ଥିଲେ ହେଲେ ନାହିଁ । ତୋର ଗଳଗ୍ରହ ହୋଇଛି

ବୋଲି ମୋତେ ପ୍ରଥମେ କମିତ କମିତ ଲାଗୁଥିଲା କିନ୍ତୁ ଆଜଠାରୁ ମୋ ମନରୁ ସେ ସବୁ ଦ୍ୱିଧା ସମ୍ପୂର୍ଣ୍ଣ ରୂପେ ଅପସାରିତ ହୋଇ ଯାଇଛି ।

ମୃଣାଳ ମୁହଁ ଟିକେ ଉଠାଇ ସାମାନ୍ୟ ହସିଲା ।

କେଦାରବାବୁ ପୁଣି ଇତସ୍ତତଃ ହୋଇପଡ଼ି କହିବାକୁ ଲାଗିଲେ—ତଥାପି କାହିଁକି ବେଳେ ବେଳେ କମିତ କମିତ ଲାଗେ । କଣ୍ଠରୁ ସ୍ପଷ୍ଟ କଥା ବାହାରି ପାରେ ନାହିଁ ।

: ସେତିକି ହୋଇ ଥାଉ ବାବା, ଆଜି ଆଉ ସେ ସବୁ ଗପିବା ନାହିଁ ।

କେଦାରବାବୁ ମୁଣ୍ଡ ହଲାଇ କହିଲେ—ନା, ନା, ଆଉ ପେଟରେ ରଖି ଲାଭ ନାହିଁ । ମତେ କହିବାକୁ ହେବ । ମୋର ଯେପରି ମନେ ହେଉଛି ସେ ସୁରେଶ ସଙ୍ଗରେ···

ଏହି ସନ୍ଦେହ ମଧ୍ୟ ଅନେକ ଥର ମୃଣାଳ ମନ ଭିତରେ ଦେଖା ଦେଇ ଯାଇଛି । ସେଥିପାଇଁ ସେ କେବଳ ମୁଣ୍ଡ ତଳକୁ ପୋତି ରହିଲା । କିଛି କହିଲା ନାହିଁ । କିଛିକ୍ଷଣ ନୀରବରେ କଟିଗଲା । କେଦାରବାବୁ ପ୍ରବଳ ଚେଷ୍ଟାକରି ଆପଣାକୁ ଆପେ ସଜାଡି କରି କହି ଉଠିଲେ, ମନ୍ଦିର ନିକଟକୁ ଯିବାପାଇଁ ପ୍ରବଳ ଇଚ୍ଛା ହେଉଛି । ଥରକ ପାଇଁ ତାର ମୁହଁରୁ ପଦଟିଏ କଥା ଶୁଣିବାକୁ ଚାହେଁ । କେବଳ ଏଇଥିପାଇଁ ମୋ ଗୁହା ଭିତରଟା ଯେପରି ଅନବରତ ହୁ, ହୁ ହୋଇ ଜଳି ଉଠୁଛି । କିନ୍ତୁ ଏକାକୀ ମୁଁ କେଉଁ ମୁହଁରେ ତାହା ଆଗରେ ଯାଇ ଠିଆ ହେବ ?

ମୃଣାଳ ତତ୍‌କ୍ଷଣାତ୍ ମୁହଁ ଟେକି ତାହାର ସକରୁଣ ଆଖି ଦୁଇଟି ଦୁର୍ଭାଗା ବୃଦ୍ଧଙ୍କର ଲଜ୍ଜିତ, ଖିନ୍ନ ମୁହଁ ଉପରେ ସ୍ଥିର ରଖି କହିଲା, କାହିଁକି ତୁମେ ଏକାକୀ ଯିବ ବାବା ? ଯଦି ଯିବାକୁ ହୁଏ ତ ତେବେ ଆମେ ଦୁଇଜଣ ହିଁ ସାଙ୍ଗ ହୋଇଯିବା ।

: ସତ କରି କହୁଛୁ ତୁ ଯିବୁ ?

: ଯିବି କ'ଣ ବାବା ? ତାହା ଛଡ଼ା ତୁମକୁ ଏକାକୀ କିପରି ଛାଡ଼ି ଦେବି ସେ ? ତୁମେ ଯେଉଁଠାକୁ ଯାଅନା କାହିଁକି ମୁଁ ସଙ୍ଗରେ ନିଶ୍ଚୟ ଯିବି ।

ପ୍ରତ୍ୟୁତ୍ତର ଦେବାକୁ ଯାଇ ବୃଦ୍ଧ କେଦାରବାବୁ କିଛି କହି ପାରିଲେ ନାହିଁ । କେବଳ ଦୁଇ ହାତ ପାପୁଲିରେ ମୁହଁକୁ ଢାଙ୍କି ରଖି ସେ ନୀରବରେ ବସି ରହିଲେ । କିଛିକ୍ଷଣ ପରେ ଦେଖିବାକୁ ମିଳିଲା, ଏହି ଶୁଷ୍କ ଶୀର୍ଣ୍ଣ ଶରୀରଟି ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ଭିତର ଅବ୍ୟକ୍ତ ବେଦନାରେ ଥର ଥର ହୋଇ କମ୍ପିବାକୁ ଲାଗିଛି ।

ମୃଣାଳ ନୀରବରେ ସେହିପରି ବସି ରହିଲା । ପଦଟିଏ କଥା କିମ୍ବା ସାମାନ୍ୟ ସାନ୍ତ୍ୱନାର ବାଣୀ ଉଚ୍ଚାରଣ ପର୍ଯ୍ୟନ୍ତ କରିଲା ନାହିଁ । ଏକମାତ୍ର କନ୍ୟାର ଘୃଣ୍ୟତମ ଦୁର୍ଗତିରେ ଯେଉଁ ପିତୃ-ହୃଦୟ ବିଦ୍ଧ ହୋଇ ଉଠିଛି ତାଙ୍କୁ ସାନ୍ତ୍ୱନା ଦେବା ପାଇଁ ତା ନିକଟରେ କେଉଁ ଭାଷା ଅବା ଅଛି ?

ଏହିପରି ବହୁତ ସମୟ ଅତିବାହିତ ହେବା ପରେ ବୃଦ୍ଧ ଆତ୍ମ ସମ୍ବରଣ କରି ଉଠି ବସି ଡାକିଲେ—ମାଆ ।

କେଦାରବାବୁଙ୍କ ମୁହଁକୁ ଚାହିଁ ଦେବାକ୍ଷଣି ମୃଣାଳର ଛାତି ସତେ ଯେପରି ଫାଟିଗଲା ଭଳି ଲାଗିଲା । କିନ୍ତୁ ସେ ପ୍ରାଣପଣେ ଆଖିର ଲୁହକୁ ବନ୍ଦ କରି ଉତ୍ତର ଦେଲା—କ'ଣ ବାବା ?

: ସଂସାରରେ ବ୍ୟଥାର ପରିଣାମ ଯେ ଏତେ ବଡ଼ ହୋଇପାରେ ଏ କଥା ମୁଁ କଦାପି ଭାବି ପାରି ନ ଥିଲି ମୃଣାଳ । ଏଥିରୁ ପରିତ୍ରାଣ ପାଇଁ କ'ଣ କେଉଁଠାରେ କିଛି ଉପାୟ ନାହିଁ ? କାହାକୁ କ'ଣ କିଛି ଜଣା ଅଛି ମାଆ ?

: କିନ୍ତୁ ବାବା, ଲୋକମାନେ ତ ମୃତ୍ୟୁର ଶୋକକୁ ମଧ୍ୟ ସହ୍ୟ କରି ପାରନ୍ତି ?

କେଦାରବାବୁ କହିଲେ—ମୋ ପକ୍ଷରେ ସେ ଯେ ମୃତ, ଏଇ କଥା ତ ରୁ କହୁଛୁ ମାଆ । ହିସାବ କଲେ ତୋର କହିବାଟା ଠିକ୍ । ଅନେକ ଥର ମୋର ମଧ୍ୟ ସେଇଆ ମନେ ହୋଇଛି କିନ୍ତୁ ମୃତ୍ୟୁର ଶୋକ ଯେପରି ମର୍ମନ୍ତୁଦ ତାର ଶାନ୍ତି, ତାର ମାଧୁର୍ଯ୍ୟ, ସେହିପରି ବିରାଟ । ସେହିଭଳି ସାନ୍ତ୍ୱନାର ଉପାୟ କାହିଁ ମୃଣାଳ ? ଦୁଃସହ ଗ୍ଳାନି, ଅସହ୍ୟ ଲଜ୍ଜା, ମୋର ଛାତି ଭିତରେ ଏପରି ଭାବରେ ଲାଗି ରହିଛି ଯେ ହଲଚଲ ହେବାକୁ ମୋର ଆଉ ବାଟନାହିଁ । କହି ଆଖି ବୁଜି ମୁଣ୍ଡ ଉପରେ ହାତରଖି ପୁଣି ଧୀରେ ଧୀରେ କହିଲେ, ମାଆ ସନ୍ତାନର ମୃତ୍ୟୁ ଯିଏ ଦିଅନ୍ତି ତାହାଙ୍କୁ ଆମେ ମାନେ କ୍ଷମାକରୁ ଯେହେତୁ ତାଙ୍କ କାର୍ଯ୍ୟର କାରଣ ଆମକୁ ଜଣା ନଥାଏ ।

ମୃଣାଳ ହଠାତ୍ ବାଧା ଦେଇ କହି ଉଠିଲା, ବାବା, ଆମେ ବର୍ତ୍ତମାନ ସେଇଆ କରିବା । ସେ ଯିଏ ହୁଅନ୍ତୁ ନା କାହିଁକି, ଯାହାଙ୍କର କାର୍ଯ୍ୟର ଉଦ୍ଦେଶ୍ୟ ଆମକୁ ଆଦୌ ଜଣା ନାହିଁ, ତାଙ୍କୁ କ୍ଷମା ଯଦି କରି ନପାରୁ ଅନ୍ତତଃ ମନେ ମନେ ତାଙ୍କର ଅପରାଧ ବିଚାର କରି ତାହାଙ୍କୁ ଅପରାଧୀ କରି ରଖିବା ନାହିଁ ।

ବୃଦ୍ଧ ସତେ ଅବା ଚମକି ପଡ଼ିଲେ । ଦୁଇ ଚକ୍ଷୁର ତୀବ୍ର ଦୃଷ୍ଟି ଅବଳା ମୁହଁ ଉପରେ ଏକାଗ୍ର ଭାବରେ ରଖି ପଥର ପରି ନିସ୍ପନ୍ଦ ହୋଇ ବସି ରହିଲେ ।

ମୃଣାଳ ସଲଜ ମୁହଁରେ ଆସ୍ତେ ଆସ୍ତେ କହିବାକୁ ଲାଗିଲା—ତାହାଛଡ଼ା ମୁଁ ମଧ୍ୟ ସାଇଙ୍କ ଠାରୁ ଶୁଣିଛି ଯେ ସଂସାରରେ ଏପରି ଅପରାଧ ଅଳ୍ପ ଥିଲେ ଥାଇ ପାରେ ଯାହାକୁ ଇଚ୍ଛା କଲେ କ୍ଷମା କରାଯାଇ ନପାରେ ।

କେଦାରବାବୁ ଉତ୍ତେଜନାରେ ସିଧା ହୋଇ ବସିପଡ଼ି କହିଲେ—ଏ ଅପରାଧ କ'ଣ କେହି କଦାପି ମାଫ କରି ପାରିବ ମୃଣାଳ ?

ମୃଣାଳ ନୀରବ ରହିଲା ।

କେଦାରବାବୁ ସେହିପରି ତୀବ୍ର ସ୍ୱରରେ କହିବାକୁ ଲାଗିଲେ—କଦାପି ନୁହେଁ, କଦାପି ନୁହେଁ । ବାପ ହୋଇ ତାର ଏ ପାପକୁ ମୁଁ କୌଣସି ମତେ କ୍ଷମା ଦେଇ ପାରିବ ନାହିଁ । ସେ କ୍ଷମା ପାଇବା ପାଇଁ ଯୋଗ୍ୟ ନୁହେଁ ଏବଂ ତାକୁ ମଧ୍ୟ କ୍ଷମା ଦେବା ଉଚିତ୍ ନୁହେଁ—ଏ କଥା ତୋତେ ମୁଁ ନିଶ୍ଚିତ କରି କହି ଦେଉଛି ।

ମୃଣାଳ ଧୀରେ ଧୀରେ କହିଲା—ଯୋଗ୍ୟ, ଅଯୋଗ୍ୟ ସେ'ତ ଈଶ୍ୱରଙ୍କର କଥା ବାବା । ତାକୁ କ୍ଷମା କରିବା କୁହାଯାଏ ନାହିଁ । ତାହାଛଡ଼ା କ୍ଷମାର ଫଳ କ'ଣ କେବଳ ଅପରାଧୀ ହିଁ ପାଇଥାଏ ? ଯିଏ କ୍ଷମା କରି ବସେ ସେ କ'ଣ କିଛି ପାଏ ନାହିଁ ବାବା ?

ବୃଦ୍ଧ ଏକପ୍ରକାର ସ୍ତବ୍‌ଧ ହୋଇଗଲେ । ଝିଅଟିର ଏହି ଶାନ୍ତ କୋମଳ କଥାଗୁଡ଼ିକ ମୁହୂର୍ତ୍ତିକ ଭିତରେ ଯେପରି ତାଙ୍କୁ ଅଭିଭୂତ କରି ପକାଇଲା । କ୍ଷଣକ ପାଇଁ ଚୁପ ହୋଇ ବସି ରହିବା ପରେ କହି ଉଠିଲେ, ଏପରି ଭାବରେ କିନ୍ତୁ ମୁଁ କଦାପି ଭାବି ପାରିନାହିଁ ମୃଣାଳ । ତୋ ନିକଟରୁ ଆଜି ଯେପରି ମୁଁ ଗୋଟାଏ ନୂଆ ତତ୍ତ୍ୱ ଲାଭ କଲି ମାଆ । ଯାହା କହିଲୁ ସତ କଥାତ । ଯିଏ ଗ୍ରହଣ କରେ, ଲାଭ ଖାତାରେ ସେ କ'ଣ ଷୋଳ ଅଣା ଲେଖି ଦାତା ଖାତାରେ ଶୂନ ଲେଖିବ ? ଏପରି କଥାତ କେବେ ଠିକ୍ ହୋଇ ପାରେ ନାହିଁ । ସତ, ସତ, କାହାର ଅପରାଧ କେତେ ବଡ଼ ସେ ବିଚାର ଯାହାର ଖୁସି ସେ କରୁ କିନ୍ତୁ ମୋର କର୍ତ୍ତବ୍ୟ ହେଲା କେବଳ କ୍ଷମା କରିବା । ଏଯା ନା, ତୋର ଉପଦେଶ ମାଆ ?

: ଏପରି ସବୁ କହି ମୋର ଅପରାଧ କାହିଁକି ବଢାଉଛନ୍ତି ?

ତୋର ପୁଣି ଅପରାଧ ! ଏକଥା ଯିଏ କହିବ ତାହାପାଇଁ ପୁଣି ଏ ସଂସାରରେ ସ୍ଥାନ ଅଛି ତ ?

ମୃଣାଳ ହଠାତ୍ ଉଠିପଡ଼ି ଠିଆହୋଇ କହିଲା—ଏଇ ମାଆ ବୋଧହୁଏ ମୋତେ ଡ଼ାକୁଛନ୍ତି । ମୁଁ ଯିବି ଆଉ ଆସିବି କହି ସେ ତର ତର ହୋଇ ଘରୁ ବାହାରି ଚାଲିଗଲା ।

ମୃଣାଳ ଚାଲିଗଲା ।

କେଦାରବାବୁଙ୍କର କିନ୍ତୁ ସେ ଆଡ଼କୁ ଆଦୌ ଲକ୍ଷ୍ୟ ନଥିଲା । କେବଳ ନିଜ କଥା ଭିତରେ ବୁଡ଼ି ରହି ଆପଣା ମନକୁ କହିବାକୁ ଲାଗିଲେ ଯାହାହେଉ ମୁଁ ବଞ୍ଚିଗଲି ମାଆ, ମୋତେ ତୁ ବଞ୍ଚାଇ ଦେଇ ଗଲୁ । ଦୁର୍ଗନ୍ଧର ଦୁର୍ଗମ ଅରଣ୍ୟ ଭିତରେ ଯେତେ-ବେଳେ ମୁଖ ଭିନ୍ନ ମୋ ପାଇଁ ସମସ୍ତ ରାସ୍ତା ବନ୍ଦ, ସେତେବେଳେ ହାତ ପାଖରେ ଯେ ମୁକ୍ତିର ଏତେବଡ଼ ରାଜପଥ ଉନ୍ମୁକ୍ତ ଥିଲା, ଏହି ଖବର ତୋ ବ୍ୟତୀତ ଆଉ କିଏ ଦେଇ ପାରିଥାନ୍ତା ? ମୋ ନିଜ କଥା ତ କେତେବେଳେ ଭାବିପାରି ନାହିଁ । ଯଦି କେତେବେଳେ ପୁରୁଣା କଥା ଗୁଡ଼ାକ ମନେ ପଡ଼େ ସେତେବେଳେ ଜୋର-କରି ଦୁଇ ହାତରେ ସେ ସବୁକୁ ମନରୁ ଠେଲି ଦେଲା ପରି ଠେଲି ଦେଇ ଗର୍ବର ସହିତ ଜୋରରେ ଏହି କଥାହିଁ କହି ଆସିଛି ଯେ—ନା, କଦାପି ନୁହେଁ । ଝିଅ ହୋଇ ଯିଏ ଏତେ ବଡ଼ ଅପରାଧ କରି ପାରିଲା । ଆଉ ବାପ ହୋଇ ମୁଁ ତାହାକୁ କୌଣସି ମତେ କ୍ଷମା ଦେଇ ପାରିବି ନାହିଁ । କିନ୍ତୁ ଆରେ ମୂଢ଼, ଆରେ ଅନ୍ଧ, ଆରେ କୃପଣ, ପିତା ହୋଇ ତୁ ଯାହା ଦେଇ ପାରିବୁ ନାହିଁ ଅନ୍ୟ କିଏ ତାହା କପରି ଦେଇ ବସିବ ? ତୋର କ୍ଷମା ଫଳରେ ଧବୁ ଜିଜସ ହେ ପୁଣି ତୋର ଘରକୁ ଫେରି ଆସିବ । ତୋର ମୃଣାଳ ମାଆର ଦମ୍ଭଟାକୁ ଥରକ ପାଇଁ ଦୁଇ ଆଖି ଖୋଲି ଦେଖ ।

ଏହାପରେ ସତେ ଦେଖିଲା ପରି ନିଜର ଦୁଇ ଆଖିକୁ ବିସ୍ଫାରିତ କରି ମେଘୁଆ ଆକାଶ ଆଡ଼କୁ ଚାହିଁ ରହି ମନେ ମନେ କହିବାକୁ ଲାଗିଲେ, ମୁଁ କ୍ଷମା କଲି । ଅଚଳା ତୋତେ କ୍ଷମା କଲି । ସୁରେଶ ତୋତେ ମଧ୍ୟ କ୍ଷମା ଦେଲି । ପଶୁ ପକ୍ଷୀ କୀଟ ପତଙ୍ଗ ଯିଏ ଯେଉଁଠାରେ ଅଛ ମୁଁ ତୁମ ସମସ୍ତଙ୍କୁ କ୍ଷମା କଲି । ଆଜିଠାରୁ କାହା ବିରୁଦ୍ଧରେ ମୋର କୌଣସି ଅଭିଯୋଗ କିମ୍ବା ଅଭିମାନ ନାହିଁ । ଆଜି ମୁଁ ମୁକ୍ତ । ଆଜି ମୁଁ ସ୍ୱାଧୀନ, ଆଜି ଆନନ୍ଦରେ ହୃଦୟ ମୋର ଭରପୂର; କହୁ କହୁ ଅନିର୍ବଚନୀୟ କରୁଣାରେ ତାଙ୍କର ଦୁଇ ଆଖି ବୁଜି

ହୋଇ ଆସିଲା । ଏବଂ ସେଥି ସହିତ ଆଖିରୁ ପିତୃସ୍ନେହ ଯେପରି ଅଶ୍ରୁ ଆକାରରେ ଝରି ଆସିବାକୁ ଲଗିଲା । ତାହାପରେ ତାଙ୍କର ଓଠ ଦୁଇଟି କମ୍ପି ଉଠିଲା । ସେ ଅସ୍ପଷ୍ଟ ସ୍ୱରରେ କହିବାକୁ ଲାଗିଲେ ମାଆ ଅଚଳା ତୁ କେଉଁଠାରେ ଅଛୁ । ଥରକ ପାଇଁ ହେଲେ ଫେରି ଆସ । ମୁଁ ତୋତେ ସଂସାରକୁ ଆଣିଛୁ । ଗୃହରେ ଜାକ ବଡ଼ କରିଛୁ, ମାଆ ତୋର ସମସ୍ତ ଅପରାଧ. ସମସ୍ତ ଅପମାନ, ଲାଞ୍ଛନା ଧରି ପୁଣି ଥରେ ତୋର ବାପା କୋଳକୁ ଫେରି ଆସ ଅଚଳା, ମୁଁ ବୁଢ଼ାବାପ ତୋର ସକଳ କ୍ଷତ ସମସ୍ତ ଜ୍ୱାଳା ପୋଛି ଦେଇ ତୋତେ ପୁଣି ମଣିଷ କରି ଗଢିବି । ଆମେ କାହାରି ସହିତ ମିଶିବା ନାହିଁ, ଘରୁ ବାହାରକୁ ବାହାରିବା ନାହିଁ । କେବଳ ଘର ଭିତରେ ତୁ ଓ ମୁଁ ରହିବା ।

: ବାବା ?

ବୃଦ୍ଧ ମୁହଁ ଫେରାଇ ମୃଣାଳର ମୁହଁକୁ ଚାହିଁଲେ । ବୋଧହୁଏ ନିଜକୁ ସଂଯତ କରିବାକୁ ଚେଷ୍ଟା କଲେ । କିନ୍ତୁ ପରକ୍ଷଣରେ ଟେବୁଲ ଉପରେ ମୁଣ୍ଡରଖି ପିଲାଙ୍କଭଳି କାନ୍ଦି ଉଠି କହିବାକୁ ଲାଗିଲେ—ମାଆ, ମୋର ଗୃହ ଫାଟି ଯାଉଛି । ସମସ୍ତେ ମିଶି ତୋତେ କେତେ ଦୁଃଖ ଓ ବ୍ୟଥା ନ ଦେଇଛୁ ? ଆଉ ମୁଁ ପାରୁନାହିଁ ମାଆ······

ମୃଣାଳ କିଛି କହିଲା ନାହିଁ । କେବଳ ନିକଟକୁ ଆସି ତାଙ୍କର ଭୂଲୁଣ୍ଠିତ ମଥାକୁ ନୀରବରେ କୋଳ ଭିତରକୁ ଟାଣିନେଇ ଧୀରେ ଧୀରେ ତାହା ଉପରେ ହାତ ବୁଲାଇବାକୁ ଲାଗିଲା । ତାର ଆଖିରୁ ମଧ୍ୟ ଲୁହ ଟୋପା ଟୋପା ହୋଇ ବହିବାକୁ ଲାଗିଲା ।

ପ୍ରଥମ ଫାଲ୍‌ଗୁନର ଏହି ମେଘଢଙ୍କା ଦିନଟି ବୋଧହୁଏ ଏଇପରି ଭାବରେ ଶେଷ ହୋଇ ଯାଇଥାନ୍ତା, କିନ୍ତୁ ହଠାତ କେଦାରବାବୁ ଉଠିପଡ଼ି କହିଲେ, ମୃଣାଳ; ମହିମ ନିକଟକୁ ଚିଠି ଲେଖିଲେ କଣ ଉତ୍ତର ମିଳିବ ନାହିଁ ?

: ଉତ୍ତର ନ ମିଳିବ କାହିଁକି ? ମୋର ତ ମନେ ହେଉଛି କାଲି ପରଅରି ଦିନ ଭିତରେ ଉତ୍ତର ମିଳି ଯାଇ ପାରିବ ।

: ତୁ କ'ଣ ତାହା ପାଖକୁ ଚିଠି ଲେଖିଛୁ କି ?

ମୃଣାଳ ମୁଣ୍ଡ ଟୁଙ୍ଗାରି କହିଲା—ହଁ ।

ଚିଠିରେ କ'ଣ ଲେଖା ହୋଇଛି ବୃଦ୍ଧ ନିଜରେ ପଚାରି ପାରିଲେ ନାହିଁ । ବାହାରକୁ ଚାହିଁ ରହି କହିଲେ—ବର୍ତ୍ତମାନ ମଧ୍ୟ ବେଳ ଅଛି ।

ମୁଁ ଝିଙ୍କଏ ବାହାରେ ବୁଲି ଆସେ କହି ସେ ଦେହରେ ଚଦରଟା ପକାଇ ଦୁଇ ପାହୁଣ୍ଡ ଆଗେଇ ଯାଇ ହଠାତ୍ ଫେରିପଡ଼ି କହିଲେ—କିନ୍ତୁ ଦେଖ ମାଆ···

: କଣ ବାବା ?

: ମୁଁ ଭୟ କରୁଛି, ନା ଏକ ପ୍ରକାର ଠିକ୍ ଭୟ ନୁହେଁ, ମୁଁ ଭାବୁଛି ଯେ···

କଣ ?

: କ'ଣ ଜାଣ ମାଆ, ମୁଁ ଭାବୁଛି···ଆଚ୍ଛା, ତୁ କ'ଣ ମନେ କରୁଛୁ ମୁଁ ଯଦି ଯିବାକୁ ରୁହେଁ ବ ତେବେ କ'ଣ ମହିମ ଆପତ୍ତି କରିବ ?

ଏହି ଭୟ ଓ ଭାବନା ମୃଣାଳ ପକ୍ଷରେ ଯଥେଷ୍ଟ ଥିଲି ଏବଂ ମନେ ମନେ ସେ ଏହାର ଜବାବ ମଧ୍ୟ ଠିକ୍ ରଖିଥିଲି । ସେଥିପାଇଁ ତତ୍‌କ୍ଷଣାତ୍ କହି ଉଠିଲି—ବର୍ତ୍ତମାନ ସେପରି ଭାବନା କରି ଲାଭ କଣ ? ତାଙ୍କର ଠିକଣା ଜାଣି ପାରିବା ମାତ୍ରେ ଆମେ ଦୁହେଁ ଯାଇ ପାରିବା । ତାପରେ ଯେତେବେଳେ ସ୍ୱାଇ ଆମକୁ ତଡ଼ିଦେଇ ପାରିବେ ନାହିଁ ସେତେବେଳେ ଜାଣିବାର କଥା ଭଳି ଅନେକ କଥା ଆପଣା ଗ୍ରୁଏଁ ଜାଣି ପାରିବା ।

କେଦାରବାବୁ କ୍ଷଣକ ପାଇଁ ସ୍ଥିର ହୋଇ ପୁଣି କହିଲେ ତାହାହେଲେ ସତରେ ତୁ ସଙ୍ଗରେ ଯିବୁ ?

ମୃଣାଳ କହିଲି—ସତ । କିନ୍ତୁ ମୁଁ ତ ତୁମ ସଙ୍ଗରେ ଯିବନାହିଁ ବରଂ ତୁମେ ମୋ ସହିତ ଯିବ ।

ପ୍ରତ୍ୟୁତ୍ତର ଦେବାକୁ ଯାଇ ବୃଦ୍ଧ ଆଉ କିଛି କହିବାକୁ ଯାଉଥିଲେ କିନ୍ତୁ କ୍ଷଣକପାଇଁ କେବଳ ତାର ମୁହଁକୁ ଗ୍ରୁହିଁରହି ପୁଣି ମୁହଁ ଫେରାଇ ନୀରବରେ ଗ୍ରୁଲିଗଲେ ।

ଠିକ୍ ଏହିପରି ଏକ ଫାଲ୍‌ଗୁନର ଅପରାହ୍ଣ ସମୟରେ ଏହି ବଙ୍ଗଳା ଦେଶର ବାହାରେ ଦୁଇଟି ନରନାରୀଙ୍କ ଆଖିର ଜଳ ସେଦିନ ଅଗୋଚରଣୀୟ ହୋଇଉଠିଲି । ସୁରେଶ ଯେତେବେଳେ ସିଲକରୁ ବଡ଼ ଲଫାପାଟା ଅଚଳା ହାତରେ ଦେଇ କହିଲି—ଏତେଦିନ ଧରି ଦେବ ଦେବ ଭାବୁଥିଲି କିନ୍ତୁ ତୁମକୁ ଦେବାପାଇଁ ମୋର ସାହସ ହେଉନଥିଲି । ଆଜି କିନ୍ତୁ ନ ଦେଲେ ନ ଚଳେ ।

ଅଚଳା ଲଫାପାଟାକୁ ହାତରେ ଧରି କହିଲା—ଏପରି କହିବାର ଅର୍ଥ ?

ସୁରେଶ ସାମାନ୍ୟ ହସିଦେଇ କହିଲା—ଦୁନିଆରେ ମୋର ପୁଣି ସାହାସ ହୁଏ ନାହିଁ, ଏପରି ବସ୍ତୁସ୍ଥକର ଜିନିଷ ଆଉ କ'ଣ ଥାଇପାରେ ? ଏଇତ ତୁମେ ଭାବୁଛ ? ତୁମେ ଭାବପାର—ମୁଁ ମଧ୍ୟ ଅନେକ ଭାବୁଛି । ଏହାର ମାନେ ଯଦି କିଛି ଥାଏ ତେବେ ଦିନେ ନା ଦିନେ ପ୍ରକାଶ ପାଇବ । କିନ୍ତୁ ଅନେକ ଅପମାନ, ଅନେକ ଦୁଃଖର ବୋଝ ତ ତୁମେ ମୋଠାରୁ ଅର୍ଥ ନବୁଝି ନେଇପାରିଛ । ଏହାକୁ ସେହିପରିଭାବରେ ଗ୍ରହଣ କରିନିଅ ଅଚଳା ।

ଅଚଳା ଶାନ୍ତ କଣ୍ଠରେ ପ୍ରଶ୍ନକଲା—ଏହା ଭିତରେ କ'ଣ ଅଛି ?

ସୁରେଶ ଦୁଇହାତ ଯୋଡ଼ି କହିଲା—ଏତେଦିନ ଧରି ତୁମଠାରୁ ଯାହା ପାଇ ଆସିଛି ସେସବୁ ଡକାସ୍ଥିତ ଭଳି ଜୋରକରି ପାଇଛି । ଆଜି କିନ୍ତୁ କେବଳ ଗୋଟିଏ ଜିନିଷ ଭିକ୍ଷା ମାଗୁଛି, ଯେଉଁ ବିଷୟ କି ତାହା ତୁମେ ଜାଣିବାକୁ ଆଦୌ ଚେଷ୍ଟା କର ନାହିଁ ।

ଅଚଳା ଚୁପ ହୋଇ ରହିଲା । ଏହାପରେ କ'ଣ କହିବ ଭାବି ସ୍ଥିର କରି ପାରିଲାନାହିଁ । ପର୍ଦ୍ଦା ଅନ୍ତରାଳରୁ ବେହେରା ଡାକି କହିଲା—ଗାଡ଼ିବାଲା କହୁଛି ଆଉ ବିଳମ୍ବ କଲେ ପହଞ୍ଚିବାକୁ ରାତି ହୋଇଯିବ । ତାପରେ ହୁଏତ ଝଡ଼ବର୍ଷା ମଧ୍ୟ ହୋଇପାରେ ।

ଅଚଳା ଚକିତ ହୋଇ ପ୍ରଶ୍ନକଲା—ଆଜି କ'ଣ ତୁମେ କୁଆଡ଼େ ଯିବ କି ? ପୁଣି ଏପରି ସମୟରେ ?

ସୁରେଶ ହସ ହସ ମୁହଁରେ ଅଚଳା ତ୍ରୁଟିର କଥାକୁ ସଂଶୋଧନକରି କହିଲା—କହ, ଏପରି ଅସମୟରେ । ଯାଉଛି ଏଇ ମାଣ୍ଡୁଲିକୁ । ପ୍ଲେଗ ରୋଗ ପାଇଁ ଡାକ୍ତର କେଉଁଠାରେ ମିଳୁନାହାନ୍ତି । ଗ୍ରାମଗୁଡ଼ିକ ଏକବାରେ ଶ୍ମଶାନରେ ପରିଣତ ହୋଇ ପଡ଼ିଲାଣି । ଏଥର ମଧ୍ୟ ପାଞ୍ଚ, ସାତଦିନ ରହିବାକୁ ପଡ଼ିପାରେ । କିଏ ଅବା କହିପାରେ ରହୁ ରହୁ ସବୁଦିନପାଇଁ ବି ରହିଯାଇ ପାରେ । କହି ସେ ଆଉଥରେ ହସିଦେଲା ।

ଅଚଳା ସ୍ଥିରହୋଇ ତାର ମୁହଁକୁ ଚାହିଁ ରହିଲା । ସେ ନିଜେ ମଧ୍ୟ କିଛି କିଛି ସମ୍ବାଦ ଜାଣିପାରିଛି ଯେ, ସାତ ଆଠକୋଶ ଦୂରରେ ଥିବା ଗ୍ରାମଗୁଡ଼ିକ ସତରେ ଏବର୍ଷ ପ୍ଲେଗ ରୋଗରେ ଶ୍ମଶାନରେ ପରିଣତ ହୋଇଯାଉଛି । ସହର-

ଠାରୁ ଏତେଦୂରରେ ଏହି ଖ୍ରୀଷଣ ମହାମାରୀ ଗରୀବମାନଙ୍କର ଚିକିତ୍ସା କରିବାକୁ ଯେ ଚିକିତ୍ସକମାନଙ୍କର ଅଭାବ ଘଟିବ, ଏହା ବିଚିତ୍ର କଥା ନୁହେଁ । ସୁରେଶ ଯେ ବନ୍ଧୁଟିଙ୍କର ଔଷଧପତ୍ର ଗୋପନରେ ସେ ସବୁ ଅଞ୍ଚଳକୁ ପଠାଇବାରେ ଲାଗିଛି ସେ ଏହାର ଟେର ପାଇ ପାରିଥିଲା । ପ୍ରତିଦିନ ଭୋରରୁ ଉଠି କୁଆଡ଼େ ନା କୁଆଡ଼େ ଚାଲିଯାଏ । ଫେରିବା ବେଳକୁ କେତେବେଳେ ସନ୍ଧ୍ୟା ତ କେତେ-ବେଳେ ରାତି ହୁଏ । ଦୁଇଦିନ ତଳେ ରାତିରେ ସେ ଆଦୌ ଘରକୁ ଫେରି ନଥିଲା । କିନ୍ତୁ ସେ ଯେ ଘରଛାଡ଼ି, ତାହାକୁ ଛାଡ଼ି ଏକାଥରକେ କିଛିଦିନ ପାଇଁ ସେଇ ମରଣ କିଆଁ ମଝିରେ ବାସ କରିବାକୁ ମନସ୍ଥ କରିପାରିବ ଏହା ସେ କଳ୍ପନା ସୁଦ୍ଧା କରିପାରି ନଥିଲା । ସେଥିପାଇଁ କଥାଟା ଶୁଣିସାରିବା କ୍ଷଣି ସେ ମୁହୂର୍ତ୍ତିକ ଲାଗି ତାର ମୁହଁକୁ ସ୍ଥିରହୋଇ ଚାହିଁ ରହିଥିଲା । ତାପରେ ମନେ ମନେ ଭାବିବାକୁ ଲାଗିଲା । ଏ ସେହି ମହାପାପିଷ୍ଠ, ଯିଏ କି ଭଗବାନଙ୍କୁ ମାନେନାହିଁ । ପାପ ପୁଣ୍ୟ ମାନେନାହିଁ । ଯିଏ କି ନିଜର ବନ୍ଧୁ ଓ ତାର ପରିଚିତା ବନ୍ଧୁପତ୍ନୀର ଏତେବଡ଼ ସର୍ବନାଶ ଅବଲୀଳା କ୍ରମେ କରିପାରିଲା ଏବଂ ସେଥିପାଇଁ ମନରେ କେତେବେଳେ ଦଣ୍ଡିକ ପାଇଁ ଅନୁଶୋଚନା କରେ ନାହିଁ । ସେହିଭଳି ଯୁବକର ମୁହଁକୁ ସେ ଯେତେବେଳେ ଚାହିଁଛି ସେତେବେଳେ ସାରା ମନ ତାର ବିତୃଷ୍ଣାରେ ଭରି ଉଠିଛି । କିନ୍ତୁ ଆଜି ତାର ମୁହଁକୁ ଚାହିଁବାକ୍ଷଣି ତାର ଅନ୍ତର ବିଷରେ ନୁହେଁ ହଠାତ୍ ବିସ୍ମୟରେ ଭରି ଉଠିଲା । ସୁରେଶ ଓଠ ଧାରରୁ ଶେଷ ହସର ଧାର ଟିକିକ ସେତେବେଳକୁ ଲିଭି ନ ଥିଲା । କିନ୍ତୁ ସେହି କ୍ଷୀଣ ହସ ରେଖା ଭିତରେ ଅଚଳା ଯେପରି ବିଶ୍ୱର ସମସ୍ତ ବୈରାଗ୍ୟ ପୁଞ୍ଜି ହୋଇ ରହିଥିବାର ଦେଖି ପାରିଲା । ମୁହଁରେ ତାର ଉଦ୍‌ବେଗ ନାହିଁ, ଉତ୍ତେଜନା ନାହିଁ । ଏଇ ଯେ ମୃତ୍ୟୁମଝିରେ ଯାଇ ଠିଆ ହେବାକୁ ଯାତ୍ରା କରୁଛି ତଥାପି ମୁହଁରେ ଶଙ୍କାର ଲେଶମାତ୍ର ଚିହ୍ନ ନାହିଁ । ତେବେ ଏହି ନାସ୍ତିକ, ଏବଂ ଏକାନ୍ତ ସ୍ୱାର୍ଥପର ଲୋକଟା ନିକଟରେ ନିଜର ପ୍ରାଣଟା କ'ଣ ଏତେ ଶସ୍ତା ? ସଂସାରରେ ଭୋଗ ବ୍ୟତୀତ ଯେଉଁ ଲୋକ ଆଉ କିଛି ବୁଝେ ନାହିଁ, ଭୋଗର ଆୟୋଜନ ଭିତରେ ବ୍ୟସ୍ତ ରହି ବଞ୍ଚି ରହିବାଟା ଯାହା ପକ୍ଷରେ ଅକଳ୍ପିତକର, ଏବଂ ଏପରି ଅବହେଳାର ବସ୍ତୁ ଯେ ଏତେ ସହଜରେ ସେସବୁ ଛାଡ଼ି ଦେଇ ଯିବା ପାଇଁ ତାକୁ ଏକ ମୁହୂର୍ତ୍ତ ମଧ୍ୟ ଲାଗିଲା ନାହିଁ । ହୁଏତ ସେ ଫେରି ନ ପାରେ, ଏ କଥା ନିଶ୍ଚିତ ହେଲେ ସୁଦ୍ଧା କଥାଟା କ'ଣ ଏପରି ସହଜରେ କହି ହୋଇପାରିବ ?

ହଠାତ୍ ଭିତରୁ କାହାର ଧକ୍‌କା ଖାଇ ଅଚଳା ଯେପରି ଚମକି ଉଠିଲା—ହାତରେ ଧରିଥିବା ଲଫାପାଟାକୁ ଦେଖାଇ ପ୍ରଶ୍ନ କଲା—ଏଇଟା କ'ଣ ତୁମର ଉଇଲ ?

ସୁରେଶ ପ୍ରଶ୍ନ କଲା—ଯାହା ବର୍ତ୍ତମାନ ଭିକ୍ଷା ଦେଲ ଅଚଳା, ତାହା କ'ଣ ଏତେ ଶୀଘ୍ର ଫେରାଇ ନେବାକୁ ଚାହଁ ?

ଅଚଳା କିଛିକ୍ଷଣ ନୀରବ ରହି କହିଲା, ଆଚ୍ଛା; ମୁଁ ତାହା ଜାଣିବାକୁ ଚାହେଁ ନାହିଁ କିନ୍ତୁ ମୁଁ ତୁମକୁ ସେଠାକୁ ଯିବା ପାଇଁ ଆଦୌ ଅନୁମତି ଦେବି ନାହିଁ ।

: କାହିଁକି ?

ଉତ୍ତର ଦେବା ପାଇଁ ଯାଇ ଅଚଳା ସେହି ଲଫାପାଟା ହାତରେ ଧରି ଏପାଖ ସେପାଖ ଓଲଟାଉ ଓଲଟାଉ କହିଲା – ତୁମେ ମୋର ଯାହା କିଛି କରି ଥାଅନା କାହିଁକି, କିନ୍ତୁ ତୁମକୁ ମୋ ପାଇଁ ମରିବାକୁ ଛାଡ଼ିଦେଇ ପାରିବି ନାହିଁ ।

ସୁରେଶ ଉତ୍ତର ଦେଲା ନାହିଁ ।

ଅଚଳା ନିଜ କଥାରେ ସାମାନ୍ୟ ଲଜ୍ଜିତ ହୋଇ କଥାଟାକୁ ସାମାନ୍ୟ ହାଲ୍‌କା କରିବା ପାଇଁ ପୁଣି କହିଲା, ତୁମେ ହୁଏତ କହି ପାର ମୁଁ କାହିଁକି ଅବା ତୁମ ପାଇଁ ମରିବାକୁ ଯିବି ? ମୁଁ ଯାଉଛି ଗରିବ ମାନଙ୍କ ପାଇଁ ପ୍ରାଣ ଦେବାକୁ । ବେଶ୍ ସେଥିପାଇଁ ମଧ୍ୟ ମୁଁ ରାଜି ନୁହେଁ ।

କଥାଟା ଶୁଣିବା କ୍ଷଣି ସୁରେଶର ହଠାତ୍ ମହିମ କଥା ମନେ ପଡ଼ିଲା ଏବଂ ଗୁଢ଼ ଭିତରୁ ଗୋଟାଏ ଦୀର୍ଘନିଃଶ୍ୱାସ ବାହାରି ଘର ସାରା ଖେଳି ବୁଲିଲା । କାରଣ ଜୀବନର ମମତା ଯେ କେତେ ତୁଚ୍ଛ, ଏବଂ କେତେ ସହଜରେ ଯେ ଏହାକୁ ବିସର୍ଜନ କରିବା ପାଇଁ ସେ ପ୍ରସ୍ତୁତ ହୋଇପାରେ, ଏହାର ଏକ ମାତ୍ର ଜଣେ ସାକ୍ଷୀ ଆଜିସୁଦ୍ଧା ଜୀବିତ ଅଛି, ସେ ହେଉଛି ମହିମ । ଆଜିକାର ଯାତ୍ରା ଯଦି ମହାଯାତ୍ରାରେ ପରିଣତ ହୁଏ ତେବେ ସେହି ସଙ୍ଗହୀନ ଏକାନ୍ତ ମନୁଷ୍ୟଟି ହିଁ ନୀରବରେ କେବଳ ମନେ ମନେ ବୁଝି ପାରିବ ଯେ; ସୁରେଶ ମନଦୁଃଖରେ ନୁହେଁ, ଘୃଣାରେ ନୁହେଁ, କିମ୍ବା ଇହ ପରକାଳ ପାଇଁ କୌଣସି ଆଶାରଖି ପ୍ରାଣ ଦେଇ ନାହିଁ, ସେ ମରିପାରିଛି କେବଳ ମରଣଟା ଆସି ପହଞ୍ଚିଲା ବୋଲି ।

ଆଖିରେ ତା'ର ଅଶ୍ରୁ ଭରି ଉଠୁଥିଲା । ତଥାପି ମୁହଁ ଟୋକି ଟିକିଏ ହସିବା ପାଇଁ ଚେଷ୍ଟା କରି କହିଲା—ମୁଁ କାହା ପାଇଁ ମରିବାକୁ ଚାହୁଁ ନାହିଁ ଅଚଳା, ଚୁପଟା ହୋଇ ଖାଲି ଖାଲି ବସିବାକୁ ଆଉ ଭଲ ଲାଗୁନାହିଁ, ସେଥିପାଇଁ ଯାଉଛି ଟିକିଏ ବୁଲି ଆସିବି । ମରିବାକୁ ଯିବି କାହିଁକି ଅଚଳା ? ମୁଁ ତ ଆଦୌ ମରି ପାରିବି ନାହିଁ ।

: ତେବେ ଏଇ ଉଇଲ ··· ?

: କିନ୍ତୁ ଏଇଟା ଯେ ଉଇଲ, ତାହା ତ ଆଦୌ ପ୍ରମାଣିତ ହୋଇନାହିଁ ।

: ନ ହେଉ. କିନ୍ତୁ ମୋତେ କ'ଣ ଏକାକୀ ଛାଡ଼ି ଦେଇ ତୁମେ ଚାଲି-ଯିବ ?

: ଚାଲିଯିବ ଏବଂ ଆଉ ଫେରିବ ନାହିଁ ତାହା ମଧ୍ୟ ଏ ପର୍ଯ୍ୟନ୍ତ ସ୍ଥିର ହୋଇ ପାରି ନାହିଁ ତ ।

: ପାରି ନାହିଁ କ'ଣ ? ଏହି ବିଦେଶ ଭୂଇଁରେ ମୋତେ ଏକବାରି ନିରାଶ୍ରୟ କରି ତୁମେ···କହି ଅଚଳା କାନ୍ଦି ଉଠିଲା ।

ସୁରେଶ ଉଠିବାକୁ ଯାଇ ବସି ପଡ଼ିଲା । ଅଦମ୍ୟ ଆବେଗରେ ସେ ଆଜ ନିଜକୁ ସଂଯତ କରି ନେଇ; କ୍ଷଣକାଳ ପାଇଁ ସ୍ଥିର ଭାବରେ ରହି; ଶାନ୍ତ କଣ୍ଠରେ କହିଲା—ଅଚଳା, ମୁଁ ତୁମର ସଙ୍ଗୀ ନୁହେଁ । ଆଜ ସୁଦ୍ଧା ତୁମେ ଏକାକୀନୀ । ଆଉ ପ୍ରକୃତରେ ସେହି ସୁଦିନ ଆସି କେବେ ପହଞ୍ଚି ଯାଏ ତ ଏହା ଠାରୁ ବେଶୀ ନିରାଶ୍ରୟ ବୋଧ ହୁଏ ତୁମେ ହେବ ନାହିଁ ।

ଅଚଳା ଆଖିରୁ ଲୁହ ଝରୁଥିଲା । ଅଶ୍ରୁଭରା ଦୁଇଆଖି ଟେକି ସୁରେଶ ଆଡ଼କୁ ଚାହିଁ ରହିଲା । ଓଠ ଦୁଇଟି ଥର ଥର ହୋଇ କମ୍ପିବାରେ ଲାଗିଲା । ତା ପରେ ଦାନ୍ତ ଦ୍ୱାରା ଅଧରକୁ ଚାପି ଧରି ସେହି କମ୍ପନକୁ ବନ୍ଦ କରିବାକୁ ଯାଇ ହଠାତ୍ କାନ୍ଦି ଉଠି କହିଲା ମୋ ଠାରୁ ତୁମେ କ'ଣ ଚାହଁ ? ଆଉ ମୋର ଅଚ୍ଛା ଅଛି କଣ ? କହି କହି ମୁହଁରେ ପଣତକାନି ଚାପି ଧରି ସେଠାରୁ ଚାଲିଗଲା ।

ବେହେରା ଆସି କହିଲା—ଆଜ୍ଞା ଟାଙ୍ଗାବାଲା···ସୁରେଶ କହିଲା—ଆଚ୍ଛା, ଆଚ୍ଛା ତାକୁ ଅପେକ୍ଷା କରିବାକୁ କହ ।

ଅଳ୍ପ ସମୟ ପରେ ସହିସ ଆସି ଜଣାଇଲା ଯେ ଗାଡ଼ି ପ୍ରସ୍ତୁତ ହୋଇ ବହୁକ୍ଷଣ ହେବ ଅପେକ୍ଷା କରି ରହିଛି ।

: ଗାଡ଼ି କିଏ ଡକାଇଥିଲା ?

ସହିସ ଯାହା କହିଲା, ତହିଁରୁ ବୁଝାଗଲା ଯେ ମାଆ, ବୁଲି ଯିବାକୁ ହୁକୁମ ଦେଇଥିଲେ । କିନ୍ତୁ ଦାସୀ ଆସି କହୁଛି ଯେ ମାଆଙ୍କ ଘରର ଦରଜା ବନ୍ଦ ଏବଂ ବହୁତ ଡକାଡ଼କି କଲାପରେ ସୁଦ୍ଧା କୌଣସି ଉତ୍ତର ମିଳୁ ନାହିଁ । ତେଣୁ ଘୋଡ଼ା ଖୋଲି ଦେବ କି ନାହିଁ ତାହାହିଁ ସେ ଜାଣିବାକୁ ଚାହୁଁଛି ।

: ଆଚ୍ଛା, ଅପେକ୍ଷା କର ।

ଏ ଘରର ଭିତର ପାଖରୁ କବାଟଟା ଖୋଲାଥିଲା । ପରଦା ଘୁଞ୍ଚାଇ ଦେଇ ନିଃଶବ୍ଦରେ ଅଚଳାର ଶୟନ କକ୍ଷରେ ସୁରେଶ ପ୍ରବେଶ କଲା । ଏବଂ ସେହିପରି ନୀରବରେ ନିକଟରେ ପଡ଼ିଥିବା ଚୌକି ଉପରେ ବସି ପଡ଼ିଲା । ଏହି କକ୍ଷ ସେ ଦୁଇଜଣଙ୍କର । ଏଠାକୁ ସେ ଅନଧିକାର ଭାବରେ ପ୍ରବେଶ କରି ନାହିଁ । କିନ୍ତୁ ଏହି ଘରେ ପ୍ରଶସ୍ତ, ଶୁଭ୍ର ସୁନ୍ଦର ଶଯ୍ୟା ଉପରେ ଜଣେ ସୁନ୍ଦରୀ ନାରୀ ମୁହଁ ମାଡ଼ି କାନ୍ଦୁଥିବାର ଦୃଶ୍ୟ କୌଣସି ମତେ ତାର ମନକୁ ଆକର୍ଷଣ କରିପାରିଲା ନାହିଁ, ବରଂଚ ବ୍ୟଥା ଦେଇ ପଛକୁ ଠେଲିବାରେ ଲାଗିଲା ।

ସେ ଆସି ବସିଥିବା କଥା ଅଚଳା ଆଦୌ ଜାଣିପାରି ନାହିଁ । ସେ କାନ୍ଦିବାରେ ଲାଗିଥିଲା ।

ଅଚଳା ଆଡ଼କୁ ଅପଲକ ଆଖିରେ ଚାହିଁ ରହି ସୁରେଶ ଭାବିବାକୁ ଲାଗିଲା—କିଛିଦିନ ତଳେ ତାର ଭୁଲ ସେ ଜାଣି ପାରିଥିଲା । କିନ୍ତୁ ଏହି ଲୁଣ୍ଠିତ ଦେହଲତା, ଏଇ ବେଦନା,– ଏମାନଙ୍କର ସମ୍ମିଳିତ ମାଧୁର୍ଯ୍ୟ ଯେପରି ତା ଆଖିରୁ ଅନ୍ଧ ପୁଟୁଳିଟା ଖୋଲି ଦେଲା । ତାର ମନେ ହେଲା ପ୍ରଭାତର ସୂର୍ଯ୍ୟ କିରଣରେ କଅଁଳିଆ ଫୁଲ ଉପରେ ଯେଉଁ କାକର ବିନ୍ଦୁ ଝଲମଲ ହେଉଥାଏ, ତାହାର ଅପରୂପ ସୌନ୍ଦର୍ଯ୍ୟକୁ ଜଣେ ଲୋଭୀ ହାତରେ ଧରି ଉପଭୋଗ କରିବାକୁ ଇଚ୍ଛା କଲାପରି ଭୁଲଟା ସେ କରି ବସିଛି । ସେ ନାସ୍ତିକ । ସେ ଆତ୍ମା ମାନେ ନାହିଁ । ଯେଉଁ ନିର୍ଝର ଅନନ୍ତ ସୌନ୍ଦର୍ଯ୍ୟର ସ୍ତର ସୃଷ୍ଟି କରି ବହିଚାଲିଛି; ତାହାର ସ୍ରଷ୍ଟା; ସିଏ କି ଅସୀମ; ସେ ତାର ନିକଟରେ ଥିଲେ ମିଥ୍ୟା । ସେଥିପାଇଁ ସ୍ଥୂଳ ବିଷୟଟା ପ୍ରତି ସମସ୍ତ ଦୃଷ୍ଟି ଏକାଗ୍ର କରି ସେ ନିଃସଂଶୟରେ ବୁଝି ପାରିଥିଲା ଯେ, ଏଇ ଦେହଟାକୁ ଅଧିକାର କରି ପାରିବା ଭିତରେ ତାର ପାଉଣାଟା ଆପେ ଆପେ ସେ ପାଇ ପାରିବ । ଆଜି ତାର ଆକାଶସ୍ପର୍ଶୀ ଏହି ଭୁଲର ପ୍ରାସାଦଟା ଏକ ମୁହୂର୍ତ୍ତିଭିତରେ ଚୂର୍ଣ୍ଣ ହୋଇଗଲା । ସେହି ପାଉଣା ଆଦାୟଟା ଯେ କେତେ ବଡ଼ ଅପରାଧ, କେତେ ବଡ଼ ଭ୍ରାନ୍ତ ଏହି ତତ୍ତ୍ୱ ଆଜି ତାର ମର୍ମ ସ୍ଥଳରେ ବ୍ୟଥା ଦେବାକୁ ଲାଗିଲା । କାକର ବିନ୍ଦୁ ଯେ ମୁଠା ଭିତରେ କି ଭଳି ବୁନ୍ଦାଏ ପାଣି ପରି ଗୁହୁଁ ଗୃହୁଁ ଶୁଖିଯାଏ, ଅଚଳା ଆଡ଼େ ଚାହିଁ ରହି ସେ କେବଳ ଏହି ସତ୍ୟକୁ ଦେଖିବାକୁ ଲାଗିଲା । ହାୟରେ ! ଯେଉଁ କୁସୁମ ଲତାଟି ମୃତ୍ତିକା ପାଇଁ ଭଗବାନଙ୍କ ଦ୍ୱାରା ଉଦ୍ଦିଷ୍ଟ, ତାକୁ ସେ ଐଶ୍ୱର୍ଯ୍ୟର ଏହି ମରୁଭୂମିରେ ଆଣି କି ଭଳି ଅବା ବଞ୍ଚାଇ ରଖି ପାରିବ ?

ଅଜାଣତରେ ସୁରେଶ ଆଖି କୋଣରେ ଲୁହ ଜକେଇ ଆସିଲା । ଲୁହ ପୋଛି ପକାଇ ସେ ଡାକିଲା—ଅଚଳା ।

ଅଚଳା ଚମକି ଉଠିଲା । କିନ୍ତୁ ସେଇପରି ଚୁପଚାପ ହୋଇ ଖଟରେ ପଡ଼ି ରହିଲା ।

ସୁରେଶ କହିଲା—ତୁମ ପାଇଁ ଗାଡ଼ି ଆସି ପହଞ୍ଚିଲାଣି । ଆଜି ତୁମେ ପରି ରାମବାବୁଙ୍କ ଘରକୁ ଚାଲିଯିବ ?

ତଥାପି କୌଣସି ଉତ୍ତର ସେ ପାଇ ପାରିଲା ନାହିଁ, ତେଣୁ କହିଲା—ଯଦି ଇଚ୍ଛା ହେଉ ନାହିଁ ତେବେ କହିଲେ ସହିସ ଘୋଡ଼ା ନେଇ ଘୋଡ଼ା ଶାଳରେ ବାନ୍ଧିଦେଇ ଆସିବ । ଆଜି ବୋଧହୁଏ ମୁଁ ମଧ୍ୟ ଯାଇପାରୁ ନାହିଁ । ଝିଟକାକୁ ଯାଇଛି ଲେଉଟାଇ ଦେବ କହି ସେ ବସିଥିବା ଘରକୁ ଫେରି ଚାଲିଗଲା ।

ନିଜ ଘର ଭିତରେ ଦଶ ପନ୍ଦର ମିନିଟ ଧରି ସେ କ'ଣ ଯେ ଭାବିବାରେ ଲାଗିଥିଲା, ତାହା ନିଜେ ମଧ୍ୟ ଜାଣେ ନାହିଁ । ହଠାତ୍ ଶାଢ଼ୀର ଖସ୍ ଖସ୍ ଶବ୍ଦରେ ସଚେତନ ହୋଇ ଆଗରେ ଦେଖିଲା, ଅଚଳା ଠିଆ ହୋଇଛି ।

ଅଚଳା ଆଖିର ରକ୍ତିମାକୁ ଯେତେଦୂର ସମ୍ଭବ ଧୋଇ ଦେଇ ଧନୀ ଗୃହିଣୀ ଭାବରେ ସଜ୍ଜିତ ହୋଇ ଆସିଥିଲା । କହିଲା—ସେମାନଙ୍କ ଘରକୁ ଆଜି ଯିବା ନିହାତି ଦରକାର ।

ଏହି ସାଜସଜ୍ଜା ଯେ ତାହା ନିଜ ପାଇଁ ନୁହେଁ ଏବଂ ଏହା ଯେ ରାମବାବୁଙ୍କ ଘରକୁ ଆସିଥିବା—ଅତିଥି ମାନଙ୍କ ଉପଲକ୍ଷରେ, ଏକଥା ସୁରେଶ, ଯଦିଓ ବୁଝି ପାରିଲା ତଥାପି ଏହି ମଣିମୁକ୍ତା ଖଚିତ ରତ୍ନ ଅଳଙ୍କାର ଭୂଷିତା ସୁନ୍ଦରୀ ନାରୀ ମୁହୂର୍ତ୍ତିକ ପାଇଁ ତାକୁ ମୁଗ୍ଧ କରି ପକାଇଲା । ବିସ୍ମିତ କଣ୍ଠରେ ସେ ପଚାରିଲା—ନିହାତି ଦରକାର କାହିଁକି ?

: ରାକ୍ଷସୀ କଲିକତାରୁ ଜରରେ ଆସି ପହଞ୍ଚିଛି ଏବଂ ଖବର ପାଇଲି ଯେ ବଡ଼ବାବା ମଧ୍ୟ ନିଜେ କାଲିଠାରୁ ଜରରେ ପଡ଼ିଛନ୍ତି ।

: ସେମାନେ ଆସି ପହଁଞ୍ଚିବା ଭିତରେ ତୁମେ କ'ଣ ଥରକ ପାଇଁ ତାଙ୍କ ଘରକୁ ଯାଇ ନାହଁ ?

: ନା,

: ସେମାନେ କେହି କ'ଣ ଆସି ନାହାନ୍ତି ?

ଅଚଳା ମୁଣ୍ଡ ହଲାଇ କହିଲା—ନା ।

; ରାମବାବୁ ନିଜେ ମଧ୍ୟ ଆସି ନାହାନ୍ତି ?

: ନା ।

ଏ ଘରକୁ ଆସିବା ପର୍ଯ୍ୟନ୍ତ ସୁରେଶ ପ୍ଲେଗ ରୋଗରେ ନିଜକୁ ଏପରି ବ୍ୟାପୃତ ରଖିଥିଲି ଯେ, ଆତ୍ମୀୟତାର ଏହି ସବୁ ଶ୍ରେଷ୍ଠ ଶ୍ରେଷ୍ଠ ଦିଗ ପ୍ରତି ସେ ଦୃଷ୍ଟି ରଖି ପାରି ନ ଥିଲା । ସେଥିପାଇଁ ଏ କଥା ଶୁଣିବା କ୍ଷଣି ପ୍ରକୃତରେ ଆଶ୍ଚର୍ଯ୍ୟ ହୋଇ କହି ଉଠିଲା—ସତେ ନା କ'ଣ ? ଆଚ୍ଛା ଯାଅ ।

ଅଚଳା କହିଲା---ସେମାନଙ୍କର ଆସିବା ଅପେକ୍ଷା ଆମ ମାନଙ୍କର ଯିବାଟା ନିହାତି ଉଚିତ୍ ଥିଲା । ଜଣକୁ ଜ୍ୱର, ଆଉ ଜଣେ ନିଜେ ଜ୍ୱରରେ ନ ପଡ଼ିବା ପର୍ଯ୍ୟନ୍ତ ଆଗନ୍ତୁକ ଅତିଥି ମାନଙ୍କ ପାଇଁ ବ୍ୟତିବ୍ୟସ୍ତ ହୋଇ ପଡ଼ିଥିବେ । ତେଣୁ ଆସିବାକୁ ସେମାନଙ୍କୁ ବେଳ କେତେବେଳେ ଥିଲା ? ସେଥିପାଇଁ କହୁଛି ଆମର ଯିବା ଉଚିତ୍ ଥିଲା ।

: ହଉ ଯାଅ । କିନ୍ତୁ ଟିକିଏ ଶୀଘ୍ର ଶୀଘ୍ର ଫେରି ଆସିବ ।

ଅଚଳା ଦଣ୍ଡକ ପାଇଁ ଚୂପ୍ ରହି କହିଲା—ତୁମେ ମୋ ସାଙ୍ଗରେ ଚାଲ ନା ।

: ଫେରି ମୋତେ କାହିଁକି ଟାଣୁଛ ?

ଅଚଳା ବିରକ୍ତ ହୋଇ କହିଲା—ଦିନେ ତୁମର ଦେହ ଯେ ଭୀଷଣ ଅସୁସ୍ଥ ଥିଲା ହୁଏତ ତୁମର ତାହା ମନେ ନ ଥାଇ ପାରେ ଅନ୍ତତଃ ଡାକ୍ତର ହିସାବରେ ହେଲେ ଥରକ ପାଇଁ ଚାଲ ।

: ଆଚ୍ଛା, ଚାଲ କହି ସୁରେଶ ଉଠି ଠିଆ ହେଲା ଏବଂ ଲୁଗା ବଦଳାଇବାକୁ ପାଖ ଘରକୁ ଚାଲିଗଲା ।

ଝିଟକାବାଲା ବିରୁରି କୌଣସି କିଛୁ ହୁକୁମ ନ ପାଇ ସେତେବେଳ ପର୍ଯ୍ୟନ୍ତ ଅପେକ୍ଷା କରିଥିଲା । ତଳକୁ ଆସି ତାକୁ ଦେଖି ଅଚଳା ହଠାତ୍ ରାଗି ଉଠି ବେହେରାକୁ କୈଫିୟତ ମାଗି ସଙ୍ଗେ ସଙ୍ଗେ ତାକୁ ଭଡ଼ା ଦେଇ ବିଦା କରିଦେବା ପାଇଁ ହୁକୁମଦେଲା । ସେ ସୁରେଶର ମୁହଁକୁ ଚାହିଁ ଭୟରେ କହିଲା—କ'ଣ ଆଜ୍ଞା କାଲି······

ଅଚଳା ଜବାବ ଦେଇ କହିଲା—ନା, ବାବୁଆଉ ଯିବେ ନାହିଁ । ତେଣୁ ଆଦୌ ଗାଡ଼ିର ଦରକାର ନାହିଁ ।

ଗାଡ଼ିରେ ଉଠି ସୁରେଶ ଆଗରେ ବସିବାକୁ ଯାଉଥିଲା । ଆଜି ଅଚଳା ହଠାତ୍ ତାର ଜାମା ଟାଣି ଧରି ପାଖରେ ବସିବାକୁ ଇଙ୍ଗିତ ଦେଲା । ଗାଡ଼ି ଯିବାକୁ ଆରମ୍ଭ କଲା । କେହି କୌଣସି କଥା କହିଲେ ନାହିଁ । ଲଗାଲଗି ହୋଇ ବସି ସୁଦ୍ଧା ଦୁଇଜଣ ଦୁଇପାଖର ଝରକାରେ ବାହାରକୁ ଚାହିଁ ରହିଲେ ।

ବଗିଷ୍ଟର ଗେଟ୍ ପାର ହୋଇ ଗାଡ଼ି ଯେତେବେଳେ ଆସି ରାସ୍ତାରେ ପହଞ୍ଚିଲା, ସେତେବେଳେ ସୁରେଶ ଆସ୍ତେ ଆସ୍ତେ ଡ଼ାକିଲା, ଅଚଳା ।

: କ'ଣ ?

: ଆଜିକାଲି ମୁଁ କ'ଣ ଭାବୁଛି ଜାଣ ?

: ନା,

: ଏତେ କାଳ ଧରି ଯାହା ଭାବିଥିଲି ଠିକ୍ ତାର ଓଲଟା । ସେତେ-ବେଳେ ଭାବୁଥିଲି କ'ଣ କଲେ ତୁମକୁ ପାଇପାରିବି ବୋଲି ଆଉ ବର୍ତ୍ତମାନ ଦିନ ରାତି ଚିନ୍ତା କରୁଛି କି ଉପାୟରେ ତୁମକୁ ମୁକ୍ତି ଦେଇ ପାରିବି । ତୁମର ବୋଝ ଯେପରି ମୁଁ ଆଉ ବୋହି ପାରୁନାହିଁ ।

ଏପରି ଏକାନ୍ତ ନିଷ୍ଠୁର ଆଘାତର ଗୁରୁତ୍ୱରେ ଯେପରି ଅଚଳାର ସମସ୍ତ ଦେହ ମନ ପଥର ଭଳି ଅଚଳ ହୋଇ ଉଠିଲା । ସୁରେଶ କଥାକୁ ସେ ଯେ ବିଶ୍ୱାସ କରି ପାରିଲା, ତାହା ନୁହେଁ ତଥାପି ଅଭିଭୂତ ହେଲା ପରି ବସି ରହି ଅସ୍ପଷ୍ଟ ସ୍ୱରରେ କହିଲା, ମୁଁ ଜାଣିଥିଲି । କିନ୍ତୁ ବର୍ତ୍ତମାନ ତ···

ସୁରେଶ କହିଲା—ହଁ, ସେଇଟା ମୋର ଭୁଲ । ତୁମେ ଯାହାକୁ କହ ପାପର ଫଳ, ତଥାପି କିନ୍ତୁ କଥାଟା ସତ । ମନ ଛଡ଼ା ଯେଉଁ ଦେହ, ତାର ବୋଝ ଯେ ଏପରି ଅସହ୍ୟ, ତାହା ମୁଁ ସ୍ୱପ୍ନରେ ସୁଦ୍ଧା ଭାବିପାରି ନ ଥିଲି ।

ଅଚଳା ଆଖି ତୋଳି ଚାହିଁ କହିଲା—ତୁମେ କ'ଣ ମୋତେ ଛାଡ଼ି ଚାଲିଯିବ ?

ସୁରେଶ ତିଳେ ମାତ୍ର ଦ୍ୱିଧା ନ କରି ଉତ୍ତର ଦେଲା—ଧର ଯଦି ସେଇଆ ହିଁ ହୁଏ ।

ଏହି ନିଃସଙ୍କୋଚ ଉତ୍ତର ଶୁଣିବା ପରେ ଅଚଳା ଏକବାର ନୀରବ ହୋଇ ବସି ରହିଲା । ତାହାର ରିକ୍ତ ହୃଦୟ ମଥିତ କରି ଏଇ କଥାଟା କେବଳ ଘୂରିଆଡ଼େ ମୁଣ୍ଡପିଟି କହିବାକୁ ଲାଗିଲା—ଏ ହେଉଛି ସେଇ ସୁରେଶ, ଆଜି

ଯାହା ନିକଟରେ ସେ  ଅସହ୍ୟ ବୋଝ ହୋଇ ଉଠିଛୁ, ଆଜି ସେହି ହିଁ ତାକୁ ଛାଡ଼ି ଚାଲିଯିବା ପାଇଁ ଚାହେଁ—ଏଇ କଥା ପଦକ ମୁହଁରେ ଉଚ୍ଚାରଣ କରିବାକୁ ସୁରେଶକୁ ସାମାନ୍ୟ କଷ୍ଟ ସୁଦ୍ଧା ଲାଗିଲା ନାହିଁ !

ଅଥଚ ଏହି ସୁରେଶ ହିଁ ତାର ସୀମାହୀନ ଦୁଃଖର ମୂଳ କାରଣ । କାଲି ପର୍ଯ୍ୟନ୍ତ ସୁଦ୍ଧା ତାର ପବନରେ ସାରା ଦେହ ବିଷରେ ଭରି ଉଠିଛି ।

ମେଘାବୃତ ଆକାଶ ତଳେ ନିର୍ଜ୍ଜନ ରାଜପଥ ପ୍ରତିଧ୍ୱନିତ କରି ଗାଡ଼ି ଦ୍ରୁତଗତିରେ ଧାଇଁ ଚାଲିଛି । ତାହାର ଭିତରେ ବସି ଏ ଦୁଇଟି ନରନାରୀ ଏକବାର ନିର୍ବାକ୍ । ସୁରେଶ କ'ଣ ଭାବୁଥିଲା ସେ ଜାଣେ । କିନ୍ତୁ ତାର ଉଚ୍ଚାରିତ ବାକ୍ୟର କଳ୍ପନାତୀତ ନିଷ୍ଠୁରତାକୁ ଅତିକ୍ରମ କରି ଆଜି ନୂତନ ଭୟରେ ଅଚଳାର ମନ ଆତଙ୍କିତ ହୋଇ ଉଠିଲା । ସୁରେଶ ନାହିଁ । ସେ ଏକାକିନୀ । ଏହି ନିଃସଙ୍ଗତା ଯେ କେତେ ଅସହ୍ୟ ଏବଂ କି ପ୍ରକାର ଆକୁଳକର; ତାହା ବିଦ୍ୟୁତ୍ ବେଗରେ ତାର ମନ ଭିତରେ ଖେଳିଗଲା । ଅଦୃଷ୍ଟର ବିଡ଼ମ୍ବନା ହେତୁ ଯେଉଁ ତରଣୀ ସେ ସଂସାର ସମୁଦ୍ର ଭିତରେ ଭସାଇ ଦେଇଛି ସେ ଯେ ନିଶ୍ଚିତ ମୃତ୍ୟୁ ଭିତରେ କ୍ରମେ କ୍ରମେ ବୁଡ଼ିବାରେ ଲାଗିଛି ଏହା ତାହା ବ୍ୟତୀତ ଆଉ ଅଧିକ କେହି ଜାଣନ୍ତି ନାହିଁ । ତଥାପି ସେହି ସୁପରିଚିତ ଭୟଙ୍କର ଆଶ୍ରୟ ଛାଡ଼ି ସେ ଯେ ଦିଗ୍‌ବିଦିଗ୍‌ହୀନ ସମୁଦ୍ରରେ ଭାସୁଛି ଏହା କଳ୍ପନା କରିବା କ୍ଷଣି ତାର ଦେହଟା ସତେ ଯେପରି ବରଫ ପାଲଟିଗଲା । ଆଉ ଏଣିକି ତାର ହୋଇ କେହି ନାହାନ୍ତି, ତାକୁ ଭଲ ପାଇବା ପାଇଁ, ତାକୁ ଘୃଣା କରିବା ପାଇଁ, ତାକୁ କ୍ଷମା କରିବା ପାଇଁ, ଏବଂ ଦରକାର ପଡ଼ିଲେ ତାର ଭୁଲ ପାଇଁ ହତ୍ୟା କରିବା ପାଇଁ, ସଂସାରରେ କେହି ନାହାନ୍ତି । ସମ୍ପୂର୍ଣ୍ଣ ଭାବରେ ସେ ଏକାକିନୀ । ଏହି କଥା ଭାବି ଭାବି ସତେ ଯେପରି ତାର ନିଃଶ୍ୱାସ ବନ୍ଦ ହୋଇ ଆସିଲା ପରି ତାକୁ ମନେ ହେଲା ।

ହଠାତ୍ ତାର ଅବଶ ଡାହାଣ ହାତଟି ସୁରେଶ କୋଳ ଉପରେ ପଡ଼ିଯିବା କ୍ଷଣି ସେ ଚମକି ପଡ଼ିଲା । ଅଚଳା ନିରୁଦ୍‌ବେଗ କଣ୍ଠକୁ ପ୍ରାଣପଣେ ପରିଷ୍କାର କରି କହିଲା—ଆଉ କ'ଣ ତୁମେ ମୋତେ ଆଗପରି ଭଲ ପାଉନାହଁ ?

ସୁରେଶ ସଯତ୍ନରେ ତାର ହାତଟି ଧରି ପକାଇ କହିଲା— ଏକଥାର ଜବାବ କିନ୍ତୁ ସେହିପରି ନିଃସଙ୍କୋଚରେ ଦେଇପାରୁ ନାହିଁ ଅଚଳା । ସେ ଯାହାହେଉ, ଏ କଥା ସତ୍ୟ ଯେ ଏହି ବୋଝ ବୋହି ଚାଲିପାରିବାର ଶକ୍ତି ଆଉ ମୋର ନାହିଁ ।

ଅଚଳା ଆଉ କିଛି କ୍ଷଣ ନୀରବ ରହିବା ପରେ ଅତ୍ୟନ୍ତ କରୁଣ କଣ୍ଠରେ କହିଲା—ତୁମେ ମୋତେ ଏଠାରୁ ଅନ୍ୟ କୌଣସି ଆଡ଼େ ନେଇଯାଅ ।

: ଯେଉଁଠାରେ କୌଣସି ବଙ୍ଗାଳୀ ନଥିବେ, ଏଇଆ ତ ?

: ହଁ । ଯେଉଁଠାରେ ପ୍ରତିଦିନ ଲଜ୍ୟା ମୋତେ ଜାଳିପୋଡ଼ି ମାରି ପାରିବ ନାହିଁ ।

: ସେହିଠାରେ ତୁମେ କ'ଣ ସତରେ ମୋତେ ଭଲ ପାଇପାରିବ ଅଚଳା ? କହୁ କହୁ ଆବେଗରେ ହଠାତ୍ ଅଚଳାର ମଥାଟା ନିଜ ବୁକୁ ଉପରକୁ ଟାଣିନେଇ ସୁରେଶ ତାର ମୁହଁକୁ ଅଜସ୍ର ଚୁମ୍ବନରେ ଭରିଦେଲା ।

ଅପମାନରେ ଅଚଳାର ମୁହଁ ମଧ୍ୟ ଆଜି ଲାଲ ହୋଇ ଉଠିଲା । ଓଠ ଦୁଇଟି ଯେପରି ବିଛା କାମୁଡ଼ାରେ ଜଳି ଉଠିଲା ପରି ଲାଗିଲା । ତଥାପି ସେ ମୁଣ୍ଡ ହଲାଇ ଚୂପ୍ ଚୂପ୍ କରି କହିଲା ହଁ, ଏକଦା ତୁମକୁ ଭଲ ପାଇଥିଲି— ନା, ନା,—ଛିଃ —ଛିଃ—କାଲେ କିଏ ଦେଖି ପାରିବ କହି ସେ ନିଜକୁ ସୁରେଶ ଠାରୁ ମୁକ୍ତକରି ନେଲା ସିନା କିନ୍ତୁ ହାତଟା ପୂର୍ବପରି ସୁରେଶ ମୁଠା ଭିତରେ ରହିଗଲା । ସୁରେଶ ତାହା ଉପରେ ପରମ ସ୍ନେହରେ ଚାପଦେଇ ଗୋଟାଏ ଦୀର୍ଘନିଃଶ୍ୱାସ କେବଳ ଛାଡ଼ିଲା ।

ଗାଡ଼ି ବଡ଼ ରାସ୍ତା ଛାଡ଼ି ରାମବାବୁଙ୍କର ବଙ୍ଗଳା ସଂଲଗ୍ନ ଉଦ୍ୟାନ ଭିତରେ ପ୍ରବେଶ କଲା । ରାମବାବୁଙ୍କ ଘର ବାରଣ୍ଡା ନିକଟରେ ଗାଡ଼ି ପହଞ୍ଚିବା କ୍ଷଣି ନୂତନ ପୋଷାକରେ ସଜ୍ଜିତ ସହିସ ଗାଡ଼ିର ଦରଜା ଖୋଲିଦେଲା । ସୁରେଶ ନିଜେ ଓହ୍ଲାଇ ପଡ଼ି, ହାତ ଧରି ଅଚଳାକୁ ତଳକୁ ଓହ୍ଲାଇବାରେ ସାହାଯ୍ୟ କଲା । ଅଚଳାର ଆଖି ଥିଲା ବାରଣ୍ଡା ଉପରେ । ସେଠାରେ ଅନ୍ୟ ଝିଅମାନଙ୍କ ସହିତ ରାକ୍ଷସୀ ମଧ୍ୟ ବିଛଣା ଛାଡ଼ି ଆସି ଠିଆ ହୋଇଥିଲା । ବହୁଦିନ ପରେ ଦୁଇସଖୀଙ୍କର ଚାରି ଚକ୍ଷୁର ମିଳନ ହେବାରୁ ଦୁହିଁଙ୍କ ମୁହଁରେ ହସ ଫୁଟିଉଠିଲା ।

ରାମବାବୁ ତଳେ ଥିଲେ । ସେ ଆନନ୍ଦରେ ଚିତ୍କାର କରି ଉଠିଲେ—ଆସ ମାଆ, ଆସ ।

ଏହି ପରିଚିତ କଣ୍ଠ ସ୍ୱରର ବ୍ୟଗ୍ର ବ୍ୟାକୁଳ ଆହ୍ୱାନରେ ତାର ହସ ମିଶା ଆଖିର ଦୃଷ୍ଟି ମୁହୂର୍ତ୍ତକ ପାଇଁ ନଇଁ ଆସି କ୍ଷଣକ ଭିତରେ ବୃଦ୍ଧଙ୍କ ଉପରେ

ପଡ଼ିଲା । କିନ୍ତୁ ତାଙ୍କ ପାଖରେ ଯେ ମଧୁମ ଠିଆ ହୋଇଛି ! ଆଖିରେ ଆଖି ମିଶିଲା, କିନ୍ତୁ ସେ ଆଖିରେ ଆଉ ପଲକ ପଡ଼ିଲା ନାହିଁ । ଅଚଳାର ସର୍ବାଙ୍ଗରେ ମଣିମୁକ୍ତା ସେହିପରି ଝଲସିବାକୁ ଲାଗିଲା, ଆଗ୍ନ ମୋଖ ମାଣିକ୍ୟର ଜ୍ୟୋତି ତିଳେମାତ୍ର ନଷ୍ଟ ହେଲାନାହିଁ; କିନ୍ତୁ ତାହା ମଝିରେ ପ୍ରସ୍ଫୁଟିତ କମଳ ଭଳି ଅଚଳା ନାମକ ନାରୀଟି ଯେପରି ଆଖିପଲକ ମାତ୍ରେ ମରିଗଲା ।

ଆସନ୍ନ ସନ୍ଧ୍ୟାର କ୍ଷୀଣ ଆଲୋକରେ କିନ୍ତୁ ବୃଦ୍ଧଙ୍କର ଭୁଲ ହେଲା । ଅପରିଚିତ ପୁରୁଷ ସମ୍ମୁଖରେ ହଠାତ୍ ଅଚଳା ଲଜ୍ଜାରେ ମ୍ରିୟମାଣ ଓ ବିପନ୍ନ ହେଉଥିବାର କଳ୍ପନା କରି ସେ ବ୍ୟସ୍ତ ହୋଇ ଅଚଳାର ହାତ ଦୁଇଟି ଧରି ପକାଇ କହିଲେ—ଥାଉ ମାଆ, ଆଉ ପାଦଧୂଳି ନେବା ଆବଶ୍ୟକ ନାହିଁ । ତୁ ଉପରକୁ ସିଧା ଉଠିଯାଆ ।

ଅଚଳା କିଛି କହିଲା ନାହିଁ । ନିଶାଗ୍ରସ୍ତ ଭଳି ଟଳି ଟଳି ଚାଲିଗଲା ।

ରାମବାବୁ କହିଲେ—ସୁରେଶ ବାବୁ ଏ ହେଉଛନ୍ତି……

ସୁରେଶ କହିଲା—ଆମେ ଯେ ଏକ କ୍ଲାସରେ……ପିଲାଦିନରୁ ଦୁଇଜଣ ଆମେ……କହି ହଠାତ୍ ହସିବାକୁ ଚେଷ୍ଟା କରି ମୁହଁଟା ବିକୃତ କରି କହିଲା—କିରେ ମହିମ, ହଠାତ୍ ତୁ……

କଥାଟା କିନ୍ତୁ ସୁରେଶ ଶେଷକରି ପାରିଲା ନାହିଁ ।

ମହିମ ମୁହଁ ଫେରାଇ ନେଇ ଘର ଭିତରକୁ ଚାଲିଗଲା ।

ଘଟଣାଟା କ'ଣ ଜାଣିବା ପାଇଁ ବୃଦ୍ଧ ରାମବାବୁ ସ୍ତବ୍ଧ ଭାବରେ ସୁରେଶ ମୁହଁକୁ ଚାହିଁ ରହିଲେ ।

ପ୍ରତ୍ୟୁତ୍ତର ଦେବାପାଇଁ ଏବଂ ଆଉଥରେ ହସିବା ପାଇଁ ସୁରେଶ ଚେଷ୍ଟା କରୁଥିଲା । କିନ୍ତୁ ସେଥିରେ ମଧ୍ୟ ସଫଳ ହୋଇପାରିଲା ନାହିଁ ।

ଉପର ମହଲାକୁ ଯିବାପାଇଁ କାଠ ସିଡ଼ିରୁ ଗୋଟାଏ କ'ଣ ପଡ଼ିବାର ଗୁରୁତର ଶବ୍ଦ ଶୁଣି ଦୁହେଁ ଚକିତ ହୋଇ ଉଠିଲେ । ହଠାତ୍ ପାଟିତୁଣ୍ଡ ଶୁଣାଗଲା ।

ରାମବାବୁ ଦୌଡ଼ିଯାଇ ଦେଖିଲେ ଅଚଳା ତଳେ ଚିତ୍‌ହୋଇ ପଡ଼ିଛି । ସେ ଦୁଇ ତିନୋଟି ପାହାଚ ଚଢ଼ିଥିଲା ମାତ୍ର । ତାପରେ ମୂର୍ଚ୍ଛିତା ହୋଇ ହଠାତ୍ ପଡ଼ିଯାଇଛି ।

ଫେରିବା ବାଟରେ ଗାଡ଼ି କୋଣରେ ମଥାରଖି ଆଖି ବୁଜି ଅଚଳା ଏଇ କଥାଟାହିଁ ଭାବୁଥିଲା, ଆଜିକାର ଏହି ମୂର୍ଚ୍ଛାଟା ହେଲେ ସବୁଦିନ ପାଇଁ ଭାଙ୍ଗି ନ ଥାନ୍ତା କି ? ନିଜ ହାତରେ ନିଜକୁ ହତ୍ୟା କରିବାର ବିଭତ୍ସତାକୁ ସେ ମନରେ କେବେ ସ୍ଥାନ ଦେଇ ନଥିଲା । କିନ୍ତୁ ଏପରି ଯେ ଏକ ସ୍ୱାଭାବିକ ମୃତ୍ୟୁ ହୋଇଥାନ୍ତା । ମରଣକୁ ସହଜରେ ପାଇବା ପାଇଁ ଆଉ କ'ଣ କିଛି ଉପାୟ ନାହିଁ ? କେହି କ'ଣ ଜାଣନ୍ତି ନାହିଁ ?

ସୁରେଶ ତାକୁ ସ୍ପର୍ଶ କରି କହିଲା—ତୁମେ ପରା ଆଜି କେଉଁଠାକୁ ଯିବାକୁ ଚାହୁଁଥିଲ, ଯିବ କି ?

: ଚାଲ ।

: କାଲି ସକାଳୁ ଏଠାରେ କାହାକୁ ମୁହଁ ଦେଖାଇ ପାରିବ ନାହିଁ ।

: କିନ୍ତୁ ସିଏ ତ କୌଣସି କଥା କାହାକୁ ହେଲେ କହିଲେ ନାହିଁ ।

ସୁରେଶ ମୁହଁ ଫେରାଇ ଗୋଟାଏ ଦୀର୍ଘନିଃଶ୍ୱାସ ଛାଡ଼ିଲା । କ୍ଷଣକାଳ ମୌନ ରହି ଆସ୍ତେ ଆସ୍ତେ କହିଲା—ନା, ମହିମକୁ ମୁଁ ଜାଣେ । ସେ ଭୁଲରେ ଆମ ମାନଙ୍କର ଦୁର୍ନାମକୁ ତୁଣ୍ଡରେ ଧରିବ ନାହିଁ ।

କଥାଟା ସୁରେଶ ସରଳ ଭାବରେ କହିଲା । ଏକଥା ଶୁଣି କିନ୍ତୁ ଅଚଳାର ସର୍ବାଙ୍ଗ ଶିହରି ଉଠିଲା । ତାପରେ ଯେତେ ସମୟ ପର୍ଯ୍ୟନ୍ତ ଗାଡ଼ି ଆସି ଘର ଭିତରେ ନ ପହଞ୍ଚିପାରିଛି ସେତେବେଳ ପର୍ଯ୍ୟନ୍ତ ଉଭୟେ ନୀରବ ଥିଲେ । ସୁରେଶ ତାକୁ ସଯତ୍ନରେ ଏବଂ ସାବଧାନରେ ଓହ୍ଲାଇ ଦେଇ କହିଲା, ତୁମେ ଟିକିଏ ଶୋଇବାକୁ ଚେଷ୍ଟାକର ଅଚଳା, ମୋର କେତେଗୁଡ଼ିଏ ଜରୁରି ଚିଠିପତ୍ର ଲେଖିବାର ଅଛି କହି ସେ ନିଜର ପଢ଼ିବା ଘରକୁ ଚାଲିଗଲା ।

ଶେଯରେ ଶୋଇ ଅଚଳା ଭାବୁଥିଲା, ବର୍ତ୍ତମାନ ତ ତାକୁ ବୟସ ଏକୋଇଶି ବର୍ଷ । ଏହାଭିତରେ ସେ କାହା ନିକଟରେ ଏପରି ଅପରାଧ କରି ବସିଛି ଯେ, ସେଥିପାଇଁ ଏତେବଡ଼ ଦୁର୍ଗତି ତାର ଭାଗ୍ୟରେ ଘଟିଲା । ଏହିଭଳି ଚିନ୍ତା

ନୂଆ ନୁହେଁ, ଯେତେବେଳେ ସମସ୍ତ ପାଇଛୁ ସେତେବେଳେ ନିଜକୁ ସେ ଏଇ ପ୍ରଶ୍ନ ସଦାବେଳେ ପଗ୍ଭରୁଛୁ । ଶୈଶବଠାରୁ ଏ ପର୍ଯ୍ୟନ୍ତ ଯେତେ ଘଟଣା ଘଟିଯାଇଛୁ ସେ ସବୁ ସ୍ମରଣ କରିବାକୁ ଲାଗିଲା । ଆଜି ମୃଣାଳ ତାହା ସହିତ କରିଥିବା ଯୁକ୍ତି ତାର ମନେ ପଡ଼ିଲା ଏବଂ ତାହାର ଶିଥ ଧରି ସମସ୍ତ ଆଲୋଚନା ସେ ଗୋଟିକ ପରେ ଗୋଟିଏ ମନେ ମନେ ଆବୃତ୍ତି କରିବାକୁ ଲାଗିଲା । ନିଜର ବିବାହିତ ଜୀବନଟା ତାର ସ୍ୱାମୀଙ୍କ ବିରୋଧରେ ହିଁ କଟିଛୁ । କେବଳ ଶେଷ କେତୋଟି ଦିନ ପାଇଁ ରୋଗ ଶଯ୍ୟାରେ ସେ ସ୍ୱାମୀଙ୍କୁ ବଡ଼ ଆପଣାର କରି ପାରିଥିଲା । ତାର ଜୀବନରେ ଯେତେବେଳେ ଆଉ କୌଣସି ଭୟ ନଥିଲା; ମନ ଯେତେବେଳେ ନିର୍ଭର ଏବଂ ନିଶ୍ଚିତ ହୋଇ ଉଠିଥିଲା; ସେତେବେଳେ ଦିନେ ମୃଣାଳ ବେକରେ ଓହଳି ପଡ଼ି ସେ ଅଶ୍ରୁରୁଦ୍ଧ ସ୍ୱରରେ କହିଥିଲା— ଭଉଣୀ; ତୁମେ ଯଦି ଆମ ସମାଜର, ଓ ଆମମାନଙ୍କ ଭଳି ହୋଇଥାନ୍ତ ତେବେ ତୁମର ସାଗ୍ର ଜୀବନଟାକୁ କଦାପି ମୁଁ ବ୍ୟର୍ଥ କରିବା ପାଇଁ ଛାଡ଼ିଦେଇ ନଥାନ୍ତି ।

ମୃଣାଳ ହସିହସି ପ୍ରଶ୍ନ କରିଥିଲା—କ'ଣ କରିଥାନ୍ତ ନୂଆଉ । ମୋତେ ଆଉଥରେ ବାହା କରାଇ ଦେଇଥାନ୍ତ ?

ଅଚଳା କହିଥିଲା—କାହିଁକି ନୁହେଁ ?

: ଚୁପ କୁହ ଭଉଣୀ, ତୁମ ପାଦତଳେ ପଡ଼ୁଛି ଆଉ ଶାସ୍ତ୍ରର ଦୋହାଇ ଦିଅନାହିଁ । ସମାଜରେ ଏଥିପାଇଁ ଏତେ ମଲ୍ଲଯୁଦ୍ଧ ହୋଇଯାଇଛୁ ଯେ ପୁଣି ଶାସ୍ତ୍ରର ଉଦାହରଣ ଶୁଣିଲେ ମୋର ଭୟ ହୁଏ ।

ଅଚଳା କହିଥିଲା—ଏପରି ଭୟ କଲେ ଚଳିବ ?

ମୃଣାଳ ସେହିପରି ହସିକରି କହିଥିଲା—ଭୟ କରିବାର କଥା ତ ସତ । କାରଣ ସେମାନଙ୍କର ଆକ୍ରମଣଟା ଯେ କେତେବେଳେ କେଉଁଆଡ଼ୁ ମାଡ଼ି ଆସିବ ତାହା କିଏ କହି ପାରିବ ? କିନ୍ତୁ ଗୋଟାଏ କଥା ତୁମେ ଭାବି ପାରନାହିଁ ନୂଆଉ, ସେମାନେ ଯୁଦ୍ଧ କରନ୍ତି କେବଳ ଯୁଦ୍ଧ ସେମାନଙ୍କର ବ୍ୟବସାୟ ବୋଲି । କେବଳ ଦେହରେ ଜୋର ଏବଂ ହାତରେ ଅସ୍ତ୍ର ଥାଏ ବୋଲି ସେମାନଙ୍କର ଜୟ ଓ ପରାଜୟ ସେଥିପାଇଁ ସେମାନଙ୍କର । ସେଥିରେ ଆମର ଯାଏ କେତେ ଆସେ କେତେ । ଆମକୁ ତ କୌଣସି ପକ୍ଷ କୌଣସି କଥା କେତେବେଳ ପଗ୍ଭରୁନାହାନ୍ତି ।

ଅଚଳା ପ୍ରଶ୍ନ କରିଥିଲା—ପଗ୍ଭରିଥିଲେ କ'ଣ କରିଥାନ୍ତ ?

ମୃଣାଳ କହିଥିଲା—ତୁମଭଳି ଚିନ୍ତା କରିଥାନ୍ତି । ହୁଏତ ତୁମ ପ୍ରସ୍ତାବରେ ରାଜି ହୋଇଥାନ୍ତି—କହି ସେ ହସିଦେଇଥିଲା ।

ତାକୁ ହସିବାର ଦେଖି ଅଚଳା ଅତ୍ୟନ୍ତ କ୍ଷୁଣ୍ଣ ହୋଇ ଉତ୍ତର ଦେଇଥିଲା; —ଆମ ସମାଜ ସମ୍ବନ୍ଧରେ କଥା ପଡ଼ିଲା ବେଳେ ତୁମେ ଅବଜ୍ଞାରେ ଉଡ଼ାଇ ଦିଅ । ସେକଥା ମୁଁ ଜାଣେ । କିନ୍ତୁ ଆମମାନଙ୍କର କଥା ଗୁଡ଼ିକ ଦିଅ ପଛକେ, ଯେଉଁମାନେ ଏଥିପାଇଁ ଯୁକ୍ତି କରନ୍ତି ସେମାନେ କ'ଣ ସମସ୍ତେ ବ୍ୟବସାୟୀ ? ପ୍ରକୃତରେ କେହି କଣ ମନରେ ଦାରିଦ୍ର୍ୟ ଲଢ଼ାଇ କରନ୍ତି ନାହିଁ ?

ମୃଣାଳ କିଭ କାମୁଡ଼ି କହିଲା—ଏପରି କଥା ମନରେ ଆଣିଲେ ପାପ ହୁଏ ନା, ଆବୋଉ । କାଲି ସକାଳେ ତ ମୁଁ ଚାଲି ଯାଉଛି । ଆଉ କେବେ ଦେଖା ହେବ ଜାଣିନାହିଁ । କିନ୍ତୁ ଯିବା ଆଗରୁ କ'ଣ ଟିକିଏ ଅଛା ପରିହାସ ସୁଦ୍ଧା କରିପାରିବ ନାହିଁ ? କହୁ କହୁ ତାର ଆଖିରେ ଲୁହ ଆସିଗଲା । ନିଜକୁ ସମ୍ଭାଳି ନେଇ ପରେ ଗମ୍ଭୀର ହୋଇ କହିଥିଲା, ତୁମେ ତ ମୋର ସବୁ କଥା ବୁଝି ପାରିବନାହିଁ ନା, ଆଉ । ବିବାହ ଜିନିଷଟା ତୁମମାନଙ୍କ ନିକଟରେ କେବଳ ଗୋଟାଏ ସାମାଜିକ ନିୟମ, ସେଥିପାଇଁ ସେ ସମ୍ବନ୍ଧରେ ତୁମମାନଙ୍କର ଭଲ ମନ୍ଦର ବିଚାର ଚାଲେ ଆଉ ମତା-ମତ; ଯୁକ୍ତିତର୍କ ଭିତରେ ବଦଳିଯାଏ । କିନ୍ତୁ ଆମମାନଙ୍କ ନିକଟରେ ଏହା ହେଉଛି ଧର୍ମ । ସ୍ୱାମୀଙ୍କୁ ଆମେମାନେ ପିଲାବେଳରୁ ଦେବତା ଭଳି ଦେଖି ଆସୁ । ସେଥିପାଇଁ ଏ ବିଷୟଟି ଆମମାନଙ୍କ ନିକଟରେ ସଦାବେଳେ ବିଚାର ବିବେଚନାର ଊର୍ଦ୍ଧ୍ୱରେ ରହିଆସିଛି ।

ବିସ୍ମିତ ହୋଇ ଅଚଳା ପ୍ରଶ୍ନ କରିଥିଲା—ଆଚ୍ଛା ଭଉଣୀ ତାହା ଯଦି ହୋଇଥାଏ, ଧର୍ମକୁ କ'ଣ ମନୁଷ୍ୟ ବଦଳାଇ ପାରେ ନାହିଁ ?

ମୃଣାଳ କହିଥିଲା—ଧର୍ମର ମତାମତ ବଦଳିଥାଏ । କିନ୍ତୁ ଅସଲ ଜିନିଷଟି କିଏ ଆଉ ବଦଳାଇ ପାରିବ ନା, ଆବୋଉ ? ସେଥିପାଇଁ ଏତେ ଲଢେଇ ଝଗଡ଼ା ଭିତରେ ମଧ୍ୟ ସେହି ମୂଳ ଜିନିଷଟି ଆଜି ମଧ୍ୟ ସମସ୍ତଙ୍କ ନିକଟରେ ଏକ ହୋଇ ରହିଆସିଛି । ସ୍ୱାମୀଙ୍କ ଦୋଷ ଗୁଣର ଆମେମାନେ ଆଲୋଚନା କରୁ । ସେ ସବୁ ସମ୍ବନ୍ଧରେ ଆମେ ମତାମତ ଦେଇ ପାରୁ, ଆମେମାନେ ମଧ୍ୟ ସେହି ମଣିଷ । କିନ୍ତୁ ସ୍ୱାମୀ ଜିନିଷଟି ଆମମାନଂକ ନିକଟରେ ଧର୍ମ; ସେଥିପାଇଁ ସେ ଚିରନ୍ତନ ସତ୍ୟ । ଜୀବନରେ ମୃତ୍ୟୁ ହିଁ ସତ୍ୟ, ଜୀବନ ହିଁ ସତ୍ୟ । ତାକୁ ଆମେମାନେ ଯେତେବେଳେ ବଦଳାଇ ପାରୁନାହୁଁ ସେତେବେଳେ ସ୍ୱାମୀଙ୍କ ବିଷୟରେ ପ୍ରଶ୍ନ

ଅବା ଉଠୁଛୁ କେଉଁଠୁ ? ସେ ଯେତେ ଖରାପ ହେଲେ ମଧ୍ୟ ସଦାସର୍ବଦା ପୂଜନୀୟ ଏବଂ ଗ୍ରହଣୀୟ ।

ଅଚଳା କ୍ଷଣକାଳ ନୀରବରହି କହିଥିଲା—ଏହା ଯଦି ସତ୍ୟ, ତେବେ ଏତେ ଅନାସ୍ଥାର ଅଛି କାହିଁକି ?

ମୃଣାଳ କହିଥିଲା—ରହିବା ଉଚିତ୍ ବୋଲି ରହିଛି । ଧର୍ମ ଯେତେବେଳେ ନ ରହିବ ସେତେବେଳେ ଏସବୁ ରହିବ ନାହିଁ ।

ଅଚଳା ହଠାତ୍ ଉତ୍ତର ଦେବାପାଇଁ ସ୍ଥିର କରି ନପାରି କେତେକ ମୁହୂର୍ତ୍ତ ଚୁପ୍ ରହିବା ପରେ କହିଥିଲା – ଏହା ଯଦି ତୁମମାନଙ୍କ ସମାଜର ଶିକ୍ଷା, ତେବେ ଯେଉଁମାନେ ଶିକ୍ଷା ଦେଇଥାନ୍ତି ସେମାନଙ୍କର ଏତେ ସନ୍ଦେହ କରିବା କ'ଣ ଦରକାର ? ଏତେ ସାବଧାନ କରାଇବାର ଆବଶ୍ୟକତା କ'ଣ ? ଏତେ ପର୍ଦ୍ଦା, ଏତେ ଲୁଚାଲୁଚି, ସମସ୍ତ ପୃଥିବୀଠାରୁ ଲୁଚାଇ ରଖିବାପାଇଁ ଏତେ ପ୍ରାଣପଣେ ଚେଷ୍ଟା କାହିଁକି ? ଯଦି ପରୀକ୍ଷା କରିବାର ଅବକାଶ ଥାନ୍ତା ତେବେ ଅବା ଏହି ସତୀତ୍ୱର ମର୍ଯ୍ୟାଦା ବୁଝା ପଡ଼ନ୍ତା ।

ଅଚଳାକୁ ଉତ୍ତେଜିତ ହୋଇ ପଡ଼ିଥିବାର ଦେଖି ମୃଣାଳ ଚମକି ପଡ଼ିଲା । କଥାଟାକୁ ହାଲ୍‌କା କରିଦେବା ପାଇଁ ହସିଦେଇ କହିଲା—ଏ ସବୁ ବ୍ୟବସ୍ଥା ଯେଉଁମାନେ ତିଆରି କରିଛନ୍ତି, ସେମାନଙ୍କୁ ପଚାରିଲେ ଭଲ ହେବ ନୂଆବୋଉ । ମୁଁ କେବଳ ବାପ, ମାଆଙ୍କ ନିକଟରୁ ଯାହା ଶିଖିଛି ତାହାକୁ ହିଁ ପାଳନ କରି ଆସିଛି । କିନ୍ତୁ ଗୋଟାଏ କଥା ତୁମକୁ ଜୋର କରି କହିପାରେ ଯେ, ସ୍ୱାମୀଙ୍କୁ ଧର୍ମ ବୋଲି, ପରକାଳ, ଇହକାଳର ସର୍ବସ୍ୱ ବୋଲି ଯିଏ ମାନିନେଇ ପାରେ ତାର ପାଦରେ ବେଡ଼ି ବାନ୍ଧିଦିଅ କିମ୍ବା ବେଡ଼ି ଫିଟାଇ ଦିଅ କିନ୍ତୁ ତାର ସତୀତ୍ୱ ଆପଣା ଛାଏଁ ପରୀକ୍ଷିତ ହୋଇଯାଇଛି । ଏତିକି କହି ସେ ଟିକିଏ ଅଟକି ଯାଇ କହିଥିଲା—ମୋର ସ୍ୱାମୀଙ୍କୁ ତ ତୁମେ ଦେଖିଛ । ସେ ବୁଢ଼ାଲୋକ ଥିଲେ । ସଂସାରରେ ଅତି ଦରିଦ୍ର, ରୂପ ଗୁଣ ମଧ୍ୟ ଅନ୍ୟ ପାଞ୍ଚଜଣଙ୍କଠାରୁ ବେଶୀ ନଥିଲା । କିନ୍ତୁ ସେ ମୋର ଇହକାଳ ଥିଲେ ଏବଂ ଏବେ ମଧ୍ୟ ପରକାଳର ସବୁ ସେ । ଏହା କହି ଆଖି ବୁଜି ଦଣ୍ଡକ ପାଇଁ ସେ ଅନ୍ତର ଭିତରେ ସ୍ୱାମୀଙ୍କ ପ୍ରତିମୂର୍ତ୍ତି ସ୍ମରଣ କରି ବସିଥିଲା । ତାହାପରେ ଆଖି ଫିଟାଇ ଶୁଖିଲା ହସଟିଏ ହସିଦେଇ କହିଲା—ଉପମାଟା ହୁଏତ ଠିକ୍ ନ ହୋଇପାରେ, କିନ୍ତୁ ଏ କଥା ସତ ଯେ ପୁଅ କଣା କି କୁଜା ହେଉ ତଥାପି ବାପ ମାଆ ସେମାନଙ୍କର ସମସ୍ତ ସ୍ନେହ ସେହି ପୁଅ ଉପରେ ଅଜାଡ଼ି ଦିଅନ୍ତି । ଅନ୍ୟର ସୁନ୍ଦର ପୁଅଟିଏ ଦେଖିଲେ ମୁହୂର୍ତ୍ତିକ ପାଇଁ

ସେମାନଙ୍କ ଭିତରେ ଦୁଃଖ ଆସୁଥିଲେ ଆସୁଥାଇ ପାରେ କିନ୍ତୁ ପିତୃ କମ୍ବା ମାତୃ ଧର୍ମ ତଦ୍ଦ୍ୱାରା ତିଳେମାତ୍ର କ୍ଷୁଣ୍ଣ ହୁଏନାହିଁ । ସଂସାରରୁ ବିଦାୟ ନେଇ ଗଲାବେଳେ ସେମାନଙ୍କର ସର୍ବସ୍ୱ କେଉଁଠାରେ ଏବଂ କାହାପାଇଁ ରଖିଯାଆନ୍ତି, ତାହା ତ ତୁମେ ଜାଣ ? ମୋର ଏହି ଉପମାଟା ଏବଂ କଥାଗୁଡ଼ାକ ହୁଏତ ତୁମେ ଠିକ୍ ବୁଝିପାରୁ ନ ଥିବ । କିନ୍ତୁ ଭୁଲରେ ତୁମେ ଏ କଥା ଅବିଶ୍ୱାସ କରନାହିଁ ଯେ ସ୍ୱାମୀଙ୍କୁ ଯେଉଁ ସ୍ତ୍ରୀ ଧର୍ମ ବୋଲି ଅନ୍ତର ଭିତରେ ଗ୍ରହଣ କରିନାହିଁ ତାର ପାଦର ଶୃଙ୍ଖଳ ସବୁଦିନ ପାଇଁ ସେହିପରି ଥାଏ । କିନ୍ତୁ ନିଜର ସତୀତ୍ୱକୁ ସେ ଯେତେବଡ଼ କଳ୍ପନା କରୁ ନା କାହିଁକି, ପରୀକ୍ଷାର ସ୍ରୋତବାଲିରେ ପଡ଼ିଲା କ୍ଷଣି ତାହାକୁ ହିଁ ଆଗ ମରିବାକୁ ହୋଇଥାଏ ।

ପ୍ରକୃତରେ ତାହା ହିଁ ତ ହେଲା । ସେତେବେଳେ ଏ ସତ୍ୟକୁ ଅଚଳା ଉପଲବ୍ଧି କରିପାରି ନଥିଲା । କିନ୍ତୁ ଆଜି ମୃଣାଳର ସେହି ତଥାକଥିତ ସ୍ରୋତବାଲି ଯେତେବେଳେ ଅହରହ ତାକୁ ରସାତଳ ଆଡ଼କୁ ଟାଣିବାରେ ଲାଗିଛି ସେତେବେଳେ ସେ ଏତେଦିନର ବୁଝାଇଥିବା କଥାଟା ଆଉ ବୁଝିବାକୁ ବାକି ନାହିଁ । ସମାଜର ଅବାଧ ସ୍ୱାଧୀନତାରେ ସେ ଆଖି କାନ ଖୋଲି ରଖି ବଡ଼ ହୋଇଅଛି; ଏହାହିଁ ଥିଲା ତାର ଗର୍ବ । କିନ୍ତୁ ପରୀକ୍ଷାର ଏକାନ୍ତ ଦୁଃସମୟରେ ଏ ସକଳ ତାର କୌଣସି କାମରେ ଆସିଲା ନାହିଁ । ତାର ବିପଦ ବଡ଼ବାବାଙ୍କ ସ୍ନେହ ଓ ଶ୍ରଦ୍ଧାରୂପ ଧରି ଅତି ସଙ୍କୋଚରେ ବନ୍ଧୁବେଶରେ ଆସିଥିଲା । ଏହି ଏକାନ୍ତ ଶୁଭାନୁଧ୍ୟାୟୀ ସ୍ନେହଶୀଳ ବୃଦ୍ଧଙ୍କର ବାରମ୍ବାର ଅନୁରୋଧ ଫଳରେ ଯେଉଁ ଅଭିଶପ୍ତ ରାତିରେ ସେ ସୁରେଶର ଶେଯ ଉପରେ ଆତ୍ମହତ୍ୟା କରିବସିଲା, ସେଦିନ ଏକମାତ୍ର ଯିଏ ତାକୁ ରକ୍ଷାକରି ପାରିଥାନ୍ତା ସେ ହେଉଛି ତାର ସତୀଧର୍ମ ଯାହା କି ମୃଣାଳ ତାକୁ ଜୀବନ ମରଣରେ ଅଦ୍ୱିତୀୟ ବୋଲି ବୁଝାଇବାକୁ ଚେଷ୍ଟା କରିଥିଲା । ସେଦିନ କିନ୍ତୁ ତାର ମିଥ୍ୟା ଅହମିକା ତାର ନାରୀଧର୍ମକୁ ପରାଭୂତ କରିଦେଲା । ଯେଉଁ ଧର୍ମ ଗୁପ୍ତ, ଯେଉଁ ଧର୍ମ ଗୁହାଶ୍ରୟୀ, ସେହି ଅନ୍ତରର ଅବ୍ୟକ୍ତ ଧର୍ମ କୌଣସି ଦିନ ତାହା ନିକଟରେ ଆଉ ସଜୀବ ହୋଇ ରହି ପାରିଲା ନାହିଁ । ସେଥିପାଇଁ ବାହାର ସହିତ ସାମଞ୍ଜସ୍ୟ ରକ୍ଷା କରିବାକୁ ଯାଇ ସେଦିନ ସେ ମଧ୍ୟ ଭଦ୍ରମହିଳା ସଂଭ୍ରମରେ ବହିର୍ବାସଟାକୁ ଲଜ୍ଜାରେ ଟାଣି ଧରିଲା । ଏହି ଆବରଣର ମୋହ କଟାଇ ଆପଣାକୁ ନଗ୍ନ କରି କୌଣସି ପ୍ରକାରରେ କହି ପାରିଲା ନାହିଁ ଯେ, ବଡ଼ବାବା, ମୁଁ ଜାଣେ ମୋର ଏତେ ଦିନର ପର୍ବତ ପ୍ରମାଣ ମିଥ୍ୟା ପରେ ଆଜି ମୋର ସତ୍ୟକୁ ସତ୍ୟ ବୋଲି କେହି ବିଶ୍ୱାସ କରିବେ ନାହିଁ । ଜାଣେ, କାଲି ତୁମେ

ଘୃଣାରେ ଆଉ ମୋର ମୁହଁକୁ ଚାହିଁବ ନାହିଁ, ତୁମର ସତୀ ସାଧ୍ୱୀ ପୁତ୍ରବଧୂ ଘରର ଦ୍ୱାର ମଧ୍ୟ କାଲି ମୋ ପାଇଁ ବନ୍ଦ ହୋଇଯିବ ଏବଂ ମୋର ଅପମାନ ଜଗତ ସାରା ବ୍ୟାପିଯିବ । ସେ ସମସ୍ତ ସହ୍ୟ କରିହେବ; କିନ୍ତୁ ତୁମର ଆଜିକାର ସ୍ନେହ ଆଉ ସହ୍ୟ କରି ହେବନାହିଁ । ବରଞ୍ଚ ଏତିକି ଆଶୀର୍ବାଦ ତୁମେ ମୋତେ କର ବଡ଼ବାବା, ମୋର ଏତେ ଦିନର ସତୀ ନାମ ବଦଳରେ ତୁମ ନିକଟରେ ଆଜିକାର କଳଙ୍କ ଯେପରି ଅକ୍ଷୟ ହୋଇ ରହିଯାଉ । କିନ୍ତୁ ହାୟ ! ଏତେ ଗୁଡ଼ାଏ ଭାବନା କିନ୍ତୁ ସେଦିନ ଅଚଳା ମୁହଁରୁ ଆଦୌ ବାହାରି ପାରିଲା ନାହିଁ ।

ଆଜି ନିଷ୍ଫଳ ଅଭିମାନ ଓ କୋହରେ ଅଚଳାର କଣ୍ଠ ବାରମ୍ବାର ରୁଦ୍ଧ ହୋଇଯିବାକୁ ଲାଗିଲା ଏବଂ ଏହି ଅଖଣ୍ଡ ବେଦନାକୁ ମହିମରି ସେହି ନିଷ୍ଠୁର ଦୃଷ୍ଟି ଯେପରି ଛୁରୀଦ୍ୱାରା ସତେ ଟିକ୍ ଟିକ୍ କରି କାଟିବାକୁ ଲାଗିଲା ।

ଏହିପରି ଭାବରେ ରାତିରୁ ଅଧେ ବିତିଗଲା । ସକଳ ଦୁଃଖରେ ବିଶ୍ରାମ-ଥିଲାପରି କିଛିକ୍ଷଣ ଆଖିରୁ ଝରି ଚାଲିଥିବା ଲୁହ ଶୁଖି ଆସିଲା ଏବଂ ଭିଜା ଆଖିପତା ଦୁଇଟି ଆସ୍ତେ ଆସ୍ତେ ମୁଦି ହୋଇଗଲା ।

ଏହି ନିଦ ଯେତେବେଳେ ଭାଙ୍ଗିଲା ସେତେବେଳକୁ ସମସ୍ତ ଯଥେଷ୍ଟ ହୋଇ ଯାଇଛି । ସୁରେଶ ପାଇଁ ଦ୍ୱାର ଖୋଲାଥିଲା କିନ୍ତୁ ସେ ଘର ଭିତରକୁ ଆସିଥିଲା କି ନାହିଁ ତାହା ଆଦୌ ଜଣା ପଡ଼ିଲା ନାହିଁ । ବାହାରେ ରହି ବେହେରା କହିଲା—ବାବୁଜୀ ବଡ଼ ସକାଳୁ ଝିଟ୍କା କରି ମାଝିଁଲି ଚାଲି ଯାଇଛନ୍ତି ।

: ସାଙ୍ଗରେ ଆଉ କିଏ ଯାଇଛି କି ?

: ନା, ମୁଁ ଯିବାକୁ ଚାହିଁଥିଲି । ସେ କିନ୍ତୁ ମନାକଲେ । କହିଲେ ପ୍ଲେଗରେ ମରିବାକୁ ଚାହୁଁଛୁ ତ ଚାଲ ।

: ସେଥିପାଇଁ ବୋଧହୁଏ ନିଜେ ଗଲୁନାହିଁ । କେବଳ ଦସ୍ତାକରି ଝିଟକା ଡାକି ଆଣିଲୁ । ମୋତେ ଉଠାଇଲୁ ନାହିଁ କାହିଁକି ?

ବେହେରା ଚୁପ ରହିଲା ।

ଅଚଳା ନିଜେ ମଧ୍ୟ କିଛିକ୍ଷଣ ନୀରବ ରହିବାପରେ କହିଲା—ଗାଡ଼ି କିଏ ଡାକି ଆଣିଲା ? ତୁ ନିଜେ ?

ବେହେରା ମୁହଁ ତଳକୁ କରି କହିଲା—ଡାକିଆଣିବା ଦରକାର ପଡ଼ି ନ ଥିଲା । କାଲି ବିଦା କଲାବେଳେ ସକାଳୁ ଗାଡ଼ି ଧରି ଆସିବା ପାଇଁ ବାବୁ ଗୋପନରେ ତାକୁ ହୁକୁମ ଦେଇଥିଲେ ।

ଏକଥା ଶୁଣି ଅଚଳା ସ୍ତବ୍ଧ ହୋଇ ଉଠିଲା । ସେ ଯାହା ଭାବିଥିଲା, ଏହା ତାହା ନୁହେଁ । କାଲି ସନ୍ଧ୍ୟାର ଘଟଣା ସହିତ ଏହାର କୌଣସି ସମ୍ପର୍କ ନାହିଁ । କାଲି ଘଟଣା ଘଟି ନଥିଲେ ମଧ୍ୟ ସେ ଯାଇଥାନ୍ତେ । ଯିବାର ସଂକଳ୍ପ ସେ ତ୍ୟାଗ କରି ନଥିଲେ ଏବଂ କେବଳ ତାରି ଭୟରେ କିଛି ସମୟ ପାଇଁ ଅଟକି ରହିଯାଇ-ଥିଲେ ମାତ୍ର ।

ଅଚଳା ପ୍ରଶ୍ନକଲା—ବାବୁଜୀ କେବେ ଫେରିବେ, କିଛି କହି ଯାଇଛନ୍ତି କି ?

ସେ ଆନନ୍ଦରେ ମୁଣ୍ଡ ହଲାଇ କହିଲା, କାଲି କିମ୍ବା ପଅରଦିନ ନଚେତ୍ ଦିନେ କି ଦୁଇଦିନ ବିଳମ୍ବ ହୋଇଯାଇ ପାରେ ।

ଅଚଳା ଆଉ କୌଣସି ପ୍ରଶ୍ନ ପଚାରିଲା ନାହିଁ । କାଲି ସିଡ଼ିରୁ ପଡ଼ିବା ଫଳରେ ଆଘାତ କେତେଦୂର ହୋଇଛି ତାହା ଏତେବେଳ ପର୍ଯ୍ୟନ୍ତ ତାହାକୁ ଜଣା ନାହିଁ । ଆଜି ସାରା ଦେହଟା ଦରଜରେ ଉଠାଇ ହେଉନାହିଁ । ତାପରେ ରାମବାବୁ କାଲେ ତାର ଦେହ ବିଷୟରେ ଖବର ନେବାକୁ ଆସିବେ, ଏହି ଆଶଙ୍କାରେ ମନ ତାର ବିକ୍ଷେପ ଉଠିଲା ।

ମହିମ ଯେ କୌଣସି କଥା ପ୍ରକାଶ କରିବ ନାହିଁ ଏକଥା ସୁରେଶ ଅପେକ୍ଷା ଅଚଳା ନିଜେ ମଧ୍ୟ କମ୍ ଜାଣେନାହିଁ । ତଥାପି ସବୁ ପ୍ରକାର ଆକସ୍ମିକତା ଭୟରେ ଅତ୍ୟନ୍ତ ବ୍ୟଥାର ସ୍ଥାନଟିକୁ ଆଗୁଳି ରଖିବା ପାଇଁ ଯେପରି ତାର ଚିତ୍ତ ହୁସିଆର ହୋଇ ରହେ ସେଥିପାଇଁ ସକଳ ଇନ୍ଦ୍ରିୟ ପହରା ଦେବାକୁ ଲାଗିଲେ । ଏହିପରି ଭାବରେ ସକାଳ ଗଲା, ଦ୍ୱିପହର ବିତିଲା, ସନ୍ଧ୍ୟା ମଧ୍ୟ ଗଲା । ଆଉ ତାଙ୍କର ଆସିବାର ସମ୍ଭାବନା ନାହିଁ ଜାଣିପାରି ସେ ନିରୁଦ୍‌ବିଗ୍ନ ହୋଇ ଶୋଇବାକୁ ଚେଷ୍ଟାକଲା । ପାଖ ଟିପୟରେ କେଉଁ ଏକ କବିରାଜି ଔଷଧାଳୟର ସୁବୃହତ୍ ପୁସ୍ତକ ତାଲିକା ଶୂନ୍ୟ ଫୁଲଦାନୀ ଚାପା ଦିଆହୋଇଥିଲା । ସେଇଟାକୁ ଟାଣିନେଇ ତାର ପୃଷ୍ଠାଗୁଡ଼ିକକୁ ସେ କ୍ଳାନ୍ତ ଆଖି ଦୁଇଟିରେ ଚାହିଁ ରହି ହଠାତ୍ ନିଜର ଦୁଃଖ ଭୁଲି କୌଣସି ଶ୍ରୀମନ୍ ମହାରାଜାଧିରାଜଙ୍କର ରୋଗ

ଶାନ୍ତଠାରୁ ଆରମ୍ଭ କରି ବ୍ରାହ୍ମଣ ଘାଟି ମାଇନର ସ୍କୁଲର ତୃତୀୟ ଶିକ୍ଷକଙ୍କର ପ୍ଲୀହା ଯକୃତ୍ ପ୍ରଭୃତିର ଆରୋଗ୍ୟ ବିବରଣୀ ପଢୁ ପଢୁ ନିଦରେ ଶୋଇପଡ଼ିଲି ।

ବେହେରା କହିଥିଲା— ବାବୁ କାଲି ନଚେତ୍ ପଅରଦିନ ଫେରିବେ କିମ୍ବା ଦିନେ ଦୁଇଦିନ ବିଳମ୍ବ ହୋଇପାରେ । ସ୍ତୁହୁଁ ସ୍ତୁହୁଁ ଛଅଦିନ ବିତିଗଲାଣି । ଏହି ଛଅଦିନ ଭିତରେ ରାମବାବୁ ଦିନକପାଇଁ ସୁଦ୍ଧା ଆସି ନାହାନ୍ତି । ତାଙ୍କର ଆସିବା-ଟାକୁ ସେ ସର୍ବାନ୍ତଃକରଣରେ ଭୟ କରି ଆସିଛି, ଅଥଚ ଏହି ନ ଆସିବାର ଭିତରେ ଥିବା ଅର୍ଥକୁ କଳ୍ପନା କରି ତାର ଦେହ ସତେ ଯେପରି କାଠ ପାଲଟି ଯାଇଛି । ସେ ଅସୁସ୍ଥ ଥିଲି ଏବଂ ଏହା ଭିତରେ ହୁଏତ ତାର କଷ୍ଟ ବଢିଯାଇ ଥାଇ ପାରେ ଏହି କଥା ସୁଦ୍ଧା ତାଙ୍କ ମନରେ ଆସିଲି ନାହିଁ କିପରି ? କେବଳ ଆଜି ସକାଳେ ତାଙ୍କ ଦରଓ୍ୱାନ ଆସିଥିଲା । କିନ୍ତୁ ଭିତରକୁ ନ ଆସି ପୂଜାରୀ ପାଖରେ କ'ଣ କଥା ହୋଇ ବାହାରୁ ଫେରିଗଲା । ସେ କାହିଁକି ଆସିଥିଲା ଏବଂ କେଉଁ ଖବର ନେଇ କରି ଫେରିଗଲା, ଭୟରେ ଅଚଳା ପୂଜାରୀକୁ ସୁଦ୍ଧା ପଚ୍ଚାରି ପାରୁନଥିଲା । ତାର ଯେପରି ମନେ ହେଉଥିଲା, ଏ ଘର, ଏ ଗାଡ଼ି, ଏତେ ଲୋକ ବାକି ସମସ୍ତଙ୍କ ନିକଟରୁ ବିଦାୟ ନେଇ ସେ ଚାଲି ଯାଇ ପାରିଲେ ନିଶ୍ଚିନ୍ତ ହୋଇ ପାରନ୍ତା ।

ବେହେରାକୁ ଡ଼ାକି କହିଲା —ରଘୁବୀର, ତୁମର ଘର ତ ସେହି ଦିଗରେ । ତୁମେ ମାଝୁଲି ଗ୍ରାମଟା ଦେଖିଛକି ?

ସେ କହିଲା, ଅନେକ ଦିନ ତଳେ ଥରକ ପାଇଁ ଯାଇଥିଲି ।

କେତେ ଦୂର ହେବ କହିପାରିବ କି ?

ରଘୁବୀର ଏ ଦେଶର ଲୋକ ହେଲେମଧ୍ୟ ବହୁଦିନ ଧରି ବଙ୍ଗାଳୀମାନଙ୍କର ସଂପର୍କରେ ଆସିବା ଫଳରେ ତାର ଅନେକଟା ହିସାବ ଜ୍ଞାନ ଆସି ପାରିଥିଲା ।

ସେ ମନେ ମନେ ଅନ୍ଦାଜ କରି କହିଲା—ଛଅ, ସାତ କୋଶ ବୋଧ ହୁଏ ହେବ, ମାଆ ।

: ତୁମେ ଆଜି ମୋ ସଙ୍ଗରେ ଯାଇ ପାରିବ ?

ରଘୁବୀର ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇ କହି ଉଠିଲା; ତୁମେ ଯିବ ? ସେଠାରେ ପରା ଭୀଷଣ ପ୍ଲେଗର ବେମାରୀ ହୋଇଛି ।

ଅଚଳା କହିଲା—ତୁମେ ଯାଇ ନପାର । ଆଉ କୌଣସି ଚାକରକୁ ରାଜି କରାଇ ପାରିବ ? ସେ ଯାହା ବକସିସ୍ ଚାହିଁବ; ମୁଁ ଦେବି ।

ରଘୁବୀର କ୍ଷୁଣ୍ଣ ହୋଇ କହିଲା—ମାଆ, ତୁମେ ଯାଇ ପାରିବ ଆଉ ମୁଁ ଯାଇ ପାରିବି ନାହିଁ ? ରାସ୍ତା ନାହିଁ । ଆମ ଘୋଡ଼ାଗାଡ଼ି ସେଠାକୁ ଯାଇ ପାରିବ ନାହିଁ । ସବାରିରେ ତୁମେ କଣ ଏତେବାଟ ଯାଇ ପାରିବ ମାଆ ।

ଅଚଳା କହିଲା—ମୁଁ ଯାଇ ପାରିବି । କିନ୍ତୁ ଆଉ ବିଳମ୍ବ କଲେ ଚଳିବ ନାହିଁ ରଘୁବୀର । ତୁମେ ଯାହା ପାରୁଛ ବ୍ୟବସ୍ଥା କରି ନେଇ ଆସ ।

ରଘୁବୀର ଆଉ ତର୍କ ନକରି ଅଳ୍ପ କାଳ ମଧ୍ୟରେ ଗୋଟିଏ ସବାରି ଯୋଗାଡ଼ କରି ଆଣିଲା । ନିଜର ଲୋଟା, କମ୍ବଳ ଭାରରେ ଝୁଲାଇ ସେ ସବୁକୁ କାନ୍ଧରେ ଧରି ଯିବାପାଇଁ ପ୍ରସ୍ତୁତ ହୋଇ ବାହାରି ପଡ଼ିଲା । ଘରର ଦେଖା ଚାହାଁ ଦାୟିତ୍ୱ ଦରଓ୍ୱାନ ଓ ଅନ୍ୟାନ୍ୟ ଚାକର ବାକରଙ୍କ ଉପରେ ଛାଡ଼ିଦେଇ କୌଣସି ଏକ ଅଜଣା 'ମାଟୁଲି' ଉଦ୍ଦେଶ୍ୟରେ ଅଚଳା ଯେତେବେଳେ ଏକମାତ୍ର ସୁରେଶକୁ ଲକ୍ଷ୍ୟ କରି ଆଜି ଘରୁ ବାହାରି ପଡ଼ିଲା, ସେତେବେଳେ ସମସ୍ତ ଘଟଣା ତାହା ନିକଟରେ ଅଦ୍ଭୁତ ସ୍ୱପ୍ନ ଭଳି ମନେ ହେବାକୁ ଲାଗିଲା । ତାର ବାରମ୍ବାର ମନେ ପଡ଼ିଲା; ଏହି ବିଚିତ୍ର ଜଗତରେ ଏପରି ଘଟଣା ହିଁ ଘଟି ପାରିବ ଏକଥା କ'ଣ ସେ କେବେ ଭାବି ପାରିଥିଲା !

ଧୂଳି ଧୂସରିତ ଗୋଟିଏ କଚ୍ଚା ରାସ୍ତା । କେତେବେଳେ ସେଇଟା ସୁବିସ୍ତୀର୍ଣ୍ଣ ପଡ଼ିଆ ଭିତରେ ଅସ୍ପଷ୍ଟ ତ କେତେବେଳେ କ୍ଷୁଦ୍ର ଗ୍ରାମ ଭିତରେ ପହଁଞ୍ଚି ଲୁପ୍ତ ହୋଇ ପଡ଼ୁଛି । ଗୃହସ୍ଥଙ୍କର ସୁବିଧା ଓ ଇଚ୍ଛା ଅନୁସାରେ ତାହାର ଆୟତନ ଓ ଉଦ୍ଦେଶ୍ୟ ପରିବର୍ତ୍ତିତ ହୋଇ କେତେବେଳେ ଅବା ନଦୀ କୂଳ ଦେଇ କେତେବେଳେ ଅବା ଘରର ଅଗଣା ଭିତର ଦେଇ ତାହା ଗ୍ରାମାନ୍ତରକୁ ଚାଲି ଯାଇଛି । ପ୍ରଥମେ କିଛିକ୍ଷଣ ପାଇଁ ତାର କୌତୁହଳ ସଜାଗ ହୋଇ ଉଠିଥିଲା । ଗୋଟାଏ ମୃତ ଦେହକୁ

କେନେଇରେ ବାନ୍ଧି କେତେଲୋକ ବୋହି ନେଉଥିବାର ଦେଖି ସଂକ୍ରମଣ ଭୟରେ ସେ ଆତଙ୍କିତ ହୋଇ ପଡ଼ିଲା । ଇଚ୍ଛା କରିଥିଲା ପଚ୍ଚାରି ବୁଝିବା ପାଇଁ କେବେ ମଲା ? କିପରି ମଲା ? ତାର ବୟସ କେତେ ଏବଂ ତାହାର କିଏ, କିଏ ବଞ୍ଚି ଅଛନ୍ତି ? କିନ୍ତୁ ଗ୍ରାମର ଦୂରତ୍ୱ ଯେତେ ବଢ଼ିବାକୁ ଲାଗିଲା, ବେଳ ଯେତେ ସରି ଆସିଲା, ଏବଂ ନିକଟ ଦୂର ଗ୍ରାମ ମଧ୍ୟରୁ କ୍ରନ୍ଦନ ରୋଳ ଯେତେ ଯେତେ ତାର କାନରେ ପଡ଼ିବାକୁ ଲଗିଲା, ସେତିକି ତାର ମନ କିପରି ଜଡ଼ତାରେ ଆବୃତ ହୋଇ ପଡ଼ିଲା । ବହୁତ ବେଳରୁ ତାକୁ ଶୋଷ କରୁଥିଲା । ନଦୀର ଉଚ୍ଚ ବନ୍ଧ ଉପରେ ଯାଉ ଯାଉ ଗୋଟିଏ ଘାଟ ନିକଟରେ ସେ ସବାରୀକୁ ରଖିବାକୁ ନିର୍ଦ୍ଦେଶ ଦେଲା । ସବାରିରୁ ଓହ୍ଲାଇ, ହାତ ମୁହଁ ଧୋଇ ପାଣି ପିଇବା ପାଇଁ ଘାଟ କୂଳକୁ ଯାଇ ସେ ଦେଖିଲା, ଗୋଟାଏ କି ଦୁଇଟା ଶବ ସେଇ ପାଖରେ ପଡ଼ିଛନ୍ତି । ସେମାନଙ୍କର ବିଭତ୍ସ, ବିକୃତ ରୂପ ତାର ମନରେ କୌଣସି ପ୍ରକାର ପ୍ରଭାବ ପକାଇ ପାରିଲା ନାହିଁ । ସେ ହାତ ମୁହ ଧୋଇ ଆକଣ୍ଠ ପାଣି ପିଇସାରି ଧୀରେ ଧୀରେ ଯାଇ ସବାରିରେ ବସିଲା । କୌଣସି ସମୟରେ ଏହା ତାହା ପକ୍ଷରେ ସଂଭବପର ଥିଲା ବୋଲି ସେ ଚିନ୍ତା କରି ପାରିଲା ନାହିଁ ।

ଏହାପରେ ସେ ଯେତେଗୁଡ଼ିଏ ଗ୍ରାମ ଦେଖିଲା ସେଠାରେ କ୍ୱଚିତ୍ କୌଣସି ଗୋଟିଏ ଦୁଇଟି ଦୁଃସାହସିକ ବ୍ୟକ୍ତି ବ୍ୟତୀତ ଆଉ କାହାକୁ କେଉଁଠାରେ ଦେଖିବାକୁ ପାଇଲା ନାହିଁ । କୌଣସି ସୋର ଶବ୍ଦ ନାହିଁ, ଘରଦ୍ୱାର ବନ୍ଦ, ଅପରିଚ୍ଛନ୍ନ । ମନେ ହୁଏ ସତେ ଯେପରି ଏ କୁଟୀର ଗୁଡ଼ିକ ମଧ୍ୟ ମରଣକୁ ଅନିବାର୍ଯ୍ୟ ବୋଲି ଜାଣି ଆଖି ବୁଜି ଅପେକ୍ଷା କରି ରହିଛନ୍ତି । ଏହି ମୃତ୍ୟୁ ଶାସିତ ନିର୍ଜ୍ଜନ ପଲ୍ଲୀ ଗ୍ରାମଗୁଡ଼ିକ ଭିତର ଦେଇ ଯାଉ ଯାଉ ରଘୁବୀର ଏବଂ ବାହକମାନଙ୍କର ସ୍ତୁପାଗଲା ଏବଂ ଭୟତ୍ରସ୍ତ ପଦକ୍ଷେପ ପ୍ରତିମୁହୂର୍ତ୍ତିରେ ଅଚଳାକୁ ତାହାରର ବିପଦ ଜଣାଇବାକୁ ଲାଗିଲେ । କିନ୍ତୁ ତାର ମନରେ ଭୟ ହେଲାନାହିଁ । ସତେ ଯେପରି ବିପଦ ସହିତ ତାର ଆଜନ୍ମ ପରିଚୟ ରହିଛି,ସେଥିପାଇଁ ତାର ମନ ଏପରି ନିର୍ବିକାର ହୋଇ ଉଠିଛି ।

ଏହିଭଳି ଭାବରେ ପଥ ଅତିକ୍ରମ କରି ଯେତେବେଳେ ସେ "ମାଣ୍ଟୁଲି" ରେ ଆସି ପହଞ୍ଚିଲା, ସେତେବେଳକୁ ଦିନ ଶେଷ ହୋଇ ଆସିଲାଣି । ଅଚଳାର ଦୃଢ଼ ବିଶ୍ୱାସଥିଲା ପହଞ୍ଚିବା କ୍ଷଣି ତାର ଦୁଃଖ ସଙ୍ଗେ ସଙ୍ଗେ ଦୂର ହୋଇଯିବ । ଗ୍ରାମର କୃତଜ୍ଞ ଗ୍ରାମବାସୀମାନେ ଦୌଡ଼ି ଆସି ତାକୁ ସମ୍ବର୍ଦ୍ଧନା ଜଣାଇ ଡାକ୍ତରବାବୁଙ୍କ ଦରବାରକୁ ନେଇଯିବେ । ସେଠାରେ ରୋଗୀ ଓ ସେମାନଙ୍କର

ଆତ୍ମୀୟମାନଙ୍କର ଝିବା ଆସିବା ଔଷଧ ପତ୍ରର ବିତରଣ ବ୍ୟସ୍ତତା ଭିତରେ ନିଜର ସ୍ଥାନଟା ସେ କେଉଁଠାରେ ହେବ ଏହାର ଚିତ୍ର ସେ କଳ୍ପନା କରି ମନେମନେ ସ୍ଥିର କରି ରଖିଥିଲା । କିନ୍ତୁ ଆସି ଦେଖିଲା, ତାର କଳ୍ପନା କେବଳ ନିଛକ କଳ୍ପନା, ଏବଂ ବାସ୍ତବ ସହିତ ତାହାର କୌଣସି ସାମଞ୍ଜସ୍ୟ ନାହିଁ । ବରଂଚ ଯେଉଁ ଦୃଶ୍ୟ ସେ ବାଟସାରା ଦେଖି ଆସିଥିଲା, ଏଠାରେ ମଧ୍ୟ ସେହି ଚିତ୍ର । ଏଠାରେ ମଧ୍ୟ ଲୋକ ନାହାନ୍ତି; ଘର ଦ୍ୱାର ବନ୍ଦ, ଏବଂ ଏଠାରେ କେଉଁଠି ସୁରେଶ ରହୁଛି ତାହା ମଧ୍ୟ ଖୋଜି କରି ପାଇ ପାରିବା ଯେପରି କଷ୍ଟକର ବ୍ୟାପାର ।

ଗ୍ରାମରେ ଦୈନିକ ହାଟ ପରି ଆଜି ମଧ୍ୟ ହାଟ ବସିଥିଲା । ଅନ୍ୟ ସମୟରେ ସଂଧ୍ୟା ପର୍ଯ୍ୟନ୍ତ ପୁରା ଦମ୍‌ରେ ହାଟ ଚାଲେ; କିନ୍ତୁ ଏହି ଦୁର୍ଦ୍ଦିନରେ ଆଜି ଲୋକମାନେ ବିକାକିଣା ସାରି ଅପରାହ୍ଣର ବହୁ ପୂର୍ବରୁ ପଳାଇ ଯାଇଛନ୍ତି । ଭାଙ୍ଗି ଯାଇଥିବା ହାଟର ସ୍ଥାନେ ସ୍ଥାନେ ସେମାନଙ୍କର ପାଦ ଚିହ୍ନ ଏଣେ ତେଣେ କେବଳ ପଡ଼ିଛି ମାତ୍ର ।

ରଘୁବୀର ଖୋଜା ଖୋଜି କରିବା ପରେ ବହୁ କଷ୍ଟରେ ଦୋକାନଟିଏ ବାହାର କଲା । ଦୋକାନୀ ଜଣକ ଦୋକାନ ବନ୍ଦ କରୁଥିଲା । ସେ କହିଲା ତାର ପୁଅ, ଝିଅମାନେ ଅନ୍ୟ ଆଡ଼େ ପଳାଇଛନ୍ତି । କେବଳ ସେ ଦୁଇଜଣ ବୁଢ଼ା ବୁଢ଼ୀ ଦୋକାନର ମାୟା ତୁଟାଇ ଯାଇ ପାରି ନାହାନ୍ତି । ସୁରେଶ ସମ୍ପର୍କରେ ସେ ଏତିକି ମାତ୍ର ସନ୍ଧାନ ଦେଇ ପାରି କହିଲା ଯେ ଡାକ୍ତରବାବୁ ନନ୍ଦ ପାଣ୍ଡେ ଘରେ ଏତେଦିନ ଧରି ରହୁଥିଲେ ସତ କିନ୍ତୁ ବର୍ତ୍ତମାନ ଅଛନ୍ତି କି ନାହାନ୍ତି କିମ୍ବା ମାମୁଦପୁର ଚାଲି ଯାଇଛନ୍ତି; ସେକଥା ତାକୁ ଆଉ ଜଣା ନାହିଁ ।

: ମାମୁଦପୁର କେଉଁଠି ?

: ଦୁଇ କୋଶ ଦକ୍ଷିଣକୁ ସିଧା ଗଲେ ପଡ଼ିବ ।

: ନନ୍ଦ ପାଣ୍ଡେ ଘରଟା କେଉଁ ଦିଗରେ ?

ବୃଦ୍ଧଜଣକ ଦୋକାନ ବାହାରକୁ ଆସି ଅଙ୍ଗୁଳିଦ୍ୱାରା ଗୋଟିଏ ବଡ଼ ନିମ୍ବଗଛକୁ ଦେଖାଇ ଦେଇ କହିଲା—ଏଇ ବାଟରେ ଗଲେ ପଡ଼ିବ ।

ଅଳ୍ପ ସମୟ ପରେ କ୍ଲାନ୍ତ, ପରିଶ୍ରାନ୍ତ ବାହକମାନେ ଯେତେବେଳେ ନିମ ଗଛତଳେ ପାଲିଙ୍କି ରଖିଦେଲେ ସେତେବେଳକୁ ସୂର୍ଯ୍ୟ ଅସ୍ତ ହୋଇ ଗଲେଣି । ଘରଟା ଖୁବ୍ ବଡ଼ । ତାହା ପଛରେ ଦୁଇ, ତିନିଟା ଇଟା ଘର ଦେଖା ଯାଉଛି ।

କିନ୍ତୁ ସବୁ ଘର ଗୁଡ଼ିକ ମେଳ । ଆଗରେ ପାଚେରି ନାହିଁ । ଗୃହସ୍ୱାମୀଙ୍କୁ ଦେଖିଲେ ଗରିବ ବୋଲି ମନେ ହୁଏ ନାହିଁ । କିନ୍ତୁ ଘର ଭିତରୁ ଗୋଟିଏ ଲୋକ ସୁଦ୍ଧା ବାହାରକୁ ବାହାରିବାର ଦେଖାଗଲା ନାହିଁ । କେବଳ ଅଗଣାରେ ବନ୍ଧା ହୋଇଥିବା ଡିଙ୍ଗ୍ ଘୋଡ଼ା ଭେକ ଉପାସରେ ଅତ୍ୟନ୍ତ କରୁଣ କଣ୍ଠରେ ଅତିଥିମାନଙ୍କୁ ଅଭ୍ୟର୍ଥନା ଜଣାଇଲା ।

ସଦର ଦରଜା ଖୋଲା ଥିଲା । ରଘୁବୀର ସାହାସ କରି ଭିତରକୁ ପାଦ ବଢ଼ାଇ ଦେଖିବାକୁ ପାଇଲା, ପାଖ ବାରଣ୍ଡାରେ ଗୋଟିଏ ଦଉଡ଼ିଆ ଖଟିଆରେ ସୁରେଶ ଶୋଇ ରହିଛି ଏବଂ ପାଖରେ ଖୁଣ୍ଟକୁ ଆଉଜି ଜଣେ ଅଧ ବୁଢ଼ୀ ସ୍ତ୍ରୀ ଲୋକ ବସି ଘୁମାଉଛନ୍ତି ।

: ବାବୁଜୀ ?

ସୁରେଶ ଆଖି ମେଲି ଚାହିଁଲା । କହୁଣିରେ ଭରାଦେଇ ମୁଣ୍ଡ ଉଠାଇ କ୍ଷଣ କାଳ ପାଇଁ ତାହାକୁ ଚାହିଁ କହିଲା—କିଏ ବେହେରା ? ରଘୁବୀର ?

ରଘୁବୀର ସଲାମ କରି ପାଖରେ ଯାଇ ଠିଆ ହେଲା । କିନ୍ତୁ ମାଲିକଙ୍କର ନାଲି ନାଲି ଆଖିକୁ ଚାହିଁ ଦେବା କ୍ଷଣି ତାର ତୁଣ୍ଡରୁ କଥା ବାହାରିଲା ନାହିଁ ।

: ତୁ ଏଠାରେ ?

ରଘୁବୀର ପୁନରାୟ ସଲାମ ଜଣାଇଲା ଏବଂ ବାହାର ଆଡ଼କୁ ଇଙ୍ଗିତ କରି କହିଲା—ବାବୁଜୀ, ମାଆ……

ଏଥର ସୁରେଶ ସିଧା ହୋଇ ବସିପଡ଼ି ପ୍ରଶ୍ନ କଲା—କ'ଣ ତୋତେ ପଠାଇଛନ୍ତି ?

ରଘୁବୀର ମୁଣ୍ଡ ହଲାଇ କହିଲା—ନା', ସେ ନିଜେ ଆସିଛନ୍ତି ।

ଉତ୍ତର ଶୁଣିବା କ୍ଷଣି ସୁରେଶ ତାର ମୁହଁକୁ ଏପରି ଭାବରେ ଚାହିଁ ରହିଲା, ଯେପରି ଜଣାଗଲା ଯେ ସେ କଥାଟାକୁ ହୃଦୟଙ୍ଗମ କରି ପାରୁନାହିଁ । ତାହାପରେ ଧୀରେ ଧୀରେ ଆଖି ବୁଜି ଶୋଇ ପଡ଼ିଲା, କିଛି କହିଲା ନାହିଁ ।

ଅଚଳା ଆସି ଯେତେବେଳେ ତାର ଖଟିଆ ନିକଟରେ ନୀରବରେ ବସି ପଡ଼ିଲା, ସେତେବେଳେ ସୁରେଶ କିଛିକ୍ଷଣ ପାଇଁ ସେହିପରି ନିମୀଳିତ ଆଖିରେ ଚାହିଁଦେଇ ଚୁପ୍ ହୋଇ ରହିଲା । ଭଦ୍ରତା ରକ୍ଷା ଖାତିରରେ ସାମାନ୍ୟ 'ଆସ' ବୋଲି ସୁଦ୍ଧା କହି ପାରିଲା ନାହିଁ ।

ଶୈଶବ କାଳରୁ ଚନ୍ଦ୍ରବଦନ ଅତ୍ୟଧିକ ଆଦର ଯତ୍ନରେ ଲାଳିତପାଳିତ ହୋଇ ଆବେଗ ଓ ପ୍ରବୃତ୍ତିର ବଶବର୍ତ୍ତୀ ହୋଇ ଅଚଳା ଚାଲି ଆସିଅଛି ଏବଂ ଏଗୁଡ଼ିକୁ ସଂଯତ କରିବାର ଶିକ୍ଷା ସେ କୌଣସି ଦିନ ପାଇ ନଥିଲା । ଏହି ଶିକ୍ଷା ଜୀବନରେ ସେ ପ୍ରଥମ କରି ପାଇଥିଲା, କେବଳ ସେହିଦିନ. ଯେଉଁଦିନ ମହିମ ତାର ମୁହଁର ହସ ଉପରେ ପଦାଘାତ କରି ମୁହଁ ଫେରାଇ ଘରକୁ ଚାଲିଯାଇ ଥିଲା । ସେଦିନ ମୁହୂର୍ତ୍ତିକ ଭିତରେ ତାର ବୁକୁ ଭିତରେ ଯେ କି ରକମର ବିପ୍ଳବର ଝଡ଼ ବହିଗଲା, ସେ କଥା କେବଳ ଅନ୍ତର୍ଯ୍ୟାମୀ ହିଁ ଜାଣି ପାରିଲେ, ଏବଂ ଆଜି କେବଳ ସେ ହିଁ ଦେଖି ପାରୁଛନ୍ତି ଏହି ଶାନ୍ତ ଅଚଞ୍ଚଳ ଦେହ ଭିତରେ କେତେବଡ଼ ଝଡ଼ ପ୍ରବାହିତ ହୋଇ ଚାଲିଛି । ସେଦିନ ମହିମର ଆଘାତକୁ ସେ ଯେମିତି ସହ୍ୟ କରିଥିଲା, ଆଜି ମଧ୍ୟ ସେହିପରି ସେ ତାର ଆବେଗ ସହିତ ନିଃଶବ୍ଦରେ ଲଢ଼ାଇ କରିବାକୁ ଲାଗିଲା—ତାର ମନର ଭାବାନ୍ତର ଲେଶମାତ୍ର ପ୍ରକାଶ କରିବାକୁ ଦେଲା ନାହିଁ ।

ଏପରି ଭାବରେ ଯେ କେତେ ସମୟ କଟିଲା, ତାହା ବୁଝାଯାଇ ନ ପାରେ । କିନ୍ତୁ ବାହକମାନଙ୍କର ଡାକ ଶୁଣି ରଘୁବୀର ବାହାରକୁ ଚାଲି ଯାଉଥିଲା ବେଳେ ସୁରେଶ ତାର ପଦ ଶବ୍ଦ ଶୁଣି ଧୀରେ ଧୀରେ ଆଖି ମେଲି ଚାହିଁଲା—କହିଲା ତୁମେ ମୋର ଚିଠି ପାଇଛ ?

ଅଚଳା ମୁହଁ ଉପରକୁ ନ ଉଠାଇ ଧୀରେ ଧୀରେ କହିଲା—ନା ।

ସୁରେଶ ସାମାନ୍ୟ ବିସ୍ମୟ ପ୍ରକାଶ କରି କହିଲା—ଚିଠି ନ ପାଇ ସୁଦ୍ଧା ଆସି ପାରିଛ ! ଆଶ୍ଚର୍ଯ୍ୟ ! ଯାହାହେଉ, ଭଲ ହେଲା ଯେ ଥରକ ପାଇଁ ମଧ୍ୟ ଦେଖା ହୋଇଗଲା । ଏତକ କହି ଅଚଳାଠାରୁ ପଦେ କଥା ଶୁଣିବା ପାଇଁ ତାର ଆନତ ମୁହଁକୁ କ୍ଷଣକ ପାଇଁ ଚାହିଁରହି ପୁଣି ନିଜେ କହିଲା—ମୋ ପାଇଁ ତୁମକୁ ବହୁତ ଦୁଃଖ ଭୋଗିବାକୁ ହେଲା । ଖୁବ ସମ୍ଭବ ଯେତେଦିନ ବଞ୍ଚିବି ଏହି ଋଣକୁ ପରିଶୋଧ କରି ପାରିବି ନାହିଁ । ଜୀବନରେ ବଡ଼ ଭୁଲ ହୋଇଗଲା ଯେ ତୁମେ ମହିମକୁ ବେଶୀ ଭଲ ପାଅ ତାହା ମୁଁ ବୁଝି ନଥିଲି ।

ଅଚଳା କିନ୍ତୁ ସେହିପରି ନିରୁତ୍ତର ହୋଇ ଅଧୋମୁଖରେ ବସି ରହି ଥିବାର ଦେଖି ସୁରେଶ ପୁଣି କହିଲା ତାହାଛଡ଼ା ମୋର ବିଶ୍ୱାସ, ମନୁଷ୍ୟର ମନ ବୋଲି ସ୍ୱତନ୍ତ୍ର କୌଣସି ଗୋଟିଏ ବସ୍ତୁ ନାହିଁ, ଯାହା ଅଛି ତାହା ହେଉଛି ଏହି ଦେହଟାର ଧର୍ମ । ଭଲ ପାଇବା ମଧ୍ୟ ସେଇଆ । ଭାବିଥିଲି ତୁମର ଦେହଟାକୁ କୌଣସି ପ୍ରକାରରେ ପାଇ ପାରିଲେ ମନଟାକୁ ମଧ୍ୟ ପାଇ ପାରିବି । ତୁମର ଭଲ ପାଇବା ମୋ ନିକଟରେ ଦୁଷ୍ପ୍ରାପ୍ୟ ହେବନାହିଁ । କିଏ ଜାଣେ ହୁଏତ

କେଉଁଦନ ଭଗ୍ୟ ସୁପ୍ରସନ୍ନ ହୋଇଥାନ୍ତା, ଯେହେତୁ ସର୍ବସ୍ୱ ଦେଇ ମୁଁ ଏହା ଗ୍ରହିଁଥିଲ ଏବଂ ଆଶା କରଥିଲ ହୁଏତ ତୁମେ ଦନେ ଇଚ୍ଛା କର ସେ ଭକ୍ଷା ମୋତେ ଦେଇ ଥାନ୍ତ, କନ୍ତୁ ସେଥିପାଇଁ ଆଉ ସମୟ ନାହିଁ । ମୁଁ ଅପେକ୍ଷା କରବା ପାଇଁ ଅବସର ପାଇ ପାରଲ ନାହିଁ ; କହ ସେ ପୁନରାୟ କହୁଣୀରେ ଭରଦେଇ ମୁହଁ ଟେକଲା, ଏବଂ ସନ୍ଧ୍ୟାର କ୍ଷୀଣ ଆଲୋକରେ ଅଚଲାର ଆନତ ମୁହଁକୁ ସ୍ତବ୍ଧ ହୋଇ ଗ୍ହିଁ ରହଲା ।

ଜଣକର ଏହ ଏକାଗ୍ର ଦୃଷ୍ଟି ଅପରର ଆନତ ଦୃଷ୍ଟିକୁ ଯେପର ଆକର୍ଷଣ କର ପାରଲା । କନ୍ତୁ ତାହା ପଲକ ମାତ୍ରକ ପାଇଁ । ଅଚଲା ତତ୍‌କ୍ଷଣାତ୍ ଆଖି ତଳକୁ କର ମୃଦୁ କଣ୍ଠରେ, ଅତ୍ୟନ୍ତ ଲଜ୍ଜ୍ୟାର ସହତ କହଲା, ଏ ଦେଶରୁ ତ ସମସ୍ତେ ପଳାଇଛନ୍ତ । ଏଠିକାର କାର୍ଯ୍ୟ ଯଦ ତୁମର ଶେଷ ହୋଇ ସାରଥାଏ, ଘର କମ୍ବା ଆଉ ତ କେତେ ଯାଗା ଅଛ, ତୁମେ ସେଠାକୁ ଗ୍ଲ । ଡିହରୀରେ ଆଉ ଦଣ୍ଡକ ପାଇଁ ମୁଁ ରହ ପାରବ ନାହିଁ ।

: ସେ କଥା ମୋ ବ୍ୟତୀତ ଆଉ ଅଧିକା ବୋଧହୁଏ କେହ ଜାଣନ୍ତ ନାହିଁ । କହ ଗୋଟାଏ ଦୀର୍ଘ ନଃଶ୍ୱାସ ମାର ସୁରେଶ ତକଆ ଉପରେ ମୁଣ୍ଡ ରଖି ଶୋଇଗଲା ଏବଂ କଛୁକ୍ଷଣ ନରବରେ ସ୍ଥିର ଭବରେ ରହ ଧୀରେ ଧୀରେ କହବାକୁ ଲାଗିଲା—ଅନେକ କଷ୍ଟରେ ଆଜ ଦୁଇ ଖଣ୍ଡ ଚଠି ପଠାଇ ଦେଇ ପାରଛୁ । ଖଣ୍ଡେ ତୁମ ପାଖକୁ ଆଉ ଖଣ୍ଡିଏ ମହମ ନକଟକୁ । ସେ ଯଦ ଏହା ଭତରେ ଗ୍ଲଯାଇ ନ ଥାଏ, ତେବେ ନଶ୍ଚୟ ଆସିବ, ଏହା ମୁଁ ଜାଣେ ।

ଅଚଲା ଏହା ଶୁଣିବାକ୍ଷଣି ଆଶ୍ଚର୍ଯ୍ୟ ହୋଇ ଭୟରେ ଚମକ ପଡ଼ କହଲ— ତାଙ୍କ ପାଖକୁ କାହିଁକ ?

ସୁରେଶ ସେହପର ଧୀରେ ଧୀରେ କହଲ, ବର୍ତ୍ତମାନ ମୋର କେବଳ ତାଙ୍କୁ ହିଁ ପ୍ରୟୋଜନ । ପିଲାଟି ଦନରୁ ସଂସାର ଭତରେ ମୋର ଅନେକ ଅଡ଼ୁଆ ଅଛ ଏବଂ ସେ ସବୁକୁ ସଂଶୋଧନ କରବା ପାଇଁ ସଦାବେଳେ ଏହ ଲୋକଟିର ଆବଶ୍ୟକତା ମୁଁ ଅନୁଭବ କର ଆସିଛୁ । ସେଥିପାଇଁ ଆଜ ମୁଁ ତାଙ୍କୁ ଡାକ ପଠାଇଛୁ । ଏତେ ଧୈର୍ଯ୍ୟ ପୃଥିବୀରେ ତାହା ବ୍ୟତୀତ ଆଉ କାହାର ତ ନାହିଁ ।

ଅଚଳାର ମୁଣ୍ଡ ଭିତରେ ଯେପର ଚକ୍ରା ଓଲଟ ପାଲଟ ହେବାକୁ ଲଗିଲ । ତଥାପି ସେ ତଳକୁ ମୁହଁ ପୋତ ଶୁଣୁଥିଲ । ସୁରେଶ କହଲ—ମୋର ଚଠି ଭତରେ ସବୁ କଥା ପରଷ୍କାର ରୂପେ ଲେଖା ହୋଇଛ । ପଢ଼ିଲେ ହିଁ ବୁଝିପାରବ ।

ସେହିଦିନ ତୁମ ହାତରେ ମୋ ସମ୍ପତ୍ତିର ଉଇଲ ଖଣ୍ଡିକ ଦେଇଛୁ । ଇଚ୍ଛା କଲେ ଆହୁରି ଅନେକ ଜିନିଷ ମଧ୍ୟ ତୁମେ ନେଇପାରିବ । କିନ୍ତୁ ମୁଁ କହେ, ନେଇକରି କୌଣସି ଲାଭନାହିଁ । ବରଞ୍ଚ ମୁଁ ବଞ୍ଚି ରହିଥିଲେ ଯେପରି ଗରିବ ଓ ଦୁଃଖୀମାନେ ତାହା ପାଇ ପାରିଥାନ୍ତେ ସେହିପରି ମୋର ମୃତ୍ୟୁ ପରେ ସେମାନେ ହିଁ ପାଆନ୍ତୁ । ମୋର ଆଉ କୌଣସି ଜିନିଷ ପ୍ରତି ନଜର ଆଉ ମାୟା ତୁମେ ରଖନାହିଁ ଅଚଳା । ମୋଠାରୁ ସମସ୍ତ ସମ୍ପର୍କ ତୁଟାଇ ଦେଇ ତୁମେ ଯେପରି ନିଶ୍ଚିନ୍ତ ହୁଅ ଏବଂ ନିରାପଦ ମନେକର । ଚେଷ୍ଟା କଲେ ପୃଥିବୀରେ ଅନେକ ଦୁଃଖକୁ ସହ୍ୟ କରାଯାଇ ପାରେ, ମୁଁ ଦେଇଥିବା ଦୁଃଖକୁ ତୁମେ ସେହିପରି ଅନାୟାସରେ ସହ୍ୟ କରିପାରିବ ।

ସୁରେଶର ଆଚରଣ ଏବଂ କଥା କହିବା ଭଙ୍ଗୀରେ ଅଚଳା ମନେ ମନେ କିପରି ଭୟ ଅନୁଭବ କରୁଥିଲା । କିନ୍ତୁ ଏଇ ଶେଷ କଥା ପଦକରେ ସେ ଯଥାର୍ଥରେ ଭୀତ ହୋଇ ପଡ଼ିଲା । କହିଲା—ତୁମେ ଏସବୁ କଥା ଉଠାଉଛ କାହିଁକି ? ଉଠି ବସନା, ବର୍ତ୍ତମାନ ସୁଦ୍ଧା ବେଳ ଅଛି, ଆମେ ଘରକୁ ଯିବାପାଇଁ ବାହାରି ପଡ଼ିବା ।

ଅଚଳାର ଆଶଙ୍କା ଓ ଉତ୍ତେଜନା ଲକ୍ଷ୍ୟକରି ସୁଦ୍ଧା ସୁରେଶ କୌଣସି ଉତ୍ତର ଦେଲନାହିଁ ।

ଯେଉଁ ବୃଦ୍ଧଜଣକ ଖୁଣ୍ଟକୁ ଆଉଜି ଘୁମାଇ ପଡ଼ିଥିଲେ ସେ ଉଠିପଡ଼ି ପ୍ରଶ୍ନ କଲେ—ବାବୁ ବର୍ତ୍ତମାନ କ'ଣ ଘର ଭିତରକୁ ଯିବେ ନା, ମୁଁ ଆଲୁଅଟା ବାହାରକୁ ଆଣିଦେବ ?

ସୁରେଶ ତା ପ୍ରଶ୍ନର ମଧ୍ୟ କୌଣସି ଉତ୍ତର ଦେଇ ପାରିଲା ନାହିଁ । ତାର ମନେ ହେବାକୁ ଲାଗିଲା, ହଠାତ୍ ସେ ଯେପରି ତନ୍ଦ୍ରାଚ୍ଛନ୍ନ ହୋଇ ପଡ଼ୁଛି ।

ଅଚଳା ଉଦ୍‌ବିଗ୍ନ ହୋଇ ତାର ପୂର୍ବ ପ୍ରଶ୍ନର ପୁନରାବୃତ୍ତି କରିବାକୁ ଯାଉଥିଲା ।

ସୁରେଶ ଆଖି ଖୋଲି ଅତି ସହଜ ଭାବରେ କହିଲା—ବର୍ତ୍ତମାନ ସୁଦ୍ଧା ମୁଁ ତୁମକୁ ଅସଲ କଥାଟା କହିପାରି ନାହିଁ ଅଚଳା । ମୁଁ ମରିବାକୁ ବସିଛି । ମୋର ବଞ୍ଚିବାର ବୋଧହୁଏ ଆଉ କୌଣସି ସମ୍ଭାବନା ନାହିଁ ।

ପ୍ରତ୍ୟୁତ୍ତରରେ କେବଳ ଗୋଟାଏ ଅସ୍ପଷ୍ଟ, ଅବ୍ୟକ୍ତ ସ୍ୱର ଅଚଳା କଣ୍ଠରୁ ବାହାରି ଆସିଲା । ଏହାପରେ ସେ ନୀରବ ହୋଇ ବସି ରହିଲା ।

ସୁରେଶ କହିବାକୁ ଲାଗିଲା– ଆଗରୁ ମୁଁ ଉଇଲ କରି ରଖି ଦେଇଛି ସତ, କିନ୍ତୁ କେହି ଯଦି ମନେକରେ ମୁଁ ଇଚ୍ଛା କରି ମରୁଛି; ତାହା ଅନ୍ୟାୟ, ତାହା ମିଥ୍ୟା । ସେଭଳି ଭାବନା ମୋତେ ମରିବାଠାରୁ ଆହୁରି କଷ୍ଟ ଦେବ । ମୁଁ ସତର୍କତା ପାଇଁ ଏତେ ଟିକିଏ ତ୍ରୁଟି ରଖିନାହିଁ । କିନ୍ତୁ ଫଳ କିଛି ହେଲାନାହିଁ । ଯଦି କେତେବେଳେ ତୁମକୁ କେହି ପ୍ରଶ୍ନ କରନ୍ତି, ସେମାନଙ୍କୁ ତୁମେ ଏହି କଥାଟା କହିବ ଯେ, ସଂସାରରେ ଆଉ ପାଞ୍ଚଜଣଙ୍କର ଯେପରି ମୃତ୍ୟୁ ହୁଏ ସୁରେଶର ମଧ୍ୟ ସେହିପରି ମୃତ୍ୟୁ ହୋଇଥିଲା । ମରଣକୁ କେବଳ ଏଡ଼ାଇ ଦେଇ ପାରିଲେ ନାହିଁ ବୋଲି ସେ ମଲେ । ନଚେତ୍ ମରିବାପାଇଁ ତାଙ୍କର ଇଚ୍ଛା ଆଦୌ ନଥିଲା । ମରଣକୁ ବରଣ କରିବା ପାଇଁ ମୋର ବିଶେଷ ଆଗ୍ରହ ଥିଲା ବୋଲି, ଅପବାଦଟା ଯେପରି ମୋତେ କେହି ନଦିଅନ୍ତି ।

ଅଚଳା କିଛି କହିଲା ନାହିଁ । କଥା କହିବାର ଶକ୍ତି ସେ ଯେ ହରାଇ ବସିଛି ଏକଥା ସେହି ପ୍ରାୟାନ୍ଧକାର ଭିତରେ ତାହାର ଉଦ୍‌ଭ୍ରାନ୍ତ ମୁହଁକୁ ଚାହିଁ ସୁରେଶ ଜାଣି ପାରିଲା ନାହିଁ । କ୍ଷଣକାଳ ପାଇଁ ନିଜକୁ ସଂଯତ କରିନେଇ ସେ ପୁଣି କହିବାକୁ ଆରମ୍ଭ କଲା, ମୁଁ ଆସି ପାରୁନଥିଲି ବୋଲି ସେଦିନ ତୁମକୁ ଲୁଚି ପଳାଇ ଆସିଲି । ଏଠାରେ ଆସି ପହଞ୍ଚି ଦେଖିଲି ଗ୍ରାମଟି ସମ୍ପୂର୍ଣ୍ଣ ଜନଶୂନ୍ୟ । ଏଘରେ ଗୋଟାଏ ଲୋକର ପଡ଼ିଛି, ତାହାର କୌଣସି ବ୍ୟବସ୍ଥା ନକରି ଘରର ଯେତେ ଲୋକ ସମସ୍ତେ ଘର ଛାଡ଼ି ପଳାଇ ଯିବାକୁ ବାହାରିଛନ୍ତି । ସେମାନଙ୍କ ପଳାଇ ଯିବା ନିଷ୍ପତ୍ତିରୁ ନିବୃତ୍ତ ସିନା କରି ପାରିଲି ନାହିଁ, ହେଲେ ମଡ଼ାଟାକୁ ସତ୍କାର କରିବାର ବ୍ୟବସ୍ଥା କରି ପାରିଲି । ତା ପରେ ଭାବିଲି ମୁଁ ମଧ୍ୟ ଘରକୁ ଫେରିଯିବି । କିନ୍ତୁ ଦ୍ୱିପହର ବେଳେ ମାମୁଦପୁରରୁ ଗୋଟିଏ ପିଲା କାନ୍ଦି କାନ୍ଦି ଆସି କହିଲା, ତାର ମାଆ ଭୀଷଣ ଅସୁସ୍ଥ । ତାକୁ ଚିକିତ୍ସା କରିବାକୁ ଯାଇ ନିଜ ପାଇଁ ଏଇ ବିପଦକୁ ଡାକି ଆଣିଲି । ଏପରି ଅନେକ ବିପଦ ମଝିକୁ ପୂର୍ବରୁ ଡେଇଁ ପଡ଼ିଛି । କିନ୍ତୁ ସବୁଥର ପରି ଏଥର ମଧ୍ୟ ମୁଁ କମ୍ ସାବଧାନ ନଥିଲି । କିନ୍ତୁ ଏଥର ଦୁର୍ଭାଗ୍ୟ ଏପରି ଯେ, ଗାଡ଼ି ଚକରେ ଘଷି ହୋଇ ବୁଢ଼ା ଆଙ୍ଗୁଠି ଚୂର୍ଣ୍ଣ ଯାଇଥିବା, ମୁଁ ହାତର ରକ୍ତ ଧୋଇବା ବେଳକୁ ଦେଖି ପାରିଲି । ଶୀଘ୍ର ଫେରିଆସି ଯାହା କରିବାର କଥା ତାହା କରିବସିଲି । ଘରକୁ ଯିବାର ଉପାୟ ଥିଲେ ମୁଁ କୌଣସି ମତେ ଯାଇପାରି ନ ଥାନ୍ତି । କାଲି ରାତିରେ ଜ୍ୱର ହୋଇଥିଲା ଆଉ ଏ ଜ୍ୱର ଯେ କି ଜ୍ୱର ବୁଝିବାକୁ ଯେତେବେଳେ ବାକି ରହିଲା ନାହିଁ ସେତେବେଳେ

ଅନେକ କଷ୍ଟରେ ଗୋଟାଏ ଲୋକ ହାତରେ ଦୁଇଖଣ୍ଡି ଚଠି ଲେଖି ତୁମ ଦୁଇଜଣଙ୍କ ପାଖକୁ ପଠାଇଛୁ ।

ଅଚଳା ରୁଦ୍ଧ କଣ୍ଠରେ କହିଉଠିଲା—ତଥାପି ବର୍ତ୍ତମାନ ତ ଉପାୟ ଅଛୁ । ମୋର ସବାରରେ ତୁମକୁ ନେଇ ବର୍ତ୍ତମାନ ମୁଁ ବାହାର ପାରବ । ଆଉ ମିନଟିଏ ସୁଦ୍ଧା ତୁମକୁ ରହିବାକୁ ଦେବନାହିଁ ।

: କିନ୍ତୁ ତୁମେ ?

: ମୁଁ ଚାଲି ଚାଲି ଯିବ । ମୋ କଥା ତୁମର ଭାବିବା ଦରକାର ନାହିଁ ।

: ଚାଲି ଚାଲି କର ଯିବ ! ଏତେ ଗୁଡ଼ାଏ ବାଟ !

: ମୁଁ ତୁମର ପାଦତଳେ ପଡୁଛୁ, ତୁମେ ମୋତେ କୌଣସିମତେ ବାଧା ଦିଅ ନାହିଁ । କହୁ କହୁ ଅଚଳା କାନ୍ଦ ଉଠିଲା ।

ସୁରେଶ ଦଣ୍ଡେ ମାତ୍ର ଚୁପ ରହି ତାପରେ ଗୋଟାଏ ଦୀର୍ଘ ନିଃଶ୍ୱାସ ଛାଡ଼ି ଆସ୍ତେ ଆସ୍ତେ କହିଲା—ତାହା ହେଲେ ଚାଲ । କିନ୍ତୁ ବୋଧହୁଏ ଏସବୁର ଆଉ ପ୍ରୟୋଜନ ନଥିଲା ।

ଅଚଳା ବାହାରକୁ ଆସି ଦେଖିଲା—ଗଛତଳେ ବସି ରଘୁବୀର ନିରବରେ ଚଣା ଚୋବାଉଛି । ସେ ତାକୁ ଡ଼ାକ କହିଲା- ରଘୁବୀର, ବାବୁଙ୍କର ଦେହ ଭୀଷଣ ଅସୁସ୍ଥ । ତାଙ୍କୁ ଏହିକ୍ଷଣି ନେଇ ଯିବାକୁ ହେବ । ସବାରବାଲାଙ୍କୁ କହି ସେମାନେ ଯେତେ ଟଙ୍କା ଚାହାନ୍ତି ତାହାଠାରୁ ଯଥେଷ୍ଟ ଅଧିକା ଦେବାପାଇଁ ମୁଁ ପ୍ରସ୍ତୁତ କିନ୍ତୁ ଯେପର ଆଉ ଗୋଟିଏ ମିନଟ୍ ସେମାନେ ବିଳମ୍ବ ନକରନ୍ତି ।

ପ୍ରଭୁପତ୍ନୀଙ୍କର ବ୍ୟାକୁଳ କଣ୍ଠରେ ରଘୁବୀର ଚମକ ଉଠି ଠିଆହୋଇ କହିଲା- ସେମାନେ ତ ଦୁଇଜଣଙ୍କୁ ବୋହି ପାରବେ ନାହିଁ, ମାଆ ।

—ନା, ନା, ଦୁଇଜଣଙ୍କୁ ନୁହେଁ । ଦୁଇଜଣଙ୍କୁ ନୁହେଁ । ମୁଁ ଚାଲି ଚାଲି ଯିବ । କିନ୍ତୁ ଏକ ମିନଟ୍ ଆଉ ଡେରକଲେ ଚଳିବ ନାହିଁ ରଘୁବୀର । ତୁମେ ଶୀଘ୍ର ଯାଅ । ସେମାନେ ବର୍ତ୍ତମାନ କେଉଁଠାରେ ?

—ସେମାନେ ଟଙ୍କାନେଇ ଖାଇବାର ଜିନିଷ କିଣିବାପାଇଁ ଦୋକାନକୁ ଯାଇଛନ୍ତି । ବର୍ତ୍ତମାନ ଡାକ ଆଣୁଛୁ ମାଆ । ଏତକ କହି ସେ ଅବଶିଷ୍ଟ ଚଣାକୁ ଲୁଗା କାନରେ ବାନ୍ଧି ସେମାନଙ୍କୁ ଡାକ ଆଣିବାପାଇଁ ଦୌଡ଼ିଗଲା ।

ଫେରଆସି ଅଚଳା ସୁରେଶର ମୁଣ୍ଡ ପାଖରେ ବସିପଡ଼ିଲା । ଏବଂ ହାତ ମାର ଦେହର ଉତ୍ତାପ ଅନୁଭବ କରବାକ୍ଷଣି ତାର ଅନ୍ତର ଆଶଙ୍କାରେ ଆତଙ୍କିତ

ହୋଇ ପଡ଼ିଲ । ବୃଦ୍ଧାଜଣକ ଡ଼ିବରଟିଏ ଜାଳି ଦେଇ ଯାଇଥିଲେ । ସେହି ଡ଼ିବରର ଅପର୍ଯ୍ୟାପ୍ତ ଧୂଆଁ ରେ ସ୍ଥାନଟା ଅନ୍ଧାରୁଆ ହୋଇ ଉଠିଥିଲା । ସେହିଟାକୁ ଘୁଞ୍ଚାଇ ରଖିଦେବାକୁ ଯିବାବେଳେ ଗୋଟିଏ ଔଷଧ ଶିଶି ଉପରେ ଅଚଳାର ଆଖି ପଡ଼ିଲା । ସେ ପ୍ରଶ୍ନ କଲା—ଏ କ'ଣ ତୁମର ଔଷଧ । ?

ସୁରେଶ କହିଲା— ହଁ, ମୋର ଔଷଧ । କାଲି ତିଆର କରିଥିଲି । କିନ୍ତୁ ଖାଇ ପାରିନାହିଁ । ଦାଅ······

କଥାଟା ଅଚଳାକୁ ଭୀଷଣ କଷ୍ଟ ଦେଲା । କିନ୍ତୁ ନ ଖାଇବାର କାରଣପାଇଁ ଅଯଥା କଥା ବଢ଼ାଇବାକୁ ସେ ଚାହିଁଲା ନାହିଁ । ଔଷଧ ଖାଇବାକୁ ଦେଇସାରି ପୁଣି ସେ ନୀରବରେ ଆସି ମୁଣ୍ଡ ପାଖରେ ବସିପଡ଼ିଲା । ଅନେକ ସମୟ ଧରି ସୁରେଶ ଚୁପ ରହିଥିଲା, କିନ୍ତୁ ଏହି ନୀରବତା ଭିତରେ ସେ ସେ କିଭଳି ଯାତନା ଭୋଗ କରୁଥିଲା ତାହା ଉପଲବ୍ଧି କରିବା କ୍ଷଣି ଅଚଳାର ଛାତି ଫାଟି ଗଲାପରି ଲାଗିଲା ।

ବିଳମ୍ବ ହେଉଛି । ରଘୁବୀରର ଦେଖାନାହିଁ । ମଝିରେ ମଝିରେ ସେ ଉଠି ପାଦ ଚପି ଚପି ଯାଇ ଦୁଆରବନ୍ଧ ନିକଟରେ ଅନ୍ଧକାର ଭିତରେ ଯେତେଦୂର ଦେଖା ଯାଉଥିଲା, ଚାହିଁଦେଇ ଆସୁଥିଲା । କିନ୍ତୁ କେଉଁଠାରେ ତାର ଆସିବାର ଚିହ୍ନ ସୁଦ୍ଧା ଦିଶୁନଥିଲା । ଅଥଚ କାଳେ ତାର ଏହି ଉତ୍କଣ୍ଠା ସୁରେଶ ନିକଟରେ ଧରା ପଡ଼ିଯାଇ ପାରେ, ଏହି ଭୟରେ ସେ ବ୍ୟାକୁଳ ହୋଇଉଠିଲା ।

ରାତ୍ରି କ୍ରମଶଃ ବଢ଼ିବାରେ ଲାଗିଲା । ବୃଦ୍ଧାଜଣଙ୍କର ଘୁଂଘୁଡ଼ି ଶବ୍ଦ ସନ୍ଧିରୁ ଶୁଣାଗଲାଣି । ଏପରି ସମୟରେ କ୍ଷୁଧିତ, ପଥଶ୍ରାନ୍ତ ରଘୁବୀର ବିଫଳ ଦୂତଭଳି ବିରସ ମୁହଁରେ ଆସି କହିଲା; ବେହେରାମାନେ ସବାରି ନେଇ ଅନେକ ବେଳରୁ ଚାଲି ଗଲେଣି । ଖୋଜି ଖୋଜି ସେମାନଙ୍କର ସନ୍ଧାନ କେଉଁଠାରେ ହେଲେ ପାଇ ପାରିଲି ନାହିଁ ।

ଅଚଳା ସବୁ ଭୁଲିଯାଇ ପ୍ରଶ୍ନ କରିବାକୁ ଲାଗିଲା କେତେବେଳେ ଗଲେ ? କେଉଁ ବାଟରେ ଗଲେ ? ଏବଂ କେଉଁଥିପାଇଁ ଗୁଡ଼ା ପଳାଇଲେ ? ଆମର ଯେତେ ଯାହା ଅଛି ସବୁ ଦେଇଦେଲେ କ'ଣ ଏଠାରେ ଆଉ ଗୋଟାଏ ସବାରି ଯୋଗାଡ଼ କରିହେବ ନାହିଁ ?

ରଘୁବୀର ସ୍ତବ୍ଧ ହୋଇ ତଳକୁ ମୁହଁ କରି ଠିଆ ହୋଇ ରହିଲା । ଏହି ନିଦାରୁଣ ବିପତ୍ତି ହିଁ ତାର ଦୂର ଦୃଷ୍ଟିର ଅଭାବ ହେତୁ ଘଟି ଯାଇଛି ଏହା ସେ ଜାଣେ । ସେଥିପାଇଁ ସେ ଅନ୍ୟ ସବାରିପାଇଁ ପ୍ରାଣପଣେ ଚେଷ୍ଟା କରି ବିଫଳ ହୋଇ ଫେରିଆସିଲା ।

ଆଉ ଜଣେ କନ୍ତୁ ଠିକ୍ ରଘୁବୀର ପରି ଚୁପ ହୋଇ ଶେଯ ଉପରେ ପଡ଼ିରହିଲା । ଚଞ୍ଚଳତା ଲେଶମାତ୍ର ଯେପରି ତାକୁ ସ୍ପର୍ଶ କରି ପାରିଲା ନାହିଁ । ରଘୁବୀର ଚାଲିଯିବା ପରେ ସେ ଆସ୍ତେ ଆସ୍ତେ କହିଲା, ବ୍ୟସ୍ତ ହେଲେ କ'ଣ ହେବ ଅଚଳା । ସେମାନଙ୍କୁ ପାଇଥିଲେ ମଧ୍ୟ କୌଣସି ଲାଭ ହୋଇ ନଥାନ୍ତା । ଏହାହିଁ ଭଲ । ମୋ ପାଇଁ ଏହା ଢେର ଭଲ.......

ଆଉ ଅଚଳା କଥା କହିଲା ନାହିଁ । କେବଳ ସେ ଅନନ୍ତ ପଥର ଯାତ୍ରୀର ତପ୍ତ କପାଳ ଉପରେ ଡାହାଣ ହାତଟି ରଖି ପାଷାଣ ପ୍ରତିମାପରି ସ୍ଥିର ହୋଇ ବସିରହିଲା ।

ଅଚଳାର ଘରର ଦଗରେ କନସ୍ଥାନ ପୁରୀ ମୃତ୍ୟୁଭଳି ନିର୍ବାକ୍ ହୋଇ ଉଠିଛି । ବାହାରେ ଗମ୍ଭୀର ରାତ୍ରି ଗମ୍ଭୀରତର ହେବାକୁ ଲାଗିଛି । ଆଖି ଆଗରେ କଳା ଆକାଶଟା ଗାଢ଼ହୋଇ ଉଠୁଛି । ସେହି ଦଗକୁ ଚାହିଁ ରହି ସେ କେବଳ ମନେମନେ ଭାବିବାକୁ ଲାଗିଲା—ଏସବୁର କ'ଣ ଅବା ଆବଶ୍ୟକତା ଥିଲା ?

ବର୍ତ୍ତମାନ ଯେ ତାର ଜୀବନକୁରୁକ୍ଷେତ୍ର ରେ ଏତେବଡ଼ ଗୋଟାଏ କଦର୍ଯ୍ୟ ସଂଗ୍ରାମ ଚାଲିଛି । ଏହାର ଅବା କି ଆବଶ୍ୟକତା ଥିଲା ? ଦୁନିଆଁର ସମସ୍ତ ଜ୍ୱାଳା, ସମସ୍ତ ହୀନତା, ସକଳ ସ୍ୱାର୍ଥକୁ ବଳିଦେଇ ସେ କ'ଣ ଆଜିର ରାତ୍ରି ଭଳି ଶେଷ ହୋଇଯିବ ? ତାପରେ ସମସ୍ତ ଜୀବନଟା କ'ଣ କୁରୁକ୍ଷେତ୍ର ଭଳି ଶ୍ମଶାନରେ ପରିଣତ ହୋଇ ଯୁଗ ଯୁଗ ଧରି ପଡ଼ିରହିବ ? ଏହା କ'ଣ ପୃଥିବୀରେ ଭଗବାନଙ୍କର ପ୍ରୟୋଜନ ପର୍ଯ୍ୟାୟରେ ଯାଏ ?

କିନ୍ତୁ ଏ କୁରୁକ୍ଷେତ୍ର କାହିଁକି ରଚନା ହେଲା ? କିଏ ରଚନା କଲା ? ଏହି ଯେଉଁ ମନୁଷ୍ୟଟି ତାର ସକଳ ଐଶ୍ୱର୍ଯ୍ୟ, ସକଳ ସମ୍ପଦ, ସକଳ ଆତ୍ମୀୟ ପରିଜନଙ୍କଠାରୁ ବିଚ୍ଛିନ୍ନ ହୋଇ ଏପରି ନିରୁପାୟ ଭାବରେ ମରଣକୁ ବରଣ କରିବସିଛି; ସେ କ'ଣ କେବଳଏତେବଡ଼ ବିପ୍ଳବ ଏକା ସୃଷ୍ଟି କରି ପାରିଲା ? ଆଉ କ'ଣ କାହା ମନରେ ଲୁକ୍କାୟିତ ହୋଇ କୌଣସି ଲୋଭ, କୌଣସି ମୋହ ନଥିଲା ? ଆଉ କ'ଣ କେହି କୌଣସି ପାପ କରିନାହାନ୍ତି ?

ହଠାତ୍ ଏହିପରି ଅନାବନା ଚିନ୍ତାକୁ ସେ ମନରୁ ଠେଲି ବାହାର କରି ଦେବାପାଇଁ ସିଧାହୋଇ ବସିବାକୁ ଚେଷ୍ଟାକଲା । ତାକୁ ଜଣାଗଲା କିଏ ଯେପରି ଦୁଇ ହାତରେ ତାର କଣ୍ଠରୋଧ କରିବାକୁ ବସିଥିଲା । ଏହିପରି ସମୟରେ ସୁରେଶ ପିଇବାକୁ ପାଣି ମାଗିଲା । ଅଚଳା ଉଠିଯାଇ ପାଣି ଆଣି ତାକୁ ପିଆଇ ଦେଇ ପୁଣି ସ୍ଥିର ହୋଇ ବସି ରହିଲା । ମନରେ ତାର ଶାନ୍ତି ନାହିଁ, ଆଖିରୁ ନିଦଯେପରି ସବୁଦିନ ପାଇଁ ଦୂରେଇ ଯାଇଛି । ସେ ପୁଣି ସେହି ନୀରବ

ଆକାଶ ଆଡ଼େ ଏକା ଦୃଷ୍ଟିରେ ଚାହିଁ ରହିଲା । ବହୁଦିନ ପୂର୍ବେ ଅତି ଯତ୍ନ ସହକାରେ ଯେଉଁ ମହାଭାରତଟି ସେ ଶେଷ କରିଥିଲା; ଆଜି ଯେପରି ତାର ଶେଷ ସର୍ବନାଶ ଅଧ୍ୟାୟଟି ନିଜ ମନ ଭିତରେ ହିଁ ଗ୍ରସ୍ତାବାଜିଭଳି ଖେଳି ଚାଲିଲା । ସେଠାରେ ଯେପରି କେତେ ରକ୍ତପାତ ହୋଇ ଚାଲିଛି, କେତେ ଅଜଣା ଅଚିହ୍ନା ଲୋକ ହତାମର୍ଷ ହୋଇ ମରିବାରେ ଲାଗିଛନ୍ତି । କେତେ ସହସ୍ର ଚିତା ଜଳି ଚାଲିଛି, ତାହାର ଧୂଆଁରେ ସ୍ୱର୍ଗ ମର୍ତ୍ତ୍ୟ ଆଚ୍ଛନ୍ନ ହୋଇ ଯେପରି ଏକାକାର ହୋଇ ଉଠିଛି ।

କିଛି ସମୟ ପାଇଁ ସୁରେଶ ବୋଧହୁଏ ତନ୍ଦ୍ରାମଗ୍ନ ହୋଇ ପଡ଼ିଥିଲା । ତେଣୁ ତାର ଘୋର ଶବଦ କିଛି ନଥିଲା । କିନ୍ତୁ ଏପରି କେତେ ସମୟ ବିତିଲା, କିପରି ରାତି ପାହି ପ୍ରଭାତ ହେଲା, ସେଥିପ୍ରତି ଅଚଳାର ଜ୍ଞାନ ନଥିଲା । ତାର ଅପଲକ ଆଖିରୁ ଅନବରତ ଲୁହ ଝରିବାକୁ ଲାଗିଥିଲା, ନିଜ ହାତ ଦୁଇଟି ସୁରେଶର ତକିଆ ଉପରେ ରଖି ସେ ଏକାନ୍ତ ମନରେ ଭାବୁଥିଲା, ହେ ଈଶ୍ୱର ! ମୁଁ ଅନେକ ଦୁଃଖ, ଅନେକ ବ୍ୟଥା ପାଇଛି । ଆଜି ମୋର ସମସ୍ତ କଷ୍ଟ, ବ୍ୟଥା ବଦଳରେ ତୁମେ ସୁରେଶକୁ କ୍ଷମା କରି ତୁମ କୋଳକୁ ଆଦରରେ ଟାଣି ନିଅ । ମୋର ମାଆ ନାହିଁ, ବାପ ନାହିଁ, ସ୍ୱାମୀ ନାହିଁ, ମୋତେ ଏଭଳି ଲଜ୍ଜ୍ୟା ଦେଇଛ ଯେ କେଉଁଠି ଠିଆ ହେବା ପାଇଁ ମୋର ସ୍ଥାନ ନାହିଁ । ମୁଁ ଯେ କେତେ ସହୁଛି ତାହା ତୁମେ ତ ଜାଣ, ଆଉ ମୋତେ ସହିବାକୁ ଦିଅ ନାହିଁ ପ୍ରଭୁ । ମୋତେ ମଧ୍ୟ ତୁମ କୋଳକୁ ଟାଣିନିଅ ।

କଥା ଗୁଡ଼ିକ ସେ ଯେ କେତେ ପ୍ରକାରରେ ମନେ ମନେ ଆବୃତ୍ତି କରୁଥିଲା, ତାର ସୀମା ନଥିଲା । ଅଶ୍ରୁଜଳ ଯେ କେତେ ଝରି ପଡ଼ୁଥିଲା ତାର ଇୟତ୍ତା ନଥିଲା ।

: ମାଆ ।

ସେଇମାତ୍ର ସକାଳ ହୋଇଥାଏ । ଅଚଳା ଚମକି ଦେଖିଲା ରଘୁବୀର ଯେପରି କାହାର ପ୍ରବେଶ ଅପେକ୍ଷାରେ ସଦର ଦରଜା ଉନ୍ମୁକ୍ତ କରି ଠିଆ ହୋଇଛି ।

: କ'ଣ ହେଲା ରଘୁବୀର । କହି ଯାହା ସହିତ ଅଚଳାର ସ୍ଥିର ଚକ୍ଷୁର ମିଳନ ହେଲା ସେ ହେଉଛି ମହିମ । ଥରକ ପାଇଁ ସେ କମ୍ପି ଉଠି ଆଖି ତଳକୁ କଲା । ଦ୍ୱାର ନିକଟରେ ପହଞ୍ଚି କ୍ଷଣକ ପାଇଁ ମହିମର ପାଦ ଚଳିଲା ନାହିଁ । ଏଠାରେ ଏପରି ଭାବରେ ତା ସହିତ ଦେଖା ହୋଇ ପାରିବ ଏହା ସେ ଆଶା କରିପାରି

ନଥିଲା । କିନ୍ତୁ ପର କ୍ଷଣରେ ସେ ଧୀରେ ଧୀରେ ଆସି ନିକଟରେ ଠିଆ ହେଲା । ଅତ୍ୟନ୍ତ କୋମଳ କଣ୍ଠରେ ପ୍ରଶ୍ନ କଲା—ସୁରେଶ କିପରି ଅଛ ?

ଅଚଳା ମୁହଁ ଉପରକୁ ଉଠାଇଲା ନାହିଁ । କଥା କହିଲା ନାହିଁ । କେବଳ ମୁଣ୍ଡ ହଲାଇ ବୋଧହୁଏ ଜଣାଇ ଦେବାକୁ ଚାହିଁଲା ଯେ—ସେ ଏ ବିଷୟରେ କିଛି ଜାଣେ ନାହିଁ ।

କେତେକ ମିନଟ୍ ନୀରବ ହୋଇ ରହିବା ପରେ ମହିମ ସୁରେଶର ଲଲାଟ ସ୍ପର୍ଶ କରିବା କ୍ଷଣି ସେ ଆଖି ମେଲି ଚାହିଁଲା । ସେହି ଜ୍ୟୋତିହୀନ ରକ୍ତ ବର୍ଣ୍ଣ ଆଖି ଆଡ଼େ ଚାହିଁ ମହିମ କଣ୍ଠରେ ହଠାତ୍ ଭାଷା ଆସି ପାରିଲା ନାହିଁ । କିଛି ସମୟ ପରେ ସେ କହିଲା କିପରି ଅଛ ସୁରେଶ ?

: ଭଲ ନାହିଁ, ଚାଲିଲି । ତୁ ଆସିବୁ ଏକଥା ମୁଁ ବିଶ୍ୱାସ କରିଥିଲି । ମୋ ଆଗରେ ଆସି ବସ ।

ମହିମ କୌଣସି ମତେ ଯାଇ ତାର ପାଦ ପାଖରେ ବସି ପଡ଼ିଲା । କହିଲା; ଡ଼ିହିରୀରେ ଡାକ୍ତର ଅଛନ୍ତି, ମୋ ଝିଟକାରେ କୌଣସି ମତେ....···

ସୁରେଶ ମୁଣ୍ଡ ହଲାଇ କହିଲା—ନା, ଆଉ ମତେ ଟଣାଟଣି କର ନାହିଁ । ମୋତେ ନୀରବରେ ଚାଲିଯିବାକୁ ଦେ ।

: କିନ୍ତୁ ଏଠାରେ ତ······

: ହଁ ଏଠାରେ ମୋର ହୋସ୍ ଅଛି । ବେଳେ ବେଳେ ଚେତା ରହୁନାହିଁ । ମୋର ଜୀବନଟା ଗରିବ ଦୁଃଖୀଙ୍କ କାମରେ ଲଗାଇ ପାରିଲି ନାହିଁ । କିନ୍ତୁ ସମ୍ପତ୍ତିଟା ଯେପରି ସେମାନଙ୍କର ଉପକାରରେ ଲାଗେ ଦେଖିବୁ ମହିମ । ସେଥିପାଇଁ କଷ୍ଟ ଦେଇ ତୋତେ ଏତେ ବାଟ ଟାଣି ଆଣିଲି । ନଚେତ୍ ମୃତ୍ୟୁ କାଳରେ କ୍ଷମା ଚାହିଁ କାବ୍ୟ ରଚନା କରିବାର ପ୍ରବୃତ୍ତି ମୋର ନାହିଁ ।

ମହିମ ନୀରବହୋଇ ବସିରହିଲା ।

ସୁରେଶ କହିବାକୁ ଲାଗିଲା ଏସବୁ ମୁଁ ବିଶ୍ୱାସ କରେ ନାହିଁ, ଭଲ ମଧ୍ୟ ପାଏ ନାହିଁ । ସାମାନ୍ୟ କ୍ଷମା ପାଇଁ ମଧ୍ୟ ମୋର ଲୋଭ ନାହିଁ । ଭଲ କଥା, ଗୋଟାଏ ଉଇଲ ଅଛି । ଅଚଳାକୁ ମୁଁ କିଛି ଦେଇ ନାହିଁ । ତାକୁ ଅପମାନ କରିବା ପାଇଁ ମୋର ହାତ ଉଠିଲା ନାହିଁ । ଯଦି ଆବଶ୍ୟକ ମନେକରୁ ତେବେ ଦେଇପାରୁ······

ମଧୁମ ବ୍ୟାକୁଳ ହୋଇ କହି ଉଠିଲା—ଆଉ ମୋତେ ଏଥିରେ କାହିଁକି ଜଡ଼ିତ କରୁଛୁ ସୁରେଶ ?

ସୁରେଶ କହିଲା—ଠିକ୍ ଏଇଥି ପାଇଁ ଯେ, ତୋତେ ଜଡ଼ିତ କରାଯାଇ ପାରେନା, କାରଣ ଯାହାର ଲୋଭ ନାହିଁ, ଯାହାର ନ୍ୟାୟ ଅନ୍ୟାୟ ବିଷୟର... ହଠାତ୍ ଉପରକୁ ଚାହିଁ ରହି କହିଲା—କିନ୍ତୁ ସାରା ରାତି ତୁମେ ଏଇପରି ବସି ରହିଛ ଅଚଳା,—ଯାଅ, ହାତ ମୁହଁ ଧୋଇ ନିଅ । ବୁଢ଼ୀ ତୁମକୁ ସବୁ ଜିନିଷ ଦେଖାଇ ଦେବ ଯାଅ......

ଅଚଳା ଉଠିଗଲାପରେ ସୁରେଶ କହିଲା—କେବଳ ଗୋଟାଏ କଥା ପାଇଁ ମୋର ଦୁଃଖ ହୁଏ, ଅଚଳା ଯେ ତୋତେ କେତେ ଭଲପାଏ, ତାହା ମୁଁ ବୁଝି ନଥିଲି, ତୁ ମଧ୍ୟ ବୁଝି ନଥିବୁ ଆଉ ସେ ନିଜେ ମଧ୍ୟ ବୁଝେ ନାହିଁ । ସେଇଟା ତୋର ଦାରିଦ୍ର୍ୟ ସହିତ ଏପରି ମିଶି ରହିଲା ଯେ....ଥାଉ । ଏପରି ସୁନ୍ଦର ଜିନିଷଟିକୁ ମାଟି କରି ପକାଇଲି......ନା ପାଇଲି ନିଜେ, ନା ପାଇବାକୁ ଦେଲି ଅପରକୁ । କିନ୍ତୁ କ'ଣ ଆଉ କରାଯାଇ ପାରେ ! ପିଉସୀମାଆଙ୍କୁ ଟିକିଏ ଦେଖା ଶୁଣା କରିବୁ । ମୋର ମୃତ୍ୟୁର ଦୁଃଖଟା ତାଙ୍କୁ ବେଶୀ ବାଧିବ ।

ବୃଦ୍ଧାଜଣକ ଔଷଧ ଗିଣି ନେଇ ପାଖରେ ଠିଆ ହୋଇଥିବାର ଦେଖି ଉତ୍ତ୍ୟକ୍ତ ସ୍ୱରରେ ସେ କହି ଉଠିଲା—ନା, ନା, ଆଉ ଔଷଧ ନୁହେଁ । ଟିକିଏ ପାଣି ଦେ । ଗୋଟାଏ ନାଟକ ଲେଖିବାକୁ ଆରମ୍ଭ କରିଥିଲି ମଧୁମ, ମୋର ଡ୍ରୟାରରେ ଅଛି—ପାରୁତ ପଢ଼ିନେବୁ ।

ମଧୁମ ତାର ମୁହଁକୁ ଚାହିଁ ପାରୁ ନଥିଲା । ତଳକୁ ମୁହଁପୋତି କେବଳ ଶୁଣି ଯାଉଥିଲା··ଏଥର ସେ କ'ଣ କହିବାକୁ ଉପକ୍ରମ କରୁଥିବାର ଦେଖି ସୁରେଶ ତାକୁ ଅଟକାଇ ଦେଇ କହିଲା—ଆଉ ନୁହେଁ ମଧୁମ, ମୁଁ ଟିକିଏ ଶୁଏ । ଖାଇବା ପିଇବାର ସବୁ ବନ୍ଦୋବସ୍ତ ଅଛି, କିନ୍ତୁ ସେ ସବୁ ଖାଇବା ପାଇଁ ତୋତେ ଭଲ ଲାଗିବ ନାହିଁ କହି ଆଖି ବୁଜିଲା ।

ମଧୁମ କ୍ଷଣକାଳ ଚୁପ ରହିବା ପରେ ଆସ୍ତେ ଆସ୍ତେ କହିଲା—ମୋର ଗୋଟାଏ ଶେଷ ଅନୁରୋଧ ରଖି ପାରିବୁ ସୁରେଶ ?

: କ'ଣ ?

: ତୁ କୌଣସି ଦିନ ଭଗବାନଙ୍କୁ ମାନୁ ନାହିଁ । ତାଙ୍କର କଥା···

: ସେ ମୋର କାମରେ ଲାଗିବେ ନାହିଁ କହି ସୁରେଶ ମୁହଁକୁ ବିକୃତ କରି କଡ଼ ଲେଉଟାଇ ଶୋଇଲା ।

ମହିମ ପ୍ରାଣପଣେ ଗୋଟାଏ ଦୀର୍ଘ ନିଶ୍ୱାସକୁ ଚାପିରଖି ନୀରବହୋଇ ବସି ରହିଲା ।

ରାମବାବୁ ଘରେ ନଥିଲେ । ପରଦିନ ବକ୍ସାରୁ ଫେରି ମହିମର ଚିଠି ପଢ଼ିବା କ୍ଷଣି ଆଉ ଦଣ୍ଡେ ମାତ୍ର ବିଳମ୍ବ କରି ପାରିଲେ ନାହିଁ । ବାଟସାରା ଘୋଡ଼ାଟାକୁ ନିର୍ମମ ଭାବରେ ଛୁଟାଇ ସେ ଯେତେବେଳେ ମାଝୁଲିରେ ପହଞ୍ଚିଲେ, ସେତେବେଳକୁ ସନ୍ଧ୍ୟା ହୋଇ ଆସିଲାଣି । ପୋଲିସ ଲୋକ ଭାବ ଦୋକାନୀ ନିଜେ ନନ୍ଦ ପଡ଼ାର ନିମଗଛ ତଳେ ଆଣି ପହଞ୍ଚାଇ ଦେଲା ଏବଂ ଟଙ୍କାରୁ ଓହ୍ଲାଇବା ବେଳେ ସମ୍ମାନରେ ଲଗାମ ଧରି ଠିଆ ହୋଇ ରହିଲା । ଏହି ଲୋକଠାରୁ ଖବର ନେବାରେ ଜାଣି ପାରିଲେ ଯେ ଅଚଳା ମଧ୍ୟ ଆସିଛି । ସଦର ଦରଜା ଖୋଲା ଥିଲା । ଭିତରେ ପାଦ ଦେବା କ୍ଷଣି ଘଟଣାଟା ଆଉ ବୁଝିବାକୁ ବାକୀ ରହିଲା ନାହିଁ । ଦୁଇଘଣ୍ଟା ପୂର୍ବରୁ ସୁରେଶର ମୃତ୍ୟୁ ହୋଇ ଯାଇଛି । ଖଟିଆ ଉପରେ ତାର ମୃତ ଶରୀର ଆପାଦ ମସ୍ତକ ଆବୃତ ହୋଇ ରହିଛି ଏବଂ ଅଳ୍ପ ଦୂରରେ । ଅଚଳା ନୀରବରେ ବସି ରହିଛି ।

ହଠାତ୍ ଏହି ଦୃଶ୍ୟକୁ ବୃଦ୍ଧ ସହ୍ୟ କରିପାରିଲେ ନାହିଁ । ମାଆ ମୋର··· କହି ସେ ଉଚ୍ଛ୍ୱସିତ ଶୋକରେ କାନ୍ଦି ଉଠିଲେ ।

ଅଚଳା ମୁହଁ ଟେକି ଥରେ ପାଇଁ ଚାହିଁଲା; କିନ୍ତୁ ତାପରେ ସେହିପରି ତଳକୁ ମୁହଁ ପୋତି ବସି ରହିଲା । ଏହି ଆର୍ତ୍ତ କଣ୍ଠ ଯେପରି ତାର କାନକୁ ଗଲା ସିନା କିନ୍ତୁ ଅନ୍ତର ଭିତରେ ପ୍ରବେଶ କରିପାରିଲା ନାହିଁ ।

ମହିମ ଘର ଭିତରେ କାଠ ବ୍ୟବସ୍ଥା କରିବାରେ ଲାଗିପଡ଼ିଥିଲା । କ୍ରନ୍ଦନର ଶବ୍ଦ ଶୁଣି ବାହାରକୁ ଆସିଲା । କହିଲା---ସୁରେଶ ଏଇ କେତେ ସମୟ ହେବ ଚାଲିଗଲା । ରାମବାବୁ; ଆପଣ ଆସି ପହଞ୍ଚିଛନ୍ତି; ବଡ଼ ଭଲ ହୋଇଛି । ନହେଲେ ଏକୁଟିଆ ମୋତେ ବଡ଼ ଅସୁବିଧା ଭୋଗ କରିବାକୁ ପଡ଼ିଥାନ୍ତା ।

ରାମବାବୁ ନୀରବରେ ଆଖି ପୋଛିବାକୁ ଲଗିଲେ । ସେ କ'ଣ କରିବେ, କ'ଣ କହିବେ, କିଭଳି ଏହି ଝିଅଟାର ଆଖି ଆଗରେ ଏହି ନିଦାରୁଣ କାର୍ଯ୍ୟରେ

ସାହାଯ୍ୟ କରିବାକୁ ଆଗେଇ ଯିବେ ତାହାର କୂଳ କିନାରା ସ୍ୱିର ଠିକ୍ କରିପାରୁ ନଥିଲେ ।

ମହମ କହିଲା—ନଦୀ ଏଠାରୁ ବହୁତ ଦୂର, ନୁହେଁ । ରଘୁବୀର ଆଗରେ କିଛି କାଠ ବୋହିନେଇ ଚାଲି ଚାଲି ଯାଇଛି । ଆଉ ମଧ କିଛି କାଠ ସଂଗ୍ରହ କରି ହେଲାଣି । ସେତକ ପଠାଇ ଦେଲାପରେ ଆମେ ତିନିଜଣ ମିଶି ଏହାକୁ ନେଇ ପାରିବା । ନଚେତ ଗାଁ ରେ ଆଉ ଲୋକ ନାହାନ୍ତି । ଥିଲେ ମଧ କେହି ମଡ଼ା ଛୁଇଁବେ ନାହିଁ ।

ରାମବାବୁ ସେ କଥା ଜାଣନ୍ତି । ଅତଳାର ଅଗୋଚରରେ ପ୍ରଶ୍ନ କଲେ—ଆମେ ତ ଦୁଇଜଣ, ଆଉ ଜଣେ କିଏ ?

ମହମ କହିଲା—ରଘୁବୀର ହିଁ ଏତ ସାହାଯ୍ୟ କରିପାରେ ।

ଏକଥା ଶୁଣି ବୃଦ୍ଧ ବ୍ୟସ୍ତ ହୋଇ କହି ଉଠିଲେ, ନା, ନା, ସେ କଥା କୌଣସି ମତେ ହୋଇ ପାରିବ ନାହିଁ । ନଦୀ ଯେତେବେଳେ ବେଶୀ ଦୂର ନୁହେଁ ଆମ ଦୁଇଜଣଙ୍କୁ ଯେ କୌଣସି ମତେ ହେଉ ନେଇ ଯିବାକୁ ହେବ ।

: ବେଶ୍—ତାହାହିଁ ହେଉ । କହି ମହମ ଭିତରକୁ ଯାଇ କାଠ ସଂଗ୍ରହ କରିବାରେ ଲାଗି ପଡ଼ିଲା ।

ରାମବାବୁ ସେହି ବାରଣ୍ଡାରେ ଖୁଣ୍ଟକୁ ଆଉଜି ଚୁପ ହୋଇ ବସି ରହିଲେ । ତାଙ୍କର ବୟସ ଯଥେଷ୍ଟ ହୋଇଛି । ଏହି ଦୀର୍ଘ ସମୟ ଭିତରେ ଅନେକ ମୃତ୍ୟୁ ଦେଖିଛନ୍ତି, ଏବଂ ଅନେକ ଗଭୀର ଶୋକ ଭିତରେ ତାଙ୍କୁ ଧୀରେ ଧୀରେ ବି ଆଗେଇବାକୁ ପଡ଼ିଛି । ଦୁଃସହ ଦୁଃଖର ସେହି କରୁଣ ସ୍ୱର ଗୋଟି ଗୋଟି ହୋଇ ତାଙ୍କର ହୃଦୟ ବୀଣାରେ ବନ୍ଧା ହୋଇ ରହିଛି; କିନ୍ତୁ ଆଜିକାର ଏହି ଘଟଣାଟା ସେହି ତାରରେ ଆଘାତ ଦେଇ ଯେପରି ବେସୁରା ଭାବରେ ବାଜି ଉଠିଲା । ଦିନେ ଏହି ସୁରମା ହିଁ ବଡ଼ବାବା କହି ତାଙ୍କର ଗୋଡ଼ ଉପରେ ଲୋଟି ପଡ଼ୁଥିଲା । ସେ ଛବି ଏବେ ମଧ ସେ ଭୁଲି ପାରୁ ନାହାନ୍ତି । ଆଜି ବୁଢ଼ା ତାଙ୍କର ପିତୃ ସ୍ନେହ ସେହି ବାତ୍ସଲ୍ୟ ପାଇଁ ଭିତରେ ଭିତରେ ଗୁମୁରି ଗୁମୁରି କାନ୍ଦି ଉଠୁଥିଲା । ତାକୁ କି ଅବା ସାନ୍ତ୍ୱନା ସେ ଦେବେ ? ସେ ଜାଣେ ନାହିଁ ଯେ ତାକୁ ପ୍ରବୋଧ ଦେବା ଭଳି ସଂସାରରେ ଆଉ କିଛି ଅଛି କି ନାହିଁ ? ସେ ନିଜେ ମଧ ଜାଣନ୍ତି ନାହିଁ । ତଥାପି ତାଙ୍କର ଶୋକାକୁଳ ମନ ଯେପରି ଚାହୁଁଥିଲା—ଥରେକ ପାଇଁ ଝିଅଟାକୁ କୋଳରେ ଚାପି ଧରି କହି ଉଠନ୍ତେ—ଭୟ କରିବାର କିଛି ନାହିଁ ମାଆ । ଆଜି ମଧ ମୁଁ ବଞ୍ଚିଛି ।

କିନ୍ତୁ ସେ ସୁଖ ଆଉ କାହିଁ ? ତାଙ୍କର ସେ ମନର ଆଶାକୁ ପୂରଣ କରିବା ପାଇଁ କାହିଁ କେହିତ ପାଦେ ହେଲେ ଆଗେଇ ଆସୁନାହାନ୍ତି । ସୁରମା ସେହିପରି ନୀରବରେ ଦୂର ସମ୍ପର୍କୀୟ ଅନାତ୍ମୀୟର ବ୍ୟବଧାନ ରଖି ଆପଣାକୁ ପୃଥକ୍ କରି ରଖିଛି ।

ଦୁଃଖର ଦିନରେ, ବିପଦର ଦିନରେ, ଏହାଠାରୁ ଅନେକ ଦୁଃସହ୍ୟ ବେଦନାର ପାଖ ଦେଇ ତାଙ୍କୁ ଚାଲିବାକୁ ହୋଇଛି, କିନ୍ତୁ କୌଣସି ଦିନ ନିଜକୁ ଆହତ ହେବାକୁ ଦେଇ ନାହାଁନ୍ତି । ସମସ୍ତ ସନ୍ଦେହକୁ ସ୍ନେହର ଆବରଣରେ ଚାପି ଦେଇ ସେ ବାହାରକୁ ମେଘମୁକ୍ତ ଆକାଶ ଭଳି ନିର୍ମଳ କରି ରଖିଛନ୍ତି । କିନ୍ତୁ ଆଜି ସଦ୍ୟ ବିଧବାର ଏହି ନିଷ୍ଠୁର ଧୈର୍ଯ୍ୟ ତାଙ୍କର ଏତେଦିନ ଧରି ଗୋପନ କରି ରଖିଥିବା ସ୍ନେହର ଦେହ ବିଦାରି କଳୁଷ ବାଷ୍ପରେ ଯେପରି ତାଙ୍କର ହୃଦସ୍ଥ ଭରି ଦେବାକୁ ଲାଗିଲା ।

ସୂର୍ଯ୍ୟ ଅସ୍ତ ଗଲେ । ମହମ ସେପାଖରେ ଏକ ପ୍ରକାର କାମ ଶେଷ କରି ଆସି କହିଲା—ରାମବାବୁ, ଏଥର ତାକୁ ନେଇ କରି ଯିବାକୁ ହେବ । ଅଚଳା ଆଡ଼କୁ ଚାହିଁ ଦେଇ କହିଲା, ଆଲୁଅଟା ଜଳାଇ ଦେଇଛି । ତୁମେ ବୁଢ଼ୀ ସହିତ ବସିଥାଅ । ଆମ ମାନଙ୍କର ଫେରିବାକୁ ବୋଧହୁଏ ବିଳମ୍ବ ହେବନାହିଁ ।

ଅଚଳା କିଛି କହିଲା ନାହିଁ ।

ରାମବାବୁ ଆତ୍ମ ସମ୍ବରଣ କରି ଉଠି ଠିଆହେଲେ । ଅଚଳାର ଆନତ ମୁଖ ପ୍ରତି ଦୃଷ୍ଟିପାତ କରି ରୁଦ୍ଧ ସ୍ୱରକୁ ପରିଷ୍କାର କରି, ଭଗ୍ନ କଣ୍ଠରେ କହିଲେ—ମାଆଁ, ଏକଥା କହିବାକୁ ମୋର ଗ୍ରୀବା ଫାଟି ଯାଉଛି । କିନ୍ତୁ ସ୍ତ୍ରୀର ଶେଷ କର୍ତ୍ତବ୍ୟ ତ ତୁମକୁ କରିବାକୁ ହେବ । ତୁମକୁ ହିଁ ମୁଖାଗ୍ନି...କହୁ କହୁ ସେ କହି କହିଁ ହୋଇ କାନ୍ଦି ଉଠିଲେ ।

ଅଚଳା ଶୁଖିଲା ମୁହଁ ଏବଂ ତାହାଠାରୁ ଅଧିକ ଶୁଖିଲା ଆଖି ଦୁଇଟିରେ ବୃଦ୍ଧଙ୍କ ଆଡ଼କୁ ଚାହିଁରହି ମୁହୂର୍ତ୍ତିକ ପାଇଁ ସ୍ଥିର ହୋଇ ବସିରହିଲା । ତା'ପରେ ଶାନ୍ତ ମୃଦୁ କଣ୍ଠରେ କହିଲା—ହିନ୍ଦୁ ଧର୍ମରେ ପ୍ରକୃତରେ ଯଦି ଏହାର କୌଣସି ଫଳ ଥାଏ ତେବେ ମୁଖାଗ୍ନି ଆବଶ୍ୟକ ହେଲେ ମୁଁ ଦେଇପାରେ । ସେ କଥାକୁ ମୁଁ କଦାପି ବ୍ୟର୍ଥ ହେବାକୁ ଦେବ ନାହିଁ । ମୁଁ କିନ୍ତୁ ତାଙ୍କର ସ୍ତ୍ରୀ ନୁହେଁ......

ରାମବାବୁ ବଜ୍ରାହତ ପରି ପଲକହୀନ ଆଖିରେ ଚାହିଁ ରହି ଅବଶେଷରେ ଆସ୍ତେ ଆସ୍ତେ କହିଲେ—ତୁ...ସୁ....ରେ...ଶ...ର...ସ୍ତ୍ରୀ...ନୋ...ହୁ ।

ଅଚଳା ସେହିପରି ଅବିଚଳିତ ସ୍ୱରରେ କହିଲା—ନା, ସେ ମୋର ସ୍ୱାମୀ ନୁହଁନ୍ତି ।

ଆଖିର ପଲକ ମାତ୍ରକେ ରାମବାବୁଙ୍କର ସମସ୍ତ ଘଟଣା ମନେ ପଡ଼ିଗଲା । ତାଙ୍କ ଘରେ ଆଶ୍ରୟ ଗ୍ରହଣ କରିବା ଠାରୁ ଆରମ୍ଭ କରି ସେ ଦିନର ସେହି ମୂର୍ଚ୍ଛା ପର୍ଯ୍ୟନ୍ତ ଯାବତୀୟ ବ୍ୟାପାର ବିଦ୍ୟୁତ୍ ବେଗରେ ବାରମ୍ବାର ତାଙ୍କର ମନ ଭିତରେ ଘୂରି ବୁଲି ସନ୍ଦେହର ଛାୟା ଟିକିଏ ସୁଦ୍ଧା କୌଣସିଠାରେ ଅବଶିଷ୍ଟ ରଖିଲାନାହିଁ । ଏ କିଏ, କାହାରିଅ, କି ଜାତି, ହୁଏତ ଅବା ବେଶ୍ୟା, ତାକୁ ସ୍ନେହରେ ମାଆ ବୋଲି ଡାକିଛନ୍ତି; ତା ହାତରୁ ଖାଇଛନ୍ତି, ତାର ହାତ ରନ୍ଧା ଅନ୍ନ ସେ ଠାକୁରଙ୍କୁ ସୁଦ୍ଧା ଭୋଗ କରିଛନ୍ତି । ଏ ସବୁ କଥା ମନେ କରି ଘୃଣାରେ ଯେପରି ସାରା ଅଙ୍ଗ ତାଙ୍କର ଥରି ଉଠିଲା ଏବଂ ଯେଉଁ ସ୍ନେହ, ଏତେଦିନ ଧରି ଶ୍ରଦ୍ଧାରେ, ମନ ଭିତରେ ସାଇତି ରଖି ଆସିଥିଲେ, ମରୁଭୂମିରେ ଜଳ କଣା ପରି ସେ ଯେ କେଉଁଠାରେ ଅନ୍ତର୍ହିତ ହୋଇଗଲା, ତାହାର ଆଭାସ ପର୍ଯ୍ୟନ୍ତ ସେ ପାଇ ପାରିଲେ ନାହିଁ ।

କେବଳ ସେ ନୁହେଁ, ମହିମ ମଧ୍ୟ ସ୍ତମ୍ଭିତ ହୋଇ ଠିଆ ହୋଇ ରହିଥିଲା । ସେ ଆଶ୍ଚର୍ଯ୍ୟ ହୋଇ କହିଲା—ସେ କଥା ହେବାର ଯେତେବେଳେ ଆଶା ନାହିଁ ଚାଲନ୍ତୁ ଆମେ ଦୁହେଁ ନେଇ କରି ଚାଲିଯିବା ।

: ଚାଲନ୍ତୁ । କହି ବୃଦ୍ଧ ସ୍ୱପ୍ନଚାଳିତ ପରି ଅଗ୍ରସର ହେଲେ । ତାଙ୍କର ନିଜର ଦୁର୍ଘଟଣା ନିକଟରେ ସମସ୍ତ ଦୁର୍ଘଟଣା ହିଁ ଛାୟା ଭଳି ମଳିନ ହୋଇ ପଡ଼ିଛି । ତାଙ୍କର ଦୁଇ କାନରେ କେବଳ ଅହରହ ବାଜି ଉଠୁଛି—ଜାତି ଗଲା, ଧର୍ମ ଗଲା, ଏଥରର ମାନବ ଜନମଟା ଯେପରି ବୃଥା ହୋଇଗଲା ।

ସୁରେଶର ଅନ୍ତ୍ୟେଷ୍ଟି କ୍ରିୟା ଯେନତେନ ପ୍ରକାରେଣ ସାମାହିତ କରିବାକୁ ବେଶି ସମୟ ଲାଗିଲା ନାହିଁ । ରାମବାବୁ ସେହି ସମୟଠାରୁ ନୀରବ ଥିଲେ ଏବଂ କାମ ଶେଷ ହେବାପରେ ସିଧା ଆସି ଗାଡ଼ି ଭିତରେ ବସି ପଡ଼ିଲେ ।

ମହିମ ପ୍ରଶ୍ନ କଲା—ଆପଣ କ'ଣ ଯାଉଛନ୍ତି ?

ରାମବାବୁ କହିଲେ—ହଁ । ମୋତେ ସକାଳ ଟ୍ରେନରେ କାଶୀ ଯିବାକୁ ହେବ । ବର୍ତ୍ତମାନ ନ ବାହାରିଲେ ଆଉ ଠିକ୍ ସମୟରେ ମୁଁ ପହଞ୍ଚି ପାରିବି ନାହିଁ ।

ତାଙ୍କର ମନର ଭାବନାଟା ମହିମକୁ ଅଜଣା ନଥିଲା ଏବଂ ପ୍ରାୟଶ୍ଚିତ୍ତ ପାଇଁ ଯେ ସେ କାଶୀ ଯାଉଛନ୍ତି; ଏହା ସେ ବୁଝି ପାରିଥିଲା । ସେଥିପାଇଁ ଅତିଶୟ ସଙ୍କୋଚର ସହିତ କହିଲା—ମୁଁ ବିଦେଶୀ ଲୋକ, ଏଠିକା ବିଷୟରେ କିଛି ଜାଣେ ନାହିଁ ।- ଦୟାକରି ଯଦି ତାଙ୍କର ଯିବାର କୌଣସି ବ୍ୟବସ୍ଥା···କଥାଟା ଶେଷ

ହୋଇ ପାରିଲା ନାହିଁ । ଅଚଳାକୁ ସଙ୍ଗରେ ନେବା ପ୍ରସ୍ତାବରେ ବୃଦ୍ଧ ନିଆଁରେ ଘିଅ ଢାଳିଲା ପରି ଗର୍ଜରେ ଜଳି ଉଠି କହିଲେ—ଦୟା ? ଆପଣ କ'ଣ ପାଗଳ ହୋଇ ଗଲେଣି ମହିମ ବାବୁ ?

ମହିମ ଏହି ପ୍ରଶ୍ନରେ ପ୍ରତିବାଦ ଜଣାଇଲା ନାହିଁ । ଭୟର ସହିତ ବିମର୍ଶ ଭାବରେ କହିଲା, ବୋଧହୁଏ ଦୁଇ ଦିନ ଧରି ସେ ଖାଇନାହାଁନ୍ତି । ଏହି ମୃତ୍ୟୁପୁରୀର ମଧ୍ୟରେ ଭୟାନକ ଅବସ୍ଥାରେ ଛାଡ଼ି ଯିବା ଟା······

ମହିମ ଏହି କଥାକୁ ଶେଷ କରିବାକୁ ସମୟ ସୁଦ୍ଧା ପାଇଲା ନାହିଁ । ଆତ୍ମରକ୍ଷା ବ୍ରାହ୍ମଣଙ୍କର ଜନ୍ମଗତ ସଂସ୍କାର ଆଘାତ ପାଇ ପ୍ରତିହିଂସାରେ କ୍ରୁର ହୋଇ ଉଠିଥିଲା, ସେଥିପାଇଁ ତୀବ୍ର ଶ୍ଳେଷ ବାକ୍ୟରେ କହି ଉଠିଲେ, ଓଃ ! ଆପଣ ଯେ ବ୍ରାହ୍ମ । ସେତକ ମୁଁ ଭୁଲି ଯାଇଛି । କିନ୍ତୁ ମହାଶୟ ଆପଣ ଯେତେବଡ଼ ବ୍ରହ୍ମଜ୍ଞାନୀ ହୁଅନ୍ତୁ ନା କାହିଁକି ମୋର ସର୍ବନାଶର ପରିମାଣ ବୁଝି ପାରିଲେ ଏହି କୁଳଟା ସମ୍ବନ୍ଧରେ ଦୟା-ମାୟା କଥା ମୁହଁରେ ଧରନ୍ତେ ନାହିଁ । ଏତିକି କହି ଗାଡ଼ି ଚଳାଇବାକୁ ଆଦେଶ ଦେଇ କହିଲେ—ଥାଉ, ଥାଉ ବ୍ରହ୍ମଜ୍ଞାନରେ ମୋର ପ୍ରୟୋଜନ ନାହିଁ । ପ୍ରାଣ ବଞ୍ଚାଇବାକୁ ଇଚ୍ଛା ଅଛି ତ ଗାଡ଼ି ଭିତରକୁ ଚାଲି ଆସନ୍ତୁ । ଦୁଇ ଜଣଙ୍କୁ ଏଥିରେ ଯଥେଷ୍ଟ ଜାଗା ହେବ ।

ମହିମ ନୀରବରେ ନମସ୍କାର କଲା । ସର୍ବନାଶ ପରିମାଣ ଯେଉଁ ତାଙ୍କ ସହିତ ତର୍କ କଲା ନାହିଁ । ପ୍ରାଣ ବଞ୍ଚାଇବା ପାଇଁ ନିମନ୍ତ୍ରଣକୁ ମଧ୍ୟ ରକ୍ଷା କରି ପାରିଲା ନାହିଁ, ସେ ଯିବା ପରେ ତାର ବୁକୁ ବିଦାରି କେବଳ ଗୋଟାଏ ଦୀର୍ଘ ନିଃଶ୍ୱାସ ବାହାରି ଆସିଲା ।

ସର୍ବନାଶର ପରିମାଣ ! ବଡ଼ବାବାଙ୍କ କହିବା ପ୍ରକୃତରେ ଠିକ୍, ଭିତରେ ବସି ଅଚଳା ଏହା ମଧ୍ୟ ଅନୁଭବ କରିଥିଲା । କାହିଁକି ସେ ଘର ଭିତରକୁ ଆସିଲେ ନାହିଁ, ପଦେ କଥା ସୁଦ୍ଧା କହିଲେ ନାହିଁ । ତାହା ମଧ୍ୟ ବୁଝି ପାରିଥିଲା ।

ଏତେସମୟ ଧରି ସୁରେଶର ଅନିବାର୍ଯ୍ୟ ମୃତ୍ୟୁ ଯେଉଁ ଭୟଙ୍କର ଦୁଃଶ୍ଚିନ୍ତାର ଉପଲକ୍ଷ ସୃଷ୍ଟି କରି ଗୋଟାଏ ପ୍ରାଚୀର ସୃଷ୍ଟି କରିଥିଲା ବର୍ତ୍ତମାନ ଆଉ ତାହା ନାହିଁ । ଏଥର ଯେତେବେଳେ ମହିମ ଅତି ପାଖରେ ଆସି ଠିଆ ହେବ ସେତେବେଳେ....ଭାବି ଭାବି ଅଚଳା ଯେପରି ଲାଜରେ ମରିଯାଉଥିଲା ।

ମହେନ୍ଦ୍ର ଆସି ଦେଖିଲା, ଅଚଳା କାଗ୍ରସିକ ଉଦ୍‌ବେଗଟା ଆଗରେ ରଖି ଚୂପ କରି ବସିଛି । ପଚ୍ଚାରିଲା—ବର୍ତ୍ତମାନ ତୁମେ କ'ଣ କରିବ ?

: ମୁଁ ? କହି ଅଚଳା ମହେନ୍ଦ୍ରର ମୁହଁକୁ ଚାହିଁ କ'ଣ ଯେପରି ଭାବିବାକୁ ଲାଗିଲା । ଶେଷରେ କହିଲା—ମୁଁ ତ ଭାବି ପାରୁନାହିଁ, ତୁମେ ଯାହା ହୁକୁମ କରିବ, ଏଣିକି ମୁଁ ତାହାହିଁ କରିବି ।

ଏହି ଅପ୍ରତ୍ୟାଶିତ କଥାରେ ଏବଂ ବ୍ୟବହାରରେ ମହେନ୍ଦ୍ର ବିସ୍ମିତ ହୋଇ ଉଠିଲା । ଶଙ୍କିତ ବି ହୋଇ ଉଠିଲା । ଏପରି ଭାବରେ ଅଚଳା ତାକୁ କେବେ ଚାହିଁ ନଥିଲା । ଏ ଦୃଷ୍ଟି ଯେପରି ସ୍ୱଚ୍ଛ, ସେହିପରି ସରଳ । ଏହା ଭିତର ଦେଇ ଯେପରି ତାର ହୃଦୟର ଅନେକ କିଛି ସେ ଦେଖିପାରିଲା । ଯେତେଦୂର ପର୍ଯ୍ୟନ୍ତ ଭବିଷ୍ୟତର ଆକାଶ ଧୂ ଧୂ ହୋଇ ଦେଖାଗଲା ସେଠାରେ ସେ ଦେଖିବାକୁ ପାଇଲା ଭୟନାହିଁ, କାମନା ନାହିଁ ଏବଂ କଳ୍ପନା ନାହିଁ । ତାର ରଙ୍ଗନାହିଁ, ମୂର୍ତ୍ତି ନାହିଁ, ଗଢ଼ନାହିଁ, ପ୍ରକୃତି ନାହିଁ, ଏକବାରେ ନିର୍ବିକାର, ଏକବାରେ ଶୂନ୍ୟ ।

ଉପଦ୍ରୁତ, ଅପମାନିତ, କ୍ଷତ-ବିକ୍ଷତ ନାରୀ ହୃଦୟର ଏହି ଚରମ ବୈରାଗ୍ୟକୁ ସେ ଚିହ୍ନି ପାରିଲା ନାହିଁ । ଜଣଙ୍କର ଅଭାବ ଅନ୍ୟଜଣଙ୍କର ହୃଦୟକୁ ଏପରି ନିଃସ୍ୱ କରି ପକାଇଛି କଳ୍ପନା କରି ତାର ମନ ଭକ୍ତିରେ ପୂର୍ଣ୍ଣ ହୋଇ ଉଠିଲା । କିନ୍ତୁ ନିଜର ଦୁଃଖ ଦ୍ୱାରା ଜଗତର ଦୁଃଖଭାର ବଢ଼ାଇବାକୁ ସେ କେବେ ଇଚ୍ଛା କରି ନାହିଁ । ସେଥିପାଇଁ ଆପଣାକୁ ଅପମାନ ଭିତରେ ବୁଡ଼ାଇ ରଖିବାହିଁ ତାର ଚିରଦିନର ଅଭ୍ୟାସ । କାଳେ ଏହି ବୁକୁଭରା ଭକ୍ତି ତାର କଣ୍ଠସ୍ୱରରେ ପ୍ରକାଶ ପାଇପାରେ, ଏହି ଭୟରେ ସେ ଆଖି ଅନ୍ୟାନ ଫେରାଇ ନେଇ କିଛିକ୍ଷଣ ନୀରବ ରହିବା ପରେ ସରଳ ଭାବରେ କହିଲା— ମୁଁ ତୁମକୁ ହୁକୁମ ଦେବି କାହିଁକି ଅଚଳା, ଆଉ ତୁମେ ଅବା ତାହା ଶୁଣିବାକୁ ବାଧ୍ୟ ହେବ କେଉଁଥିପାଇଁ ?

: କିନ୍ତୁ ତୁମ ବ୍ୟତୀତ ମୋର ଆଉ କେହି ନାହାନ୍ତି । କେହିତ ଆଉ ମୋ ସହିତ କଥା କହୁନାହିଁ । କହି ଅଚଳା, ସେହିପରି ଭାବରେ ମହେନ୍ଦ୍ରକୁ ଚାହିଁ ରହିଲା ।

ମହେନ୍ଦ୍ର କହିଲା—ଏହା କ'ଣ ମୋଠାରୁ ତୁମେ ଆଶା କରିପାରୁଛ ?

ବୋଧହୁଏ କଥାଟା ଅଚଳା ଶୁଣି ପାରିଲା ନାହିଁ । ପୁଣି ମନେ ମନେ ଆପଣାକୁ କହି ଚାଲିଲା—ତୁମକୁ ହରାଇବା ପରଠାରୁ ମୁଁ ଭଗବାନଙ୍କୁ କେତେଥର ଜଣାଇ କହି ଉଠିଛି—ହେ ଈଶ୍ୱର ! ମୁଁ ଆଉ ପାରୁନାହିଁ । ତୁମେ ମୋତେ

ନେଇଯାଅ । ସେ ମଧ୍ୟ ଶୁଣିଲେ ନାହିଁ । ତୁମେ ମଧ୍ୟ ଶୁଣିବାକୁ ପ୍ରସ୍ତୁତ ନୁହଁ । ମୁଁ ଆଉ କରିବି କ'ଣ ?

ମଦ୍ଦନ କୌଣସି ଉତ୍ତର ନଦେଇ ବାହାରକୁ ଚାଲିଗଲା । କିନ୍ତୁ ଏହି ନୈରାଶ୍ୟର କଣ୍ଠସ୍ୱର, ଏହି ନିରନ୍ତରମାନ ନିଃସଙ୍କୋଚ, ନାଜିଙ୍କ ଉକ୍ତ ଆପତ୍ତି ତାର ଚିତ୍ତକୁ ଦ୍ୱିଧାଗ୍ରସ୍ତ କରି ପକାଇଲା । ସେ ବାହାରେବୁଲୁ ବୁଲୁ ଏହା ଭାବିବାକୁ ଲାଗିଲା ଯେ, କ'ଣ କରାଯିବ ! ଆପଣା ଭାରରେ ମୁଁ ଯେ ଆପେ ଭାରାକ୍ରାନ୍ତ । ପୁଣି ମୋର ମୁଣ୍ଡ ଉପରେ ସୁରେଶ ତାର ସୁକୃତି ଓ ଦୁଷ୍କୃତିର ଗୁରୁଭାର ଥୋଇଦେଇ ଏଇମାତ୍ର ଚାଲିଗଲା । ଏ ବୋଝ ଅବା ମୁଁ କେଉଁଠାରେ ନେଇ କପଟଭାବରେ ଓହ୍ଲାଇ ପାରିବି ?

ରଘୁବୀର ଅନେକ ପରିଶ୍ରମ କରି ଖବର ଆଣି କହିଲା ଯେ, ଡିହଗାଁ ପାଖରେ ଦୁଇ ତିନିକୋଶ ଦୂରରେ କାଲି ଗୋଟାଏ ହାଟ ବସିବ । ଚେଷ୍ଟାକଲେ ସେଠାରେ ଗୋରୁ ଗାଡ଼ି ଗୋଟାଏ ହୁଏତ ମିଳିଯାଇ ପାରେ ।

ମଦ୍ଦନ ଅତ୍ୟନ୍ତ ବ୍ୟଗ୍ର ହୋଇ ଉଠୁଥିବାର ଦେଖିପାରି ରଘୁବୀର ସଙ୍କୋଚର ସହିତ କହିଲା—ସେ ନିଜେ ବର୍ତ୍ତମାନ ଯାଇପାରେ । କିନ୍ତୁ ଏ ଗାଆଁରେ ଉପରେ ଆଉ କେହି ବାହାରିବେ ନାହିଁ । କିନ୍ତୁ ମାଆ ଯଦି ଏତିକ ବାଟ……

ଅଚଳା ଭିତରୁ ଶୁଣିପାରି କହିଲା—ଚାଲ । ଏବଂ ତତ୍‌କ୍ଷଣାତ୍ ଠିଆହୋଇ ପଡ଼ି ସେ ପାଦ ବଢ଼ାଇବାକୁ ଉଦ୍ୟତ ହେବାକୁ ଯାଇ ଟଳି ପଡ଼ୁଥିଲାବେଳେ ମଦ୍ଦନ ଜୋରରେ ତାକୁ ଧରି ପକାଇଲା । ସଙ୍ଗେ ସଙ୍ଗେ କିନ୍ତୁ ଲଜ୍ଜାରେ ଓ ଘୃଣାରେ ମଦ୍ଦନର ସାରା ଦେହ ସଙ୍କୁଚିତ ହୋଇ ଉଠିଲା । ନିଜର ହାତଟା ଟାଣିନେବାକୁ ଚେଷ୍ଟା କରୁ କରୁ କହିଲା—ଆଜି ନହେଲେ ଥାଉ ।

: କାହିଁକି ? ଏଇ ବର୍ତ୍ତମାନ ତୁମେ କହିଲ ଯେ ଏଠାରେ ରହିବା ଉଚିତ ନୁହେଁ । ଆଉ ଡିହଗାଁକୁ ଯାଇ ଗାଡ଼ି ଆଣିବା ପାଇଁ ହୁଏତ କାଲି ଦିନଟା ବି ବିତି ଯାଇପାରେ ।

: କିନ୍ତୁ ତୁମେ ଯେ ବଡ଼ ଦୁର୍ବଳ……

ଅଚଳା ହାତ ଛାଡ଼ିଲା ନାହିଁ । କେବଳ ମଥା ହଲାଇ କହିଲା—ନା ଚାଲ, ମୁଁ ଆଦୌ ଦୁର୍ବଳ ନୁହେଁ । ତୁମ ହାତଧରି ପାରିଲେ ଯେତେଦୂର କହିବ ଯାଇ ପାରିବି ।

ଚାଲ, କହି ରଘୁବୀରକୁ ଆଗରେ ରଖି ମଦ୍ଦନ ଯାତ୍ରା ଆରମ୍ଭ କରିଦେଲା । ସେ ଦୀର୍ଘ ନିଃଶ୍ୱାସଟାଏ ଛାଡ଼ି ଆପଣା ମନକୁ ଆପେ ସହସ୍ର ବାର ପ୍ରଶ୍ନ କରିବାକୁ

ଲାଗିଲା—ଏହାର ଶେଷ କେଉଁଠାରେ ? ଏ ଯାତ୍ରା କେବେ ଏବଂ କପରି ବନ୍ଦ ହୋଇପାରିବ ?

ଉତ୍ତରରେ ପହଞ୍ଚି ସେହି ମୋଟା ଲଫାପାଟା ବାହାର କରି ଅଚଳା କହିଲା—ଏହି ହେଉଛି ତାଙ୍କ ଉତ୍ତର ।

ମହିମ ହାତ ବଢ଼ାଇ ଗ୍ରହଣ କଲା । ତାର ମନେ ପଡ଼ିଲା ଏହା ଭିତରେ ସୁରେଶର ଚିଠି ଅଛି । ପତ୍ରରେ ହୁଏତ କୌଣସି ଅଚନ୍ତନୀୟ ବିବରଣୀ ଲିପିବଦ୍ଧ କରା ହୋଇଛି, କିମ୍ବା କୌଣସି ଦୁର୍ଗମ ରହସ୍ୟ ପଥର ସନ୍ଧାନ ଦିଆ ହୋଇଛି, ତାହା ଜାଣିବାପାଇଁ ତାର ମନରେ ଝଡ଼ ବହିବାକୁ ଲଗିଲା । କିନ୍ତୁ ଏହି ପ୍ରଚଣ୍ଡ ଇଚ୍ଛାକୁ ସେ ଶାନ୍ତ ମୁଖରେ ଦମନ କରି ଲଫାପାଟା ପକେଟ ଭିତରେ ରଖିଦେଲା ।

ଅଚଳା କହିଲା—ତୁମେ କ'ଣ ଆଜି ଉତ୍ତରକୁ ଚାଲିଯିବ ?

: ହଁ । ଏଠାରେ ରହିବାପାଇଁ ଆଉ ମୋର ସୁବିଧା ହେବନାହିଁ ।

: ମୋତେ କ'ଣ ଚିରକାଳ ଏହିଠାରେ ରହିବାକୁ ହେବ ।

ମହିମ ମୁହୂର୍ତ୍ତିକ ପାଇଁ ନୀରବ ରହିବାପରେ କହିଲା—ତୁମେ କ'ଣ ଆଉ କେଉଁଠାକୁ ଯିବାକୁ ଇଚ୍ଛାକର ?

ଅଚଳା କହିଲା—କାଲିଠାରୁ ମୁଁ ତାହା ହିଁ କେବଳ ଭାବୁଛି । ଶୁଣିଥିଲି ବିଲାତପରି ଦେଶରେ ମୋଭଳି ହତଭାଗିନୀମାନଙ୍କ ପାଇଁ ଆଶ୍ରମର ବ୍ୟବସ୍ଥା ଅଛି । ସେଠାରେ କ'ଣ କପରି ହୁଏ ତାହା ଅବଶ୍ୟ ମୁଁ ଜାଣେ ନାହିଁ । ଏ ଦେଶରେ କ'ଣ ସେପରି କିଛି···କହୁ କହୁ ତାର ବଡ଼ ବଡ଼ ଆଖି ଦୁଇଟି ଲୁହରେ ଛଳ ଛଳ ହୋଇ ଉଠିଲା । ମହିମ ଆସିବା ପରେ ଏହି ପ୍ରଥମଥରପାଇଁ ତା ଆଖିରେ ଲୁହ ଦେଖିପାରିଲା ।

ମହିମ ଗୁହରେ କରୁଣାର ଧାର ଫୋଡ଼ି ହୋଇଗଲା । ସେ କେବଳ ଧୀରେ ଧୀରେ ଉତ୍ତର ଦେଲା—ମୋତେ ମଧ୍ୟ ଜଣାନାହିଁ । ସନ୍ଧାନ ନେବାପାଇଁ ଚେଷ୍ଟା କରିବି ।

: ତୁମକୁ ଚିଠି ଲେଖିଲେ ତୁମେ କ'ଣ ଉତ୍ତର ଦେବ ନାହିଁ ।

: ଆବଶ୍ୟକ ଥିଲେ ଦେଇପାରେ । ମୋତେ କିନ୍ତୁ ସମସ୍ତ ଜିନିଷ ଏକତ୍ର କରି ଯିବାପାଇଁ ଡେରି ହେବ । ତେଣୁ ମୁଁ ଚାଲିଲି ।

ଅଚଳା ତାହାର ଶ୍ରେଷ୍ଠ ଦୁଃଖକୁ ଆଜି ମନେ ମନେ ସ୍ୱାମୀଙ୍କର ପାଦତଳେ ନୀରବରେ ନିବେଦନ କରିଦେଇ ସେହିଠାରେ ମାଟିରେ ମୁଣ୍ଡ ଲଗାଇ ପ୍ରଣାମ

ଜଳା ଏବଂ ମହମ ବାହାରି ଗ୍ଲଲିଯିବା ପରେ ସେ ଦ୍ୱାରବନ୍ଧକୁ ଧରି ତାର ଯିବା ବାଟକୁ ଏକ ଦୃଷ୍ଟିରେ ଗ୍ଲହିଁ ରହିଲା ।

ବାଟରେ ଯାଉ ଯାଉ ମହମ ଭାବୁଥିଲା, ରାମବାବୁଙ୍କ ଘରେ ଏକ ମୁହୂର୍ତ୍ତ ମଧ୍ୟ ରହିବା ଅନୁଚିତ । ଅଥଚ ସହର ମଧ୍ୟରେ ଆଉ କେଉଁଠାରେ ଗୋଟାଏ ଦିନ ପାଇଁ ଆଶ୍ରୟ ନେବା ମଧ୍ୟ ଅସମ୍ଭବ । ଯେପରି ହେଉ ପଛକେ ତାହାକୁ ଏ ଦେଶ ଗ୍ଲଡ଼ି ଗ୍ଲଲିଯିବାକୁ ହେବ । ତାହା ବ୍ୟତୀତ ତାର ନିଜପାଇଁ ବର୍ତ୍ତମାନ ଗୋଟିଏ ଏପରି ନିରୋଳା ସ୍ଥାନର ପ୍ରୟୋଜନ, ଯେଉଁଠାରେ ସେ ଦୁଇ ମିନିଟ ବସି ରହି ଲଫାପା ଭିତରେ କେବଳ କ'ଣ ଅଛି ତାହାନୁହେଁ ଆପଣାକୁ ଆପେ ଆଖି ମେଲାଇ ଦେଖିବାପାଇଁ ଫୁରସତ୍ ପାଇ ପାରିବ ।

ଅଚଳାକୁ ନିବିଡ଼ ଭାବରେ ଭଲ ପାଇବାର ଇତିହାସ ଆଜି ତାହା ନିକଟରେ ଅସ୍ପଷ୍ଟ । କିନ୍ତୁ ଏଇ ଝିଅଟାକୁ କେନ୍ଦ୍ରକରି ତାର ଜୀବନ ଉପର ଦେଇ ଯେଉଁ ଝଡ଼ ବହିଯାଇଛି ତାହା ଯେପରି ପ୍ରଳୟ ପରି ଅସୀମ ସେହିପରି ଉପମା ବିହୀନ । ଆଉ ଅଧିକ ନୀରବରେ ସହିବାପାଇଁ ଶକ୍ତି ବୋଧହୁଏ ଭଗବାନ ତାକୁ ଦେଇ ନାହାନ୍ତି । ତାର ସୁଖର ନୀଡ଼ ଯେ କେବଳ ବାହାରେ ଏବଂ ଭିତରେ ଜଳି ଉଠିଲା ତାହା ନୁହେଁ ବରଂ ତାର ଆଖି ଆଗରେ ଯେତେବେଳେ ଜଳି ଜଳି ଭସ୍ମସାତ୍ ହୋଇଗଲା, ସେତେବେଳେ ଏତେ ଟିକିଏ ନିଆଁ ସେ ତହିଁରୁ ଲୁଚାଇ ପାରିଲା ନାହିଁ । ଆଜି କିନ୍ତୁ ସହିବା ପାଇଁ ଆଉ ତାର ସାମର୍ଥ୍ୟ ନାହିଁ । ଜମା ଖର୍ଚ୍ଚର ହିସାବ ଖାତା ମିଳାଇ ନ ଦେଖିଲେ ଆଉ ଚଳିବ ନାହିଁ । କେଉଁଠାରେ ଟିକିଏ ନିର୍ଜ୍ଜନ ସ୍ଥାନ ତାର ଆବଶ୍ୟକ । ସେତିକି ସେ କେବଳ ଗ୍ଲହେଁ ।

ରାମବାବୁଙ୍କ ଘରେ ପହଞ୍ଚି ସେ ନିଜର ଜିନିଷପତ୍ର ସବୁ ବନ୍ଧା ବନ୍ଧି କରି-ନେଲା । ପାଞ୍ଚଟା ବେଳର ଟ୍ରେନ ଆସିବାକୁ ଆଉ ମାତ୍ର ଘଣ୍ଟାଏ ବିଳମ୍ବ ଅଛି । ରାମବାବୁ କାଶୀରୁ ଫେରିବାକୁ ନିଶ୍ଚୟ ବିଳମ୍ବ ହେବ । ଯଥାର୍ଥରେ ସେ ପ୍ରାୟଶ୍ଚିତ କରିବାକୁ ହିଁ ଯାଇଛନ୍ତି । ଏବଂ ପ୍ରାୟଶ୍ଚିତ ନକରିବା ପୂର୍ବରୁ ଜଳ ସ୍ପର୍ଶ କରିବେ ନାହିଁ ବୋଲି କହି ଯାଇଛନ୍ତି । ସୁତରାଂ ତାଙ୍କ ସହିତ ଦେଖାକରି ବିଦାୟ ନେବାର ପ୍ରଶ୍ନ ଉଠୁନାହିଁ । ବିଦାୟ କାଳୀନ କର୍ତ୍ତବ୍ୟଟା ଖଣ୍ଡିଏ ସଂକ୍ଷିପ୍ତ ଚିଠିରେ ସମାପ୍ତ କରିଦେବା ପାଇଁ ସେ କାଗଜ କଲମ ଧରି ବସିପଡ଼ିଲା । ଧାଡ଼ିଏ ଦୁଇଧାଡ଼ି ଲେଖି-ସାରିବା ପରେ ତାର ମନରେ ସେହି ନିଭୃତ ମୁହଁର ଭୟ, ଉତ୍ତପ୍ତ ବିଦ୍ରୁପ ଗୁଡ଼ିକ ମନେ ପଡ଼ିବାକୁ ଲାଗିଲା, ଏବଂ ଏହା ସହିତ ଆଉ ଜଣଙ୍କର ଅଶ୍ରୁଜଳରେ ଅବରୁଦ୍ଧ ଅସ୍ପଷ୍ଟ କଣ୍ଠସ୍ୱରର କାତର ପ୍ରାର୍ଥନା ମଧ୍ୟ ତାର କାନରେ ଆସି ପହଞ୍ଚିଲା । ତାହା

ଭିତରେ ବେଦନା ଭଳି ଏତେକ୍ଷଣ ପର୍ଯ୍ୟନ୍ତ ଏହା ତାର ଚୈତନ୍ୟକୁ ସମ୍ପୂର୍ଣ୍ଣ ଜାଗ୍ରତ କରି ରଖି ନଥିଲା । କିନ୍ତୁ ରାମବାବୁଙ୍କର କଥା ଯେପରି ଧକ୍କା ମାରି ତାର ସ୍ୱପ୍ନକୁ ଭାଙ୍ଗିଦେଲା ।

ଏହି ବୃଦ୍ଧ ବ୍ୟକ୍ତିଙ୍କ ସହିତ ତାର ପରିଚୟ ବେଶୀ ଦିନର ନୁହଁ । ତାଙ୍କର ଦୟା, ଦାକ୍ଷିଣ୍ୟ, ଭଦ୍ରତା, ଅକପଟ ଭଗବଦ୍ ବିଶ୍ୱାସ ଓ ଧର୍ମନିଷ୍ଠାର ଅନେକ କାହାଣୀ ସେ ଆଗରୁ ଶୁଣିଥିଲା କିନ୍ତୁ ବର୍ତ୍ତମାନ ହଠାତ୍ ଏ ଖବରକୁ ଯେପରି କିଏ ଓଲଟ ପାଲଟ କରିଦେଲା ।

ଏହି ବୃଦ୍ଧ ଅଚଳାକୁ ତାଙ୍କର ସୁରମା ମାଆ ବୋଲି, କନ୍ୟା ବୋଲି, ଅଭିହିତ କରି ଆସିଛନ୍ତି । ଏହି ଝିଅଟି ଭିନ୍ନ ସେ କୌଣସି ଦିନ କୌଣସି ପରଗୋଷ୍ଠୀୟା ହାତରୁ ଅନ୍ନ ସ୍ପର୍ଶ କରିନାହାନ୍ତି; ଏକଥା ସେ ମହିମ ନିକଟରେ ସ୍ନେହରେ ଗଳ୍ପ ଛଳରେ ଅନେକ ଥର ପ୍ରକାଶ କରିଦେଇଛନ୍ତି । ସୁତରାଂ ସର୍ବନାଶଟା ଯେ ତାଙ୍କର କେତେଦୂର ପର୍ଯ୍ୟନ୍ତ ପହଞ୍ଚି ପାରିଥିଲା ତାହା ଅନୁମାନ କରିବା ମହିମ ନିକଟରେ କଷ୍ଟକର ବ୍ୟାପାର ନଥିଲା । କିନ୍ତୁ ବର୍ତ୍ତମାନ ସେ ଏଡିକି ମନେ ମନେ କହିବାକୁ ଲାଗିଲା—ଅଚଳାର ଅପରାଧ ବର୍ତ୍ତମାନ ନହେଲେ ପରେ ବିଚାର କଲେ ଚଳିବ । କିନ୍ତୁ ଏହି ଆଚାର ପରାୟଣ ବ୍ରାହ୍ମଣର ଏହି ଧର୍ମ କେଉଁ ପ୍ରକୃତ ଧର୍ମ ଯାହା ସାମାନ୍ୟ ଗୋଟାଏ ଝିଅର ପ୍ରତାରଣା ଫଳରେ ନିମିଷକ ଭିତରେ ଧୂଳିସାତ୍ ହୋଇଗଲା ? ଯେଉଁ ଧର୍ମ ଅତ୍ୟାଚାରର ଆଘାତଠାରୁ ନିଜକୁ ଏବଂ ଅପରକୁ ରକ୍ଷା କରିପାରେ ନାହିଁ । ସେ କିଭଳି ଧର୍ମ, ଏବଂ ମାନବ ଜୀବନରେ ତାହାର ପ୍ରୟୋଜନୀୟତା କେତେ ? ଯେଉଁ ଧର୍ମ ସ୍ନେହର ମର୍ଯ୍ୟାଦା ରଖି ପାରିଲାନହିଁ, ନିଃସହାୟା ଆର୍ତ୍ତିନାରୀକୁ ମୃତ୍ୟୁ ମୁଖରେ ପକାଇ ଚାଲି ଆସିବାକୁ ଏତେ ଟିକିଏ ଦ୍ୱିଧା ବୋଧ କଲା ନାହିଁ, ଆଘାତ ପାଇବା ମାତ୍ରେ ଯେଉଁ ଧର୍ମ ଏତେ ବଡ଼ ବୃଦ୍ଧକୁ ମଧ୍ୟ ଏତେ ଶୀଘ୍ର ପ୍ରତିହିଂସାରେ ନିଷ୍ଠୁର କରି ପକାଇଲା,, ସେ କି ଭଳି ଧର୍ମ ? ଏହାକୁ ଯେଉଁମାନେ ମାନିଛନ୍ତି ସେମାନେ ପ୍ରକୃତରେ କ'ଣ କୌଣସି ସତ୍ୟ ବସ୍ତୁକୁ ଗ୍ରହଣ କରି ପାରିଛନ୍ତି ? ଯେଉଁଟା ଧର୍ମ, ସେ ହେଉଛି ଆଘାତ ସହିବା ପାଇଁ । ସହ୍ୟ କରିବା ହିଁ ତାର ଶେଷ ପରୀକ୍ଷା । ତାର ମନ ଭିତରୁ ଯେପରି କିଏ ପ୍ରଶ୍ନ କରି ଉଠିଲା—ତୋର ଆପଣା ପଳାୟନଟା……କିନ୍ତୁ ଏ ସବୁ ଚିନ୍ତାକୁ ସେ ଦୁଇହାତରେ ଠେଲି ବାହାର କରିଦେଇ କଲମଟାକୁ ଧରି କ୍ଷୁଦ୍ର ପତ୍ରଟି ଶେଷ କରି ଅବିଳମ୍ବେ ଷ୍ଟେସନ ଉଦ୍ଦେଶ୍ୟରେ ଯାତ୍ରା କଲା ।

ଟ୍ରେନ ଆସିବାମାତ୍ରେ ଯେଉଁ ଡବାର ଦ୍ୱାର ଖୋଲି ମଦ୍ଧମ ପ୍ରବେଶ କରିବାକୁ ଚେଷ୍ଟାକଲା, ସେହି ବାଟରେ ଜଣେ ବୃଦ୍ଧ ଭଦ୍ରବ୍ୟକ୍ତି ଗୋଟିଏ ବିଧବା ଝିଅର ହାତଧରି ତଳକୁ ଓହ୍ଲାଇ ପଡ଼ିଲେ ।

ବୃଦ୍ଧ ପାଟିକରି ଉଠିଲେ—ଆରେ ଏ ଯେ ମଦ୍ଧମ ?

ମୃଣାଳ ପାଦତଳେ ନଇଁପଡ଼ି ମୁଣ୍ଡିଆ ମାରି କହିଲା—ଭାଇ, ତୁମେ ଯାଉଛ କୁଆଡ଼େ ? କିନ୍ତୁ ଉଭୟେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଦେଖିଲେ ମଦ୍ଧମ ଗାଡ଼ି ଭିତରେ ଯାଇ ବସିପଡ଼ିଲାଣି ।

ମଦ୍ଧମ କହିଲା—ମୁଁ କଲିକତା ଯାଉଛି । ସୁରେଶବାବୁଙ୍କ ଘର କହିଲେ ଗାଡ଼ିବାଲା ଠିକ୍ ନେଇ ପହଞ୍ଚାଇ ଦେବ । ସେହିଠାରେ ଅଚଳା ଅଛି ।

କେଦାରବାବୁ ସ୍ତବ୍ଧ ହୋଇ ଠିଆହୋଇ ରହିଲେ । ମଦ୍ଧମ କହିଲା— ସୁରେଶର ମୃତ୍ୟୁ ହୋଇ ଯାଇଛି । ଅଚଳା ମୋତେ ଗୋଟାଏ ଆଶ୍ରମ କଥା ପଚାରୁଥିଲା । ମୃଣାଳ, କିନ୍ତୁ ମୁଁ ତାର ଉତ୍ତର ଦେଇ ପାରିଲି ନାହିଁ । ତୋ ନିକଟରୁ ସେ ହୁଏତ ଏ ବିଷୟରେ କିଛି ଉତ୍ତର ପାଇପାରେ ।

ମୃଣାଳ ମଦ୍ଧମର ମୁହଁକୁ ଏକ ଦୃଷ୍ଟିରେ ଚାହିଁରହି କହିଲା ଉତ୍ତର ପାଇବେ ସତ । କିନ୍ତୁ ଭାଇ, ମୋର ତ ସବୁ ଶିକ୍ଷା ତୁମ ନିକଟରୁ । ଆଶ୍ରମ କିହି କମ୍ଫା ଆଶ୍ରୟ କିହି ସେ ସବୁ ଯେ ତାଙ୍କର କେଉଁଠାରେ ଏ ଖବର ନୂଆବୋଉଙ୍କୁ ମୁଁ ଦେଇ ପାରିବ । କିନ୍ତୁ ସେ ସବୁତ ତୁମ ନିକଟରେ ।

ମଦ୍ଧମ କଥା କହିଲା ନାହିଁ । ବୋଧହୁଏ ନିଜକୁ ସେ ଏହି ଶିକ୍ଷ୍ମ ବୁଦ୍ଧି ସମ୍ପନ୍ନା ରମଣୀ ନିକଟରୁ ଗୋପନ କରିବା ପାଇଁ ମୁହଁକୁ ବୁଲାଇ ନେଲା ।

ଗାଡ଼ିର ବଂଶୀ ବାଜି ଉଠିଲା ।

ମୃଣାଳ ବୃଦ୍ଧଙ୍କର ଡାହାଣ ହାତଟି ନିଜ ହାତରେ ଧରି କହିଲା—ଚାଲ ବାବା, ଆମେ ଆମର ଯିବା......

